# ଗ୍ରନ୍ଥୋକ୍ତ ବିଷୟର ସୂଚୀ



ନମୋବାଙ୍ମନଃ ପ୍ରାଣରୂପିଣ୍ୟୈ ମହାଶକ୍ତ୍ୟୈ

# ଅଭିନବ ଧନ୍ୱନ୍ତରି



ଓଁ ସର୍ବଚୈତନ୍ୟରୂପାଂ ତାମ୍ ଆଦ୍ୟାଂ ବିଦ୍ୟାଂ ଚ ଧୀମହି
ବୁଦ୍ଧିଂ ଯା ନଃ ପ୍ରଚୋଦୟାତ୍ ଓଁ ।

ଓଁ ଅସତୋ ମା ସଦ୍ଗମୟ ତମସୋ ମା ଜ୍ୟୋତିର୍ଗମୟ
ମୃତ୍ୟୋର୍ମା ଅମୃତଂ ଗମୟ ॥

ଓଁ ତେଜୋଽସି ତେଜୋ ମୟି ଧେହି । ବୀର୍ଯ୍ୟମସି ବୀର୍ଯ୍ୟଂ ମୟି ଧେହି ॥
ବଲମସି ବଲଂ ମୟି ଧେହି । ମନ୍ୟୁରସି ମନ୍ୟୁଂ ମୟି ଧେହି ॥
ସହୋଽସି ସହୋ ମୟି ଧେହି ॥

ଓଁ ପୃଥ୍ୱୀ-ଆପସ୍-ତେଜୋ-ବାୟୁ-ଆକାଶାଃ ନଃ ଶୁଧ୍ୟନ୍ତାମ୍ ଶବ୍ଦସ୍ପର୍ଶରୂପରସଗନ୍ଧାଃ ନଃ ଶୁଧ୍ୟନ୍ତାଂ, ମନୋବାକ୍ କାୟକର୍ମାଣି ନଃ ଶୁଧ୍ୟନ୍ତାଂ, ଆତ୍ମା ନଃ ଶୁଧ୍ୟନ୍ତାଂ ଜ୍ୟୋତିଃ, ବିଧୂ ବିରଜସଃ ବିପାପ୍ମାନଃ ଭୂୟାସ୍ମ । ( ତୈତ୍ତି-ଆରଂ )

ଓଁ ଭବେମ ଶରଦଃଶତଂ, ରୋହେମ ଶରଦଃଶତଂ, ପୁଷ୍ୟେମ ଶରଦଃଶତଂ, ନନ୍ଦେମ ଶରଦଃଶତଂ, ମୋଦେମ ଶରଦଃଶତଂ, ଭୂତେମ ଶରଦଃଶତଂ, ପଶ୍ୟେମ ଶରଦଃଶତଂ, ଶୃଣୁୟାମ ଶରଦଃ ଶତଂ, ବୁଧ୍ୟେମ ଶରଦଃଶତଂ, ଜୀବେମ ଶରଦଃଶତଂ, ପ୍ରବ୍ରବାମ ଶରଦଃଶତଂ, ଅଜୀନାଃ ସ୍ୟାମ ଶରଦଃଶତଂ, ଭୂୟଶ୍ଚ ଶରଦଃ ଶତାତ୍, ( ବେଦ )

ଓଁ ଯଜ୍ଜାଗ୍ରତୋ ଦୂରମୁଦୈତି ଦୈବଂ ତଦୁସୁପ୍ତସ୍ୟ ତଥୈବୈତି
ଦୂରଂଗମଂ ଜ୍ୟୋତିଷାଂ ଜ୍ୟୋତିରେକଂ ତନ୍ମେମନଃ ଶିବସଙ୍କଳ୍ପମସ୍ତୁ ॥
( ଯଜୁ. ଅ. ୩୭ । ୧ )

ଓଁ ବନ୍ଦେ ମାତରମ୍



## ମଙ୍ଗଳାଚରଣ

ଓଁ ନମ ଆୟୁର୍ବେଦାଚାର୍ଯ୍ୟେଭ୍ୟଃ

ସଂସାରଦେହଦୁର୍ବାରମହାରୋଗାଣାଂ ପ୍ରଳୟାନଳମ୍
ମୃତ୍ୟୁଞ୍ଜୟଂ ବୈଦ୍ୟନାଥଂ ପ୍ରାଣପ୍ରାଣଂ ସୁରମ୍ୟହମ୍
ଧନ୍ୱନ୍ତରିଂ ବେଦନଶ୍ୱିଂ ଶ୍ରୀ ଭଂ ନାଗାର୍ଜୁନଂ ମୁନିମ୍
ପିତାମହମପିଧ୍ୟାତ୍ୱା ପ୍ରାଣାଚାର୍ଯ୍ୟଂ ସଦାଶିବମ୍

ବୈଜ୍ଞାନିକେଯୁଗେଽସ୍ମିନ୍ ଦୃଷ୍ଟ୍ୱାୟୁର୍ବେଦ ଦୁର୍ଗତିଂ ଦେଶେ
ନିର୍ମିତୋଽଭିନବୋ ଗ୍ରନ୍ଥଃ ନାନାଶାସ୍ତ୍ରସ୍ୟ ସାରମୁଦ୍ଧୃତ୍ୟ ॥

ଅଭିନବ ଧନ୍ୱନ୍ତରିରନ୍ତ ସସ୍ୟ ପ୍ରଥିତନବକଳେବର୍ଦ୍ଧିତମ୍ଭାଗଃ
ଶ୍ରିତମହତୋପୋଗା ଯେନ ଜନୌଘୋ ବ୍ୟପଗତରୋଗସ୍ତ୍ୱିରସୁଖମୀୟାତ୍

## ଆୟୁର୍ବେଦୀୟ ଶରୀର ତତ୍ତ୍ୱବିଜ୍ଞାନ

ମହର୍ଷି ଚରକ କହନ୍ତିଯେ—

ସର୍ବମନ୍ୟତ୍ ପରିତ୍ୟଜ୍ୟ ଶରୀରମନୁପାଳୟେତ୍
ତଦଭାବେ ହି ଭାବାନାଂ ସର୍ବାଭାବଃ ଶରୀରିଣାମ୍ । ( ଚ. ନି. ୬ଅ

ଅର୍ଥାତ୍ ଅନ୍ୟ ସମସ୍ତ ବିଷୟ ପରିତ୍ୟାଗ କରି ଶରୀରକୁ ହିଁ ପ୍ରଥମେ ରକ୍ଷା କରିବାକୁ ହେବ । କାରଣ ଶରୀରର ଅଭାବରେ ଅନ୍ୟ ସମସ୍ତ ବିଷୟ ଅଭାବ ହିଁ ହୋଇଥାଏ ।

ଏହାପରେ ଶରୀର ତତ୍ତ୍ୱଜ୍ଞ ପୁରୁଷଙ୍କୁ ପ୍ରଶଂସାକରି ସେ ଲେଖିଛନ୍ତି—

ଶରୀରଂ ସର୍ବଦା ସର୍ବଂ ସର୍ବଥା ବେଦ ଯୋ ଭିଷକ୍
ଆୟୁର୍ବେଦଂ ସ କାର୍ତ୍ସ୍ନ୍ୟେନ ବେଦ ଲୋକସୁଖପ୍ରଦମ୍ ।

ଅର୍ଥାତ୍ ଯେଉଁ ବୈଦ୍ୟ ସବୁକାଳରେ ସକଳପ୍ରକାରେ ସମସ୍ତ ଶରୀରକୁ ଜାଣେ, ସେ ସମସ୍ତ ଜଗତର ସୁଖ ଦାୟକ ସମଗ୍ର ଆୟୁର୍ବେଦ ଜାଣେ ।

ଆଚ୍ଛା, ତେବେ ଶରୀରର ମୂଳତତ୍ତ୍ୱ କ'ଣ ? ଏହି ପ୍ରଶ୍ନ ଉତ୍ତରରେ ସେ କହିଛନ୍ତିଯେ—

"ଶରୀରଂ ନାମ ଚେତନାଧିଷ୍ଠାନଭୂତଂ ପଞ୍ଚମହାଭୂତ * ବିକାର ସମୁଦାୟାତ୍ମକମ୍ । ( ଚ, ଶା, ୬ଅ )

ଅର୍ଥାତ ଯହିଁରେ ଚେତନା ଶକ୍ତି ବା ଆତ୍ମା ରହେ । ପୁଣି ପୃଥିବୀ, ଜଳ, ଅଗ୍ନି, ବାୟୁ ଓ ଆକାଶରୂପ ପଞ୍ଚମହାଭୂତର ବିକାର ଚକ୍ଷୁ କର୍ଣ୍ଣାଦି ପାଞ୍ଚ ପ୍ରକାର ଜ୍ଞାନେନ୍ଦ୍ରିୟ ଓ ବାକ୍ ପାଣିପାଦାଦି ପାଞ୍ଚପ୍ରକାର କର୍ମେନ୍ଦ୍ରିୟ ଏବଂ ଗନ୍ଧ, ରସ, ରୂପ, ସ୍ପର୍ଶ ଓ ଶବ୍ଦରୂପ ପାଞ୍ଚପ୍ରକାର ଇନ୍ଦ୍ରିୟାର୍ଥ ବା ବିଷୟମାନଙ୍କ ସହିତ ଯାହା ସମ୍ବନ୍ଧ ଯୁକ୍ତ, ପୁଣି ରସ, ରକ୍ତ, ମାଂସ, ମେଦ, ଅସ୍ଥି, ମଜ୍ଜା ଓ ଶୁକ୍ରରୂପ ସାତ ଧାତୁରେ ଯାହା ଗଠିତ, ସେଇ ସମୁଦାୟାତ୍ମକ ପଦାର୍ଥ ନାମ-ଶରୀର

ଏଥିରୁ ଜଣାଗଲା ଯେ- ଶରୀରର ଉପାଦାନ ଉପରୋକ୍ତ ପୃଥିବୀ ଆଦି ଛ'ଟି ମାତ୍ର ପଦାର୍ଥ । ଏହି ଛ'ଟି ପଦାର୍ଥକୁ ଶରୀରର ଷଡ୍ଧାତୁ ବୋଲଯାଏ । ଏ ବିଷୟରେ ଚରକ କହିଛନ୍ତି ଯେ—

"ପୃଥିବ୍ୟାପସ୍ତେଜୋବାୟୁରାକାଶଂ ବ୍ରହ୍ମ ଚ ଅବ୍ୟକ୍ତଂ ଇତ୍ୟେତ ଏବ ଷଡ୍ଧାତବଃ ସମୁଦିତାଃ ପୁରୁଷ ଇତି ଶବ୍ଦଂ ଲଭନ୍ତେ ।"

( ଚ, ଶା, ୫ ଅ )

ଅର୍ଥାତ୍ ପୃଥ୍ୱୀ ଜଳ, ଅଗ୍ନି, ବାୟୁ, ଆକାଶ ଓ ଅବ୍ୟକ୍ତ ବ୍ରହ୍ମ ଏହି ଛ'ଟି ଶରୀରର ଧାରକ ପଦାର୍ଥ । ଏଣୁ ଏମାନଙ୍କୁ ଧାତୁ ବୋଲଯାଏ । ଏହି ମିଳିତ ଷଡ୍ଧାତୁର ନାମହିଁ ପୁରୁଷ ।

ଚରକ ଓ କପିଳଙ୍କଠାରୁ ବହୁ ପ୍ରାଚୀନ ଆଦ୍ୟ ସାଙ୍ଖ୍ୟାଚାର୍ଯ୍ୟଙ୍କର ଏହା ହିଁ ମତ ସେ ଲେଖିଛନ୍ତି ଯେ—

ଷଡ୍ଧାତୁ କୋଽୟଂପୁରୁଷଃ ରୋଗାଃ ଷଡ୍ଧାତୁଜାସ୍ତଥା
ରାଶିଃ ଷଡ୍ଧାତୁଜଃ ସାଙ୍ଖ୍ୟୈରାଦ୍ୟୈଃ ସମ୍ପ୍ରକୀର୍ତ୍ତିତଃ ।

( ଚ, ସୂ, ୨୫ ଅ ୧୫ )

---

* ଆକାଶ ବାୟୁ ତେଜୋଜଳପୃଥିବ୍ୟାଖ୍ୟାନି ଅଣୁଭୂତାନି, ଶବ୍ଦସ୍ପର୍ଶରୂପରସଗନ୍ଧାଖ୍ୟାନି ତନ୍ମାତ୍ରସଜ୍ଞାନି ଗୁଣଭୂତାନି । ଅଣୁଭୂତାନି ଗୁଣଭୂତାନି ଚ ଏକଦ୍ରବ୍ୟତ୍ୱାତ୍ ଇହ ତତ୍ତ୍ୱାନି ବିବକ୍ଷନ୍ତେ । ନ ତୁ ଅପରାଣି ମହାଭୂତାନି । ତେଷାଂ ପଞ୍ଚୀକୃତରୂପତୟା ବହୁ-ଦ୍ରବ୍ୟତ୍ୱାତ୍ ଯୌଗିକତ୍ୱେନ ଅଭ୍ୟୁପେତତ୍ୱାତ । ( ପଞ୍ଚଭୂତସମୀକ୍ଷା )

ଅର୍ଥାତ୍ ଆଦ୍ୟ ବ୍ୟାଖ୍ୟାଚାର୍ଯ୍ୟମାନେ ପ୍ରତିପାଦନ କରିଛନ୍ତିଯେ- ପୁରୁଷ ଷଡ୍‌ଧାତୁକ ଅଟେ । ସମସ୍ତ ରୋଗ ଷଡ୍‌ଧାତୁରୁ ଉତ୍ପନ୍ନହୁଏ ଏବଂ ଚତୁର୍ବିଂଶତି ତତ୍ତ୍ୱ ମଧ୍ୟ ଷଡ୍‌ଧାତୁ ସମ୍ଭୂତ ଅଟେ ।

ଆଚାର୍ଯ୍ୟ ସୁଶ୍ରୁତ ମଧ୍ୟ ଏହି କଥାହିଁ ଲେଖିଛନ୍ତି । ସେ କହିଛନ୍ତି ଯେ—

" ପଞ୍ଚଭୂତଶରୀରସମବାୟଃ ପୁରୁଷଃ " ସ ଏଷ କର୍ମପୁରୁଷଃ ଚିକିତ୍ସା— ଧିକୃତଃ "। ( ସୁ, ଶା° ୧ ଅ.)

ଅର୍ଥାତ୍ ପାଞ୍ଚଭୌତିକ ଶରୀରଧାରୀ ପୁରୁଷ ହିଁ କର୍ମପୁରୁଷ, ଏହି କର୍ମପାଶବଦ୍ଧ, ଜନ୍ମ ଜରାମରଣାଦି ବିକାରଗ୍ରସ୍ତ ଷଡ୍‌ଧାତୁକ ପୁରୁଷ ହିଁ ଚିକିତ୍ସାର ଅଧିକାରୀ ଅଟେ ।

ସାରକଥା ଏହିଯେ- ଶରୀର ରହିତ ନିର୍ବିକାର ଅବ୍ୟକ୍ତ ବ୍ରହ୍ମପୁରୁଷକୁ ଚିକିତ୍ସା କରି ଯାଏନାହିଁ । ଏବଂ ସେହି ବ୍ରହ୍ମପୁରୁଷର ସମ୍ପର୍କ ରହିତ କେବଳ ମୁର୍ଦ୍ଦାର ଶରୀରର ଚିକିତ୍ସା ମଧ୍ୟ ହୁଏ ନାହିଁ । ସୁତରାଂ ଷଡ୍‌ଧାତୁକ ବିକାରୀ ପୁରୁଷ ହିଁ ଚିକିତ୍ସାର ଅଧିକାରୀ ଅଟେ ।

ଏହି ଷଡ୍‌ଧାତୁକ ଶରୀରର ଉତ୍ପତ୍ତି ସମ୍ବନ୍ଧେ ଗର୍ଭୋପନିଷଦରେ ସଂକ୍ଷେପରେ ଏହିପରି ଲେଖା ଅଛି ଯେ—

ପଞ୍ଚାତ୍ମକଂ ପଞ୍ଚସୁ ବର୍ତ୍ତମାନଂ ଷଡାଶ୍ରୟଂ ଷଡ୍‌ଗୁଣଯୋଗଯୁକ୍ତମ୍
ତଂ ସପ୍ତଧାତୁଂ ତ୍ରିମଳଂ ଦ୍ୱିଯୋନିଂ ଚତୁର୍ବିଧାହାରମୟଂ ଶରୀରମ୍

ଅର୍ଥାତ୍ ପୁରୁଷର ଶରୀର ପଞ୍ଚମହାଭୂତରେ ଗଠିତ ହୋଇଥାଏ । ଏହି ଶରୀର ମଧ୍ୟରେ ଯାହା କଠିନ ଅଂଶ- ତାହା ପୃଥିବୀ, ଯାହାତରଳ ଅଂଶ-ତାହା ଜଳ, ଯାହା ତାପ ବାଉଷ୍ମ ଅଂଶ- ତାହା ଅଗ୍ନି, ଯାହା ଗତି ବା ଚଳନ ଅଂଶ,- ତାହା ବାୟୁ ଏବଂ ଯାହା ଛିଦ୍ର ଅଂଶ-ତାହା ଆକାଶ ଅଟେ । ପୃଥିବୀର ଅଂଶ ଅସ୍ଥି ରୂପରେ ପରିଣତ ହୋଇ ଶରୀରକୁ ଧାରଣ କରେ । ଜଳର ଅଂଶ ଶରୀରର ଅଣୁ ପରମାଣୁକୁ ପିଣ୍ଡୀଭୂତ ବା ପରସ୍ପର ସଂଯୁକ୍ତ କରି ରଖେ । ଅଗ୍ନିର ଅଂଶ ଭୁକ୍ତ ଅନ୍ନାଦିକୁ ପାକକରି ଧାତୁମାନଙ୍କୁ ପୋଷଣ କରେ ଏବଂ ଶରୀରକୁ ପ୍ରକାଶ କରେ । ବାୟୁର ଅଂଶ ଶରୀରସ୍ଥ ସ୍ଥୂଳ, ସୂକ୍ଷ୍ମ, ସମସ୍ତ ଯନ୍ତ୍ରମାନଙ୍କୁ ପରିଚାଳନ କରେ । ଏବଂ ଆକାଶର ଅଂଶ, ଏହି ଚତୁର୍ଭୂତର କ୍ରିୟାକୁ ଅବକାଶ ପ୍ରଦାନ କରି

## ଷଟ୍‌ଚକ୍ର




୧ ଆଧାରଚକ୍ର ୨ ସ୍ୱାଧିଷ୍ଠାନ ୩ ମଣିପୁର ୪ ମନସ୍‌ଚକ୍ର ୫ ଅନାହତଚକ୍ର ୬ ବିଶୁଦ୍ଧଚକ୍ର ୭ ଆଜ୍ଞାଚକ୍ର ୮ ସହସ୍ରଦଳ କମଳ ୯ ଇଡ଼ା ୧୦ ସୁଷୁମ୍ନା ୧୧ ପିଙ୍ଗଳା ।

ଏହି ସବୁ ସୁଷୁମ୍ନାନାଡ଼ୀ ମଧ୍ୟ ଆମମାନଙ୍କର ଶିରୋଦେଶ ଠାରୁ ଗୁହ୍ୟଦେଶ ପର୍ଯ୍ୟନ୍ତ ଅଛି । ଏହି ସବୁ ଚକ୍ର ଶାରୀରିକ ପ୍ରାଣଶକ୍ତି ବା ବିଦ୍ୟୁତ୍ ଶକ୍ତିର କେନ୍ଦ୍ର ଅଟେ । ଏଇ ଚକ୍ରଗୁଡ଼ିକ କେବଳ ଯୋଗୀମାନଙ୍କର ଧ୍ୟାନ ଗମ୍ୟହୁଏ ।

ସାହାଯ୍ୟ କରିଥାଏ । ଏହି ଶରୀର ଆକାଶାଦି ପଞ୍ଚମହାଭୂତର ଗୁଣ, - ଶବ୍ଦ, ସ୍ପର୍ଶ ରୂପ, ରସ ଓ ଗନ୍ଧ ରୂପ ପାଞ୍ଚ ପ୍ରକାର ବିଷୟମାନଙ୍କରେ ହିଁ ସର୍ବଦା ପ୍ରବୃତ୍ତ ହୋଇଥାଏ । ଏହି ଶରୀରର ଅଙ୍ଗ ୬ ଟି । ଯଥା । - ଦୁଇ ହାତ, ଦୁଇ ପାଦ, ଏକ ମୁଣ୍ଡ ଏବଂ ଏକ ଗଣ୍ଡି ବା ମଧ୍ୟଭାଗ ଅଥବା ୧ ମଧୁର, ୨ ଅମ୍ଳ, ୩ ଲବଣ, ୪ କଟୁ ୫ ତିକ୍ତ ଓ ୬ କଷାୟ; ଏହି ଛ'ଟି ରସ କିମ୍ବା ୧ ଆଧାର ଚକ୍ର -

| | | |
|---|---|---|
| ୧ ଆଧାର ଚକ୍ର | Ganglion Coccygeum Impar | ପୃଥିବୀ ତତ୍ତ୍ୱସ୍ଥାନ |
| ୨ ସ୍ୱାଧିଷ୍ଠାନ ଚକ୍ର | Hypogastric plexus | ଜଳ ତତ୍ତ୍ୱସ୍ଥାନ |
| ୩ ମଣିପୁର ଚକ୍ର | Solar Plexus | ଅଗ୍ନି ତତ୍ତ୍ୱର ସ୍ଥାନ |
| ୪ ଅନାହତ ଚକ୍ର | Cardiac Plexus | ବାୟୁତତ୍ତ୍ୱର ସ୍ଥାନ |
| ୫ ବିଶୁଦ୍ଧ ଚକ୍ର | Carotid Plexus | ଆକାଶ ତତ୍ତ୍ୱର ସ୍ଥାନ |
| ୬ ସହସ୍ରାର ଚକ୍ର | Thousand peteld Lolus | ସର୍ବୀୟତତ୍ତ୍ୱରସ୍ଥାନ |

ଏହି ଛ' ପ୍ରକାର ନାଡ଼ୀ ଚକ୍ର, ଅଥବା କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟ ଏହି ରୋଗ କାରଣ ଷଡ଼୍‌ବର୍ଗ । ଏହିପରି ଛ' ଅଙ୍ଗ, ଛ ଚକ୍ର, ଛ'ରସ ଏବଂ ଛ'ପ୍ରକାର ମୂଳରୋଗର ଆଶ୍ରିତ ହୋଇ ଶରୀର ରହେ ।

ଏ ବାହାରେ ଛ'ପ୍ରକାର ଗୁଣ ଯୋଗରେ ଶରୀର ସର୍ବଦା ଯୁକ୍ତ ହୋଇଥାଏ । ସେହି ଛ'ପ୍ରକାର ଗୁଣ ଏହି ଯଥା — *

୧ ପୃଥିବୀ ବା ପାର୍ଥିବ ଆହାର ଦ୍ରବ୍ୟର ଗୁଣ – ଗୁରୁ, କଠିନ, ମନ୍ଦ, ସ୍ଥିର, ବିଶଦ, ସାନ୍ଦ୍ର, ସ୍ଥୂଳ ଓ ଗନ୍ଧ ।

୨ ଜଳ ବା ଜଳୀୟ ଆହାର ଦ୍ରବ୍ୟର ଗୁଣ – ଦ୍ରବ, ସ୍ନିଗ୍ଧ, ଶୀତ, ମନ୍ଦ, ସର, ସାନ୍ଦ୍ର, ମୃଦୁ, ପିଚ୍ଛିଳ ଓ ରସ ।

୩ ଅଗ୍ନି ବା ଆଗ୍ନେୟ ଆହାର ଦ୍ରବ୍ୟର ଗୁଣ – ଉଷ୍ଣ, ତୀକ୍ଷ୍ଣ, ସୂକ୍ଷ୍ମ, ଲଘୁ, ରୂକ୍ଷ, ବିଶଦ ଓ ରୂପ ।

୪ ବାୟୁ ବା ବାୟବ୍ୟ ଆହାର ଦ୍ରବ୍ୟର ଗୁଣ – ଲଘୁ, ଶୀତ, ରୂକ୍ଷ, ଖର, ବିଶଦ ସୂକ୍ଷ୍ମ ଓ ସ୍ପର୍ଶ ।

୫ ଆକାଶ ବା ଆକାଶୀୟ ଆହାର ଦ୍ରବ୍ୟର ଗୁଣ – ମୃଦୁ,

* ପଞ୍ଚଭୂତାତ୍ମକେ ଦେହେ ଆହାରଃ ପାଞ୍ଚଭୌତିକଃ
ବିପକ୍ୱଃ ପଞ୍ଚଧା ସମ୍ୟକ୍ ଗୁଣାନ୍ ସ୍ୱାନଭିବର୍ଦ୍ଧୟେତ୍ । (ସୁ, ସୂ, ୪୧ ଅ)

ଲଘୁ, ସୂକ୍ଷ୍ମ, ଶ୍ଳକ୍ଷ୍ଣ ଓ ଶବ୍ଦ । (ଚରକ) ।

ଏହିପରି ପଞ୍ଚମହାଭୂତର ସମସ୍ତ ଗୁଣ ସହିତ ମିଶାଇ —

୬ ଚେତନା ଶକ୍ତି ବା ଆତ୍ମାର ଗୁଣ * ୧ ସୁଖ, ୨ ଦୁଃଖ, ୩ ଇଚ୍ଛା, ୪ ଦ୍ୱେଷ, ୫ ପ୍ରଯତ୍ନ, ୬ ପ୍ରାଣ, ୭ ଅପାନ, ୮ ଉନ୍ମେଷ, ନିମେଷ, ୯ ବୁଦ୍ଧି, ୧୦ ମନ, ୧୧ ସଂକଳ୍ପ, ୧୨ ବିଚାରଣା, ୧୩ ସ୍ମୃତି, ୧୪ ବିଜ୍ଞାନ, ୧୫ ଅଧ୍ୟବସାୟ, ୧୬ ବିଷୟୋପଲବ୍ଧି (ସୁ, ଶା, ୧ ଅ ୨୧) ଏବଂ ତା'ର ପ୍ରକୃତି ଭେଦରେ **ସାତ୍ତ୍ୱିକ ଗୁଣ**- କ୍ଷମା, ଧୃତି, ଆସ୍ତିକ୍ୟ, ଅହିଂସା, ସତ୍ୟନିଷ୍ଠା ଓ ବ୍ରହ୍ମଚର୍ଯ୍ୟାଦି ଏବଂ **ରାଜସ ଗୁଣ** - ଦମ୍ଭ, ଦର୍ପ, ଅଭିମାନ, ଦୁଃଖ, ଅଧୀରତା, ମିଥ୍ୟା ଭାଷଣ, ହିଂସା, କାମ, କ୍ରୋଧ ଓ ଲୋଭ ଆଦି ଏବଂ ତା'ର ପ୍ରକୃତି ଭେଦରେ **ତମୋଗୁଣ** - ମୋହ, ଅଜ୍ଞାନ, ଆଳସ୍ୟ, ନିଦ୍ରା, ନାସ୍ତିକତା ଇତ୍ୟାଦି

ଏହିପରି ପାଞ୍ଚପ୍ରକାର ଅଚେତନ ମହାଭୂତ ବା ଜଡ଼ଦ୍ରବ୍ୟ ମାନଙ୍କର ଗୁଣ ଏବଂ ଏକ ଚେତନ ଦ୍ରବ୍ୟ ବା ଆତ୍ମାର ଗୁଣ — ଏସବୁ ୬ ପ୍ରକାର ଗୁଣ ଯୋଗରେ ଶରୀର ସର୍ବଗୁଣ ଯୋଗ ଯୁକ୍ତ ହୋଇଥାଏ । ଆଉମଧ୍ୟ ଶରୀର ମଧ୍ୟରେ ରସ, ରକ୍ତ, ମାଂସ, ମେଦ, ଅସ୍ଥି, ମଜ୍ଜା ଓ ଶୁକ୍ର ନାମରେ ସାତ ପ୍ରକାର ଧାତୁ ରହେ । ଏବଂ ବାତ, ପିତ୍ତ ଓ କଫ ନାମରେ ତିନିପ୍ରକାର ମଳ † ଶରୀର ମଧ୍ୟରେ ଧାରକ ରୂପେ ରହେ । ଭକ୍ଷ୍ୟ, ଭୋଜ୍ୟ, ଲେହ୍ୟ ଓ ପେୟ ଭେଦରେ ଶରୀରର ଆହାର ଚାରି ପ୍ରକାର ଏବଂ ଅଗ୍ନି ସୋମାତ୍ମକ ସ୍ତ୍ରୀ ଓ ପୁରୁଷର ରଜୋ

---

* ପାଶ୍ଚାତ୍ୟ ବୈଜ୍ଞାନିକ **ମାନେ** ଶରୀରସ୍ଥ ବା ଭୂତାତ୍ମାର ଧାରକ ୧୬ ଟି ପଦାର୍ଥ ବୋଲି ନିରୂପଣ କରିଛନ୍ତି । ଯଥା – ୧ ଅକ୍ସିଜେନ୍, ହାଇଡ୍ରୋଜେନ୍ ୩ ନାଇଟ୍ରୋଜେନ ୪ କାର୍ବନ ୫ ସାଲ୍‌ଫର ୬ ଫସ୍‌ଫୋରସ ୭ ସୋଡ଼ିୟମ ୮ ପୋଟାସିୟମ ୯ କେଲ୍‌ସିୟମ, ୧୦ ମେଗ୍‌ନେସିୟମ ୧୧ ଲିଥିୟମ୍ ୧୨ କ୍ଲୋରିନ୍ ୧୩ ଫ୍ଲୋରିନ୍ ୧୪ ଆୟୋଡ଼ିନ୍ ୧୫ ସିଲିକନ୍ ୧୬ ଆଇରନ୍ ।

† "ଶରୀର ଦୂଷଣାଦ୍ଦୋଷା ଧାତବୋ ଦେହ ଧାରଣାତ୍
ବାତ ପିତ୍ତ କଫା ଜ୍ଞେୟାଃ ମଳିନୀ କରଣାନ୍ମଳାଃ । " (ଶାର୍ଙ୍ଗଧର)

ବାହ୍ୟ ରୂପେ† କିମ୍ବା ଅନ୍ତଃ ଧର୍ମ ରୂପ ଉପାଦାନ ଭେଦରେ ଶରୀର ଉତ୍ପତ୍ତିର କାରଣ ଦୁଇ ପ୍ରକାର ଅଟେ । ଏହି ଶରୀରର ଉତ୍ପତ୍ତି ପ୍ରସଙ୍ଗରେ ଛାନ୍ଦୋଗ୍ୟ ଉପନିଷଦର ପଞ୍ଚାଗ୍ନି ବିଦ୍ୟା ନାମକ ପ୍ରକରଣରେ ଏକ ଗମ୍ଭୀର ବର୍ଣ୍ଣନା କରାଯାଇଅଛି । ସେଥିରେ ଋଷି ଯାହା କହିଛନ୍ତି, ତା'ର ସାରାଂଶ ଏହିପରି — ଦ୍ୟୁଲୋକ ସମ୍ବନ୍ଧୀ ବୈଦ୍ୟୁତିକ ଅଗ୍ନିର କାଠ ସୂର୍ଯ୍ୟ ଅଟନ୍ତି । ସୂର୍ଯ୍ୟଙ୍କର କିରଣ ସମୂହ ଦ୍ରବ୍ୟ ଅଗ୍ନିର ଧୂମ, ଦିବସ ତାହାର ଶିଖା ବା ଜ୍ୱାଳା, ଚନ୍ଦ୍ର ତା'ର ଅଙ୍ଗାର ଏବଂ ତାରା ସମୂହ, ସେହି ଅଗ୍ନିର ବିସ୍ଫୁଲିଙ୍ଗ ବା କଣା ଅଟନ୍ତି । ଦେବତାମାନେ ଏହି ମୂର୍ତ୍ତିରୂପୀ ଦ୍ରବ୍ୟ ଅଗ୍ନିରେ ଶ୍ରଦ୍ଧାକୁ * ଆହୁତି ଦିଅନ୍ତି । ସେହି ଆହୁତିରୁ ଚନ୍ଦ୍ର ଉତ୍ପନ୍ନ ହୁଏ । ପରେ ସେହି ଚନ୍ଦ୍ରକୁ ମେଘରୂପୀ ବୈଦ୍ୟୁତିକ ଅଗ୍ନିରେ ଆହୁତି ଦିଆଯାଏ, ସେଥିରୁ ବୃଷ୍ଟି ଉତ୍ପନ୍ନ ହୁଏ । ପରେ ସେହି ବୃଷ୍ଟିକୁ ପୃଥିବୀରୂପ ଅଗ୍ନିରେ ଆହୁତି ଦିଆଯାଏ, ସେଥିରୁ ଅନ୍ନ ଉତ୍ପନ୍ନ ହୁଏ । ପରେ ସେହି ଅନ୍ନକୁ ପୁରୁଷରୂପୀ ଅଗ୍ନିରେ ଆହୁତି ଦିଆଯାଏ, ସେଥିରୁ ବୀର୍ଯ୍ୟ ଉତ୍ପନ୍ନ ହୁଏ, ପରେ ସେହି ବୀର୍ଯ୍ୟକୁ ସ୍ତ୍ରୀରୂପ ଅଗ୍ନିରେ ଆହୁତି ଦିଆଯାଏ; ସେଥିରୁ ଗର୍ଭ ଉତ୍ପନ୍ନ ହୁଏ । ଏହିପରି ଭାବରେ ମୂର୍ତ୍ତିରୂପୀ ଦ୍ରବ୍ୟ ଅଗ୍ନିରେ ଦିଆଯାଇଥିବା ଆହୁତି ଯଥାକ୍ରମେ ଚନ୍ଦ୍ର; ମେଘ; ବୃଷ୍ଟି; ଅନ୍ନ ଓ ବୀର୍ଯ୍ୟ ରୂପରେ ପରିବର୍ତ୍ତିତ ହୋଇ ପଞ୍ଚମ ଆହୁତିରେ ପୁରୁଷ ରୂପରେ ପରିଣତ ହୁଏ । × ଏଠାରେ ପୁରୁଷ ପଦରେ ସ୍ତ୍ରୀ ଓ ପୁ ରୂପ ଉଭୟରଆତ୍ମାକୁ ହିଁ ବୁଝିବାକୁ ହେବ ।

---

† "ଶୁକ୍ରଂ ସୌମ୍ୟମ୍, ଆର୍ତ୍ତବଂ ଆଗ୍ନେୟମ୍" ( ସୁଶ୍ରୁତ )

* ୧ ଏଠାରେ ଶ୍ରଦ୍ଧାଶବ୍ଦର ଅର୍ଥ — ଜଳ !

୨ ପାଶ୍ଚାତ୍ୟ ( Physical seince ) ଭୌତିକ ବିଜ୍ଞାନରେ ଯାହାକୁ Light heat sound, Electricity, Magnetism Ether ବୋଲନ୍ତି, ବୈଦିକ ବିଜ୍ଞାନରେ ସେଗୁଡ଼ିକୁ ଦେବତା ବୋଲଯାଏ,

୧ × ଅସୌ ବାବ ଲୋକୋ ଗୌତମାଗ୍ନି ସ୍ତସ୍ୟ ଆଦିତ୍ୟ ଏବ ସମିଦ୍ ରଶ୍ମୟୋ ଧୂମଃ ଅହରର୍ଚ୍ଚିଃ ଚନ୍ଦ୍ରମା ଅଙ୍ଗାରା, ନକ୍ଷତ୍ରାଣି ବିସ୍ଫୁଲିଙ୍ଗାଃ । ତସ୍ମିନ୍ ଏତସ୍ମିନ୍ନଗ୍ନୌ ଦେବାଃ ଶ୍ରଦ୍ଧାଂ ଜୁହ୍ୱତି, ତସ୍ୟା ଆହୁତେଃ ସୋମୋ ରାଜା ସମ୍ଭବତି ।

ଏଥିରୁ ଏହି ଅର୍ଥ ସ୍ପଷ୍ଟ ହୁଏ ଯେ — ବ୍ରହ୍ମାଣ୍ଡର କେନ୍ଦ୍ର ସ୍ଥାନୀୟ ସୂର୍ଯ୍ୟଲୋକ ଠାରୁ ଆରମ୍ଭ କରି ଭୂଲୋକସ୍ଥିତ ପିଣ୍ଡ ପର୍ଯ୍ୟନ୍ତ ପାଞ୍ଚପ୍ରକାର ଅଗ୍ନିରେ ପାଞ୍ଚପ୍ରକାର ସୋମର ଆହୁତିଦ୍ୱାରା ପୁରୁଷ ବା ଶରୀରର ଉତ୍ପତ୍ତି

---

୨ ପର୍ଜନ୍ୟୋ ବାବ ଗୌତମାଗ୍ନିସ୍ତସ୍ୟ ବାୟୁରେବ ସମିଦ୍ ଅଭ୍ରଂଧୂମଃ ବିଦ୍ୟୁଦ୍ ଅର୍ଚିଃ ଅଶନିଃ ଅଙ୍ଗାରା ହ୍ରାଦୁନୟୋ ବିସ୍ଫୁଲିଙ୍ଗାଃ ତସ୍ମିନ୍ ଏତସ୍ମିନ୍ ଅଗ୍ନୌ ଦେବାଃ ସୋମଂ ରାଜାନଂ ଜୁହ୍ୱତି ତସ୍ୟା ଆହୁତେଃ ବର୍ଷଂ ସମ୍ଭବତି ।

୩ ପୃଥିବୀ ବାବ ଗୌତମାଗ୍ନି ସ୍ତସ୍ୟା ସମ୍ବତ୍ସର ଏବ ସମିତ୍ ଆକାଶୋ ଧୂମଃ ରାତ୍ରିଃ ଅର୍ଚିଃ ଦିଶୋଽଙ୍ଗାରା ଅବାନ୍ତର ଦିଶୋ ବିସ୍ଫୁଲିଙ୍ଗାଃ ତସ୍ମିନ୍ ଏତସ୍ମିନ୍ ଅଗ୍ନୌ ଦେବା ବର୍ଷଂ ଜୁହ୍ୱତି; ତସ୍ୟା ଆହୁତେଃ ଅନ୍ନଂ ସମ୍ଭବତି ।

୪ ପୁରୁଷୋ ବାବ ଗୌତମାଗ୍ନି ସ୍ତସ୍ୟବାଗେବ ସମିତ୍ ପ୍ରାଣୋ ଧୂମଃ ଜିହ୍ୱା ଅର୍ଚିଃ ଚକ୍ଷୁଃ ଅଙ୍ଗାରାଃ ଶ୍ରୋତ୍ରଂ ବିସ୍ଫୁଲିଙ୍ଗାଃ । ତସ୍ମିନ୍ ଏତସ୍ମିନ୍ ଅଗ୍ନୌ ଦେବା ଅନ୍ନଂ ଜୁହ୍ୱତି ତସ୍ୟା ଆହୁତେ ରେତୋସମ୍ଭବତି ।

୫ ଯୋଷା ବାବ ଗୌତମାଗ୍ନି ସ୍ତସ୍ୟା ଉପସ୍ଥ ଏବ ସମିତ୍ ଯଦ୍ ଉପମନ୍ତ୍ରୟତେ ସ ଧୂମଃ ଯୋନିଃ ଅର୍ଚିଃ ଯଦନ୍ତଃ କରୋତି ତେ ଅଙ୍ଗାରାଃ ଅଭିନନ୍ଦା ବିସ୍ଫୁଲିଙ୍ଗାଃ ତସ୍ମିନ୍ ଏତସ୍ମିନ୍ ଅଗ୍ନୌ ଦେବା ରେତୋ ଜୁହ୍ୱତି ତସ୍ୟା ଆହୁତେଃ ଗର୍ଭଃ ସମ୍ଭବତି ।

ଇତିନ୍ତୁ ପଞ୍ଚମ୍ୟାଂ ଆହୁତୌ ଆପଃ ପୁରୁଷ ବଚସୋ ଭବନ୍ତି *

( ଛାନ୍ଦୋଗ୍ୟ ଉ. ନ. ୫ ଅ )

---

* କେହି ୨ ପୌରାଣିକ କହନ୍ତି ଯେ - ଜୀବ ୮୪ ଚୌରାଶି ଲକ୍ଷ ଯୋନି ଭ୍ରମଣ କରିବା ପରେ ମନୁଷ୍ୟ ଯୋନି ଲାଭ କରେ । ସେମାନଙ୍କର କ୍ରମବିକାଶ ସିଦ୍ଧାନ୍ତର ସ୍ୱରୂପ ଏହି ଯେ — "ସ୍ଥାବରଂ ବିଂଶତେର୍ଲକ୍ଷଂ ଜଳଜଂ ନବଲକ୍ଷକଂ; କୂର୍ମାଶ୍ଚ ରୁଦ୍ରଲକ୍ଷଂ ଚ ଦଶଲକ୍ଷଂ ଚ ପକ୍ଷିଣାମ୍ । ତ୍ରିଂଶଲ୍ଲକ୍ଷଂ ପଶୂନାଞ୍ଚ ଚତୁର୍ଲକ୍ଷଂ ଚ ବାନରାଃ । ତତୋ ମନୁଷ୍ୟତାଂ ପ୍ରାପ୍ୟ ତତଃ କର୍ମାଣି ସାଧୟେତ୍ ।

ଏହି କ୍ରମବିକାଶ ବାଦ ପାଶ୍ଚାତ୍ୟ ଡାରଉଇନଙ୍କ ମତ ସହିତ ପ୍ରାୟ ସମାନ । ଡାରଉଇନ କହନ୍ତି ଯେ- ଜୀବ ପର ପର ଅଧମ ଯୋନି ଅତିକ୍ରମ କରି

ହୋଇଥାଏ । ସୁତରାଂ ସେଇ ଅଗ୍ନି ଓ ସୋମହିଁ ଶରୀର ସୃଷ୍ଟିର ମୂଳ କାରଣ । ଏଥି ସମ୍ବନ୍ଧରେ ଆଚାର୍ଯ୍ୟ ସୁଶ୍ରୁତ ମଧ୍ୟ ଲେଖିଛନ୍ତି ଯେ —
୧ "ଆର୍ତ୍ତବଂ ଆଗ୍ନେୟଂ; ଶୁକ୍ରଂ ସୌମ୍ୟମ୍ । ୨ । ଆଦାନଂ ଆଗ୍ନେୟଂ ବିସର୍ଗଃ ସୌମ୍ୟଃ । ୩ ପିତ୍ତଂ ଆଗ୍ନେୟଂ - ଶ୍ଳେଷ୍ମା ସୌମ୍ୟଃ । ୪ ତେଜୋ ଆଗ୍ନେୟଂ, ଓଜଃ ସୋମାତ୍ମକମ୍ । ୫ ଅଗ୍ନିଷୋମୀୟତ୍ୱାଜ୍ଜଗତଃ ବୀର୍ଯ୍ୟଂ ଦ୍ୱିବିଧମ୍-ଉଷ୍ଣଂ ଶୀତଞ୍ଚ । ୬ । ରସାଃ ଦ୍ୱିବିଧାଃ ସୌମ୍ୟାଃ ଆଗ୍ନେୟାଶ୍ଚ ।

ଅର୍ଥାତ୍ ସ୍ତ୍ରୀ ଓ ପୁରୁଷର ରଜୋ ବୀର୍ଯ୍ୟ - ଯଥାକ୍ରମେ ଆଗ୍ନେୟ ଓ ସୌମ୍ୟ । ଏହିପରି ଆଦାନ ବା ଉତ୍ତରାୟଣ କାଳ ଆଗ୍ନେୟ ବିସର୍ଗ ବା ଦକ୍ଷିଣାୟନ କାଳ ସୌମ୍ୟ ଅଟେ । ଶରୀରସ୍ଥ ପିତ୍ତ ଧାତୁ ଆଗ୍ନେୟ ଶ୍ଳେଷ୍ମା ସୌମ୍ୟ ଅଟେ । ଏହିପରି ତେଜ ଆଗ୍ନେୟ, ଓଜ ସୌମ୍ୟ ଅଟେ । ଏହିପରି ସ୍ଥାବର ଜଙ୍ଗମ ସମସ୍ତ ଦ୍ରବ୍ୟମାନଙ୍କର ବୀର୍ଯ୍ୟ ମଧ୍ୟ ଦୁଇ ପ୍ରକାର- ଉଷ୍ଣ ବା ଆଗ୍ନେୟ ଏବଂ ଶୀତ ବା ସୌମ୍ୟ ଅଟେ । ଏହିପରି ପାଞ୍ଚ ଭୌତିକ ଦ୍ରବ୍ୟମାନଙ୍କର ଷଡ଼୍‌ବିଧ ରସ ମଧ୍ୟ ଦୁଇ ଭାଗରେ ବିଭକ୍ତ, ଆଗ୍ନେୟ ଓ ସୌମ୍ୟ - କଟୁ ଅମ୍ଳ ଓ ଲବଣ ରସ-ଆଗ୍ନେୟ ଏବଂ ମଧୁର ତିକ୍ତ କଷାୟ ରସ ସୌମ୍ୟ ଅଟେ ।

ଏ ବିଷୟରେ ବାଗ୍‌ଭଟ କହନ୍ତି ଯେ—

ନାନାତ୍ମକମପିଦ୍ରବ୍ୟମଗ୍ନୀଷୋମୌ ମହାବଲୌ
ବ୍ୟକ୍ତାବ୍ୟକ୍ତଂ ଜଗଦିବ ନାତିକ୍ରମତି ଜାତୁଚିତ୍ ।

ଅର୍ଥାତ୍ ଯେପରି ବ୍ୟକ୍ତ ଓ ଅବ୍ୟକ୍ତ ସମସ୍ତ ପଦାର୍ଥ ଜଗତର ଗର୍ଭରେ ରହେ, ସେଇପରି ସଚେତନ ଅଚେତନ, ସୂକ୍ଷ୍ମ ସ୍ଥୂଳ ସମସ୍ତ ଦ୍ରବ୍ୟ

---

ଉତ୍ତରୋତ୍ତର ଶ୍ରେଷ୍ଠ ପଶୁତ୍ୱାଦି ଯୋନି ଲାଭାନନ୍ତର ପରିଶେଷରେ ବାନର ଯୋନି ଲଙ୍ଘନ ପୂର୍ବକ ମନୁଷ୍ୟଯୋନି ପ୍ରାପ୍ତ ହୁଏ" । ଏହି ମତ ଅବୈଜ୍ଞାନିକ; କପୋଳ କଳ୍ପନା ମାତ୍ର । ଏହି ମତରେ ଶରୀର ଉତ୍ପତ୍ତିର କାରଣ ଅଚେତନ ପ୍ରକୃତି ସିନା, ଧର୍ମାଧର୍ମ ଶରୀରଉତ୍ପତ୍ତିର କାରଣ ନୁହେ । ଏମାନେ କହନ୍ତିଯେ- ମନୁଷ୍ୟର ଆଉ ଜନ୍ମାନ୍ତର ନାହିଁ । ସୁତରାଂ ପାପ ପୁଣ୍ୟ, ସବୁର ନିରର୍ଥକ । ଏହି ମତଟି ଯୁକ୍ତି, ପ୍ରମାଣ ଶାସ୍ତ୍ର ଓ ଅନୁଭବର ବିରୁଦ୍ଧ ଅଟେ ।

ଅତି ପ୍ରବଳ ଅଗ୍ନି ଓ ସୋମର ଅନ୍ତର୍ଗତ ହୋଇଥାଏ ।

ଏ ସମୁଦାୟର ସାରାଂଶ ଏହି ଯେ— ଏହି ସମସ୍ତ ପିଣ୍ଡ ଓ ବ୍ରହ୍ମାଣ୍ଡର ଉପାଦାନ— ଅଗ୍ନି ଓ ସୋମ, ତେବେ ଏଠାରେ ପ୍ରଶ୍ନ ଏହି ଯେ— ଏହି ଅଗ୍ନି ଓ ସୋମ ପଦାର୍ଥ କ'ଣ ?

## ଅଗ୍ନୀଷୋମତତ୍ତ୍ୱର ସ୍ୱରୂପ

ଅଗ୍ନି ଓ ସୋମ ଏହି ଦୁଇଟି ଜ୍ୟୋତିର୍ମୟୀ ଶକ୍ତି, ଜ୍ଞାନ ଓ କ୍ରିୟାଶକ୍ତି ପରି ଏହି ଦୁଇଟି ଶକ୍ତି ପରସ୍ପରଠାରୁ ଅଭିନ୍ନ । ଜ୍ଞାନ କିମ୍ବା ଶକ୍ତିର ପ୍ରକାଶ ହେଲାପରି ଅଗ୍ନି ଓ ସୋମର ପ୍ରକାଶ ହୋଇଥାଏ । ଏହି ଦୁଇଟି ଶକ୍ତି ପରସ୍ପରକୁ ଅପେକ୍ଷା କରି ରହେ, ଏଥି ମଧ୍ୟରୁ ପ୍ରଥମଟିକୁ ପିତୃ ଶକ୍ତି ବା ସୌର ବିଦ୍ୟୁତ୍ ଏବଂ ଦ୍ୱିତୀୟଟିକୁ ମାତୃ ଶକ୍ତି ବା ସୌମ୍ୟ ବିଦ୍ୟୁତ୍ କୁହାଯାଏ । ପାଶ୍ଚାତ୍ତ୍ୟ ବୈଜ୍ଞାନିକ ଭାଷାରେ ଏହି ଦୁଇଟି ଶକ୍ତିକୁ ବୁଝାଇବାକୁ ହେଲେ ପ୍ରଥମଟିକୁ ପଜେଟିଭ୍ ଏଲେକ୍ଟ୍ରିସିଟି ଏବଂ ଦ୍ୱିତୀୟଟିକୁ ନେଗେଟିଭ୍ ଏଲେକ୍ଟ୍ରିସିଟି ବୋଲିବାକୁ ହେବ । ପ୍ରଥମଟି ପ୍ରୋଟୋନ ଏବଂ ଦ୍ୱିତୀୟଟି ଇଲେକ୍ଟ୍ରୋନ ଅଟେ । ଅଗ୍ନିକୁ ଧର୍ମ ଏବଂ ସୋମକୁ ଧର୍ମୀ ବୋଲି— ଯାଇପାରେ । ଏହି ଅଗ୍ନି ଓ ସୋମରୂପ ଦୁଇ ପ୍ରକାର ବୈଦ୍ୟୁତିକ ତେଜ ହିଁ ଦ୍ୟୁଲୋକଠାରୁ ଆରମ୍ଭ କରି ଭୂଲୋକ ପର୍ଯ୍ୟନ୍ତ ସମସ୍ତ ପିଣ୍ଡ ବ୍ରହ୍ମାଣ୍ଡର, ସୂକ୍ଷ୍ମ ସ୍ଥୂଳ ପଦାର୍ଥମାନଙ୍କର ଉତ୍ପତ୍ତି ସ୍ଥିତି ଓ ବିନାଶର କାରଣ ରୂପେ ସର୍ବତ୍ର ଓତପ୍ରୋତ ଭାବରେ ପରିବ୍ୟାପ୍ତ ଅଛି, ପ୍ରଥମେ ଦେଖସେ—

## ପାର୍ଥିବାଗ୍ନି

ଆମ୍ଭମାନଙ୍କର ନିବାସ ସ୍ଥାନ ଏହି ପୃଥିବୀ ଏକ ଅଗ୍ନିମୟ ପିଣ୍ଡ ।

ବୃହଦାରଣ୍ୟକ ଉପନିଷଦରେ ଲେଖା ଅଛି ଯେ—

"ଯାବତ୍ୟୂମଗ୍ନିସ୍ତାବତ୍ୟଂ ପୃଥିବୀ ଯାବତ୍ୟଂ ପୃଥିବୀ ତାବାନୟମଗ୍ନିଃ ।"

ଅର୍ଥାତ୍ ପୃଥିବୀର କଳେବର ଯେତିକି, ସେତିକି ପରିମାଣରେ ଉହିଁରେ ଅଗ୍ନି ରହିଛି । ଆଉରି ମଧ୍ୟ ଲେଖା ଅଛି—

"ଅଗ୍ନିଃ ପୃଥିବୀସ୍ଥାନଃ ତଂ ବ୍ୟାଖ୍ୟାସ୍ୟାମୋଽଗ୍ନିଃ କସ୍ମାତ୍ ଅଗ୍ରଣୀର୍ଭବତି ଅଗ୍ରଂ ଯଜ୍ଞେଷୁ ପ୍ରଣୀୟତେ, ଇତି । (ନୈରୁକ୍ତୋତ୍ତରଷଟ୍କ ଚତୁର୍ଥପାଦ)

ପାଶ୍ଚାତ୍ୟ ବିଜ୍ଞାନ ମଧ୍ୟ କହେ ଯେ— ଏହି ପୃଥିବୀ ସୂର୍ଯ୍ୟଙ୍କଠାରୁ ଉତ୍ପନ୍ନ ହୋଇଅଛି । ସୁଦୂର ଅତୀତ କାଳରେ ଏହା ଗୋଟିଏ ଅତ୍ୟୁଷ୍ଣ ଗୋଲାକାର ତରଳ ପିଣ୍ଡ ରୂପରେ ଥିଲା । କାଳକ୍ରମେ ଶୀତଳ ବାୟୁମଣ୍ଡଳର ପ୍ରଭାବରେ ଏହା ଧୀରେ ଧୀରେ ଥଣ୍ଡା ହେବାକୁ ଲାଗିଲା । ଯେପରି ଗରମ ଦୁଗ୍ଧ ଥଣ୍ଡା ହେଲାପରେ ତା'ର ଉପରେ ସର ଜମି ଯାଏ, ସେହିପରି ପୃଥିବୀ ଥଣ୍ଡା ହେବାରୁ ତା'ର ଉପରେ ଗୋଟାଏ ଦୃଢ଼ ସର ଜମା ହୋଇଗଲା । ଏହି ସରରେ ୨ ଜାଗା ଅତି କଠିନ ଓ ଶୀତଳ ହୋଇ ପଡ଼ିଲା । କେତେକକାଳ ପରେ ତା'ର ଉପରେ ଘାସ ଉଠିବାକୁ ଲାଗିଲା । ବୈଜ୍ଞାନିକ ମାନେ କହନ୍ତି ଯେ— ପୃଥିବୀର ଉପର ସ୍ତରଟା ଏବେ ଥଣ୍ଡା ହେଲେ ମଧ୍ୟ ଏହାର ଭିତର ଭାଗଟା ଅଦ୍ୟାପି ସେହି ଅତ୍ୟୁଷ୍ଣ ତରଳ ପଦାର୍ଥ ଆକାରରେ ହିଁ ରହିଅଛି ।"

ଏହି ସମ୍ବନ୍ଧରେ ବୈଦିକ ବିଜ୍ଞାନ କହେ ଯେ— ଭୂଗର୍ଭରେ ଯେଉଁ ଅଗ୍ନି ଅଛି, ତା'ର କାର୍ଯ୍ୟ ହେଉଛି— ଉତ୍ପାଦନ, ସମ୍ବର୍ଦ୍ଧନ, ବିପରିଣମନ ଓ କ୍ଷପଣ । ଶରୀର ମଧ୍ୟରେ ଥିବା ଅଗ୍ନି ଯେପରି ଶରୀରର ଅବୟବ ରସ ରକ୍ତାଦି ଧାତୁମାନଙ୍କର ଏବଂ ଶାରୀରିକ ଶକ୍ତିର ସଞ୍ଚୟ, ଉପଚୟ ଓ ଅପଚୟର କାରଣ ଅଟେ, ସେହିପରି ଭୂଗର୍ଭସ୍ଥ ଅଗ୍ନି ମଧ୍ୟ ଭୂମିସ୍ଥ ଅଚେତନ ଓ ସଚେତନ ପଦାର୍ଥମାନଙ୍କର ଉତ୍ପତ୍ତି, ସଞ୍ଚୟ, ଉପଚୟ ଓ ଅପଚୟର କାରଣ ହୋଇଥାଏ ।

ଏହି ଭୂଗର୍ଭସ୍ଥ ଅଗ୍ନିର ସୌରାଗ୍ନି ସହିତ ସମ୍ବନ୍ଧ ଅତ୍ୟନ୍ତ ଘନିଷ୍ଠ । କିନ୍ତୁ ସୌରାଗ୍ନି ପରି ଏହା ଅତି ତୀକ୍ଷ୍ଣ ଓ ମହା ପ୍ରକାଶମୟ ନୁହେଁ । ଭୂଲୋକ ସମ୍ବନ୍ଧୀୟ କାର୍ଯ୍ୟର ନିଷ୍ପତ୍ତି ନିମନ୍ତେ ଯେତିକି ତାପ ଆବଶ୍ୟକ, ସେତିକି ତାପ ପ୍ରଦାନ ନିମନ୍ତେ ହିଁ ପରମେଶ୍ୱର ଏହାକୁ ଭୂଗର୍ଭରେ ରଖି ଅଛନ୍ତି । ଏହି ତାପର ଅଳ୍ପତା ହେତୁରୁ ହିଁ ପୃଥିବୀ ଅଚଳା ଓ ସ୍ଥିର ହୋଇ ରହିଅଛି । ଅନ୍ୟଥା ଏହା ଧ୍ୱଂସ ପାଇଯାନ୍ତା । ଏହି ଅଗ୍ନି ଭୂଗର୍ଭସ୍ଥ ହେଲେ ମଧ୍ୟ ପୃଥିବୀର ପ୍ରତ୍ୟେକ ଅଣୁ, ଦ୍ୱ୍ୟଣୁକ, ତ୍ର୍ୟଣୁକାଦି ମଧ୍ୟରେ ଏହାର ବ୍ୟାପାର ପ୍ରବର୍ତ୍ତିତ ହୋଇଥାଏ ।"

ଆକାଶୀୟ ଜଳୀୟ ପରମାଣୁ ଓ ଦ୍ୱ୍ୟଣୁକାଦି ମହାମଣ୍ଡଳଗତ ବିଦ୍ୟୁତ୍ ସହିତ ପୃଥିବୀତତ୍ତ୍ୱର ଅନ୍ତର୍ବର୍ତ୍ତୀ ବିଦ୍ୟୁତ୍‌ର ସମ୍ବନ୍ଧ ଏହି ଅଗ୍ନି,

ସ୍ଥାପନ କରିଥାଏ । ଏହି ଅଗ୍ନିର ହିଁ ସାହାଯ୍ୟରେ ଭୂଲୋକସ୍ଥ ପ୍ରାଣୀ ଦ୍ୟୁଲୋକ ପର୍ଯ୍ୟନ୍ତ ଗମନ କରିପାରେ ।

ପୃଥିବୀର ମୃତ୍ତିକାର ବିଭିନ୍ନ ରୂପ ବା ରଙ୍ଗ, ଧୂଳି ବାଲି, ଗୋଡ଼ି, ପଥର, ଖଣିଜ ଧାତୁ, ଉପଧାତୁ, ଏବଂ ସମସ୍ତ ରସ ଉପରସ ଓ ହୀରକାଦି ରତ୍ନ ଏବଂ ବୀଜରୁ ଅଙ୍କୁର ଓ ବୃକ୍ଷାଦିର ଉଦ୍‌ଗମ ଏହି ଅଗ୍ନିର ସମ୍ପର୍କରେ ହିଁ ହୋଇଥାଏ ।

ଏହି ଭୂଗର୍ଭସ୍ଥ ଅଗ୍ନି ନିଜର ଜ୍ୱାଳାମାନଙ୍କୁ ଭୂମିଗତ ତେଜୋଧାରା ବାହିନୀ ନାଡ଼ୀମାନଙ୍କ ଦ୍ୱାରା ଜ୍ୱାଳାମୁଖୀ ପର୍ବତମାନଙ୍କର ରନ୍ଧ୍ର ମାର୍ଗରେ ବାହ୍ୟରେ ପ୍ରକ୍ଷେପଣ କରିଥାଏ । ଏଥିରୁ ବୁଝିବାକୁ ହେବ ଯେ । ପୃଥିବୀ ଅଗ୍ନିଷୋମାତ୍ମକ । ଏହାର ପରେ ଦେଖନ୍ତୁ—

## ଜଳୀୟ ଅଗ୍ନି

ଏଥି ସମ୍ବନ୍ଧେ ଯଜୁର୍ବେଦରେ ଲେଖା ଅଛି ଯେ—

ଦିବସ୍ପରି ପ୍ରଥମଂ ଯଜ୍ଞେ ଅଗ୍ନିରସ୍ମଦ୍ ଦ୍ୱିତୀୟଂ ପରିଜାତ ବେଦାଃ
ତୃତୀୟମପ୍ସୁ ନୃମଣା ଅଜସ୍ର ମିନ୍ଧାନ ଏନଂ ଜରତେ ସ୍ୱାଧୀଃ ।
(ଯଜୁର୍ବେଦ ୧୨ । ୧୮)

ଅର୍ଥାତ୍ ଅଗ୍ନି ତିନି ପ୍ରକାର । ପ୍ରଥମ ଅଗ୍ନି ଆଜାନୀୟ- ଏହା ସୂର୍ଯ୍ୟ ମଣ୍ଡଳ ମଧ୍ୟରେ ରହେ । ଦ୍ୱିତୀୟ ଅଗ୍ନି ପାର୍ଥିବ- ଏହା ଭୂଲୋକରେ ଏବଂ ଭୂଲୋକ ବାସୀ ପ୍ରାଣିମାନଙ୍କ ମଧ୍ୟରେ ବିଦ୍ୟମାନ । ଏବଂ ତୃତୀୟ ଅଗ୍ନି - ଜଳୀୟ, ଏହା ବିଦ୍ୟୁତ୍ ରୂପରେ ଜଳ ମଧ୍ୟରେ ରହେ ।

ଜଳୀୟ ବୈଦ୍ୟୁତିକ ଅଗ୍ନି ଭୂପୃଷ୍ଠସ୍ଥ ନଦୀ ଓ ସମୁଦ୍ରାଦିର ଜଳରେ ଏବଂ ଆକାଶ ମଣ୍ଡଳସ୍ଥ ଜଳୀୟ ପରମାଣୁମାନଙ୍କର ମହାବ୍ୟୂହମୟ ଅର୍ଣ୍ଣବ ସମୁଦ୍ରରେ * ଚିରପ୍ରାପ୍ତ ଭାବରେ ବିଦ୍ୟମାନ । ଆକାଶସ୍ଥ ଅର୍ଣ୍ଣବ ସମୁଦ୍ରକୁ ପାଶ୍ଚାତ୍ତ୍ୟ ବୈଜ୍ଞାନିକ ଭାଷାରେ ହାଇଡ୍ରୋଜେନ (Hydrogen) କୁହାଯାଏ । ଏହା ବୈଦ୍ୟୁତିକ ଅଗ୍ନିମୟ । ଏହିପରି ଲବଣ ସମୁଦ୍ର ଗର୍ଭରେ ଯେଉଁ ବୈଦ୍ୟୁତିକ ଅଗ୍ନି ରହେ, ତାର ନାମ- ବାଡ଼ବାନଳ ।

---

* ତତଃ ସମୁଦ୍ରୋଽର୍ଣ୍ଣବଃ । ବୈଦିକସନ୍ଧ୍ୟା

ଭୂଗର୍ଭରେ ଓ ସମୁଦ୍ର ଜଳ ଗର୍ଭରେ ବ୍ୟକ୍ତ ଓ ଅବ୍ୟକ୍ତ ରୂପରେ ଯେଉଁ ଅଗ୍ନି ରହେ, ତା'ର ବାହ ଓ ପ୍ରବାହ ରୂପ ଗତିବଶୁ ହିଁ ସମୁଦ୍ରରେ ମହା ତରଙ୍ଗମାଳା ଉତ୍ଥାପନ କରେ ।

ଜଳ ମଧ୍ୟସ୍ଥ ଅଗ୍ନି ଜଳଚର ଜୀବମାନଙ୍କର ଉତ୍ପତ୍ତି, ଉନ୍ନତି ଓ ଅବନତିର କାରଣ ହୋଇଥାଏ । ଜଳ ସ୍ୱଭାବତଃ ଜଡ଼ ଅଟେ । ଏହା ଗତିଶୀଳ ନୁହେ । କିନ୍ତୁ ବୈଦ୍ୟୁତିକ ଅଗ୍ନିର ସମ୍ପର୍କରେ ହିଁ ଜଳରେ ଗତି ଉତ୍ପନ୍ନ ହୋଇଥାଏ । ଏଥିରୁ ବୁଝିବାକୁ ହେବ ଯେ— ଜଳ ମଧ୍ୟ ଅଗ୍ନିଷୋମାତ୍ମକ । ଏହାର ଫଳରେ ଦେଖ ଯେ—

## ବାୟବୀୟ ଅଗ୍ନି

ବାୟୁର ରୂପ ନାହିଁ ତାହାର ଅସ୍ତିତ୍ୱ ସ୍ପର୍ଶଦ୍ୱାରା ହିଁ ଅନୁମିତ ହୋଇଥାଏ । ବାୟୁ-ଗତିଶୀଳ ହେଲେ ତା'ର ସ୍ପର୍ଶ ଅନୁଭବ ହୁଏ; ଅନ୍ୟଥା ହୁଏନାହିଁ । ଯଦ୍ୟପି ବାୟୁର ନାମ - ସଦାଗତି, - କଦାପି ଏହାର ଗତିର ବିରାମ ନାହିଁ । ତଥାପି ନିରୋଧ ଅବସ୍ଥାରେ ଏହାର ଗତିବୋଧ ସର୍ବସାଧାରଣର ଗୋଚର ହୁଏନାହିଁ ।

ବାୟୁର ନିରୋଧାବସ୍ଥାରେ କ୍ଷଣକାଳ ମୁଦ୍ଧା ବଞ୍ଚିବାକୁ କେହିହେଲେ ସମର୍ଥ ହୁଏନାହିଁ । କାରଣ ଜୀବନଶକ୍ତି ବା ଚେତନା ଧାତୁ ଜ୍ୟୋତିଃ ସ୍ୱରୂପା ଅଟେ । ବାୟୁର ଅବରୋଧ ହେଲେ ଜ୍ୟୋତି ରହେ ନାହିଁ । ଜୀବନ ଶକ୍ତି ମଧ୍ୟ ରହେ ନାହିଁ ।

ଜୀବନ ଜ୍ୟୋତି ହେଉଛି- ପ୍ରତ୍ୟକ୍ଷ ଅଗ୍ନିଶିଖା ସ୍ୱରୂପ । ତାହା ଚକ୍ଷୁରିନ୍ଦ୍ରିୟର ଅଗୋଚର ହେଲେ ମଧ୍ୟ ଜ୍ୟୋତି ଅଟେ । ବାୟୁର ଅବରୋଧ ହେଲେ ପ୍ରତ୍ୟକ୍ଷ ଜ୍ୟୋତି ରହେନାହିଁ । କିନ୍ତୁ ସମାଧି-ଅବସ୍ଥାରେ ବାୟୁର ଅବରୋଧରେ ମଧ୍ୟ ଆସୃତ ପ୍ରାଣ ଯୋଗୀର ଜୀବନ ଜ୍ୟୋତି ରହିଥାଏ । ଏହି ଜ୍ୟୋତି ସର୍ବସାଧାରଣରେ ଅପ୍ରତ୍ୟକ୍ଷ ହେଲେ ହେଁ ଏହା ହିଁ ଅବିନଶ୍ୱର ମୂଳ ଜ୍ୟୋତି । ବିଶ୍ୱବ୍ୟାପି ଏହି ପରୋକ୍ଷ ମୂଳ ଜ୍ୟୋତି ହିଁ ବାୟୁରେ ଗତି ଉତ୍ପାଦନ କରେ । ବାୟୁରେ ବାୟୁତ୍ୱ ଏହି ଜ୍ୟୋତିଦ୍ୱାରା ହିଁ ପ୍ରତିଷ୍ଠିତ ହୁଏ । ଏବଂ ଏହି ଜ୍ୟୋତିଃ ସମ୍ପର୍କରୁ ହିଁ ବାୟୁ ଜଳ ଶୋଷଣ କରିଥାଏ । ଏହି ଜ୍ୟୋତିର କାରଣ ବ୍ରହ୍ମ । ଏହି ବ୍ରହ୍ମ ଜ୍ୟୋତି ହିଁ ବ୍ରହ୍ମାଣ୍ଡ ଓ ପିଣ୍ଡର ଜନକ ଅଟେ ।

ତୈତ୍ତିରୀୟ ଉପନିଷଦରେ ଲେଖା ଅଛି ଯେ —

"ତସ୍ମାଦ୍ ବା ଏତସ୍ମାତ୍ ଆତ୍ମନଃ ଆକାଶଃ ସମ୍ଭୂତଃ ଆକାଶାଦ୍
ବାୟୁଃ, ବାୟୋରଗ୍ନିଃ, ଅଗ୍ନେରାପଃ ଅଦ୍ଭ୍ୟଃ ପୃଥିବୀ,
ପୃଥିବ୍ୟାମ୍ ଓଷଧୟଃ, ଓଷଧିଭ୍ୟୋଽନ୍ନମ୍, ଅନ୍ନାତ୍ ପୁରୁଷଃ"
"ସ ବା ଏଷ ପୁରୁଷଃ ଅନ୍ନରସମୟଃ"

ଅର୍ଥାତ୍ ସେହି ଜ୍ୟୋତିର୍ମୟ ପରମାତ୍ମାଙ୍କଠାରୁ ପ୍ରଥମେ ଆକାଶ ( ଇଥର ) ଉତ୍ପନ୍ନ ହେଲା । ଆକାଶରୁ ବାୟୁ, ବାୟୁରୁ ଅଗ୍ନି, ଅଗ୍ନିରୁ ଜଳ, ଜଳରୁ ପୃଥିବୀ, ପୃଥିବୀରୁ ଧାନ୍ୟାଦି ଓଷଧି, ଓଷଧିରୁ ଚତୁର୍ବିଧ ଅନ୍ନ, ଅନ୍ନରୁ ଅଗ୍ନିସୋମାତ୍ମକ ରଜୋବୀର୍ଯ୍ୟ ଏବଂ ଓଜୋ-ବୀର୍ଯ୍ୟରୁ ପୁରୁଷର ଉତ୍ପତ୍ତି ହେଲା । ସୁତରାଂ ସେହି ଏହି ପୁରୁଷ ଅନ୍ନ ରସମୟ ଅଟେ ।

ସେହି ମୂଳ ବ୍ରହ୍ମଜ୍ୟୋତି ହିଁ ସୂର୍ଯ୍ୟରେ, ଚନ୍ଦ୍ରରେ, ବାୟୁରେ, ଅଗ୍ନିରେ, ଏବଂ ସଚରାଚର ବ୍ରହ୍ମାଣ୍ଡ ପିଣ୍ଡର ଅନ୍ତର୍ବାହ୍ୟରେ ପରିବ୍ୟାପ୍ତ ହୋଇ ରହିଅଛି ।

ଅତଏବ ଶ୍ରୁତିରେ ବୋଲାଯାଇଛି—

"ତଦେବାଗ୍ନିସ୍ତଦାଦିତ୍ୟସ୍ତଦ୍‌ବାୟୁସ୍ତଦୁ ଚନ୍ଦ୍ରମାଃ"
"ତଦନ୍ତରସ୍ୟ ସର୍ବସ୍ୟ ତଦୁ ସର୍ବସ୍ୟାସ୍ୟ ବାହ୍ୟତଃ" ( ଈ, ଉ, ୩।୧୯ )

ଏଠାରେ ଏହିସବୁ କଥା କହିବାର ତାତ୍ପର୍ଯ୍ୟ ଏହି ଯେ—ବାୟୁ ସ୍ୱଭାବତଃ ଗତିଶୀଳ ନୁହେଁ । ତେଜ ବା ଅଗ୍ନି ଦ୍ୱାରା ହିଁ ପ୍ରେରିତ ହୋଇ ସେ ଗତିମାନ୍ ହୋଇଥାଏ ।

ଏହା କିଛି ନୂତନ କପୋଳ କଳ୍ପନା ନୁହେଁ । ଏ ବିଷୟରେ ବୈୟାକରଣ ଶିରୋମଣି ମହାତ୍ମା ପାଣିନି ତାଙ୍କର ଶିକ୍ଷାଗ୍ରନ୍ଥରେ ଏହି ସିଦ୍ଧାନ୍ତକୁ ହିଁ ଦୃଢ଼ ଭାବରେ ପ୍ରମାଣିତ କରିଅଛନ୍ତି । ସେ ଲେଖିଛନ୍ତି ଯେ—

"ଆତ୍ମା ବୁଦ୍ଧ୍ୟା ସମେତ୍ୟାର୍ଥାନ୍ ମନୋଯୁଂକ୍ତେ ବିବକ୍ଷୟା
ମନଃ କାୟାଗ୍ନିମାହନ୍ତି ସ ପ୍ରେରୟତି ମାରୁତମ୍
ମାରୁତସ୍ତୂରସି ଚରନ୍ ମନ୍ଦ୍ରଂ ଜନୟତି ସ୍ୱରମ୍ ।

ଅର୍ଥାତ୍ ଶରୀରସ୍ଥ ଜ୍ୟୋତିର୍ମୟ ଆତ୍ମା ବୁଦ୍ଧି ସହିତ ଯୁକ୍ତହୋଇ ଅଭିଳଷିତ ବିଷୟମାନଙ୍କୁ କହିବା ଇଚ୍ଛାରେ ମନକୁ ନିୟୋଗ କରେ;

ମନ କାୟାଗ୍ନି (କୋଷ୍ଠାଗ୍ନି)କୁ ଆହତ କରେ, କାୟାଗ୍ନି ଶରୀରସ୍ଥ ବାୟୁକୁ ପ୍ରେରଣା ଦିଏ। ବାୟୁ ଉରଃସ୍ଥଳରେ ସଞ୍ଚାର କରି ଗମ୍ଭୀର ଶବ୍ଦ ଉତ୍ପାଦନ କରେ।

ଏଥିରୁ ଜଣାଯାଏ ଯେ— ଅଗ୍ନିର ପ୍ରେରଣାରେ ହିଁ ବାୟୁ ଗତିଶୀଳ ହୋଇଥାଏ।

ଆଘାତରୁ ମଧ୍ୟ ବାୟୁରେ ଗତିଶକ୍ତି ଉତ୍ପନ୍ନ ହୋଇଥାଏ; କିନ୍ତୁ ତାହା କ୍ଷଣିକ। ଯେପରି ଆଘାତ ଦ୍ୱାରା ଜଳ ତରଙ୍ଗିତ ହୁଏ, ସେହିପରି ବ୍ୟଜନାଦିର ଆଘାତ ଦ୍ୱାରା ବାୟୁ ତରଙ୍ଗିତ ହୋଇଥାଏ। କିନ୍ତୁ ଏହା ତା'ର ସ୍ୱାଭାବିକ ଧର୍ମ ନୁହେଁ।

ଆୟୁର୍ବେଦ ସୁଶ୍ରୁତ ମଧ୍ୟ ଗର୍ଭାବକ୍ରାନ୍ତିପ୍ରକରଣରେ ସ୍ତ୍ରୀ ପୁରୁଷର ରଜୋ ବୀର୍ଯ୍ୟର ମିଳନର କାରଣ ତେଜଃ ପ୍ରେରିତ ବାୟୁ ବୋଲି ଲେଖିଛନ୍ତି। ସେ କହିଛନ୍ତି ଯେ-

"ଶୁକ୍ରଂ ସୌମ୍ୟମ୍, ଆର୍ତ୍ତବମାଗ୍ନେୟମ୍, ତତ୍ର ସ୍ତ୍ରୀ ପୁଂସୟୋଃ ସଂଯୋଗେ ତେଜଃ ଶରୀରାଦ୍ ବାୟୁରୁଦୀରୟତି, ତତସ୍ତେଜୋଽନିଲ ସଂଯୋଗାତ୍ ଶୁକ୍ରଂ ଚ୍ୟୁତଂ ଯୋନିମଭିପ୍ରତିପଦ୍ୟତେ, ସଂସୃଜ୍ୟତେ ଚାର୍ତ୍ତବେନ, ତତୋଽଗ୍ନି ସୋମ ସଂଯୋଗାତ୍ ଜାୟମାନୋ ଗର୍ଭଃ ଗର୍ଭାଶୟ ମନୁପ୍ରବର୍ତ୍ତତେ।"

ଅର୍ଥାତ୍ ସ୍ତ୍ରୀ ପୁରୁଷର ରଜୋ ବୀର୍ଯ୍ୟ ଅଗ୍ନୀଷୋମାତ୍ମକ। ଅଗ୍ନି ଆକର୍ଷଣ କରେ, ସୋମ ଅବକର୍ଷଣ କରେ। ସ୍ତ୍ରୀର ରଜୋଧାତୁ ଅଗ୍ନିଗୁଣ ଯୁକ୍ତ ହୋଇଥିବାରୁ ତା'ର ଉଦ୍‌ଗମ ଦିନ ଠାରୁ ସେ ସ୍ୱଭାବତଃ ପୁରୁଷକୁ ଆକର୍ଷଣ କରେ। ତଦ୍ଦ୍ୱାରା ଆକୃଷ୍ଟ ହୋଇ ଏବଂ ତାହା ସହିତ ମିଶି ପୁରୁଷର ସୌମ୍ୟ ଶୁକ୍ର ଧାତୁ ଗର୍ଭୋତ୍ପାଦକ ହୁଏ। ସୁତରାଂ ଶରୀରସ୍ଥ ତେଜଃ ପ୍ରେରିତ ବାୟୁ ଶୁକ୍ର ଶୋଣିତର ମିଳନର କାରଣ ହୋଇଥାଏ।

ଏହାପରେ ଦେଖ—

## ଦିବ୍ୟାଗ୍ନି

ଆକାଶୀୟ ଅଗ୍ନିକୁ ଦିବ୍ୟାଗ୍ନି ବୋଲନ୍ତି। ଏହାର ଉତ୍ପତ୍ତି ସମ୍ବନ୍ଧେ ଶ୍ରୁତିରେ ଲେଖା ଅଛି ଯେ:—

ଏତସ୍ମାଜ୍ଜାୟତେ ପ୍ରାଣୋ ମନଃ ସର୍ବେନ୍ଦ୍ରିୟାଣି ଚ,
ଖଂ ବାୟୁର୍ଜ୍ୟୋତିରାପଶ୍ଚ ପୃଥିବୀ ବିଶ୍ୱସ୍ୟ ଧାରିଣୀ (ଉପନିଷଦ୍)

ଅର୍ଥାତ୍ ପ୍ରଥମେ ପରଂ ବ୍ରହ୍ମରୂପା ସ୍ୱୟଂ ଜ୍ୟୋତିର୍ମୟୀ ଅବ୍ୟାକୃତା ମହାଶକ୍ତି ଠାରୁ ଅବ୍ୟକ୍ତ ଅଗ୍ନିମୟ ବିଶ୍ୱବ୍ୟାପୀ (ୟୁନିଭରସଲ୍ Universal) ପ୍ରାଣ ଜାତ ହେଲା । ସେହି ପ୍ରାଣରୁ କ୍ରମଶଃ ମନ, ସମସ୍ତ ଇନ୍ଦ୍ରିୟ ଓ ଆକାଶୀୟ ଅଗ୍ନି * ଇନ୍ଦ୍ର ଶକ୍ତିର ଉତ୍ପତ୍ତି ହେଲା । ଏହି ଆକାଶୀୟ ଅଗ୍ନି ସ୍ୱରୂପ ଇନ୍ଦ୍ର ଶକ୍ତିକୁ ପାଶ୍ଚାତ୍ୟ ବୈଜ୍ଞାନିକମାନେ ଈଥର ବୋଲନ୍ତି । ପୃଥିବ୍ୟାଦି ଭୂତ ମହାଭୂତ ଓ ଭୌତିକ ପଦାର୍ଥମାନଙ୍କର ମୂଳ କାରଣ ଈଥର । ଏହି ଈଥରର ( ୨ ) କମ୍ପନରୁ ବିଦ୍ୟୁତ୍ ପ୍ରକାଶ, ଶୈତ୍ୟ ଓ ଉଷ୍ମା ଉତ୍ପନ୍ନ ହୋଇଥାଏ ।

ଏହି ଦୃଶ୍ୟମାନ ସମସ୍ତ ବିଶ୍ୱ ବ୍ରହ୍ମାଣ୍ଡ ସେହି ଅନ୍ତରୀକ୍ଷସ୍ଥ ପ୍ରାଣରୂପ ବିଶ୍ୱବ୍ୟାପୀ ଅଗ୍ନି ବା ଈଥାର (Ether) ସମୁଦ୍ରର ବିଭିନ୍ନ ପ୍ରକାର ତରଙ୍ଗ ମାତ୍ର । ଅନନ୍ତ ଆକାଶ ବିହାରିତ ଅଗଣିତ ଗ୍ରହ, ଉପଗ୍ରହ ଓ ତାରକାଦି ଜ୍ୟୋତିଃ-ପୁଞ୍ଜ ମଧ୍ୟରେ ଏବଂ ପଞ୍ଚୀକୃତ ପୃଥିବ୍ୟାଦି ମହାଭୂତ ମାନଙ୍କ ଉପାଦାନ ଅଣୁ ପରମାଣୁ ମଧ୍ୟରେ ଏହି ପ୍ରାଣ ରୂପୀ ବିଶ୍ୱବ୍ୟାପୀ ଅଗ୍ନି ହିଁ ଓତପ୍ରୋତ ଭାବରେ ପରିବ୍ୟାପ୍ତ ଅଛି । ଏହି ଅଗ୍ନି ବ୍ୟକ୍ତ ଓ ଅବ୍ୟକ୍ତ-ଭେଦରେ ଦୁଇ ପ୍ରକାର । ସେଥି ମଧ୍ୟରୁ ବ୍ୟକ୍ତ ପ୍ରାଣାଗ୍ନିର କେନ୍ଦ୍ର ଅଟନ୍ତି ସୂର୍ଯ୍ୟ ।

ଏହି ସୂର୍ଯ୍ୟଙ୍କ ସମ୍ବନ୍ଧେ ପୃଥିବୀର ଆଦିଗ୍ରନ୍ଥ ଋଗ୍‌ବେଦରେ ଲେଖାଅଛି ଯେ—

"ଅପାବାହିତେଭ୍ୟ ବ୍ରହ୍ମ"

ଅର୍ଥାତ୍ ଏହି ସୁଦୂର ନଭୋମଣ୍ଡଳସ୍ଥିତ ସୂର୍ଯ୍ୟ ସ୍ୱୟଂ ପ୍ରକାଶ ମୂର୍ତ୍ତିବ୍ରହ୍ମ । ବ୍ରହ୍ମର ପ୍ରକାଶ ଦୁଇ ପ୍ରକାର ବୋଲି ଶ୍ରୁତିରେ ଲେଖାଅଛି । ବୃହଦାରଣ୍ୟକୋପନିଷଦ୍‌ରେ ଋଷି କହିଛନ୍ତି ଯେ—

"ଦ୍ୱେ ବାବ ବ୍ରହ୍ମଣୋ ରୂପେ ମୂର୍ତ୍ତଂ ଚୈବା ମୂର୍ତ୍ତଂ ଚ ମର୍ତ୍ତ୍ୟଂ ଚୈବାମୃତଂଚ, ସ୍ଥିତଂଚ ଯଚ୍ଚ, ସଚ୍ଚତ୍ୟଚ୍ଚ" ( ବୃହଦାରଣ୍ୟକ ୩।୧ )

---

* ୧ ଯଥାଽଗ୍ନି ଗର୍ଭା ପୃଥିବୀ ଯଥାଦ୍ୟୌରିନ୍ଦ୍ରେଣ ଗର୍ଭିଣୀ । ବାୟୁର୍ଦିଶାଂ ଯଥାଗର୍ଭ ଏବଂ ଗର୍ଭଂଦଧାମିତେ ( ଯଜୁର୍ବେଦ )

* ୨ ବ୍ରହ୍ମର ପ୍ରକାଶ ଦ୍ୱିବିଧ- କ୍ଷର୍ଯ୍ୟ ରୂପ, ଏହା ବ୍ରହ୍ମ ନାମରେ ଅଭିହିତ ଅକ୍ଷର ସ୍ୱରୂପକୁ ଚେତନବ୍ରହ୍ମ ବୋଲିଯାଏ । ଏବଂ ବ୍ରହ୍ମଶକ୍ତିର ପ୍ରକାଶ ମଧ୍ୟ

ଏହାର ପୂର୍ବାପର ସଙ୍ଗତ ତାତ୍ପର୍ଯ୍ୟାର୍ଥ ଏହି ଯେ—ଯେତେବେଳେ ଅବ୍ୟକ୍ତ, ଅବାଙ୍ମନସ ଗୋଚର ସ୍ୱୟଂପ୍ରକାଶ ପରମାତ୍ମା ଶ୍ରୀମତ୍ ପରମେଶ୍ୱରଙ୍କ ରୂପ ମହିମା ପ୍ରକାଶ କରନ୍ତି, ସେତେବେଳେ ସେ ଉଭୟ ଲିଙ୍ଗାତ୍ମକ, ଏହି ନାମର ଯୋଗ୍ୟ ହୁଅନ୍ତି । ସେତେବେଳେ ସେ ବ୍ୟକ୍ତ-ଅବ୍ୟକ୍ତ, ମୂର୍ତ୍ତ-ଅମୂର୍ତ୍ତ, ସଗୁଣ-ନିର୍ଗୁଣ, ସାକାର-ନିରାକାର, ଅଚେତନ-ସଚେତନ, ଆଲୋକ-ଅନ୍ଧକାର, ଦିବସ-ରାତ୍ରି, ଶୁକ୍ଳ-କୃଷ୍ଣ, ସ୍ଥୂଳ-ସୂକ୍ଷ୍ମ, ଚର-ସ୍ଥିର, * ସ୍ତ୍ରୀ-ପୁରୁଷ, ଜ୍ଞାନେନ୍ଦ୍ରିୟ-କର୍ମେନ୍ଦ୍ରିୟ, ଉଷ୍ଣ-ଶୀତ, ଅଗ୍ନି-ସୋମ ଇତ୍ୟାଦି ଦ୍ୱୈତ ଯୁଗ୍ମ ରୂପରେ ହିଁ ପ୍ରକଟିତ ହୋଇଥାନ୍ତି ।

ଏଥିରୁ ବୁଝିବାକୁ ହେବ ଯେ - ବ୍ରହ୍ମାଣ୍ଡରେ ସୂର୍ଯ୍ୟରୂପରେ ଯେଉଁ ବ୍ୟକ୍ତ ବ୍ରହ୍ମଙ୍କୁ ଲୋକେ ପ୍ରତ୍ୟକ୍ଷ କରନ୍ତି, ସେଇ ବ୍ରହ୍ମ ହିଁ ଅବ୍ୟକ୍ତ ରୂପରେ ଆମମାନଙ୍କର ପିଣ୍ଡ ମଧ୍ୟରେ ଅବସ୍ଥିତ । ଅତଏବ ଯାଜ୍ଞବଲ୍କ୍ୟ କହିଛନ୍ତି-

"ଆଦିତ୍ୟାନ୍ତର୍ଗତଂ ଯଚ୍ଚ ଜ୍ୟୋତିଷାଂ ଜ୍ୟୋତିରୁତ୍ତମମ୍
ହୃଦୟେ ସର୍ବଲୋକାନାଂ ଜୀବଭୂତଃ ସ ତିଷ୍ଠତି,

ଆହୁରି ମଧ୍ୟ ଏହି ଅଭିପ୍ରାୟରେ ବୋଲା ଯାଇଛି—

"ହୃଦାକାଶେ ତୁ ଯୋ ଜୀବଃ ସାଧକୈରୁପଗୀୟତେ
ସ ଏବାଦିତ୍ୟ ରୂପେଣ ବହିର୍ନଭସି ରାଜତେ,

---

ଦ୍ୱିବିଧ, ଯଥା—ଅପରା ଶକ୍ତି ଓ ପରାଶକ୍ତି । ଏହାର ପ୍ରମାଣ ଗୀତାରେ ଯଥା-

"ମମଯୋନି ର୍ମହଦ୍ ବ୍ରହ୍ମ, ଅକ୍ଷରଂ ପରମଂ ବ୍ରହ୍ମ, ଦ୍ୱାବିମୌ ପୁରୁଷୌ ଲୋକେ କ୍ଷରଶ୍ଚାକ୍ଷର ଏବ ଚ ।

ଭୂମି ରାପୋନଲୋ ବାୟୁଃ ଖଂମନୋ ବୁଦ୍ଧିରେବଚ,
ଅହଂକାର ଇତୀୟଂ ମେ ଭିନ୍ନା ପ୍ରକୃତିରଷ୍ଟଧା ।
ଅପରେୟଂ ଇତସ୍ତ୍ୱନ୍ୟାଂ ପ୍ରକୃତିଂ ବିଦ୍ଧି ମେ ପରାଂ
ଜୀବଭୂତାମ୍ । ଇତ୍ୟାଦି ( ଗୀତା )

* ଏଠାରେ କେହି ୨ ପ୍ରଶ୍ନ କରନ୍ତି ଯେ- ପ୍ରଥମେ ପୁରୁଷ ସୃଷ୍ଟି ହେଲା ? ନା, ସ୍ତ୍ରୀ ସୃଷ୍ଟି ହେଲା ? ଏହାର ଉତ୍ତରରେ ଶାସ୍ତ୍ର କହେଯେ- "ସବୈ ନୈବରେମେ, ତସ୍ମାତ୍ ଏକାକୀ ନ ରମତେ, ସ ଦ୍ୱିତୀୟମୈଚ୍ଛତ୍, ସହ ଏତାବନ୍ ଆସ । ଯଥା ସ୍ତ୍ରୀ ପୁମାଂସୌ ପରିଷ୍ୱକ୍ତୌ, ସ ଇମମେବାତ୍ମାନଂ

ମହାକବି ମୟୂର ଭଟ୍ଟ ମଧ୍ୟ ସୂର୍ଯ୍ୟ ଜ୍ୟୋତିର ଦ୍ୱିରୂପତା ସମ୍ବନ୍ଧେ ସ୍ୱପ୍ରଣୀତ ସୂର୍ଯ୍ୟଶତକରେ ବର୍ଣ୍ଣନା କରିଛନ୍ତି । ସେ ଲେଖିଛନ୍ତି ଯେ-

ତୀବ୍ରଂ ନିର୍ବାଣହେତୁ ର୍ଯଦପିଚ ବିପୁଲଂ ଯତ୍ପ୍ରକର୍ଷେଣ କୃଷ୍ଣ,
ପ୍ରତ୍ୟକ୍ଷଂ ଯତ୍ପରୋକ୍ଷଂ ଯଦିହ ଯଦପରଂ ନଶ୍ୱରଂ ଶାଶ୍ୱତଞ୍ଚ ।
ଯତ୍ସର୍ବସ୍ୟ ପ୍ରସିଦ୍ଧଂ ଜଗତି କତିପୟେ ଯୋଗିନୋ ଯଦ୍‌ବଦନ୍ତି,
ଜ୍ୟୋତିସ୍ତଦ୍ଦ୍ୱି ପ୍ରକାରଂ ସବିତୁ ରବତୁ ବୋ ବାହ୍ୟ ମାଭ୍ୟନ୍ତରଞ୍ଚ ॥

ଅର୍ଥାତ୍ ସୂର୍ଯ୍ୟଙ୍କର ଜ୍ୟୋତି ବାହ୍ୟ ଓ ଅନ୍ତର ଭେଦରେ ଦୁଇପ୍ରକାର, ସୂର୍ଯ୍ୟଙ୍କର ବାହ୍ୟଜ୍ୟୋତି ତୀବ୍ର, କିନ୍ତୁ ତାଙ୍କର ଅନ୍ତର ଜ୍ୟୋତି ନିର୍ବାଣର ହେତୁଭୂତ ଶାନ୍ତ । ସୂର୍ଯ୍ୟଙ୍କର ବାହ୍ୟ ଜ୍ୟୋତି ମହତୋ ମହୀୟାନ୍, କିନ୍ତୁ ତାଙ୍କର ଅନ୍ତର ଜ୍ୟୋତି ଅଣୋରଣୀୟାନ୍

---

ଦ୍ୱିଧାପାଦୟତ୍ । ତତଃ ପତିଶ୍ଚ ପତ୍ନୀ ଚ ଅଭବତାମ୍, ତତୋ ମନୁଷ୍ୟା ଅଜାୟନ୍ତ । ( ଶତପଥ ୧୪ )

ଅର୍ଥାତ୍ ସେ ପରମେଶ୍ୱରଙ୍କୁ ଏକଲା ହୋଇ ରହିବାକୁ ଆନନ୍ଦ ଆସିଲା ନାହିଁ । ସେ ହେତୁରୁ ହିଁ ସଂସାରରେ ଏକଲା ହୋଇ ରହିବାକୁ ଭଲ ଲଗେ ନାହିଁ । ସେ ଦ୍ୱିତୀୟକୁ ଇଚ୍ଛାକଲେ, ସେ ଏତେ ମୋଟା ହେଲେ ଯେ- ସ୍ତ୍ରୀ ଓ ପୁରୁଷ ମିଶିଲେ ଯେତେ ମୋଟା ହୁଏ । ତାର ପରେ ସେ ମୋଟା ଶରୀରକୁ ଦୁଇ ଭାଗ କଲେ । ଏକ ଭାଗ ପୁରୁଷ । ଅନ୍ୟ ଭାଗ ପତ୍ନୀ ହେଲା । ସେ ଦୁଇଙ୍କଠାରୁ ମନୁଷ୍ୟ ଉତ୍ପନ୍ନ ହେଲେ ।

ଏଥିରୁ ଜଣାଯାଏ ଯେ—ପ୍ରଥମ ସୃଷ୍ଟି ମୈଥୁନୀ ସୃଷ୍ଟି ନୁହେ । ତାହା ଅମୈଥୁନୀ ମାନସୀ ସୃଷ୍ଟି । ବୈଶେଷିକ ଦର୍ଶନରେ ଅକ୍ଷପାଦ ଗୌତମ ଏହି କଥା ହିଁ ଲେଖିଛନ୍ତି । ସେ କହିଛନ୍ତି ଯେ- "ତତ୍ର ଶରୀରଂ ଦ୍ୱିବିଧମ୍-ଯୋନିଜମ୍ ଅଯୋନିଜଞ୍ଚ । ତତ୍ର ଅଯୋନିଜଂ ଅନପେକ୍ଷିତ ଶୁକ୍ରଶୋଣିତଂ ଦେବର୍ଷୀଣାଂ ଶରୀରମ୍, ଧର୍ମ ବିଶେଷ ସହିତେଭ୍ୟଃ ଅଣୁଭ୍ୟଃ ଜାୟତେ । ( ବୈଶେଷିକ ଦର୍ଶନ ୪ । ୨ । ୫ ) ଅର୍ଥାତ୍ ଶରୀର ଦୁଇ ପ୍ରକାର— ୧ ଅଯୋନିଜ ୨ ଯୋନିଜ । ଦେବତା ଓ ଋଷିମାନଙ୍କର ଶରୀର ଅଯୋନିଜ । ଏହା ଶୁକ୍ରଶୋଣିତର ମିଳନକୁ ଅପେକ୍ଷା କରେନାହିଁ, ସୂକ୍ଷ୍ମ ପରମାଣୁରୁ ହିଁ ଏହା ଉତ୍ପନ୍ନ ହୋଇଥାଏ । ଋଗ୍‌ବେଦୀୟ ପୁରୁଷ ସୂକ୍ତରେ ମଧ୍ୟ ପଶୁ ମନୁଷ୍ୟାଦିର ଆଦିସୃଷ୍ଟି ଅମୈଥୁନୀ ବୋଲି ଲେଖାଅଛି ।

ଅଛି । ସୂର୍ଯ୍ୟଙ୍କର ବାହ୍ୟ ଜ୍ୟୋତିକୁ ସମସ୍ତେ ପ୍ରତ୍ୟକ୍ଷ କରନ୍ତି, କିନ୍ତୁ ତାଙ୍କର ଅନ୍ତର ଜ୍ୟୋତି ପରୋକ୍ଷ ଅଟେ । ସୂର୍ଯ୍ୟଙ୍କର ବାହ୍ୟ ଜ୍ୟୋତି ଭୌତିକ ଓ ନଶ୍ୱର, କିନ୍ତୁ ତାଙ୍କର ଅନ୍ତର ଜ୍ୟୋତି ପାରମାର୍ଥିକ ଓ ଶାଶ୍ୱତ ଅଟେ । ସୂର୍ଯ୍ୟଙ୍କର ବାହ୍ୟ ଜ୍ୟୋତି ସର୍ବଲୋକ ପ୍ରସିଦ୍ଧ, କିନ୍ତୁ ତାଙ୍କର ଅନ୍ତର ଜ୍ୟୋତି କେବଳ ଯୋଗୀମାନଙ୍କର ଧ୍ୟାନ ଗମ୍ୟ ଅଟେ ।

ଏହି ଯେ ସୂର୍ଯ୍ୟଙ୍କର ଉଭୟ ବିଧ ଜ୍ୟୋତି, ଏହାକୁ ବୈଦିକ ଭାଷାରେ ଭର୍ଗ ବୋଲି ଯାଏ । ଭର୍ଗ ଶବ୍ଦର ଅର୍ଥ ଏହି ଯେ- ଭ-ଭାସୟତି, ର-ରଞ୍ଜୟତି, ଗ-ଗମୟତୀତି ଭର୍ଗଃ । ଅର୍ଥାତ୍ ଯାହା ଭାସକ, ରଞ୍ଜକ ଓ ପ୍ରେରକ ସେହି ତେଜର ନାମ ଭର୍ଗ, ସୂର୍ଯ୍ୟ ତେଜ ଓ ଆତ୍ମ ତେଜ ହିଁ ଏହି ଜଡ଼, ଚେତନମୟ ଜଗତକୁ ପ୍ରକାଶନ, ରଞ୍ଜନ ଓ ପ୍ରେରଣ କରେ । ସୁତରାଂ ଏହି ଉଭୟବିଧ ତେଜର ନାମ ଭର୍ଗ, ସେହିଁ ଭର୍ଗ ନାମକ ଆତ୍ମତେଜ ଆମ୍ଭମାନଙ୍କର ବୁଦ୍ଧିକୁ ପରିଚାଳନା କରୁଛି । ସେଇ ତେଜ ହିଁ ସୂର୍ଯ୍ୟ ମଣ୍ଡଳସ୍ଥ ହୋଇ, ଭୂଲୋକ, ଅନ୍ତରିକ୍ଷ ଲୋକ ଓ ଦ୍ୟୁ ଲୋକର ପରିଚାଳକ ଅଟେ । *

ଏହାର ସାର ଏହିଯେ,- ଭର୍ଗ ନାମକ ସୂର୍ଯ୍ୟ ଜ୍ୟୋତି ହିଁ ଆମ୍ଭ-ମାନଙ୍କର ଶରୀରସ୍ଥ ଚେତନା । ଏହାକୁହିଁ ଚରକ ଅବ୍ୟକ୍ତ ବ୍ରହ୍ମ ନାମରେ ଏବଂ

---

* ସ୍ୱୟଂ ଗତି ଶୀଳ ସୂର୍ଯ୍ୟ କ୍ରିୟାମୟ ଜଗତର ପ୍ରେରକ ଅଟନ୍ତି । ସୂର୍ଯ୍ୟଙ୍କର ଗତି ସମ୍ବନ୍ଧେ ପୁରାଣରେ ଲେଖାଅଛି ଯେ—

ଯୋଜନାନାଂ ସହସ୍ରେଦ୍ୱେ ଦ୍ୱେ ଶତେ ଦ୍ୱେ ଚ ଯୋଜନେ,
ଏକେନ ନିମିଷାର୍ଦ୍ଧେନ କ୍ରମ ମାଣ ! ନମୋଽସ୍ତୁତେ ॥ ( ଭବିଷ୍ୟୋତ୍ତର )

ଏହି ଅନୁସାରେ ହିସାବ କଲେ —

ଏକ ନିମିଷରେ ୨୨୦୨ ଯୋଜନ ଅର୍ଥାତ୍ ୧୭୬୧୬ ମାଇଲ୍ ,
ପ୍ରତିସେକେଣ୍ଡ୍‌ରେ ୪୪୦୪୦ ମାଇଲ୍
ପ୍ରତି କଳାରେ ୭୯୨୭୨୦୦ ଯୋଜନ,
ପ୍ରତି ଘଣ୍ଟାରେ ୧୯୮୧୮୦୦୦ ଯୋଜନ,
ପ୍ରତି ଦିନରେ ୪୭୫୬୩୨୦୦୦ ଯୋଜନ,
ପ୍ରତି ବର୍ଷରେ ୧୭୩୯୦୪୬୮୦୦୦ ଯୋଜନ, ଅର୍ଥାତ୍

ଏକ ବର୍ଷ ବା ୩୬୫ ଦିନରେ ଭଗବାନ୍ ସୂର୍ଯ୍ୟ ୧୩୯୦୪୪୫୪୪୦୦୨୦ ମାଇଲ୍ ଗତି କରନ୍ତି ।

ସୁଶ୍ରୁତ କର୍ମ ପୁରୁଷ ବା ଭୂତାତ୍ମା ନାମରେ ଅଭିହିତ କରିଛନ୍ତି ।
ଏହି ପୁରୁଷକୁ ହିଁ ଶରୀରାତ୍ମା, ଜୀବାତ୍ମା ଓ କ୍ଷର ପୁରୁଷ ମଧ୍ୟ ବୋଲାଯାଏ,

ଦିବ୍ୟାଗ୍ନିରୂପ ସୂର୍ଯ୍ୟ ଯେପରି ବ୍ରହ୍ମାଣ୍ଡର ସୃଷ୍ଟି, ସ୍ଥିତି, ପ୍ରଳୟର ବିଧାତା, ସେହିପରି ଜଠରାଗ୍ନି ରୂପ କର୍ମପୁରୁଷ ମଧ୍ୟ ପିଣ୍ଡର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟର ଜନକ ଅଟେ । ସେହେତୁରୁ ଆଚାର୍ଯ୍ୟ ସୁଶ୍ରୁତ ପିଣ୍ଡସ୍ଥିତ ଜଠରାଗ୍ନିକୁ ହିଁ ଭଗବାନ୍ ଈଶ୍ୱର ବୋଲି କହିଛନ୍ତି । ସେ ଲେଖିଛନ୍ତି ଯେ—

## ଶରୀର ମଧ୍ୟସ୍ଥ ବ୍ରହ୍ମ ଅଗ୍ନି

"ଜାଠରେ ଭଗବାନଗ୍ନିରୀଶ୍ୱରୋଽନ୍ନସ୍ୟ ପାଚକଃ
ସୌକ୍ଷ୍ମ୍ୟାତ୍ ରସାନାଦଦାନୋ ବିବେକ୍ତୁଂ ନ ହି ଶକ୍ୟତେ,,

ଅର୍ଥାତ୍ ଭଗବାନ୍ ଈଶ୍ୱର ହିଁ ଅନ୍ନାଦିର ପାଚକ ଜଠରାଗ୍ନି (Gastric Juice) ସେହି ପୁରୁଷ ହିଁ ଅନ୍ନାଦିର ରସ ଗ୍ରାହକ ଅଟନ୍ତି । ଅତି ସୂକ୍ଷ୍ମ ହେତୁରୁ ଅଳ୍ପଗାକର ତାହାକୁ ବୁଝିବାର ଶକ୍ତି କାହାରି ନାହିଁ । ଭଗବାନ ଶ୍ରୀକୃଷ୍ଣ ମଧ୍ୟ ଗୀତାରେ ଏହି କଥା କହିଛନ୍ତି—ଯଥା—

"ଅହଂ ବୈଶ୍ୱାନରୋଭୂତ୍ୱା ପ୍ରାଣିନାଂ ଦେହମାଶ୍ରିତଃ
ପ୍ରାଣାପାନ ସମାଯୁକ୍ତଃ ପଚାମ୍ୟନ୍ନଂ ଚତୁର୍ବିଧମ୍,,

ଅର୍ଥାତ୍ ହେ ଅର୍ଜୁନ ! ମୁଁ ପ୍ରାଣିମାନଙ୍କର ଦେହରେ ବୈଶ୍ୱାନର ନାମକ ଅଗ୍ନିରୂପରେ ରହି ପ୍ରାଣ ଓ ଅପାନ ବାୟୁ ଯୋଗରେ ଚତୁର୍ବିଧ ଅନ୍ନ ( ଭକ୍ଷ୍ୟ, ଭୋଜ୍ୟ, ଲେହ୍ୟ ଓ ପେୟ ) କୁ ପାକକରେ ।

ଶରୀର ମଧ୍ୟସ୍ଥ ଏହି ବ୍ରହ୍ମାଗ୍ନିର ମହିମା ସମ୍ବନ୍ଧେ ଚରକ ମଧ୍ୟ ଲେଖିଛନ୍ତି ଯେ-

ଶାନ୍ତେଽଗ୍ନୌ ମ୍ରିୟତେ ଯୁକ୍ତେ ଚିରଂ ଜୀବତ୍ୟନାମୟଃ
ରୋଗୀସ୍ୟାତ୍ ବିକୃତେ ମୂଳମଗ୍ନିସ୍ତସ୍ମାନ୍ନିରୁଚ୍ୟତେ ।

ଅର୍ଥାତ୍ ଅଗ୍ନି ଶୀତଳ ବା ନଷ୍ଟ ହେଲେ ପ୍ରାଣୀ ମରେ, ସମାନ ଅଗ୍ନି ଯୁକ୍ତ ହେଲେ ନିରୋଗ ହୋଇ ଦୀର୍ଘକାଳ ବଞ୍ଚେ ଏବଂ ଅଗ୍ନି ବିକୃତ ହେଲେ ପ୍ରାଣୀ ରୋଗୀ ହୁଏ, ଅତଏବ ଅଗ୍ନି ହିଁ ଶରୀରର ମୂଳ ପଦାର୍ଥ ।

ଆଉର ମଧ୍ୟ ପ୍ରକାରାନ୍ତରରେ ସେ ଏହି କଥା କହିଛନ୍ତି ଯେ—

"ଆୟୁର୍ବର୍ଣ୍ଣୋ ବଳଂ ସ୍ୱାସ୍ଥ୍ୟ ମୁତ୍ସାହୋପଚୟୌ ତଥା
ଓଜସ୍ତେଜୋଽଗ୍ନୟଃ ପ୍ରାଣାଶ୍ଚୋକ୍ତା ଦେହାଗ୍ନି ହେତୁକାଃ ।

ଅର୍ଥାତ୍ ଆୟୁ, ବର୍ଣ୍ଣ, ବଳ, ସ୍ୱାସ୍ଥ୍ୟ, ଉତ୍ସାହ, ପୁଷ୍ଟି, ପ୍ରଭା, ତେଜ, ଜ୍ଞାନାଗ୍ନି, ଧାତ୍ୱଗ୍ନି, କୋଷ୍ଠାଗ୍ନି ଓ ପ୍ରାଣାଗ୍ନି ଏହି ସମସ୍ତ ଜଠରାଗ୍ନି ମୂଳକ ଅଟେ । ଆଉରି ମଧ୍ୟ କୁହାଯାଇଛି—

ଅନ୍ନଂ ଦୋଷଂ ତୀବ୍ରଂ କ୍ରୁଦ୍ଧଂ ସମ୍ପ୍ରବ୍ୟାଧି ନିରାମୟ ।

କାୟାଗ୍ନିମେବ ମତିମାନ୍ ରକ୍ଷନ୍ ରକ୍ଷେତ ଜୀବିତମ୍ ॥

ଅର୍ଥାତ୍ ଯେଉଁ ଯେଉଁ ଦୋଷ ପ୍ରକୁପିତ ହୋଇ, ଦେହରେ ବ୍ୟାଧି ଉତ୍ପନ୍ନ କରନ୍ତି, ଯେଉଁ ବୁଦ୍ଧିମାନ୍ ପୁରୁଷ କାୟାଗ୍ନିକୁ ରକ୍ଷା କରେ, ତାହାଦ୍ୱାରା ତାର ଜୀବନ ରକ୍ଷିତ ହୁଏ । ଅଗ୍ନିର କାୟ ଶବ୍ଦର ଅର୍ଥ କହୁଅଛନ୍ତି— ଅଗ୍ନିତନ୍ତ୍ରରେ, ଲେଖିଛନ୍ତି ଯେ—

ଜାଠରଃ ପ୍ରାଣିନାମଗ୍ନିଃ କାୟ ଇତ୍ୟଭିଧୀୟତେ

ଯସ୍ତଂ ଚିକିତ୍ସେତ୍ ସୀଦନ୍ତଂ ସ ବୈ କାୟ- ଚିକିତ୍ସକଃ ॥

ଅର୍ଥାତ୍ ପ୍ରାଣୀମାନଙ୍କର ଜଠରାଗ୍ନିର ନାମ— କାୟ । ଏହାର ଅବସନ୍ନତା ରୂପ ବିକାରକୁ ଯେ ଚିକିତ୍ସା କରେ, ତାହାକୁ ହିଁ କାୟଚିକିତ୍ସକ କହାଯାଏ । ଏହି ଅଗ୍ନି ବଳରେ ହିଁ ସହସ୍ର ବର୍ଷ ପର୍ଯ୍ୟନ୍ତ ଶରୀରକୁ ସଜୀବ କରି ରଖାଯାଇପାରେ । ଏହି କଥା ବେଦରେ ଲେଖାଅଛି,

ଯଥା— "ତ୍ର୍ୟାୟୁଷଂ ଜମଦଗ୍ନେଃ, କଶ୍ୟପସ୍ୟ ତ୍ର୍ୟାୟୁଷଂ, ଯଦ୍ଦେବେଷୁ ତ୍ର୍ୟାୟୁଷଂ ତନ୍ନୋଽସ୍ତୁ ତ୍ର୍ୟାୟୁଷମ୍ ।"

ଏହାର ସଂକ୍ଷିପ୍ତ ବ୍ୟାଖ୍ୟା- ଯଥା- ଶତବର୍ଷମିତଂ ଏକଂ ଆୟୁଃ ଉଚ୍ୟତେ, ତାଦୃଂଶି ତ୍ରୀଣି ଆୟୁଂଷି ଇତି ତ୍ର୍ୟାୟୁଷଂ— ଜମଦଗ୍ନେଃ ଜ୍ୱଲଜ୍ଜଠରାଗ୍ନେଃ ପୁରୁଷସ୍ୟ ସୁଲଭମ୍ । ପୁନଶ୍ଚ ଦ୍ୱିତୀୟଂ ତ୍ର୍ୟାୟୁଷଂ, କଶ୍ୟପସ୍ୟ ପଶ୍ୟକସ୍ୟେତି ଯାବତ୍, ଚକ୍ଷୁଷ୍ମତଃ ସମ୍ୟକ୍ ଜ୍ଞାନାଧାନ ପ୍ରେକ୍ଷାବତଃ ଇତ୍ୟର୍ଥଃ, ପୁନଶ୍ଚ ତ୍ର୍ୟାୟୁଷଂ ଦେବେଷୁ ଦିବ୍ୟଗୁଣବତ୍ସୁ ପରାନ୍ତୃଷ୍ଟ ସମଜସ୍ୟମାଦ ଅନୁଷ୍ଠାତୃଷୁ ଯତ୍ ସମ୍ଭବତି ତଦୀୟୋଜ୍ୟ ସର୍ବଂ ନବଶତମିତଂ ଭବତି ମିଳିତମ୍ । ତତଃ ଶତବର୍ଷ ସାମାନ୍ୟମାୟୁର୍ମିଳିତଂ ତତ୍ ସହସ୍ରାୟୁ ର୍ଭବତୀତି ନିର୍ଦ୍ଦିଶ୍ୟତେ ଶ୍ରୁତମ୍ ।

ଅର୍ଥାତ୍ ସାଧାରଣତଃ ପୁରୁଷର ଆୟୁ ଶତସମ୍ବତ୍ସର ପରିମିତ ଅଟେ । କିନ୍ତୁ ଯେଉଁ ପୁରୁଷର ଜଠରାଗ୍ନି ପ୍ରବଳ, ସେ ତିନୋଟି ଆୟୁଷ ଅର୍ଥାତ୍ ତିନିଶହ ବର୍ଷ ପରମାୟୁ ଭୋଗ କରେ । ଏହିପରି ଜଠରାଗ୍ନି

ପ୍ରବଳ ଥାଇ ତାଂପଣ୍ଡିତ ପଦ ଜ୍ଞାନାଗ୍ନି ପ୍ରବଳ ହୁଏ ତାହାଙ୍କରେ ଆବୃତ ହେଉନାହିଁ ଆୟୁଷ ଅର୍ଥାତ୍ ଛଂଶହ ବର୍ଷ ପରମାୟୁ ସେ ପୁରୁଷ ଭୋଗ କରେ । ଏହିପରି ଜଠରାଗ୍ନି ଓ ଜ୍ଞାନାଗ୍ନି ପ୍ରବଳ ଥାଇ ଯେଉଁ ପୁରୁଷ ଦ୍ରବ୍ୟଗ୍ରାସ ମୁକ୍ତ ହୋଇ ଶୂନ୍ୟମାର୍ଗ୍ଗ ସମ୍ପନ୍ନ ହୋଇଥାଏ ସେ ଆବୃତ ହେଉନାହିଁ ଆୟୁଷ (ଛଂଶହ ବର୍ଷ) ଏବଂ ସାଧାରଣ ଆୟୁ ଶହେବର୍ଷ ଏହିପରି ସବୁମୋଟ ଏକ ହଜାର ବର୍ଷ ପରମାୟୁ ଭୋଗକରେ ।

ଏହି ସବୁ ପ୍ରମାଣରୁ ବୁଝିବାକୁ ହେବ ଯେ— ଦିବ୍ୟ ଦୃଷ୍ଟାନ୍ତର ମୂଳ ଉପାଦାନ ଅଗ୍ନି ସ୍ୱରୂପ ବ୍ରହ୍ମ ।

ଏଠାରେ ପ୍ରଶ୍ନ ଏହିଯେ— ଆଚ୍ଛା, ତେବେ ଶରୀର ମଧ୍ୟରେ ଅବ୍ୟକ୍ତ ଅଗ୍ନିସ୍ୱରୂପ ବ୍ରହ୍ମ ପୁରୁଷର ଅବସ୍ଥାନ ସମ୍ବନ୍ଧରେ ପ୍ରମାଣ କଣ ? ଏହାର ଉତ୍ତରରେ ଚରକ ଲେଖିଛନ୍ତି :—

## ଶାରୀରିକ କ୍ରିୟାଦ୍ୱାରା ଶରୀରସ୍ଥ ବ୍ରହ୍ମପୁରୁଷର ଅନୁମାନ-

ସମସ୍ତେ ଏହା ଜାଣନ୍ତି ଯେ- ବ୍ରହ୍ମପୁରୁଷ ବା କର୍ମ ପୁରୁଷକୁ ପ୍ରତ୍ୟକ୍ଷ ଦେଖାଯାଏ ନାହିଁ । ଶରୀରର ଶ୍ୱାସ ପ୍ରଶ୍ୱାସ ବା ପ୍ରାଣ ଅପାନ କ୍ରିୟା, ନେତ୍ରପତ୍ର ଉନ୍ମେଷ କ୍ରିୟା, ଜୀବନ ମରଣ କ୍ରିୟା, ସୁଖ ଦୁଃଖାନୁଭବ, ମାନସିକ ଗତି, ଗୋଟିଏ ଇନ୍ଦ୍ରିୟରୁ ଅନ୍ୟ ଇନ୍ଦ୍ରିୟରେ ମନର ସଞ୍ଚାର, ସ୍ୱପ୍ନରେ ଦେଶାନ୍ତର ଯାତ୍ରା, ବୋଧ, ବୁଦ୍ଧି, ସ୍ମୃତି, ଅହଂକାର, ସଂକଳ୍ପ, ବିକଳ୍ପ, ବିଜ୍ଞାନ, ଅଧ୍ୟବସାୟ ଓ ବସ୍ତୁ ମାନଙ୍କର ଉପଲବ୍ଧି ଏହି ସବୁ କର୍ମ କଳାପ ଶରୀରସ୍ଥ କର୍ମପୁରୁଷର ସଂଯୋଗ ବ୍ୟତୀତରେ ହୁଏନାହିଁ । ସଜୀବ ଶରୀରରେ ହିଁ ଏସବୁ ଗୁଣକ୍ରିୟା ଦେଖାଯାଇଥାଏ । ମୃତ ଶରୀରରେ ଏହି ସବୁ ଗୁଣକ୍ରିୟା ରହେନାହିଁ । ଏହି ସବୁ ଗୁଣକ୍ରିୟା ଦ୍ୱାରା ହିଁ କର୍ମ ପୁରୁଷର ଅସ୍ତିତ୍ୱ ଅନୁମିତ ହୋଇଥାଏ । (ଚ, ଶା, ୧ ଅ)

### ଶରୀରସ୍ଥ କର୍ମପୁରୁଷର ସ୍ୱରୂପ ।

ଗୀତା ବିଜ୍ଞାନ ଭାଷ୍ୟରେ ଲେଖା ଅଛିଯେ—

ପ୍ରତ୍ୟକ୍ଷଂ କରୋତ୍ୟାତ୍ମା ଜାନାତ୍ୟାତ୍ମା ପ୍ରତ୍ୟକ୍ଷମ୍
ନ କରୋତି ନ ଜାନାତି ଯଃ ସ ନାତ୍ମୋପପଦ୍ୟତେ ।

ଜ୍ଞାନଂ କର୍ମ ଚ ଧାତୂ ଦ୍ୱୌ ଆତ୍ମନଃ ମହାବର୍ତ୍ତିନୌ
ଜିଜ୍ଞାସା ବା ଚିକୀର୍ଷା ବା ଯସ୍ୟ ନାସ୍ତି ସ ବାତୁଳଃ ।

ଅର୍ଥାତ୍ ଜ୍ଞାନେନ୍ଦ୍ରିୟ ଓ କର୍ମେନ୍ଦ୍ରିୟ ଯୁକ୍ତ ଶରୀରଧାରୀ ପୁରୁଷ କେବଳ ଇଚ୍ଛାରେ ମଧ୍ୟ ପ୍ରତିକ୍ଷଣରେ କିଛି ନା କିଛି ଜାଣେ ଓ କିଛି ନା କିଛି କରେ । ଯେ କରେ ନାହିଁ ବା ଜାଣେ ନାହିଁ, ତାକୁ ଆତ୍ମା ବା ପୁରୁଷ ବୋଲିଯାଏ ନାହିଁ । ଜ୍ଞାନ ଓ କର୍ମ ଏହି ଦୁଇଟି ଆତ୍ମାର ... ଅବ୍ୟାହତ । ସୁତରାଂ ଯା'ର ଜିଜ୍ଞାସା ବା ଚିକୀର୍ଷା ନାହିଁ, ସେ ଅଚେତନ ବୋଲି ବୁଝିବାକୁ ହେବ ।

ଏହି ପୁରୁଷର ଜନ୍ମ ଗ୍ରହଣ ଓ ଜୀବନ ଧାରଣର ଉଦ୍ଦେଶ୍ୟ ନିର୍ଦ୍ଦେଶ କରୁଛନ୍ତି- ଧର୍ମ, **ଅର୍ଥ,** ଓ କାମ, ଏହା ତ୍ରିବର୍ଗସାଧନ, ଏହାର ନାମ ହିଁ ପୁରୁଷାର୍ଥ । ଏଥି ମଧ୍ୟରୁ ଯାହା ଧର୍ମ, ତାହା ଜ୍ଞାନ ପ୍ରଧାନ ଏବଂ ଯାହା ଅର୍ଥକାମ,- ତାହା ବିଜ୍ଞାନ ପ୍ରଧାନ ଅଟେ । ଜ୍ଞାନ ଓ ବିଜ୍ଞାନ ଉପାସନାର ଉଦ୍ଦେଶ୍ୟ ହେଉଛି- ଶାନ୍ତି ଓ ସୁଖ । ଏବଂ ଏହାହିଁ ଆତ୍ମାର ସ୍ୱାଭାବିକ **ଧର୍ମ ଓ ଧାତୁ ସାମ୍ୟ** । ଗୀତା ବିଜ୍ଞାନ ଭାଷ୍ୟରେ ଲେଖାଅଛି ଯେ—

**ଶାନ୍ତିଃ ସୁଖଂ** ଚ ପୁଂସଃ ସ୍ୟାତ୍ ଧାତୁସାମ୍ୟାତ୍, ବୈଷମ୍ୟତୋ ଦୁଃଖ ମୁତାଶାନ୍ତି ତସ୍ମାତ୍
**ତଦ୍‌ବୃତ୍ତ ଯତ୍** କର୍ମ ତୟୋଃ ସମତ୍ୱଂ ନୟେନ୍ନଃ ଶିକ୍ଷୟତୀହ ଗୀତା । ୧
**ଯଥାସ୍ମିନ୍** ସ୍ଥୂଳଦେହେଽଗ୍ନୌ ବୈଷମ୍ୟଂ ରୋଗକାରଣମ୍
ବାତ ପିତ୍ତ କଫାଦୀନାଂ ସାମ୍ୟଂ ସ୍ୱାସ୍ଥ୍ୟକରଂ ଯଥା । ୨ ॥
ଯଥାପ୍ରାଜ୍ଞେ ସୂକ୍ଷ୍ମଦେହେ ବୈଷମ୍ୟଂ ରୋଗକାରଣମ୍
କାମ କ୍ରୋଧାଦି ଷଡ୍‌ଧାତୁ ସାମ୍ୟଂ ସ୍ୱାସ୍ଥ୍ୟକରଂ ଯଥା । ୩ ॥
ବ୍ରହ୍ମ କର୍ମମୟ ସ୍ତଦ୍‌ବତ୍ ଦ୍ୱିଧାତୁରୟମବ୍ୟୟଃ
ତେନାତ୍ମନଃ ସ୍ୱାସ୍ଥ୍ୟହେତୁଃ ସମତ୍ୱଂ କର୍ମ ବିଦ୍ୟୟୋଃ । ୪ ॥
ଅବିଦ୍ୟା ବୁଦ୍ଧିୟୋ ନିତ୍ୟମୁଦ୍ରିକ୍ତାଃ ପ୍ରାଣିଷୁ ସ୍ୱତଃ
ନାଽପ୍ରତିବନ୍ଧ ସଦ୍‌ବିଦ୍ୟା-ବୁଦ୍ଧିଭିଃ ଶମୟେତ୍ କ୍ରମାତ୍ । ୫ ॥

**ଅର୍ଥାତ୍** ଧାତୁ ସାମ୍ୟରେ ପୁରୁଷର ସୁଖ, ଶାନ୍ତି, ଏବଂ ଧାତୁ ବୈଷମ୍ୟରେ ଦୁଃଖ ଓ ଅଶାନ୍ତି ଉପସ୍ଥିତ ହୁଏ । ଅତଏବ ଶରୀରସ୍ଥ ଜ୍ଞାନ ଓ କର୍ମ ରୂପ ଦୁଇଟି ଧାତୁର ସମତ୍ୱ ସ୍ଥାପନ କର୍ତ୍ତବ୍ୟ, ଏହି କଥା ଆମ୍ଭମାନଙ୍କୁ ଗୀତା ଶିକ୍ଷା ଦେଉଛି । ୧ । ଯେପରି ଏହି ସ୍ଥୂଳ ଦେହରେ ଅଗ୍ନିର ବିଷମତା

ରୋଗର କାରଣ, ଯେପରି ବାତ ପିତ୍ତ କଫର ସମତା ସ୍ୱାସ୍ଥ୍ୟର କାରଣ, ସେପରି ସୂକ୍ଷ୍ମ ଦେହରେ ରଜସ୍ତମୋଗୁଣ ସମ୍ଭୂତ କାମ କ୍ରୋଧାଦିର ବୈଷମ୍ୟ ରୋଗର କାରଣ, ଯେପରି କାମ କ୍ରୋଧାଦି ଷଡ୍‌ଧାତୁର ସମତା ସ୍ୱାସ୍ଥ୍ୟର କାରଣ, ସେହିପରି ଜ୍ଞାନ କର୍ମ ରୂପ ଦ୍ୱିଧାତୁ ବିଶିଷ୍ଟ ଏହି ପୁରୁଷର କର୍ମ ଓ ଜ୍ଞାନରେ ସମତ୍ୱ ପ୍ରତିଷ୍ଠା ହିଁ ସ୍ୱାସ୍ଥ୍ୟର ହେତୁ ଅଟେ । ମନୁଷ୍ୟମାନଙ୍କଠାରେ ଅବିଦ୍ୟା ବୁଦ୍ଧି (ଭୋଗ ବାସନା) ସର୍ବଦା ସ୍ୱତଃ ଉଦ୍ରିକ୍ତ ହୋଇଥାଏ, ସେଇ ଉତ୍କଟ ଭୋଗ ବାସନାକୁ ପ୍ରତିଦିନ ସଦ୍‌ବିଦ୍ୟା ବୁଦ୍ଧି ଦ୍ୱାରା କ୍ରମଶଃ ଶାନ୍ତ କରିବାକୁ ହେବ । ଅର୍ଥାତ୍ ଅନାତ୍ମ ବୁଦ୍ଧି ପରିହାର ପୂର୍ବକ ସର୍ବତ୍ର ସମବୁଦ୍ଧି ରଖି କର୍ମାଚରଣ କରିବ । ଏହାର ନାମ-ଧର୍ମ । ଏଠାରେ ଅବିଦ୍ୟା ପଦରେ ବିଜ୍ଞାନ ଏବଂ ସଦ୍‌ବିଦ୍ୟା ପଦରେ ଜ୍ଞାନକୁ ବୁଝିବାକୁ ହେବ ।

* ଜ୍ଞାନ ବିଜ୍ଞାନର ସମୁଚ୍ଚୟ ସାଧନାହିଁ ମୃତ୍ୟୁଞ୍ଜୟ ବିଦ୍ୟା ଯଜୁର୍ବେଦୀୟ ଈଶୋପନିଷଦ୍‌ରେ ଲେଖାଅଛି ଯେ—

ବିଦ୍ୟାଂଚ ଅବିଦ୍ୟାଂଚ ଯସ୍ତଦ୍‌ବେଦୋଭୟଂସହ
ଅବିଦ୍ୟୟା ମୃତ୍ୟୁଂ ତୀର୍ତ୍ତ୍ୱା ବିଦ୍ୟୟାମୃତ ମଶ୍ନୁତେ ।

ଅର୍ଥାତ୍ ଯେଉଁ ପୁରୁଷ ବିଦ୍ୟା ଓ ଅବିଦ୍ୟାକୁ (ଜ୍ଞାନ ଓ ବିଜ୍ଞାନ ଉଭୟକୁ) ସମୁଚ୍ଚିତ ଭାବରେ ଜାଣେ, ସେ ଅବିଦ୍ୟା ବା ବିଜ୍ଞାନ ଦ୍ୱାରା ଅପମୃତ୍ୟୁରୁ ପାରି ହୋଇ ବିଦ୍ୟା ବା ଜ୍ଞାନଦ୍ୱାରା ଅମରତ୍ୱ ଲାଭ କରେ ।

ଜ୍ଞାନକୁ ପରାବିଦ୍ୟା ଏବଂ ବିଜ୍ଞାନକୁ ଅପରା ବିଦ୍ୟା ମଧ୍ୟ ବୋଲାଯାଏ । ଜ୍ଞାନ ତ୍ୟାଗମାର୍ଗ ଏବଂ ବିଜ୍ଞାନ ଭୋଗମାର୍ଗ ଅଟେ । ଜ୍ଞାନହୀନ ବିଜ୍ଞାନ-ଅନ୍ଧ ଏବଂ ବିଜ୍ଞାନହୀନ ଜ୍ଞାନ ପଙ୍ଗୁ ଅଟେ । ଜ୍ଞାନହୀନ ବିଜ୍ଞାନ ଉତ୍କଟ ଭୋଗ ଲାଳସାରେ ବହୁବିଧ ଦୁର୍ଜୟ ରୋଗ ସୃଷ୍ଟି କରେ, ପରିଣାମରେ ସେ ଆତ୍ମହତ୍ୟା କରେ । ସେ ପ୍ରତିକ୍ଷଣରେ ଅତୃପ୍ତ, ଅଶାନ୍ତ, ବୁଭୁକ୍ଷିତ ଓ ଦୁଃଖିତ ହୋଇ ଏହି ଉକ୍ତିର ଅନୁସରଣ କରେ ଯେ—

କରିଷ୍ୟାମି କରିଷ୍ୟାମି କରିଷ୍ୟାମୀତି ଚିନ୍ତୟା
ମରିଷ୍ୟାମି, ମରିଷ୍ୟାମି ମରିଷ୍ୟାମୀତି ବିସ୍ମୃତମ୍ ।

ଅତଏବ କେବଳ ବିଜ୍ଞାନର ଉପାସକମାନଙ୍କୁ ଲକ୍ଷ୍ୟ କରି ଶ୍ରୁତି କହେ ଯେ—

"ଅନ୍ଧଂତମଃ ପ୍ରବିଶନ୍ତି ଯେ ଅବିଦ୍ୟାମୁପାସତେ"

ଅର୍ଥାତ୍ ଯେଉଁମାନେ ବିଜ୍ଞାନର ଉପାସକ ବା ଭୋଗବାଦୀ, ସେମାନେ ଅନ୍ଧକାରରେ ପ୍ରବେଶ କରନ୍ତି । ଏହିପରି କେବଳ ଜ୍ଞାନମାର୍ଗୀମାନଙ୍କ ସମ୍ବନ୍ଧେ ଶ୍ରୁତିରେ ଲେଖାଅଛି, "ତତୋଭୂୟ ଇବ ତେ ତମୋ ଯଉ ବିଦ୍ୟାୟାଂରତାଃ" । ( ଈଶୋପନିଷଦ୍ )

ଅର୍ଥାତ୍ ଯେଉଁମାନେ କେବଳ ତ୍ୟାଗ ମାର୍ଗକୁ ଅବଲମ୍ବନ କରନ୍ତି, ସେମାନେ କର୍ମଦ୍ୱେଷ ଜନ୍ୟ ଅପରାଧରୁ ଆହୁରି ନିବିଡ଼ ଅନ୍ଧକାରରେ ପ୍ରବେଶ କରନ୍ତି ।

ଅତଏବ ଶ୍ରୁତିର ସାର ସିଦ୍ଧାନ୍ତ ଏହି ଯେ— ଯଦି ଅପମୃତ୍ୟୁକୁ ଜିଣି ଅମରତ୍ୱ ଲାଭକରିବାକୁ ଇଚ୍ଛାହୁଏ, ତା'ହେଲେ ଜ୍ଞାନ ସହିତ ବିଜ୍ଞାନର ଉପାସନାହିଁ ପ୍ରକୃଷ୍ଟ ଉପାୟ । ଏହାହିଁ ଆଧ୍ୟାତ୍ମିକ ସାମ୍ୟବାଦ ପ୍ରତିଷ୍ଠାର ମୂଳଭୂମି, ଏହାର ନାମ ତ୍ରିବର୍ଗ ସାଧନା, ଏହା ପରମଧର୍ମ ଲାଭର ପନ୍ଥା ଏବଂ ଏହାହିଁ ପୁରୁଷର ଶାରୀରିକ, ମାନସିକ ଓ ସାମାଜିକ ଦୁଃଖ ନିବୃତ୍ତିର ସର୍ବୋଷଧ ।

ଶାସ୍ତ୍ରରେ ଲେଖାଅଛି ଯେ—

ଆହାରାର୍ଥଂ କର୍ମ କୁର୍ଯାଦନିନ୍ଦ୍ୟଂ ତଦାହାର୍ଯଂ ପ୍ରାଣ ସନ୍ଧାରଣାର୍ଥମ୍ ,
ପ୍ରାଣାଧାର୍ଯା ତତ୍ତ୍ୱଜିଜ୍ଞାସନାର୍ଥଂ ତତ୍ତ୍ୱଂ ଜ୍ଞେୟଂ ଯେନ ଦୁଃଖଂ ନ ଭୂୟଃ ।

ଅର୍ଥାତ୍ ଶରୀରକୁ ରକ୍ଷାକରିବା ପାଇଁ ଅନିନ୍ଦନୀୟ ବୈଜ୍ଞାନିକ ଉପାୟରେ କୃଷି, ଶିଳ୍ପ, ବାଣିଜ୍ୟ ଓ ପଶୁ ପାଳନାଦି କର୍ମ କରି ଆହାର ସଂଗ୍ରହ କରିବ । ସେହି ଆହାରର ଉଦ୍ଦେଶ୍ୟ-ପ୍ରାଣ ଧାରଣ, ପ୍ରାଣଧାରଣର ଉଦ୍ଦେଶ୍ୟ-ଆତ୍ମତତ୍ତ୍ୱ ଜିଜ୍ଞାସା ଏବଂ ସେହି ଆତ୍ମତତ୍ତ୍ୱ ଜିଜ୍ଞାସାର ଉଦ୍ଦେଶ୍ୟ ପୁରୁଷର ସ୍ୱ ସ୍ୱରୂପରେ ଅବସ୍ଥାନ ରୂପ ସ୍ୱାସ୍ଥ୍ୟ ବା ବ୍ରାହ୍ମୀସ୍ଥିତି ଲାଭ - ଏହା ହିଁ ପରମ ପୁରୁଷାର୍ଥ ।

ଏହିଭଳି ଜ୍ଞାନ ବିଜ୍ଞାନ ତୃପ୍ତ ଆତ୍ମାରାମ ପୂର୍ଣ୍ଣକାମ ପୁରୁଷହିଁ ସମ୍ପୂର୍ଣ୍ଣ ଆଦର୍ଶ ପୁରୁଷ ।

ଏହିଭଳି ପୁରୁଷ ପଦ ପ୍ରାପ୍ତି ନିମନ୍ତେ ତ୍ରିବର୍ଗ ସାଧନା ବା ଜ୍ଞାନ ବିଜ୍ଞାନର ଉପାସନା ଆବଶ୍ୟକ । ସେହି ସାଧନା ବା ଉପାସନା

---

* ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ, ନିତ୍ୟଂ ବିଜ୍ଞାନମାନନ୍ଦଂ ବ୍ରହ୍ମ । (ଉପନିଷଦ୍

ଦୀର୍ଘଜୀବନ ଉପରେ ନିର୍ଭର କରେ । ଅତଏବ ଚରକ କହିଛନ୍ତି ଯେ—

ଆୟୁଃ କାମୟମାନେନ ଧର୍ମାର୍ଥସୁଖସାଧନମ୍
ଆୟୁର୍ବେଦୋପଦେଶେଷୁ ବିଧେୟଃ ପରମାଦରଃ ।

ଅର୍ଥାତ୍ ଯେଉଁ ପୁରୁଷ ଧର୍ମାଦି ତ୍ରିବର୍ଗ ସାଧନ ନିମନ୍ତେ ଦୀର୍ଘଜୀବନ ବା ଦୀର୍ଘାୟୁ କାମନା କରେ, ସେ ଅତ୍ୟନ୍ତ ଆଦର ସହିତ ଆୟୁର୍ବେଦର ଉପଦେଶ ମାନ ଚଳିବାକୁ ହେବ ।

ସୁତରାଂ, ଜ୍ଞାନ ବାଞ୍ଛନାର୍ଥୀ, ଆୟୁଷ୍କାମୀ ପୁରୁଷ ପକ୍ଷରେ ଏଠାରେ ଆୟୁଃ ତତ୍ତ୍ୱ ସମ୍ବନ୍ଧେ କିଛି ଜାଣିବା ଏକାନ୍ତ ଆବଶ୍ୟକ ।

## ଆୟୁର୍ଦାୟ ବିଚାର

ଏଠାରେ, ପ୍ରଶ୍ନ ଏହି ଯେ-ଶାସ୍ତ୍ର ନିର୍ଦ୍ଦିଷ୍ଟ ପୁରୁଷର ଆୟୁଃ ପରିମାଣ କେତେ ? ଏବଂ ତାହା ଧର୍ମାଧର୍ମ ଓ ପଥ୍ୟାପଥ୍ୟ ବ୍ୟବହାର ଉପରେ ନିର୍ଭର କରେ କି ନା ? ଏହାର ଉତ୍ତରରେ ଶ୍ରୁତି କହେ ଯେ—"ଶତାୟୁର୍ବୈ ପୁରୁଷଃ" ଅର୍ଥାତ୍ ପୁରୁଷର ପରମାୟୁ ଶତସମ୍ବତ୍ସର ଅଟେ । ଏହିକଥା ମଧ୍ୟ ଯଜୁର୍ବେଦୀୟ ଈଶୋପନିଷତ୍, କଠୋପନିଷତ୍, ଗୋଭିଲ ଗୃହ୍ୟସୂତ୍ରାଦିରେ ଲେଖାଅଛି । ଅନ୍ୟ ଶ୍ରୁତିରେ, ମଧ୍ୟ ଲେଖାଅଛି -ଶତାଦ୍ ଭୂୟାଂସି ବର୍ଷେଭ୍ୟୋ ଜୀବନ୍ତି" । ଏହାର ଅର୍ଥ– ମନୁଷ୍ୟ ୧୦୦ ବର୍ଷରୁ ମଧ୍ୟ ଅଧିକ କାଳ ବଞ୍ଚିପାରେ । ଏହି ଶାସ୍ତ୍ର ନିର୍ଦ୍ଦେଶ ଅନୁସାରେ ଅନାଦି ଆବହମାନ କାଳରୁ ବୈଦିକ ସମ୍ପ୍ରଦାୟ ମଧ୍ୟରେ ଅଷ୍ଟୋତ୍ତର ଶତସମ୍ବତ୍ସର ଜୀବିତମସ୍ତୁ ବୋଲି ମଧ୍ୟ ଆଶୀର୍ବାଦ ପ୍ରଚଳିତ ଅଛି । ଶୁକ୍ର ନୀତିରେ ଲେଖାଅଛି ଯେ—

"ଶତମାୟୁର୍ମନୁଷ୍ୟାଣାଂ ଗଜାନାଂ ପରମଂସ୍ମୃତମ୍, ଚତୁସ୍ତ୍ରିଂଶତ୍ ବର୍ଷାଣାମଶ୍ୱସ୍ୟାୟୁଃ ପରଂ ସ୍ମୃତମ୍, ପଞ୍ଚବିଂଶତିବର୍ଷାଣି ପରମାୟୁର୍ବୃଷୋଷ୍ଟ୍ରୟୋଃ । ( ଶୁକ୍ରନୀତି )

ଆୟୁର୍ବେଦ ଶାସ୍ତ୍ରରେ ମଧ୍ୟ ଦଶ ଦଶକରେ ପୁରୁଷର ଆୟୁଷ୍କାଳ ପୂର୍ଣ୍ଣ ହୁଏ ବୋଲି କେହି କେହି ପ୍ରତିପାଦନ କରିଅଛନ୍ତି । ସେଇ ପ୍ରମାଣ ନିର୍ଦ୍ଦେଶ ଏହିଯେ—

ବାଲ୍ୟଂ ବୃଦ୍ଧିର୍ବଲଂ ଚକ୍ଷୁସ୍ତ୍ୱକ୍ତ୍ୱାଂଙ୍ଗ ଶୁକ୍ର ଶୋଣିତମ୍
ଦଶକେନ ନିବର୍ତ୍ତନ୍ତେ ମନଃ ସର୍ବେନ୍ଦ୍ରିୟାଣି ଚ ।

ଅର୍ଥାତ୍ ପୁରୁଷର ବାଲ୍ୟକାଳ—୧୦-ବର୍ଷ
ଶରୀରର-ବୃଦ୍ଧି—୧୦-ବର୍ଷ
„ ବଳ—୧୦-ବର୍ଷ
„ ଦୃଷ୍ଟିଶକ୍ତି—୧୦-ବର୍ଷ
„ ଚର୍ମର ଲାବଣ୍ୟ—୧୦-ବର୍ଷ
ଶରୀରର ମାଂସପେଶୀର ଦୃଢ଼ତା—୧୦-ବର୍ଷ
„ ବୀର୍ଯ୍ୟବଳ—୧୦-ବର୍ଷ
„ ରକ୍ତର ସମ୍ବର୍ଦ୍ଧନ କ୍ରିୟା—୧୦-ବର୍ଷ
„ ମନର ବଳ—୧୦-ବର୍ଷ
„ ସମସ୍ତ ଇନ୍ଦ୍ରିୟ ମାନଙ୍କର ଶକ୍ତି—୧୦-ବର୍ଷ

ଏହିପରି ଭାବରେ ୧୦୦ ବର୍ଷ ମଧ୍ୟରେ ଶରୀରର ଉପଚୟ ଓ ଅପଚୟ ଘଟିଥାଏ ।

ଜ୍ୟୋତିଷ ଶାସ୍ତ୍ରରେ ମଧ୍ୟ ଅଷ୍ଟୋତ୍ତରୀ ଓ ବିଂଶୋତ୍ତରୀ ଦଶା ଗଣନା ଅନୁସାରେ ମନୁଷ୍ୟର ପରମାୟୁ ୧୦୮ ବର୍ଷ କିମ୍ବା ୧୨୦ ବର୍ଷ ବୋଲି ନିରୂପିତ ହୋଇଅଛି । ଏଠାରେ କେହି ୨ ପ୍ରଶ୍ନ ପାରନ୍ତିଯେ—

ବାଲ୍ମୀକି ରାମାୟଣ ପାଠକଲେ ଜଣାଯାଏଯେ—ଯେତେବେଳେ ମହର୍ଷି ବିଶ୍ୱାମିତ୍ର ନିଜର ଯଜ୍ଞରକ୍ଷା ନିମନ୍ତେ ରାମଚନ୍ଦ୍ରଙ୍କୁ ନେଇବା ପାଇଁ ମହାରାଜ ଦଶରଥଙ୍କୁ ଅନୁରୋଧ କରିଥିଲେ, ସେତେବେଳେ ଦଶରଥଙ୍କର ବୟସ ହୋଇଥିଲା ୬୦ ହଜାର । ସେତେବେଳେ ଦଶରଥ ତାଙ୍କୁ କହିଥିଲେ ଯେ—

"ଷଷ୍ଟି ବର୍ଷ ସହସ୍ରାଣି ଜାତସ୍ୟ ମମ କୌଶିକ !
କୃଚ୍ଛ୍ରେଣୋତ୍ପାଦିତଶ୍ଚାୟଂ ନ ରାମଂ ନେତୁମର୍ହସି
(ବା-ରା-୧।୨୦।୧୦)

ଅର୍ଥାତ୍ ମୋର ଜନ୍ମ ହେବାର ୬୦ ହଜାର ବର୍ଷ ହେଲା, ଏହି ବୃଦ୍ଧ ବୟସରେ ବହୁ କଷ୍ଟରେ ଏହି ରାମଙ୍କୁ ମୁଁ ଉତ୍ପାଦନ କରିଛି । ଅତଏବ ଆପଣ ଏହାଙ୍କୁ ନେବାକୁ ଇଚ୍ଛା କରନ୍ତୁ ନାହିଁ ।

ଏହିପରି ଜଟାୟୁ ଓ ରାବଣର ସମ୍ବାଦରେ ଜଟାୟୁଙ୍କର ପରମାୟୁ

୬୦ ହଜାର ବର୍ଷ ବୋଲି ବର୍ଣ୍ଣିତ ହୋଇଅଛି ।

( ଦେଖ-ବା-ରା-ର ଅରଣ୍ୟକାଣ୍ଡ ୫୦ ସର୍ଗ )

ଏହିପରି ସେଇ ରାମାୟଣର ଉତ୍ତର କାଣ୍ଡରେ ରାମଙ୍କର ରାଜ୍ୟଶାସନ କାଳ ନିର୍ଦ୍ଦେଶ ପ୍ରସଙ୍ଗରେ ଲେଖାଅଛି ଯେ—

"ଦଶବର୍ଷ ସହସ୍ରାଣି ଦଶବର୍ଷ ଶତାନିଚ

ରାମୋ ରାଜ୍ୟସୁଖଂ ଭୁକ୍ତ୍ୱା ସ୍ୱର୍ଗଲୋକମୁପାଗମତ୍ ।

ଅର୍ଥାତ୍ ରାମଚନ୍ଦ୍ର ୧୧ ହଜାର ବର୍ଷ ପର୍ଯ୍ୟନ୍ତ ରାଜ୍ୟସୁଖ ଭୋଗ କରି ସ୍ୱର୍ଗଗାମୀ ହେଲେ ।

ଏହିପରି ମଧ୍ୟ ଅନ୍ୟାନ୍ୟ ପୁରାଣ ମାନଙ୍କରେ ହଜାର ହଜାର ବର୍ଷ ପର୍ଯ୍ୟନ୍ତ ଋଷିମାନଙ୍କର ତପସ୍ୟା କରିବାର କଥା ଉଲ୍ଲେଖ ଅଛି ।

ମାନବ ଜାତିର ଆଦି ପୁରୁଷ ମନୁ ତାଙ୍କର ଧର୍ମ ଶାସ୍ତ୍ରରେ ଲେଖିଛନ୍ତି ଯେ-

"ଅରୋଗାଃ ସର୍ବସିଦ୍ଧାର୍ଥାଃ ଚତୁର୍ବର୍ଷ ଶତାୟୁଷଃ

କୃତେ ତ୍ରେତାଦିଷୁ ହ୍ୟେଷାଂ ଆୟୁର୍ହ୍ରସତି ପାଦଶଃ । (ମନୁ)

ଅର୍ଥାତ୍ ସତ୍ୟଯୁଗରେ ପୁରୁଷମାନେ ନୀରୋଗ, ଓ ପୂର୍ଣ୍ଣ ମନୋରଥ ହୋଇ ୪ ଶହ ବର୍ଷ ପର୍ଯ୍ୟନ୍ତ ପରମାୟୁ ଭୋଗ କରୁଥିଲେ, ତା'ର ପରେ ଧର୍ମହ୍ରାସ ଯୋଗୁଁ ଏକ ଏକ ପାଦ ଆୟୁ ହ୍ରାସ ହୋଇ ତ୍ରେତାରେ ୩ ଶହ, ଦ୍ୱାପରରେ ୨ ଶହ ଏବଂ କଳିରେ ଏକ ପାଦ ଧର୍ମ ଥିବା ଯୋଗୁଁ ପୁରୁଷମାନଙ୍କର ଆୟୁ ମଧ୍ୟ ଏକ ପାଦ ଅର୍ଥାତ୍ ୧ ଶହ ବର୍ଷ ରହିଲା ।

ତେବେ ଏଠାରେ ପ୍ରଶ୍ନ ଏହି ଯେ- ଯଦି ମନୁଙ୍କର କଥା ଠିକ୍ ବୋଲି ଧରାଯାଏ, ତାହେଲେ ପୁରାଣୋକ୍ତ ଆୟୁର ପରିମାଣ ସହିତ ମନୁଙ୍କର ଉକ୍ତିର ସାମଞ୍ଜସ୍ୟ ସ୍ଥାପନ କରାଯିବ କପରି ? ପୁରାଣରେ ଲେଖାଯାଇଥିବା ବର୍ଷର ପରିମାଣ ଏବଂ ମନୁ ଲେଖିଥିବା ବର୍ଷର ପରିମାଣରେ ଏତେଦୂର ଆକାଶ ପାତାଳ ପ୍ରଭେଦ ରହିବାର କାରଣ କ'ଣ ? ଏବଂ ପୁରାଣ ଲିଖିତ ଓ ମନୁଲିଖିତ ବର୍ଷ ଶବ୍ଦର ଅର୍ଥ କ'ଣ ?

ଏହାର ଉତ୍ତର ଏହିଯେ-ପୁରାଣମାନଙ୍କରେ ଆୟୁଷ୍କାଳ ବର୍ଣ୍ଣନା ପ୍ରସଙ୍ଗରେ ଯେଉଁଠି ସମସ୍ତ ବା ବର୍ଷ ନିର୍ଦ୍ଦିଷ୍ଟ ହୋଇଅଛି, ତାହା ସୌର ବର୍ଷ ନୁହେ । ତାହା ପାର୍ଥିବ ବର୍ଷ କମ୍ବା ଚାନ୍ଦ୍ର ବର୍ଷ ବୋଲି ବୁଝିବାକୁ ହେବ ।

ବର୍ଷ ଶବ୍ଦର ସାଧାରଣ ଅର୍ଥ ଏହି ଯେ—ସୂର୍ଯ୍ୟାଦି ଗ୍ରହମାନଙ୍କର ରାଶି ଚକ୍ର ଭ୍ରମଣ କାଳ । ଏହି ହିସାବରେ ଧରିଲେ ୩୬୦ ଦିନରେ ଥରେ ମାତ୍ର ସୂର୍ଯ୍ୟ ରାଶି ଚକ୍ରକୁ ଭ୍ରମଣ କରିଥାନ୍ତି । ତେଣୁ ୩୬୦ ଦିନରେ ୧ ସୌର ବର୍ଷ ହୁଏ । ଚନ୍ଦ୍ର ୩୦ ଦିନରେ ଥରେ ରାଶି ଚକ୍ରକୁ ଭ୍ରମଣ କରନ୍ତି । ତେଣୁ ଏକ ଏକ ସାବନ ମାସରେ ଏକ ଏକ ଚାନ୍ଦ୍ର ସମ୍ବତ୍ସର ବା ଚାନ୍ଦ୍ର ବର୍ଷ ହୁଏ । ଏହିପରି ପୃଥିବୀ ଏକ ଅହୋରାତ୍ର ବା ଏକ ଦିନରେ ଥରେ ରାଶି ଚକ୍ରକୁ ପରିଭ୍ରମଣ କରିଥାଏ, ତେଣୁ ୧-୧ ଦିନରେ ୧-୧ ପାର୍ଥିବ ବର୍ଷ ହୋଇଥାଏ । ଅତଏବ ଶତପଥ-ବ୍ରାହ୍ମଣରେ ଲେଖାଅଛି

"ଅହର୍ବୈ ସମ୍ବତ୍ସରଃ, ଅହୋରାତ୍ରମ୍ ବୈ ସମ୍ବତ୍ସରଃ,"

(ଶତପଥ-କାଂ ୩ ଅଂ ୨ ବ୍ରାଂମ ୪)

ଅର୍ଥାତ୍ ଏକ ଦିନରେ ବା ଏକ ଅହୋରାତ୍ରରେ ଏକ ପାର୍ଥିବ ବର୍ଷ ହୁଏ ।

ପୁରାଣ ଲିଖିତ ଆୟୁଃସମୟ-ନିରୂପକ ବର୍ଷକୁ ପାର୍ଥିବ ବର୍ଷ ବୋଲି ଗଣନା କରି—୧ ବର୍ଷକୁ ୧-୧ ଦିନବୋଲି ଧରିନେଲେ, ୬୦ ହଜାର ବର୍ଷକୁ ୬୦ ହଜାର ଦିନ ବୋଲି ବୁଝିବାକୁ ହେବ । ଏହି ଦୈନିକ ପାର୍ଥିବ ସମ୍ବତ୍ସର ସହିତ ସୌର ସମ୍ବତ୍ସରର ୩୬୦ ଦିନର ସମତା ରଖି କହିବାକୁ ହେଲେ ଏତିକି ବୋଲିବାକୁ ହେବ ଯେ—ଯେତେବେଳେ ବିଶ୍ୱାମିତ୍ର ନିଜର ଯଜ୍ଞ ରକ୍ଷାର୍ଥରେ ରାମଚନ୍ଦ୍ରଙ୍କୁ ନେଇଗଲେ, ସେତେବେଳେ ସୌର ସମ୍ବତ୍ସର ଅନୁସାରେ ଦଶରଥଙ୍କର ବୟସ ହୋଇଥିଲା-୧ ଶହ ୬୬ ବର୍ଷ-୮ ମାସ ।

ଏହିପରି ରାମଚନ୍ଦ୍ରଙ୍କର ରାଜ୍ୟଭୋଗ କାଳ ୧୧ ହଜାର ବର୍ଷ ବୋଲି ଯାହା ଲେଖାଅଛି, ସେହି ଦୈନିକ ପାର୍ଥିବ ବର୍ଷକୁ ସୌର ସମ୍ବତ୍ସର ଅନୁସାରେ ହିସାବ କଲେ ଜଣାଯାଏ ଯେ—ରାମଚନ୍ଦ୍ରଙ୍କର ରାଜତ୍ୱ କାଳ-୩୦ ବର୍ଷ-୬ ମାସ ୨୦ ଦିନ ।

ଏହିପରି ଅନ୍ୟାନ୍ୟ ସ୍ଥଳରେ ମଧ୍ୟ ବୁଝି ଅର୍ଥ ସଙ୍ଗତ କରିବାକୁ ହେବ ।

## ଆୟୁର ଅନଶ୍ଚୟତା ସମ୍ବନ୍ଧେ ଚରକ ଯଥା—

ପୂର୍ବପକ୍ଷ-ଭାଗ୍ୟବାଦୀ କହେ ଯେ—ପୁରୁଷର ଆୟୁ ଦୈବ ନିର୍ଦ୍ଦିଷ୍ଟ । ଏହା ଧର୍ମାଧର୍ମ ବା ପୁରୁଷ ପ୍ରଯତ୍ନର ଅଧୀନ ନୁହେ । ଅନେକ ସ୍ଥଳରେ

ପଥ୍ୟସେବୀ, ଜିତେନ୍ଦ୍ରିୟ, ଧାର୍ମିକ ପୁରୁଷମାନଙ୍କର ଅକାଳରେ ମୃତ୍ୟୁ ଘଟିଥାଏ । ଏବଂ ଅନେକ ସ୍ଥଳରେ ଅଧାର୍ମିକ, ଘୋର ଅତ୍ୟାଚାରୀ ପୁରୁଷମାନେ ମଧ୍ୟ ଦୀର୍ଘଜୀବୀ ହେବାର ଦେଖାଯାଏ । କେତେକ ପ୍ରାଣୀ ଗର୍ଭରେ ମରନ୍ତି, କେତେ ଜନ୍ମହେବା ମୁହୂର୍ତ୍ତରେ, କେତେ ବା ମାସେ ଦୁଇମାସରେ, କେତେ ବା ଛ'ମାସରେ ବର୍ଷରେ, କେତେ ବା ଦଶ ପନ୍ଦର, କେତେ ବା କୋଡ଼ିଏ ପଚିଶି ବର୍ଷରେ, କେତେ ବା ଚାଳିଶି ଅଶୀ ଏ ବର୍ଷରେ ଏବଂ କେତେ ୨ ଲୋକ ଶହେ, ଛ'କୋଡ଼ି, ସାତକୋଡ଼ି ବର୍ଷରେ ମଧ୍ୟ ମରୁଅଛନ୍ତି । ଅତଏବ ଆୟୁର କୌଣସି ନିଶ୍ଚୟତା ନାହିଁ । ତାହା ଅଦୃଷ୍ଟ ବା ଦୈବାଧୀନ ଅଟେ । ଶାସ୍ତ୍ରରେ ମଧ୍ୟ ଲେଖାଅଛି ଯେ—

ଆୟୁଃ କର୍ମ ଚ ବିତ୍ତଂ ଚ ବିଦ୍ୟା ନିଧନମେବ ଚ ।
ପଞ୍ଚୈତାନ୍ୟପି ସୃଜ୍ୟନ୍ତେ ଗର୍ଭସ୍ଥସ୍ୟୈବ ଦେହିନଃ ॥

ଅର୍ଥାତ ଆୟୁ, କର୍ମ, ଧନ, ବିଦ୍ୟା, ମୃତ୍ୟୁ ଏହି ପାଞ୍ଚଟି ଦୈବର ଅଧୀନ ଅଟେ । ପ୍ରାଣୀ ଗର୍ଭସ୍ଥ ହେବା ସମୟରେ ହିଁ ବିଧାତା ଏସବୁ ନିର୍ମାଣ କରିଥାଏ ।

ବିଧାତାର ଏହି ସବୁ ବିଧାନ ଅଲଙ୍ଘନୀୟ । ଭାଗ୍ୟବାଦିର କଥାକୁ କବିବର ରାଧାନାଥଙ୍କ ଭାଷାରେ କହିବାକୁ ହେଲେ ଏପରି କହିବାକୁ ହେବ ଯେ—

"ଲଙ୍ଘି ନାହିଁ ବଳ କାହାର ଜଗତେ, ନିୟତି କି ନେବ ନିଜ ଇଚ୍ଛା ମତେ,"
ସୁତରାଂ ପୁରୁଷର ଆୟୁଃ ପ୍ରମାଣ ସମ୍ବନ୍ଧେ ଯାହା ନିଶ୍ଚିତର ନିର୍ଦ୍ଦେଶ— ତାହା ଅପରିବର୍ତ୍ତନୀୟ, ଅଲଙ୍ଘନୀୟ ବୋଲି ଭାଗ୍ୟବାଦିର ମତ ।

## ଆୟୁ ଭାଗ୍ୟାଧୀନ ନୁହେ

ଏଠାରେ ଚରକ ଯାହା କହିଛନ୍ତି, – ତାର ସାରାଂଶ ଏହିପରି—
ସେ କହିଛନ୍ତି,– ଆୟୁ ଭାଗ୍ୟାଧୀନ ନୁହେ । ଅର୍ଥାତ୍ **ଯଥାଂଶ ବର୍ତ୍ତିତ** ବ୍ୟକ୍ତିଭେଦରେ ନ୍ୟୂନାଧିକ ଭାବରେ ଏହା ନିର୍ଦ୍ଦିଷ୍ଟ **ହୋଇନାହିଁ** ।
(୧) ଯଦି ତାହା ହୋଇଥାନ୍ତା, ତେବେ ପରମେଷ୍ଟିର **ବା ଆପ୍ତପୁରୁଷ** ମାନଙ୍କ ଦ୍ୱାରା ଉପଦିଷ୍ଟ ବେଦାଦି ଶାସ୍ତ୍ରମାନଙ୍କରେ **ଆୟୁର୍ବୃଦ୍ଧି** ନିମନ୍ତେ ନାନାବିଧ ମନ୍ତ୍ର ପ୍ରୟୋଗ, **ରସାୟନ** ଔଷଧ ପ୍ରୟୋଗ, ହୋମ, ନିୟମ, ପ୍ରାୟଶ୍ଚିତ୍ତ, ମଣି ମଙ୍ଗଳାଦି ଯନ୍ତ୍ର କବଚାଦିର ଧାରଣ, ବଳି, ଉପହାର

ଓ ଉପବାସାଦି ବ୍ରତ ବିଧାନ ସମ୍ବନ୍ଧୀ ପ୍ରେରଣା ଦିଆଯା'ନ୍ତା ନାହିଁ ?

୨ ) ଯଦି ଆୟୁର୍ଦୈବ ନିର୍ଦ୍ଦିଷ୍ଟ, ତେବେ ୫୬ ଗଣ୍ଡା ଯୁଗ * ବଞ୍ଚିବାପାଇଁ ଦେବ ବରପ୍ରାପ୍ତ ରାବଣ ୧୪ ଗଣ୍ଡା ଯୁଗରେ ମରନ୍ତା ନାହିଁ, ଏବଂ ସ୍ମୃତି ଅନୁସାରେ ଅଳ୍ପାୟୁ ମାର୍କଣ୍ଡେୟ ଶିବ ପ୍ରସାଦରୁ କଳ୍ପାନ୍ତ ଜୀବୀ ହୁଅନ୍ତେ ନାହିଁ ? ଏଣୁ ଆୟୁ ଦୈବାଧୀନ ନୁହେ ।

୩ ) ଯଦି ଆୟୁ ଦୈବ ନିର୍ଦ୍ଦିଷ୍ଟ, ତେବେ ଆମେରିକାର ପରମାଣୁ ବମ୍ ପ୍ରୟୋଗରେ ଜାପାନର ଦେଢ଼ଲକ୍ଷ ଲୋକ ଏକ ମୁହୂର୍ତ୍ତରେ ମରନ୍ତେ ନାହିଁ । ଏବଂ କୋଟି ୨ ଟଙ୍କା ଖର୍ଚ୍ଚ କରି ପରମାଣୁ ବମ୍, ହାଇଡ୍ରୋଜେନ୍ ବମ୍ ଓ ଜୀବାଣୁ ବମ୍ ଆଦି ସଂହାରକ ଅସ୍ତ୍ର ଶସ୍ତ୍ରକୁ ମାରିବାପାଇଁ ଯୁଦ୍ଧରେ କେହି ପ୍ରୟୋଗ କରନ୍ତେ ନାହିଁ ।

୪ ) ଅକାଳ ମୃତ୍ୟୁ ନଥିଲେ ପ୍ରଜାର ପ୍ରାଣରକ୍ଷା ନିମନ୍ତେ ସ୍ୱାସ୍ଥ୍ୟବିଭାଗ ଖୋଲି ଶହ ଶହ କୋଟି ଟଙ୍କା ଖର୍ଚ୍ଚ କରିବାକୁ ପଡ଼ନ୍ତା ନାହିଁ ଏବଂ ବୈଦ୍ୟ ଡାକ୍ତରମାନଙ୍କର ଆବଶ୍ୟକତା ରହନ୍ତା ନାହିଁ । ଏବଂ ଜଳଯାନ, ସ୍ଥଳଯାନ ଓ ବ୍ୟୋମଯାନରେ ଏକାବେଳକେ ବହୁ ଲୋକ ମରିବା ପରେ ତା'ର କାରଣ ଅନୁସନ୍ଧାନ କରାଯାନ୍ତା ନାହିଁ । ଏବଂ ଆୟୁର୍ବେଦ ଶାସ୍ତ୍ର ମଧ୍ୟ ନିରର୍ଥକ ହୋଇପଡ଼ନ୍ତା ।

୫ ) ଏବଂ ପ୍ରବଳ ଅଗ୍ନ୍ୟୁତ୍ପାତ ସ୍ଥାନ, ବିବିଧ ବିଷଧର ସର୍ପ ସଙ୍କୁଳ ସ୍ଥାନ, ବ୍ୟାଘ୍ର ଭଲ୍ଲୁକ ଆଦି ଦୁଷ୍ଟ ଜନ୍ତୁ ସଙ୍କୁଳ ସ୍ଥାନ ଏବଂ ପ୍ରବଳ ଜଳସ୍ରୋତ ଆଦି ପରିହାର କରିବାପାଇଁ କେହି କାହାକୁ ମନା କରନ୍ତା ନାହିଁ ଏବଂ ମହାମାରୀରୋଗର ପ୍ରକୋପ ସମୟରେ କେହିହେଲେ ସ୍ଥାନ ଛାଡ଼ି ଯାଆନ୍ତେ ନାହିଁ ।

୬ ) ଏବାଦେ ଆୟୁ ଯଦି ଦୈବନିର୍ଦ୍ଦିଷ୍ଟ ହୋଇଥାନ୍ତା, ତେବେ ଯୁଦ୍ଧ, ଦୁଃସାହସିକ କର୍ମାନୁଷ୍ଠାନ, ରାଜାର ଦ୍ରୋହାଚରଣ, ଏବଂ ଦିନଚର୍ଯ୍ୟା, ରାତ୍ରିଚର୍ଯ୍ୟା, ଓ ଋତୁଚର୍ଯ୍ୟା ଲଂଘନ କରିବାପାଇଁ କାହାରି ହେଲେ ମନରେ ଭୟ ବା ଆଶଙ୍କା ରହନ୍ତା ନାହିଁ । ଏବଂ ବିନା ଆହାରରେ ମଧ୍ୟ କେହି ମରନ୍ତେ ନାହିଁ ।

ଏସବୁ କାରଣରୁହିଁ ଲୋକେ କହନ୍ତି ଯେ- ଧରିମାରିଲେ ସିଦ୍ଧପୁରୁଷ ମଧ୍ୟ

---

* ଏଠାରେ ଯୁଗଶବ୍ଦର ଅର୍ଥ ୫ ବର୍ଷ । ସଂବତ୍ସର, ବତ୍ସର, ପରିବତ୍ସର, ଅନୁବତ୍ସର, ଇଦାବତ୍ସର ।

ମରିଯାଏ, ତାକୁ ଦୈବ ରକ୍ଷା କରେନାହିଁ । ଆଉଗୋଟିଏ କଥା—
ପୂର୍ବ ଜନ୍ମରେ କରିଯାଇଥିବା ପାପ ବା ପୁଣ୍ୟ କର୍ମର ନାମ ଦୈବ ।
ଏହି ପାପପୁଣ୍ୟ ରୂପ କର୍ମର ପ୍ରବାହ ହିଁ ଜନ୍ମ ମରଣ ଚକ୍ରର ହେତୁ ଅଟେ ।
ପ୍ରବଳ ଦୈବ ଦୁର୍ବଳ ପୁରୁଷକାରକୁ ପ୍ରତିହତ କରେ ଏବଂ ପ୍ରବଳ
ପୁରୁଷକାର ମଧ୍ୟ ଦୁର୍ବଳ ଦୈବକୁ ପ୍ରତିହତ କରିଥାଏ । ଏହେତୁରୁ
ବୋଲାଯାଇଛି—

ତ୍ରିଭିର୍ବର୍ଷୈସ୍ତ୍ରିଭିର୍ମାସୈସ୍ତ୍ରିଭିଃ ପକ୍ଷୈସ୍ତ୍ରିଭିର୍ଦିନୈଃ
ଅତ୍ୟୁତ୍କଟୈଃ ପାପପୁଣ୍ୟୈରିହୈବ ଫଳମଶ୍ନୁତେ ।

ଅର୍ଥାତ୍ ବର୍ତ୍ତମାନ ଜନ୍ମରେ ମଧ୍ୟ ଅତି ଉତ୍କଟ ପାପ ବା ପୁଣ୍ୟକର୍ମ ଦ୍ୱାରା
ତିନିବର୍ଷ, ତିନିମାସ, ତିନିପକ୍ଷ ବା ତିନିଦିନ ମଧ୍ୟରେ ତା'ର ଫଳ
ଭୋଗ ହୋଇଥାଏ ।
ସୁତରାଂ ମନୁଷ୍ୟର ଆୟୁଃକାଳ ଦୈବ ଓ ପୁରୁଷକାର ଏହି ଉଭୟର
ଉପରେ ନିର୍ଭର କରେ ।

## ଆୟୁର ବୃଦ୍ଧି ଓ କ୍ଷୟର କାରଣ ଧର୍ମ ଓ ଅଧର୍ମ

ମହର୍ଷି ଆତ୍ରେୟ ଚରକ- ସଂହିତାରେ କହିଛନ୍ତି ଯେ—

"ଆଦିକାଲେ ହି ଅଦିତିସୁତସମୌଜସଃ ଅତିବିମଲ ବିପୁଳପ୍ରଭାବାଃ
ପ୍ରତ୍ୟକ୍ଷଦେବର୍ଷି ଯଜ୍ଞବିଧି ବିଧାନାଃ, ଶୈଳସାର ସଂହତସ୍ଥିର ଶରୀରାଃ
ପ୍ରସନ୍ନ ବର୍ଣ୍ଣେନ୍ଦ୍ରିୟାଃ ପବନସମ ଜବବଳପରାକ୍ରମାଃ ଚାରୁସ୍ଫିଚଃ ଅଭିରୂପ
ପ୍ରମାଣାକୃତି ପ୍ରସାଦୋ ପଚୟବନ୍ତଃ ସତ୍ୟାର୍ଜବା ନୃଶଂସ୍ୟ ଦାନଦମନିୟମ-
ତପ ଉପବାସ ବ୍ରହ୍ମଚର୍ଯ୍ୟ ବ୍ରତପରା ବ୍ୟପଗତଭୟ ରାଗ ଦ୍ୱେଷ ମୋହଲୋଭ
କ୍ରୋଧ ଶୋକମାନ ରୋଗ ନିଦ୍ରା ତନ୍ଦ୍ରାଶ୍ରମ କ୍ଲମାଳସ୍ୟ ପରିଗ୍ରହାଶ୍ଚ ପୁରୁଷା
ବଭୂବୁରମିତାୟୁଷଃ ।"

ତେଷାଂ ଉଦାର ସତ୍ତ୍ୱଗୁଣ କର୍ମଣାମ୍ ଅଚିନ୍ତ୍ୟ ରସବୀର୍ଯ୍ୟ ବିପାକପ୍ରଭାବ-
ଗୁଣସମୁଦିତାନି ପ୍ରାଦୁର୍ବଭୂବୁଃ ଶସ୍ୟାନି ସର୍ବଗୁଣ ସମୁଦିତତ୍ୱାତ୍
ପୃଥିବ୍ୟାଦୀନାଂ କୃତଯୁଗସ୍ୟାଦୌ । ଭ୍ରଶ୍ୟତି ତୁ କୃତଯୁଗେ କେଷାଂଚିଦ-
ତ୍ୟାଦାନାତ୍ ସାଂପନ୍ନିକାନାଂ ସତ୍ତ୍ୱାନାଂ ଶରୀରଗୌରବମାସୀତ୍,
ଶରୀର ଗୌରବାତ୍ ଶ୍ରମଃ, ଶ୍ରମାଦାଲସ୍ୟମ୍, ଆଲସ୍ୟାତ୍ ସଞ୍ଚୟଃ, ସଞ୍ଚୟାତ୍
ପରିଗ୍ରହଃ, ପରିଗ୍ରହାତ୍ ଲୋଭଃ ପ୍ରାଦୁରାସୀତ୍ କୃତେ ।

ତତଃ ତ୍ରେତାୟାଂ ଲୋଭାତ୍ ଅନୃତବଚନମ୍, ଅନୃତବଚନାତ୍, କାମକ୍ରୋଧମାନଦ୍ୱେଷ ପାରୁଷ୍ୟାଭିଘାତ ଭୟତାପ ଶୋକଚିନ୍ତୋଦ୍ୱେଗାଦୟଃ ପ୍ରବୃତ୍ତାଃ । ତତସ୍ତ୍ରେତାୟାଂ ଧର୍ମପାଦୋଽନ୍ତର୍ଧାନମଗମତ୍ । ତସ୍ୟ ଅନ୍ତର୍ଧାନାତ୍ ଯୁଗବର୍ଷ ପ୍ରମାଣସ୍ୟ ପାଦହ୍ରାସଃ ପୃଥିବ୍ୟାଦେଶ୍ଚ ଗୁଣପାଦ-ପ୍ରଣାଶୋଽଭୂତ୍ । ତତ୍ ପ୍ରଣାଶକୃତଶ୍ଚ ସସ୍ୟାନାଂ ସ୍ନେହବୈମଲ୍ୟ ରସବୀର୍ଯ୍ୟ ବିପାକଗୁଣ ପାଦଭ୍ରଂଶଃ । ତତସ୍ତାନି ପ୍ରଜାଶରୀରାଣି ହୀୟମାନଗୁଣପାଦୈଃ ଆହାର ବିହାରୈଃ ଯଥାପୂର୍ବମୁପଷ୍ଟଭ୍ୟମାନାନି ଅଗ୍ନିମାରୁତପରୀତାନି ପ୍ରାଗ ବ୍ୟାଧିଭିଃ ଜ୍ୱରାଦିଭିଃ ଆକ୍ରାନ୍ତାନି । ଅତଃ ପ୍ରାଣିନୋ ହ୍ରାସମବାପୁରାୟୁଷଃ କ୍ରମଶ ଇତି । ( ଚ, ବି, ୩ । ୨୪ )

ଅର୍ଥାତ୍ ଆଦ୍ୟ ଯୁଗରେ ଉତ୍ପନ୍ନ ହୋଇଥିବା ପୁରୁଷମାନେ ଦେବତାତୁଲ୍ୟ ତେଜସ୍ୱୀ ଓ ଅସାଧାରଣ ବଳବୀର୍ଯ୍ୟ ସମ୍ପନ୍ନଥିଲେ । ଦେବତା ଋଷି, ଧର୍ମ ଏବଂ ଯଜ୍ଞ ବିଧାନର ଫଳ ସେମାନେ ପ୍ରତ୍ୟକ୍ଷ କରି ପାରୁଥିଲେ । ସେମାନଙ୍କର ଶରୀର ଲୌହ ପରି ଘନ ଓ ସୁଦୃଢ଼ଥିଲା ଏବଂ ସେମାନଙ୍କର ବର୍ଣ୍ଣ ଓ ଇନ୍ଦ୍ରିୟରେ ପ୍ରସନ୍ନତା ଥିଲା ଏବଂ ସ୍ଫିକ୍ ପ୍ରଦେଶ ବା ନିତମ୍ବଦେଶ ସେମାନଙ୍କର ମନୋହର ଥିଲା । ସେମାନେ ପବନପରି ବେଗବାନ୍ ଓ ଅତି ପରାକ୍ରମୀ ଥିଲେ । ସେମାନଙ୍କର ଶରୀରର ଆକାର ଅନୁରୂପ- ପରିମାଣ, ପରିପୁଷ୍ଟି ଓ ପ୍ରସନ୍ନତା ଥିଲା । ସେମାନେ ସତ୍ୟ, ଅକ୍ରୂରତା, ଦାନ, ଦମ, ନିୟମ, ତପ, ଉପବାସ ଓ ବ୍ରହ୍ମଚର୍ଯ୍ୟ ବ୍ରତ ପରାୟଣ ଥିଲେ । ଭୟ, ରାଗ, ଦ୍ୱେଷ, ମୋହ, ଲୋଭ, କ୍ରୋଧ, ଶୋକ, ଗର୍ବ, ରୋଗ, ନିଦ୍ରା, ତନ୍ଦ୍ରା, ଶ୍ରମ, ଗ୍ଲାନି, ଆଳସ୍ୟ ଓ ମମତାଦିମାନ ସେମାନଙ୍କର ନଥିଲା । ସେମାନେ ଅପରିମିତ ଆୟୁ ( ଅର୍ଥାତ୍ ସେ ସମୟରେ ଚତୁଷ୍ପାଦରେ ଧର୍ମ ପ୍ରତିଷ୍ଠିତ ହୋଇଥିବା ଯୋଗୁଁ ଚାରିଶତ ବର୍ଷର ପରମାୟୁ ) ଭୋଗ କରୁଥିଲେ ।

ସେଇ ସମୟରେ ସେଇ ଉଦାରମନା, ସଦ୍‌ଗୁଣକର୍ମ ସମ୍ପନ୍ନ ପୁରୁଷମାନଙ୍କ ନିମନ୍ତେ ପୃଥିବ୍ୟାଦି ମହାଭୂତମାନେ ସର୍ବ ଗୁଣ ସମ୍ପନ୍ନ ହେବାଲାଗି ଧାନ୍ୟାଦି ଶସ୍ୟମାନେ ମଧ୍ୟ ଅଚିନ୍ତ୍ୟ ରସ, ବୀର୍ଯ୍ୟ, ବିପାକ ଓ ପ୍ରଭାବଶାଳୀ ହୋଇ ଉତ୍ପନ୍ନ ହେଉଥିଲେ ।

ସତ୍ୟଯୁଗର ଅବସାନରେ ବୈଦିକ ସଂସ୍କୃତିର ମୂଳ ଉତ୍ସ

ତ୍ୟାଗବାଦ କମିଗଲା । ଭୋଗବାଦର ପ୍ରାଧାନ୍ୟ ହେଲା । ସେ ସମୟରେ ଅଧିକ ଉପଭୋଗ କରିବା ହେତୁରୁ କେତେକ ଧନସମ୍ପନ୍ନ ପୁରୁଷମାନଙ୍କର ଶରୀରରେ ଗୁରୁତ୍ୱର ଆବିର୍ଭାବ ହେଲା । ସେମାନଙ୍କର ଶରୀର ଗୌରବରୁ ଶ୍ରମ ଉପୁଜିଲା । ଶ୍ରମରୁ ଆଳସ୍ୟ, ଆଳସ୍ୟରୁ ଭୋଗ୍ୟବସ୍ତୁମାନଙ୍କର ସଂଗ୍ରହ ଓ ସଞ୍ଚୟ ପ୍ରବୃତ୍ତି ବଢ଼ିବାକୁ ଲାଗିଲା । ସଞ୍ଚୟରୁ ମମତା ଅଭିମାନ ଏବଂ ସେହି ଅଭିମାନରୁ ସମ୍ମାନ ଅର୍ଥର କାରଣ ଲୋଭର ପ୍ରାଦୁର୍ଭାବ ହେଲା । ସେଥିଲାଗି ସମାଜ ମଧ୍ୟରେ ବିଷମତାର ସୃଷ୍ଟି ହେଲା, ଅଭାବ ଗ୍ରସ୍ତ ଲୋକମାନଙ୍କର ଆୟୁଃ କ୍ଷୀଣ ହୋଇ ପଡ଼ିଲା । ସେହି ଯୁଗ ଶେଷରେ ଅର୍ଥାତ୍ ତ୍ରେତା ଯୁଗର ଆରମ୍ଭରେ ଧର୍ମର ଏକପାଦ ସହିତ ଆୟୁର ଏକପାଦ ମଧ୍ୟ ନଷ୍ଟ ହୋଇ ଗଲା ।

( ଏଥିରୁ ଜଣାପଡ଼େ ଯେ- ସେହି ଅର୍ଥ ଜନିତ ବୈଷମ୍ୟ ଦୂର-ଆମର୍ଷକୁ ଦମନ କରିବା ପାଇଁ ଆଧୁନିକ ମାର୍କସ ବାଦର ଆବିର୍ଭାବ ଏହାର ଆବଶ୍ୟକତା ସୁଦୂର ଅତୀତ କାଳରେ ସତ୍ୟଯୁଗର ଶେଷରେ ହିଁ ଏ ଦେଶର ଆୟୁର୍ବେଦର ଉପଦେଶକ ଋଷିମାନେ ବୁଝି ପାରିଥିଲେ । )

ତ୍ରେତା ଯୁଗରେ ଲୋଭ ପରାୟଣ ବ୍ୟକ୍ତିମାନଙ୍କର ଲୋଭରୁ ଦ୍ରୋହ ବା ହିଂସା, ମିଥ୍ୟାବାଦିତା, କାମ, କ୍ରୋଧ, ଅଭିମାନ, ଦ୍ୱେଷ, କଠୋର ଭାଷଣ, ଅଭ୍ୟାଘାତ, ଭୟ, ଶୋକ, ସନ୍ତାପ, ଚିନ୍ତା ଓ ଉଦ୍‌ବେଗ ପ୍ରଭୃତି ମନୋବିକାର ଉତ୍ପନ୍ନ ହେଲା । ଫଳରେ ଏହି ଯୁଗ ଶେଷରେ ଧର୍ମର ଆଉ ଏକପାଦ ନଷ୍ଟ ହେବାରୁ ପୃଥିବ୍ୟାଦି ମହାଭୂତମାନଙ୍କର ଏକପାଦ ଗୁଣ ମଧ୍ୟ ଲୋପ ହୋଇଗଲା । ଧାନ୍ୟାଦି ଶସ୍ୟମାନଙ୍କର ଗୁଣପାଦ ହ୍ରାସ ହୋଇ ଗଲା । ଏହିଯୁଗ ଶେଷରେ କ୍ରମଶଃ ହୀନଗୁଣ ଆହାର ବିହାରର ଉପଯୋଗଦ୍ୱାରା ପ୍ରାଣୀମାନଙ୍କର ଧାତୁ ସାମ୍ୟ ପୂର୍ବପରି ରହିଲା ନାହିଁ । ଧାତୁ ବୈଷମ୍ୟରୁ ଜ୍ୱରାଦି ରୋଗରେ ପ୍ରଜାମାନଙ୍କର ଶରୀର ପୀଡ଼ିତ ହେବାକୁ ଲାଗିଲା । ଏବଂ ତ୍ରେତାଯୁଗ ଶେଷରେ ଅର୍ଥାତ୍ ଦ୍ୱାପର ଯୁଗର ଆରମ୍ଭରେ ଆଉ ଏକପାଦ ଆୟୁ ହ୍ରାସ ହୋଇଗଲା । ଧର୍ମର ଦୁଇପାଦ ନଷ୍ଟ ହେଲା । ଏହିସବୁ କହିବା ପରେ ପରିଶେଷରେ ସଂକ୍ଷେପରେ ଚରକ ଏହି କଥା ଲେଖିଛନ୍ତି ଯେ-

ଯୁଗେ ଯୁଗେ ଧର୍ମ ପାଦଃ କ୍ରମେଣାନେନ ହୀୟତେ

ସ୍ମିନ୍‌ମାଦନ୍ତ ଭୂତାନାମେବଂ ଲୋକଃ ପ୍ରଲୀୟତେ,

( ଚ, ବି, ୩ ଅ ୩୦-୩୨ )

ଅରୋଗାଃ ସର୍ବସିଦ୍ଧାର୍ଥାଶ୍ଚତୁର୍ବର୍ଷଶତାୟୁଷଃ

କୃତେ ତ୍ରେତାଦିଷୁ ହ୍ୟେଷାମାୟୁର୍ହ୍ରସତି ପାଦଶଃ । ( ମନୁ )

ଅର୍ଥାତ୍ ସତ୍ୟାଦି ଯୁଗକ୍ରମରେ ଧର୍ମର ଏକ ଏକ ପାଦର ହ୍ରାସ ହୁଏ, ଏବଂ ସେଥି ସଙ୍ଗେ ପୃଥିବ୍ୟାଦି ପଞ୍ଚ ମହାଭୂତମାନଙ୍କର ଗୁଣପାଦ ମଧ୍ୟ ହ୍ରାସ ହୋଇଯାଏ । ଏହି କ୍ରମରେ ଯୁଗଭେଦରେ ପ୍ରଜାମାନେ କ୍ଷୟ ପ୍ରାପ୍ତ ହୁଅନ୍ତି । ସତ୍ୟଯୁଗରେ ଚାରିପାଦ ଧର୍ମ,-ପ୍ରଜାମାନଙ୍କର ପରମାୟୁ ୪୦୦ ବର୍ଷ, ତ୍ରେତାଯୁଗରେ ତିନିପାଦ ଧର୍ମ- ପ୍ରଜାମାନଙ୍କର ପରମାୟୁ ୩୦୦ ବର୍ଷ ଦ୍ୱାପର ଯୁଗରେ ଦୁଇପାଦ ଧର୍ମ- ପ୍ରଜାମାନଙ୍କର ପରମାୟୁ ୨୦୦ ବର୍ଷ, ଏବଂ କଳିଯୁଗରେ ଏକପାଦ ଧର୍ମ ଯୋଗୁଁ ପ୍ରଜାମାନଙ୍କର ୧୦୦ ବର୍ଷ ପରମାୟୁ ନିର୍ଦ୍ଦିଷ୍ଟ ହୋଇଅଛି । * ଏବାଦେ, ବେଦୋକ୍ତ, "ତ୍ର୍ୟାୟୁଷଂ ଜମଦଗ୍ନେଃ" ଏହି ପ୍ରାର୍ଥନା ମନ୍ତ୍ରରୁ ଜଣାଯାଏ ଯେ-ମନୁଷ୍ୟ ଜଠରାଗ୍ନି, ଜ୍ଞାନାଗ୍ନି, ଓ ସଂଯମାଗ୍ନି ବଳରେ ସହସ୍ର ସମ୍ବତ୍ସର ପରମାୟୁ ଭୋଗ କରିପାରେ । ଏଥିରୁ ବୁଝାଯାଏ ଯେ- ଧର୍ମ ବଳରେ ପ୍ରଜାମାନଙ୍କର ଆୟୁର ବୃଦ୍ଧି ଏବଂ ଅଧର୍ମ ବଳରେ ଆୟୁର କ୍ଷୟ ବା ଅକାଳମୃତ୍ୟୁ ହୋଇ ଥାଏ । ସୁତରାଂ ଆୟୁର ବୃଦ୍ଧିହ୍ରାସ ଧର୍ମ ଓ ଅଧର୍ମର ଅଧୀନ ବୋଲି ବୁଝିବାକୁ ହେବ । ଅତଏବ ଚରକସଂହିତାରେ ଏହି ଭଳି ଆଉରି ଅନେକ ପ୍ରକାର ଯୁକ୍ତିମୂଳକ ଦୃଷ୍ଟାନ୍ତ ଉଲ୍ଲେଖ କରିବା ପରେ ଆତ୍ରେୟ କହିଛନ୍ତି ଯେ—

"ତସ୍ମାତ୍ ହିତୋପଚାରମୂଳଂ ଜୀବିତଂ ଅତୋବିପର୍ଯ୍ୟୟାତ୍ ମୃତ୍ୟୁରିତି"

ଅର୍ଥାତ୍ ହିତକର ଆହାର ବିହାର ମୂଳକ ହେଉଛି- ଆୟୁ, ତା'ର ବିପର୍ଯ୍ୟୟ ହେଉଛି ଅକାଳ ମୃତ୍ୟୁର କାରଣ ।

ଜ୍ଞାତବର୍ଜ୍ଜାନ ଆୟୁର୍ବ୍ବୀୟ ଅଧ୍ୟାୟରେ ମଧ୍ୟ ଏହି କଥା ଲେଖା-ଯାଇଛି-

---

* ଅଦ୍ୟାପି ହିମାଳୟରେ ପାଞ୍ଚଶହ ସାତଶହ ବର୍ଷ ବୟସର ଯୋଗୀମାନେ ଅଛନ୍ତି ବୋଲି ପ୍ରତ୍ୟକ୍ଷ ଦର୍ଶିମାନଙ୍କର ଉକ୍ତିରୁ ଜଣା ଯାଏ । ( ଦେଖ-ଅମର ବିଦ୍ୟାନାମକ ହିନ୍ଦୀପୁସ୍ତକ )

ତେଷାମିହାଂ ଶୀଳବତାଂ ନରାଣାଂ-
ସଦ୍‌ବୃତ୍ତିଭାଜାଂ ବିଜିତେନ୍ଦ୍ରିୟାଣାମ୍ ।
ଏବଂ ବିଧାନାମିଦମାୟୁରନ୍ୟ-
ଥାନ୍ୟଂସଦା ବୁଦ୍ଧମୁନି ପ୍ରବାଦଃ ।

ଅର୍ଥାତ୍ ଗୀତାଗତ ଯେଉଁ ଆୟୁ, ତାହା ପଥ୍ୟଭୋଜୀ, ସତ୍‌ସ୍ୱଭାବ ଯୁକ୍ତ, ସତ୍‌ବୃତ୍ତିଦ୍ୱାରା ଜୀବିକା ନିର୍ବାହକାରୀ ଓ ଜିତେନ୍ଦ୍ରିୟ ବ୍ୟକ୍ତିମାନଙ୍କର ହିଁ ନିଶ୍ଚିତ ହୋଇଥାଏ । ଏହାର ବିପରୀତାଚରଣରେ ଅକାଳରେ ମୃତ୍ୟୁ ହୁଏ । ଶାସ୍ତ୍ରରେ ଅକାଳମୃତ୍ୟୁର ଗୋଟିଏ ଦୃଷ୍ଟାନ୍ତ ଦିଆ ଯାଇଛି ଯେ—

" ବର୍ତ୍ତିସାଧାର ସ୍ନେହ ଯୋଗାତ୍ ମଧ୍ୟାଦ୍ଦୀପସ୍ୟ ସଂସ୍ଥିତିଃ
ବିନିର୍ଯ୍ୟାପେତ ଦୃଷ୍ଟେବମକାଲେ ପ୍ରାଣସଂକ୍ଷୟଃ ।

ଅର୍ଥାତ୍ ଯେପରି ତୈଳ ଓ ବର୍ତ୍ତୀ ଆଦି ବିଦ୍ୟମାନ ଥିଲେ ମଧ୍ୟ ପ୍ରବଳ ବାୟୁ ଯୋଗରେ ଦୀପ ନିଭିଯାଏ, ସେପରି ଦୀର୍ଘାୟୁଯୋଗ ଥିଲେ ମଧ୍ୟ ଅତିମୈଥୁନ, ଗୁରୁଦାର ହରଣ, ଦୁଃସାହସ ଓ ଦୁର୍ଘାଦି ନାନାବିଧ ଅକର୍ମଦ୍ୱାରା ଅକାଳରେ ପ୍ରାଣନାଶ ହୋଇ ଥାଏ ।

## ପୁରାଣୋକ୍ତ ଯୁଗଧର୍ମ ବିପର୍ଯ୍ୟୟ ଓ ଆୟୁଃକ୍ଷୟ ।

ମହାଭାରତରେ ଭଗବାନ୍ ବ୍ୟାସ ଲେଖିଛନ୍ତି ଯେ—

ଇତିହାସ ପୁରାଣାଭ୍ୟାଂ ବେଦଂ ସମୁପବୃଂହୟେତ୍
ବିଭେତ୍ୟଲ୍ପଶ୍ରୁତାଦ୍ ବେଦଃ ମାମୟଂ ପ୍ରହରିଷ୍ୟତି ॥
( ମହାଭାଂ ଆଦି ପର୍ବ ୧ । ୬୭ )

ଅର୍ଥାତ୍ ଇତିହାସ ଓ ପୁରାଣଦ୍ୱାରା ବେଦ ଓ ଆୟୁର୍ବେଦ ଆଦି ଉପବେଦମାନଙ୍କର ଜ୍ଞାନକୁ ବଢ଼ାଇବାକୁ ହେବ । କାରଣ—ବେଦ ଅଳ୍ପଜ୍ଞ ଲୋକଠାରୁ ମୋତେ ଏ ପ୍ରହାର କରିବ ବୋଲି ଭୟକରେ । ( ଅର୍ଥାତ୍ ଅଳ୍ପଜ୍ଞ ଲୋକର ବେଦଜ୍ଞାନ ଉପହାସମାତ୍ର ବା ଅନାସ୍ଥା ଉତ୍ପାଦକ ହୋଇ ଥାଏ )

ବୋଧହୁଏ, ଏହି ହେତୁରୁ ହିଁ ଆଚାର୍ଯ୍ୟ ସୁଶ୍ରୁତ କହିଛନ୍ତି—

" ଏକଂ ଶାସ୍ତ୍ରମଧୀୟାନଃ ନ ବିଦ୍ୟାତ୍ ଶାସ୍ତ୍ର ନିଶ୍ଚୟମ୍
ତସ୍ମାଦ୍ ବହୁଶ୍ରୁତଃ ଶାସ୍ତ୍ରଂ ବିଜାନୀୟାତ୍ ଚିକିତ୍ସକଃ । ( ସୁଂସୂଂ, ୪ ଅ )

ଅର୍ଥାତ୍ ଗୋଟିଏ ମାତ୍ର ଶାସ୍ତ୍ର ଅଧ୍ୟୟନ କରିଥିବା ବ୍ୟକ୍ତି ସକଳ

ଯଥାର୍ଥ ବୁଝିପାରେ ନାହିଁ। ସୁତରାଂ ବୈଦ୍ୟ ବହୁ-ଶାସ୍ତ୍ରଦର୍ଶୀ ହୋଇ ଆୟୁର୍ବେଦର ରହସ୍ୟ ଜାଣିବାକୁ ହେବ।

ଅତଏବ ଏଠାରେ ଆମେ ପାଠକମାନଙ୍କର ଆୟୁର୍ବେଦରୁ ଜ୍ଞାନ ବୃଦ୍ଧି ନିମନ୍ତେ ଇତିହାସ, ପୁରାଣ ଓ ଧର୍ମ ଶାସ୍ତ୍ରାଦିର ପ୍ରମାଣ ସହିତ ବର୍ତ୍ତମାନ ଦେଶ କାଳର ଅବସ୍ଥାଆଡ଼କୁ ଦୃଷ୍ଟିଦେଇ ସଂକ୍ଷେପରେ ଧର୍ମାଧର୍ମ ରହସ୍ୟ କିଛି ବିଚାର କରିବୁ।

ଶ୍ରୀମଦ୍ ଭାଗବତ ମାହାତ୍ମ୍ୟରେ ଲେଖାଅଛି ଯେ—ମହର୍ଷି ନାରଦ ବହୁ ତୀର୍ଥରେ ଇତସ୍ତତଃ ଭ୍ରମଣ କରି କରି କୌଣସିଠାରେ ଚିତ୍ତର ସନ୍ତୋଷ କାରକ ଶାନ୍ତି ସୁଖ ପାଇଲେ ନାହିଁ। ସେ ଦେଖିଲେ ଯେ—ସମଗ୍ର ପୃଥିବୀ ଅଧର୍ମର ବନ୍ଧୁ କଳିକାଳର ଅତ୍ୟାଚାରରେ ଉତ୍ପୀଡ଼ିତ ଓ ଜର୍ଜରିତ ହୋଇ ପଡ଼ିଛି। କୌଣସିଠାରେ ସତ୍ୟବ୍ୟବହାର ନାହିଁ, ଦୟା ନାହିଁ, ଦାନ ନାହିଁ, ତପସ୍ୟା ନାହିଁ, ଅନ୍ତଃ ଶୌଚ ନାହିଁ। ସବୁଠି ଜଘନ୍ୟ, ଶଠ, କୁତ୍ସିତ ବୃତ୍ତିଜୀବୀ, କପଟୀ, ଉଦରମ୍ଭରି, ମିଥ୍ୟାବାଦୀ, ମୂଢ଼, ମନ୍ଦବୁଦ୍ଧି, ହତଭାଗ୍ୟ, ଅତ୍ୟାଚାରିତ, ବ୍ୟାକୁଳ ପ୍ରଜାମାନଙ୍କର ଗଗନଭେଦୀ ଆର୍ତ୍ତନାଦ ପରିବ୍ୟାପ୍ତ ହୋଇଅଛି। ଘରେ ଘରେ ସ୍ତ୍ରୀମାନଙ୍କର ପ୍ରଭୁତ୍ୱ ବଢ଼ିଯାଇଛି। ଅନେକ ସ୍ଥଳରେ ଶ୍ୟାଳକମାନେ ବୁଦ୍ଧିଦାୟକ ହୋଇ ରହିଛନ୍ତି। ଲୋଭରୁ ସବୁଆଡ଼େ କନ୍ୟା ବିକ୍ରୟ ଚାଲିଛି, ପତିପତ୍ନୀ ମଧ୍ୟରେ କଳହ ଲାଗିଛି, ଆଶ୍ରମ ସବୁ ଯବନମାନଙ୍କ ଦ୍ୱାରା ନଷ୍ଟଭ୍ରଷ୍ଟ ହୋଇଯାଇଛି। ପବିତ୍ର ତୀର୍ଥ, ପ୍ରସିଦ୍ଧ ନଦନଦୀ, ପ୍ରତିଷ୍ଠିତ ଦେବାଳୟ ସବୁ ବହୁଳଭାବରେ ବିଧ୍ୱସ୍ତ ଓ ବିପର୍ଯ୍ୟସ୍ତ ହୋଇଯାଇଛି। ସାଧୁମାନେ ପାଷଣ୍ଡ ହୋଇଛନ୍ତି, ଲମ୍ପଟୀମାନେ ସନ୍ନ୍ୟାସି ବେଶ ଧାରଣ କରିଛନ୍ତି। କୌଣସିଠାରେ ପ୍ରକୃତ ଯୋଗୀ ନାହିଁ, ଜ୍ଞାନୀ ନାହିଁ, ସତ୍କର୍ମ, ସଦାଚାର ସମ୍ପନ୍ନ ସିଦ୍ଧପୁରୁଷ କୌଣସିଠାରେ ନାହାନ୍ତି। ଅଧର୍ମ ଆଚରଣରୁ ସମସ୍ତ ସଂସାର ନିଃସାର ହୋଇପଡ଼ିଛି। ଅସାର ଧନଲୋଭରୁ କଥାର ସାର ମଧୁରାଳାପ ସବୁଆଡ଼ୁ ଉଠିଯାଇଛି। ତୀର୍ଥମାନଙ୍କରେ ନାସ୍ତିକ, ଭ୍ରଷ୍ଟକର୍ମା, ରୌରବ ନରକ ସଦୃଶ ଦୁଷ୍ଟମାନଙ୍କର ଅବସ୍ଥାନ ହେତୁରୁ ସେସବୁ ଅସାର ହୋଇପଡ଼ିଛି। କାମୀ, କ୍ରୋଧୀ, ମହାଲୋଭୀ, କୃପଣ ଲୋକମାନେ ଭଣ୍ଡ ତପସ୍ୱି ବେଶ ଧାରଣ କରି ସବୁଆଡ଼େ ବୁଲୁଥିବାରୁ ତପସ୍ୟାର ସାର ଉଠିଯାଇଛି।

ଏହିପରି ମନର ଚଞ୍ଚଳତା ଶକ୍ତି, ଲୋଭ, କପଟତା, ନାସ୍ତିକସଂସର୍ଗ ଓ ମାହାତ୍ମ୍ୟସର ଅଭାବ ଇତ୍ୟାଦି କାରଣରୁ ଧ୍ୟାନଯୋଗ ମଧ୍ୟ ନିଷ୍ଫଳ ହୋଇଯାଇଛି ।

କଳିର ପ୍ରଭାବରୁ ସବୁଆଡ଼େ ଅନ୍ନ ବିକ୍ରୟ ( ହୋଟେଲ ପ୍ରଥା ) ଶିକ୍ଷକ ଆସନରେ ବସି ଜ୍ଞାନ ବିକ୍ରୟ ( ସ୍କୁଲ କଲେଜ ପ୍ରଥା ) ଓ ଶାସ୍ତ୍ରକାର୍ଯ୍ୟରେ ଧୀମାନଙ୍କର ଉପଯୁକ୍ତ ବିକ୍ରୟରୂପ ବ୍ୟବସାୟ ନିସଙ୍କୋଚ ଭାବରେ ଖୋଲାଯାଇଛି । ( ପାଞ୍ଚଶହ, ଛ'ଶହ ବର୍ଷ ତଳେ ଲେଖାଯାଇଥିବା ଭାଗବତ ମାହାତ୍ମ୍ୟରେ ଏହିପରି ଭାବରେ ଯେଉଁସବୁ ଦୁର୍ଦ୍ଦଶା ବର୍ଣ୍ଣନା କରାଯାଇଥିଲା, ତାହା ଏବେ ଅତି ଘୋର ରୂପ ଧାରଣ କରିଛି ) ଯୁଗଧର୍ମ ସମ୍ବନ୍ଧ ଶ୍ରୀମଦ୍‌ଭାଗବତ ଦ୍ୱାଦଶସ୍କନ୍ଧ ତୃତୀୟ ଅଧ୍ୟାୟରେ ଲେଖାଅଛି ଯେ-

"ପ୍ରଭବନ୍ତି ଯଦା ସତ୍ତ୍ୱେ ମନୋବୁଦ୍ଧୀନ୍ଦ୍ରିୟାଣିଚ ।
ତଦା କୃତଯୁଗଂ ବିଦ୍ୟାଦ୍ ଜ୍ଞାନେ ତପସି ଯଦ୍‌ରୁଚିଃ ॥ ୧ ॥
ଯଦାଽର୍ଥେ କାମେଷୁ ଭକ୍ତିର୍ଭବତି ଦେହିନାମ୍ ।
ତଦାତ୍ରେତା ରଜୋବୃତ୍ତିରିତିଜାନୀହି ବୁଦ୍ଧିମନ୍ ॥ ୨ ॥
ଯଦା ଲୋଭସ୍ତ୍ୱସନ୍ତୋଷୋ ମାନୋଦମ୍ଭୋଽଥମତ୍ସରଃ ।
କର୍ମାଣି ଚାପି କାମ୍ୟାନି ଦ୍ୱାପରଂ ତଦ୍‌ରଜସ୍ତମଃ ॥ ୩ ॥
ଯଦା ମାୟାନୃତଂ ତନ୍ଦ୍ରା ନିଦ୍ରା ହିଂସା ବିଷାଦନମ୍ ।
ଶୋକୋ ମୋହୋ ଭୟଂ ଦୈନ୍ୟଂ ସ କଳିସ୍ତାମ ସସ୍ମୃତଃ ॥ ୪ ॥

ଯେଉଁ ସମୟରେ ପ୍ରଜାମାନଙ୍କର ମନ, ବୁଦ୍ଧି ଓ ଇନ୍ଦ୍ରିୟଗୁଡ଼ିକ ଜ୍ଞାନ ଓ ତପସ୍ୟାଦି ସାତ୍ତ୍ୱିକ କର୍ମ କରିବା ପାଇଁ ରୁଚିସମ୍ପନ୍ନ ହୁଏ, ସେଇକାଳକୁ ସତ୍ୟଯୁଗ ବୋଲନ୍ତି । ୧ । ଯେତେବେଳେ ମନୁଷ୍ୟମାନଙ୍କର ଧର୍ମ, ଅର୍ଥ ଓ କାମରେ ପ୍ରବୃତ୍ତି ବଢ଼େ, ସେଇକାଳକୁ ତ୍ରେତାଯୁଗ ବୋଲିଯାଏ । ଏହା ରାଜସିକ ଯୁଗ । ୨ । ଯେଉଁ ସମୟରେ ଲୋଭ, ଅସନ୍ତୋଷ, ଅହଂକାର, ଧାର୍ମିକତା ଓ ମାତ୍ସର୍ଯ୍ୟ ଗୁଣଦ୍ୱାରା ମନୁଷ୍ୟମାନଙ୍କର ମନ ଅଭିଭୂତ ହୁଏ ଏବଂ କାମ୍ୟ କର୍ମରେ ପ୍ରବୃତ୍ତି ଜନ୍ମେ, ସେଇ ରଜଃ ତମୋ କଳୁଷିତ ଯୁଗକୁ ଦ୍ୱାପର ଯୁଗ ବୋଲିଯାଏ । ଏବଂ ଯେଉଁ ସମୟରେ ମାୟା, ମିଥ୍ୟା, ତନ୍ଦ୍ରା, ନିଦ୍ରା, ଆଳସ୍ୟ, ହିଂସା, ବିଷାଦ, ଶୋକ, ମୋହ, ଭୟ ଓ ଦୈନ୍ୟ ଦ୍ୱାରା ମନୁଷ୍ୟମାନଙ୍କର ମନ କଳୁଷିତ, ତାହା କଳିଯୁଗ ନାମରେ ଅଭିହିତ

ହୋଇଥାଏ । ବ୍ୟାସ କହିଛନ୍ତି ଯେ—କଳିଯୁଗରେ ମନୁଷ୍ୟମାନେ ନୀଚଦୃଷ୍ଟି, ହତଭାଗ୍ୟ, କାମୁକ, ନିର୍ଧନ ଓ ବହୁଭୋଜୀ ହେବେ, ସ୍ତ୍ରୀମାନେ ସ୍ୱେଚ୍ଛାଚାରିଣୀ ବା କୁଳଟା ହେବେ, ଦେଶରେ ଚୋରମାନେ ବଢ଼ିବେ, ବେଦାଦି ଋଷି ପ୍ରଣୀତ ଶାସ୍ତ୍ରକୁ ପାଷାଣ୍ଡ ନାସ୍ତିକମାନେ ମାନିବେ ନାହିଁ । ରାଜାମାନେ ପ୍ରଜା ଭକ୍ଷକ ହେବେ । ବ୍ରାହ୍ମଣମାନେ ଜିହ୍ୱା ଓ ଜନନେନ୍ଦ୍ରିୟର ତୃପ୍ତି ବିଧାନକୁ ହିଁ ପରମ ଧର୍ମ ବୋଲି ମନେ କରିବେ । ବିଦ୍ୟାର୍ଥୀମାନେ ବ୍ରହ୍ମଚର୍ଯ୍ୟ ଓ ଶୌଚ ଆଦି ସଦାଚାର ପାଳନ କରିବେ ନାହିଁ । ଗୃହସ୍ଥମାନେ ସ୍ୱୟଂ ଭିକ୍ଷାର୍ଥୀ ହେବେ, କାହାକୁ ଭିକ୍ଷା ଦେବେ ନାହିଁ । ତପସ୍ୱୀମାନେ ବନବାସ ଛାଡ଼ି ଗ୍ରାମବାସୀ ହେବେ । ସନ୍ନ୍ୟାସୀ ବା ଯତିମାନେ ଅତ୍ୟନ୍ତ ଅର୍ଥଲୋଭୀ ହେବେ । ପ୍ରଜାମାନେ ହ୍ରସ୍ୱକାୟ, ନିର୍ଲଜ୍ଜ, ବହୁଭୋଜୀ ଓ ବହୁତ ସନ୍ତାନର ଉତ୍ପାଦକ ହେବେ, ସେମାନେ ସର୍ବଦା କଟୁଭାଷୀ, ମାୟାବୀ, ଚୋର ଓ ବଡ଼ ସାହସୀ ହେବେ । ସମସ୍ତେ ବେପାରୀ ହେବେ, ବିନା ବିପତ୍ତିରେ ମଧ୍ୟ ନିନ୍ଦମୟ ଜୀବିକା ଅବଲମ୍ବନ କରିବେ । ଭୃତ୍ୟମାନେ ଦୟାଦାକ୍ଷିଣ୍ୟାଦି-ଗୁଣସମ୍ପନ୍ନ ସ୍ୱାମୀକୁ ନିର୍ଧନ ବୋଲି ତ୍ୟାଗ କରିବେ । ସ୍ୱାମୀମାନେ କୁଳକ୍ରମାଗତ ବିପନ୍ନ ଭୃତ୍ୟକୁ ତ୍ୟାଗ କରିବେ । କ୍ଷୀର ଦେଉନଥିବା ଗୋମାତାକୁ କେହି ପୋଷିବେ ନାହିଁ । ସାଧାରଣତଃ ପିତା, ମାତା, ଭ୍ରାତା, ଭଗିନୀ, ମିତ୍ର ଓ ଜ୍ଞାତିମାନଙ୍କୁ ଛାଡ଼ି ଉପସ୍ଥ ବନ୍ଧୁ ଜୋଇଁ ଓ ଶ୍ୟାଳକ ସହିତ ଗୁପ୍ତ ମନ୍ତ୍ରଣା କରିବେ । ପ୍ରାୟ ସମସ୍ତ ପ୍ରଜା ଧନହୀନ ଓ ସ୍ତ୍ରୈଣ ହେବେ । ଅଧାର୍ମିକମାନେ ସାଧୁବେଶ ଧାରଣ କରି ଉଚ୍ଚ ଆସନରେ ବସି ଧର୍ମୋପଦେଷ୍ଟା ହେବେ । ସମସ୍ତେ ସର୍ବଦା ଉଦ୍‌ବିଗ୍ନ ଏବଂ ଦୁର୍ଭିକ୍ଷ ଓ କରଭାର ପୀଡ଼ିତ ହେବେ । ପୃଥିବୀରେ ଖାଇବାକୁ ଅନ୍ନ ମିଳିବ ନାହିଁ । ଅନାବୃଷ୍ଟି ଭୟରେ ସମସ୍ତେ ଆତୁର ହେବେ । ବସ୍ତ୍ର, ଅନ୍ନପାନ, ଶୟନ, ସୁରତ; ସ୍ନାନ ଓ ଭୂଷଣ ଦ୍ୱାରା ରହିତ ହୋଇ ପ୍ରଜାମାନେ କଳିଯୁଗରେ ପିଶାଚ ସଦୃଶ ହେବେ । ସାମାନ୍ୟ ଅର୍ଥ-କୌଡ଼ି କଉଡ଼ିକ ପାଇଁ କଳହ କରି ଲୋକେ ମିତ୍ରମାନଙ୍କୁ ତ୍ୟାଗ କରିବେ; ଆତ୍ମୀୟମାନଙ୍କୁ ବର୍ଜନ କରିବେ । ଏମନ୍ତ କି ଆପଣାର ପ୍ରିୟ ପ୍ରାଣକୁ ମଧ୍ୟ ହତ୍ୟା କରିବେ । ବୃଦ୍ଧ ପିତା ମାତାଙ୍କୁ ପୁତ୍ରମାନଙ୍କୁ; କୁଳଜା ଭାର୍ଯ୍ୟାକୁ ଅନେକ ସ୍ଥଳରେ ରଖିବେ ନାହିଁ । ଯେଉଁ ବାଟରେ ନିଜର ଜିହ୍ୱା ଓ

ଜନ୍ମର ମୁକ୍ତି ହୁଏ । ସେଇ ଦିନରେ ସମସ୍ତେ ଗମନ କରିବେ । ତା'ପରେ ଦିନକୁ ଦିନ କାଳପ୍ରଭାବରୁ ଧର୍ମ, ସତ୍ୟ, କ୍ଷମା, ଦୟା, ଶୌଚ, ସ୍ମୃତି, ବଳ ଓ ଆୟୁ ନଷ୍ଟ ହେବ । କଳିଯୁଗରେ ଯା'ର ଧନ ଥିବ, ସେ ଏକା କୁଳୀନ, ଗୁଣବାନ୍ ଓ ମହତ୍ତ୍ୱସମ୍ପନ୍ନ ବୋଲାଇବ । ଏହି ଯୁଗରେ, ବଳ ଯା'ର, ନ୍ୟାୟ ତା'ର, ସେ ଅଧର୍ମ ଆଚରଣ କଲେ ମଧ୍ୟ ତାକୁ ହିଁ ଲୋକେ ଧାର୍ମିକ ବୋଲି କହିବେ । [illegible] ବ୍ୟବହାରରେ ମାୟାର ହିଁ ପ୍ରାଧାନ୍ୟ ରହିବ । ବିବାହ ସମ୍ବନ୍ଧରେ କୁଳ ଗୋତ୍ର ଆଦି କେହି ଖୋଜିବେ ନାହିଁ । ସ୍ତ୍ରୀ ପୁରୁଷର ପରସ୍ପର ଅନୁରକ୍ତି ହିଁ ବିବାହର କାରଣ ହେବ । କୁଳ ଓ ଆଶ୍ରମ ବିଚାର ଛାଡ଼ି ଯେ କୌଣସି ପୁରୁଷକୁ ଦେଖିଲେ ସ୍ତ୍ରୀମାନେ ଏବଂ ଯେ କୌଣସି ସ୍ତ୍ରୀକୁ ଦେଖିଲେ ପୁରୁଷମାନେ ଆସକ୍ତ ହେବେ । ଜଟା, ଦାଢ଼ି, କଷାୟବସ୍ତ୍ର ଓ କୌପୀନାଦି ବାହ୍ୟବେଶ କେବଳ ସନ୍ନ୍ୟାସ ଆଦି ଆଶ୍ରମ ଜ୍ଞାପକ ଚିହ୍ନ ହୋଇ ରହିବ । ଏହି ବାହ୍ୟ-ଚିହ୍ନକୁ ହିଁ ଦେଖି ଲୋକେ ଧର୍ମାନ୍ତର ବା ଆଶ୍ରମାନ୍ତର ଗ୍ରହଣ କରିବେ । ଟଙ୍କା ଯା'ର ନ୍ୟାୟ ତାର ହିଁ ହେବ । [illegible] ଅନର୍ଗଳ ଭାବରେ ଏଣୁ ତେଣୁ କହିବା ବ୍ୟକ୍ତିଙ୍କୁ ହିଁ ଲୋକେ ପଣ୍ଡିତ ବୋଲି ବୁଝିବେ । ଦରିଦ୍ରକୁ ଅଭଦ୍ର ଏବଂ ବହୁଭାଷୀ ଦାମ୍ଭିକଙ୍କୁ ସାଧୁଲୋକ ବୋଲି ସମସ୍ତେ ଗଣନା କରିବେ । ଏ ଯୁଗରେ ହିଁ ସ୍ତ୍ରୀ ପୁରୁଷ ପରସ୍ପରକୁ ସ୍ୱୀକାର କରିବାର ନାମ-ବିବାହ ହେବ । ସ୍ନାନ କେବଳ ଭୂଷଣ ବୋଲାଇବ । ଦୂରରେ ଥିବା ନଦୀ ବା ଜଳାଶୟର ନାମ-ତୀର୍ଥ ହେବ । କେଶଧାରଣର ନାମ-ଲାବଣ୍ୟ ଏବଂ ଆପଣାର ପେଟ ପୋଷିବାର ନାମ-ପୁରୁଷାର୍ଥ ହେବ । ଯେ ଯେତିକି ଧୃଷ୍ଟତା ଦେଖାଇ ପାରିବ, ତା'ର କଥା ସତ୍ୟ ବୋଲି ସେତିକି ପ୍ରମାଣିତ ହେବ । କୁଟୁମ୍ବ ପୋଷିପାରୁଥିବା ଲୋକ ଚତୁର ବୋଲି ଖ୍ୟାତିଲାଭ କରିବ । ଲୋକେ ବାହ୍ୟ ପ୍ରତିଷ୍ଠା ପାଇଁ ଧର୍ମାନୁଷ୍ଠାନ କରିବେ । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏମାନଙ୍କ ମଧ୍ୟରେ ଯେ ବଳିଷ୍ଠ ଅର୍ଥାତ୍ ଅନ୍ୟକୁ ଜୋର ମାରିବାକୁ ସମର୍ଥ, ସେ ପ୍ରଜା ପାଳକ ବା ରାଜା ହେବ । ଦସ୍ୟୁଧର୍ମୀ, ନିର୍ଦ୍ଦୟ, ଲୋଭୀ ରାଜାମାନେ ପ୍ରଜାମାନଙ୍କର ଧନ ଓ ସ୍ତ୍ରୀ ଅପହରଣ କରିନେବେ । ପ୍ରଜାମାନେ ପର୍ବତ ଅରଣ୍ୟରେ ବାସ କରିବେ । ସେଠାରେ ଫଳ ମୂଳାଦି ବନ୍ୟଦ୍ରବ୍ୟ ଖାଇ ବଞ୍ଚିବେ ।

କେତେ ଅତିବୃଷ୍ଟି, ଅନାବୃଷ୍ଟି, ଦୁର୍ଭିକ୍ଷ ଓ କରଭାରରେ ପୀଡ଼ିତ ହୋଇ ନଷ୍ଟହେବେ । କେତେ ବୃଷ୍ଟି ଅଭାବରୁ ଖାଦ୍ୟ ନ ମିଳି, ବର୍ଷାରେ ତିନ୍ତି, ଶୀତରେ ଆତୁର ହୋଇ କ୍ଷୁଧା, ତୃଷା, ରୋଗ ଓ ଚିନ୍ତାରେ ଜର୍ଜରିତ ଓ ସନ୍ତପ୍ତ ହେବେ । ଏହି ପରିସ୍ଥିତିରେ ପ୍ରଜାମାନଙ୍କର ଶରୀର କ୍ଷୀଣ ଏବଂ ବର୍ଣ୍ଣାଶ୍ରମ ଧର୍ମ ଧ୍ୱଂସ ହୁଅନ୍ତେ ନାସ୍ତିକତା, ଚୌର୍ଯ୍ୟ, ମିଥ୍ୟାବାଦିତା ଓ ଅନେକ ଦୁଷ୍କର୍ମମାନଙ୍କର ବୃଦ୍ଧି ପାଇବ । ପ୍ରାୟ ସମସ୍ତେ ଶୂଦ୍ର ସମାନ ହେବେ । ଗାଈମାନେ ଆକାରରେ ଛେଳିପରି ହେବେ ଏବଂ ଛେଳିପରି ଦୁଗ୍ଧ ଦେବେ । ସକଳ ଆଶ୍ରମ ସବୁ ଗୃହତୁଲ୍ୟ ହେବ, ବନ୍ଧୁ ଭାବ କେବଳ ଯୌନ ସମ୍ବନ୍ଧରେ ରହିବ । ମାଣ୍ଡିଆ, କୋଦ କୁଆଁ ପ୍ରଭୃତି କ୍ଷୁଦ୍ରଧାନ୍ୟ ହିଁ ଲୋକଙ୍କର ଖାଦ୍ୟହେବ । ଫଳବନ୍ତ ବୃକ୍ଷମାନେ ନିଷ୍ଫଳ ହେବେ । ମେଘମାନେ ନିର୍ଜଳ ଓ ବିଦ୍ୟୁତ୍ ବହୁଳ ହେବେ । ଗୃହ ଗୁଡ଼ିକ ଧନ ଜନ ଶୂନ୍ୟହୋଇ ରହିବ । ଏହିପରି ଭାବରେ କଳିଯୁଗ ଶେଷରେ ସାଧାରଣର ପରମାୟୁ ୩୦ ବର୍ଷ ହେବ । ( ଭାଗବତ ୧୨ ସ୍କନ୍ଧ ଅ ୨ ) ଏହିପରି ନ୍ୟୂନାଧିକ ଭାବରେ ମହାଭାରତର ବନପର୍ବରେ, ମହାନିର୍ବାଣ ତନ୍ତ୍ର ଓ ତନ୍ତ୍ରଶିରୋମଣି ଗ୍ରନ୍ଥରେ ଅଧର୍ମ ଜନକ କଳିର ସ୍ୱରୂପ ବର୍ଣ୍ଣନା କରାଯାଇଛି ।

## ମହାଭାରତ ବନପର୍ବରେ କଳିଯୁଗ ବର୍ଣ୍ଣନା
## ମାର୍କଣ୍ଡେୟ ଯୁଧିଷ୍ଠିର ସମ୍ବାଦ ।

ସତ୍ୟଯୁଗ ସର୍ଜନା କଳିରେ ସଂହାର ।
କରନ୍ତି ବସି ସେ ସାବଧୀ ଦେବୀବର ॥
ଯାଗ ଦାନ ବ୍ରତାଦି ନକରି ବାଧରେ ।
କଳିଯୁଗ କରିବେ ତା ପ୍ରତିନିଧିରେ ॥
ବ୍ରାହ୍ମଣମାନେ ଶୂଦ୍ର କରମ କରିବେ ।
ଅଭକ୍ଷ୍ୟ ଭକ୍ଷ୍ୟ ଦୁଇ ପଦାର୍ଥ ଭକ୍ଷିବେ
ଶୂଦ୍ର ଜନେ ଧନତ ଅରଜ ପାରିବେ ।
କ୍ଷତ୍ରିୟଙ୍କ ଧର୍ମ ପାଳ ଦନ ନେବେ ॥
ମ୍ଲେଚ୍ଛଙ୍କର ଏକା ଯେ ପ୍ରକାଶିବ ଭାଗ୍ୟ ।
ସେହିମାନେ ଏକା କରିବେ ମହାଭୋଗ ॥

ସମସ୍ତେ ଅଳ୍ପ ଖାଇ ଅଳ୍ପ ଜଳ ଦେବେ ।
ଯେ ଯାହା କରମ ଧରମେ ନ ରହିବେ ॥
ପୁଷ୍ପ ଫଳମାନ ସୁବାସ ସ୍ୱାଦୁ ଛାଡ଼ି ।
ସାନ ହୋଇବେ ସେ ଗଛ ମାନେ ଟି ନ ବଢ଼ି ॥
ସ୍ତ୍ରୀମାନେ ମୁଖରେ କରିଣ ସୁରତ ।
କରାଇବେ ପୁରୁଷମାନଙ୍କୁ ଉନ୍ମତ୍ତ ॥
କଳଯୁଗ ଉଛନ୍ନ ହୋଇଲା ଛତ୍ର ଦେବେ ।
ନୋହିଲେ ଉପାସରେ ଯାଅ ତୁ ବୋଲିବେ ॥
ଯେଉଁ ଦ୍ୱିଜ ମାନେଟି ହୋଇବେ ସପାଠ ।
ଧନ ବିନା କେହି ନ ପଢ଼ାଇବେ ପାଠ ॥
ସ୍ତ୍ରୀ ବଳ୍କଠାରୁ ଯେବେ ପୁରୁଷେ ଟି ଯିବେ ।
କାଦେବ ବୋଲିକରି ଆଗେ ପଚାରିବେ ॥
ଦୁହାଳି ଗାଈମାନେ ଅଳ୍ପ କ୍ଷୀର ଦେବେ ।
ଭୂମିଙ୍କରେ ବହୁତ କୂଅ ଏ ବସିବେ ॥
କୃଷ୍ଣବଧ କରିବା ରଜାଠାରୁ ଦାନ ।
ଖାଇବାକୁ ଅନୁସରିବେ ଦ୍ୱିଜ ଜନ ॥
ଲୋଭ ମୋହ ଦୁଇ କଥାରେ ଯୁକ୍ତ ହୋଇ ।
କରିବେ ଭିକ୍ଷା ଦ୍ୱିଜେ ବୁଲି ବୁଲି ମହୀ ॥
ବଇଷ୍ଣବ ହୋଇଣ ଦ୍ୱିଜ ଶୁଦ୍ର ଜନ ।
ବଣିଜ କରି କରି ହାଣ୍ଡୁଥିବେ ଧନ ॥
ଦ୍ରବ୍ୟ ଖାଇବାକୁ ବ୍ରାହ୍ମଣେ ବ୍ରହ୍ମବୃତ୍ତି ।
ବେଶ୍ୟାରି କନ୍ୟାଣ ଥିବେ ଆଶ୍ରକରି ॥
ମଦ ପିଇଣ ଶୁଦ୍ର ଘରିଯା ଗମନ ।
କଥା ଭଲକରି ସେ ହେଉଥିବେ ମନ ॥
ଗୃହି ଆଶ୍ରମ ଯାକ ଛାଡ଼ିଣ ପାଷଣ୍ଡ ।
ବୁଝିବା କରୁଥିବେ ସବେହୋଇ ଦଣ୍ଡ ।
ଫଳ ଭାତ ଯେତେ ସେ ସବୁଗେ ଖାଇବେ ।
ତାହା ତୋଳି ଦେଖାଇ ସଭାରେ କହିବେ

କାଳରେ ମେଘମାନେ ଛାଡ଼ନ୍ଦେଇ ବୃଷ୍ଟି ।
ଅକାଳରେ ଜଳରେ ପୁରାଇବେ ସୃଷ୍ଟି ॥
ଶୁଣିବାକୁ ଅଧର୍ମ କଥା ଆଦରିବେ ।
ଧର୍ମକଲା ଲୋକ କଥା ନ କରିବେ ॥
ଗଣ୍ଡାଙ୍କର ଦ୍ରବ୍ୟକୁ ବୋଲିବେ ଦାଗଣ୍ଡା ।
ଦାକିବେ ଗଣି ସେ କଉଡ଼ି ଗଣ୍ଡା ଗଣ୍ଡା ॥
ଧରମ କଲା ଲୋକମାନେ ଯିବେ ମରି ।
ପାପି ଲୋକେ ରହିବେ ବାଳକୁ ଧଳା କରି ॥
ଦାନକୁ ଭାତ ଯେବେ ଘରେ ରହିଥିବ ।
ତେବେ ସବୁ ଦ୍ରବ୍ୟ କିଣିବା ଲୋଭ ହେବ ॥
ବିଶ୍ୱାସ କରି ଦ୍ରବ୍ୟ ରଖିବ ଯା ଘରେ ।
ସେ ତାହା ନେଇ ଯିବେ ବଳରେ କଳରେ ॥
ବରଷ ସାତ ସ୍ତ୍ରୀଗ୍ରଠାରେ ଟି ଏଗାର ।
ବରଷ ପୁଅଜାତ କରିବ କୁମର ॥
ଷୋଳ ବରଷରେ ଯେ ପାଚି ଯିବ ବାଳ ।
ତହିଁ ଅନୁକ୍ରମ ଘୋଟିବ ଆସି କାଳ ॥
ବୃଦ୍ଧଙ୍କୁ ଘୃଣା କରି କୁଳ ସ୍ତ୍ରୀ ଗଣ ।
ଯିବେ ଦାସଠାକୁ ସୁରତ ଇଚ୍ଛା କରି ॥
ଯୁଧିଷ୍ଠିର ଉଠିଣ ବସିଲେ ଆସନେ ।
ମାର୍କଣ୍ଡେୟଙ୍କୁ ଯେ ପୁଚ୍ଛିଲେ ତୋଷ ମନେ ॥
ଆଉରି ଥରେ କଳିଯୁଗର ଚରିତ ।
ଆହେ ଋଷି ମୋ ଆଗେ କରନ୍ତ ବଦାନ୍ତ ॥
କଳିଯୁଗେ ଲୋକେ କରିବେ କି ଆହାର ।
କେତେ ବଳ ବୁଦ୍ଧି ଯେ ଆୟୁ ତାହାଙ୍କର ॥
ଏହା ତୁମ୍ଭଠାରୁ ଶୁଣିଲେ ଭଲକରି ।
ଦେବ ମୋର ହୃଦ ସଂଶୟ ଦୂର କରି ॥
କଳିଯୁଗ କେବେ ସରିବ ସତ୍ୟଯୁଗ ।
ହେବ ତାହା ମଧ୍ୟ କହିବ ମହାଭାଗ ॥

ମାର୍କଣ୍ଡେୟଙ୍କୁ ବୋଲନ୍ତି କଳିଯୁଗ ଶୁଣ ।
କହିବା ଯାହା ଶୁଣ ଦେଇକରି ମନ ॥
ସତ୍ୟରେ ଚାରିପାଦ ତ୍ରେତାରେ ତିନି ପାଦ ।
ଦ୍ୱାପରେ ଦୁଇପାଦ କଳିରେ ଏକପାଦ ॥
ଧର୍ମକୁ ରୁହିଁ ବଳ ହେଉଛି ଏରୂପେ ।
ଜାଣ ଯୁଧିଷ୍ଠିର କହିଲି ସଂକ୍ଷେପେ ॥
କଳିଯୁଗରେ ସତ୍ୟ ହୋଇବନି ଜଣା ।
ଏଥୁ ମରିଯିବେ ବୁଦ୍ଧିକୁ କରି ବଣା ॥
ବିଦ୍ୟା ଛାଡ଼ି ଅବିଦ୍ୟା ଆଶ୍ରୟ କରିବେ ।
କାମ ଲୋଭ ଧରି କଥାରେ ଧନ ନେବେ ॥
କ୍ଷତ୍ରିୟ ବ୍ରାହ୍ମଣ ବୈଶ୍ୟ ଏ ତିନି ଜାତି ।
ଶୂଦ୍ରପରି କଳିରେ କରିବେଟି ଗତି ॥
ଅନ୍ତ୍ୟଜମାନେ ହେବେ ମଧ୍ୟମ ପ୍ରକାର ।
ମଧ୍ୟମେ କରିବେ ଅନ୍ତ୍ୟଜଙ୍କ ବ୍ୟବହାର ॥
ଛତଲଗା ମିଛି ବୋଦୁଅ ଘାତ ଖାଇ ।
ବଞ୍ଚିବେ ଲୋକେ ଗ୍ରହମାନଙ୍କୁ ପୂଜାଇ ॥
ଘାସୀଆ ହୋଇବ ଏକା ମିଷ୍ଟ ସୁ ଦୁଷ୍କର ।
ମାଛ ମାଉଁସ ହେବ ସକଳ ଆହାର ॥
କଳିଯୁଗ ପ୍ରାନ୍ତେ ଗାଈ ତ ନରହିବେ ।
ଇଡ଼ିକା ଛେଳି ଦୁଧ ସମସ୍ତେ ଖାଇବେ ॥
ନଷ୍ଟ ଭୂମି କୋଡ଼ରେ କୋଡ଼ି ଦେଇ ।
ବୁଣିବେ ଧାନ ପେଟ ପୋଷିବାର ପାଇଁ ॥
ହବିଷ୍ୟ ନ କରିବେ ହେବ ଯେବେ ଶ୍ରାଦ୍ଧ ।
ଖାଇଯିବେ ଲୋଭେ ହେବାକୁ ପେଟ ବୋଧ ॥
କଳିଷପୂ କାଳରେ ପୁଅ ବାପୁ ଦୁଇ ।
ଖାଇବେ ଭାତ କେହି କାହାକୁ ନଦେଇ ॥
ବ୍ରାହ୍ମଣେ ଶତା ମାନ ଦେହରେ କାଟିବେ ।
ଜପ ତପ ହୋମ ଗୋଟିଏ ନକରିବେ ॥

ଧନ ଲୋଭରେ ବାପୁ ପୁଅ ମରାମରି ।
ହୋଇବେ ଅଧର୍ମୀକୁ, କିଛି ନଡରି ॥
ବିଧବା ସ୍ତ୍ରୀଙ୍କର ଧନକୁ ହରିବେ ।
ଦୁର୍ବଳକୁ ବଳ ଦେଖାଇ ଡରାଇବେ ॥
କଳିଯୁଗ ରାଜାଏ ପାପକୁ ନଡରି ।
ବଳେ ନେବେ ଧନକୁ ଦଣ୍ଡନେଇ କରି ॥
ଯୁଗ ପ୍ରାନ୍ତେ ମନକୁ ଜଣାଏଁ ଚୋର ।
କରିଣ ହିଂସା ହେବେ ହେବାକୁ ସଂସାର ॥
ମନୁଆଁ ଏ ଡରୁଆ ଶଙ୍କିଥି ରହିବେ ।
ଡରୁଆ ଏ ମନୁଆଁ ହୋଇ ଗରଜିବେ ॥
ବୁଢ଼ାମାନେ ବାଳକ ପରି ଆଚରଣ ।
କରିଣ ଧନ ନେବେ ନ ଜାଣି କାରଣ ॥
କୁଳଜାତି ଗାଳ ଦେବେଟି ଏକ ଜାତି ।
କରିବେ ଚଣ୍ଡାଳୁଣୀ ସଙ୍ଗରେ ସୁରତି ॥
ବାପୁ ପୁଅ ପତି ନପ ଭାର୍ଯ୍ୟା ମର୍ଯ୍ୟାଦା ।
ଛାଡ଼ିଣ ଦେଇଥିବେ ସମସ୍ତେ ସର୍ବଦା ॥
ଗହନ ପ୍ରଧାନ ହେବ ଯେଉଁ ଦେଶ ।
ତହିଁରେ ପାଇ ଜନ ରହିବେ ଶେଷଶେଷ ॥
ସମସ୍ତ ମନେ ମନେ ହୋଇବେ ଶାନ୍ତ ବାରୁ ।
ହୋଇବେଟି ସମସ୍ତେ ସମସ୍ତଙ୍କ ଗୁରୁ ॥
ଦେବତା ତ କେହି ନୟନେ ନ ଦେଖିବେ ।
ଇଡ଼ିକାକୁ ଦେବତା ବୋଲିଣ ପୂଜିବେ ॥
ଦେବ. ପଦ୍ମ ସମସ୍ତ ଘରେ ହେବ ଶୂନ୍ୟ ।
ନେବା ପଦୁଟିରେ ଯେ ପୂରିବ ସଦନ ॥
ଆମ୍ବବୃକ୍ଷ ଛେଦନ ନିମ୍ବକୁ ପାଳିବେ ।
କଦମ୍ବ ବଣ ଫୁଲି ବୋଲି ଲଗାଇବେ ॥
ବ୍ରାହ୍ମଣର ପାଦ ସେବନକୁ ଆଶ୍ରା କରି ।
ପୁଣି ମାରୁଥିବେ ତାହାର ବାଳ ଧରି ।

ବାଟରେ ପିବା ଲୋକ ପାଣି ନପାଇ ।
ଗଛ ମୂଳରେ ଟି ପଡ଼ିବେ ମରି ଶୋଇ ॥
ଗୁଣ୍ଡିତ ଥିବେ ମୂର୍ଖ ପୁର ଗ୍ରାମ ଯାକ ।
ଯମେ ଲକ୍ଷ୍ମୀ ପୁରି ରହିବେ ଆସି ଲୋକ ॥
ଚନ୍ଦ୍ର ସୂର୍ଯ୍ୟ ଯେ ବୃହସ୍ପତି ସେହି କାଳେ ।
ପୁଷ୍ୟା ନକ୍ଷତ୍ରକୁ ଟି ମିଳିବେ ଏକାବେଳେ ॥
( ମହାଭାରତ କୃଷ୍ଣସିଂହ କୃତ-ଅନୁବାଦ )

## ଅକାଳ ମୃତ୍ୟୁ ଓ ଜନପଦ ଧ୍ୱଂସର କାରଣ ଅଧର୍ମ

ଚରକ ସଂହିତାର ଟୀକାକାର ଚକ୍ରପାଣି ଲେଖିଛନ୍ତି ଯେ—
ପ୍ରାଣୀମାନଙ୍କର ରୋଗ ଉତ୍ପତ୍ତିର କାରଣ ଦୁଇ ପ୍ରକାର-ସାଧାରଣ କାରଣ ( ପବ୍ଲିକ୍ ) ଓ ଅସାଧାରଣ କାରଣ- ( ପର୍ସନାଲ ) । ଜଳ, ବାୟୁ, ଦେଶ, ଓ କାଳ ଦୋଷରୁ ଜନ ସାଧାରଣର ଯାହା ରୋଗୋତ୍ପାଦକ ହୁଏ, ତାକୁ ସାଧାରଣ ରୋଗ କାରଣ ବୋଲନ୍ତି । ଏବଂ ଯାହା ବ୍ୟକ୍ତି ବିଶେଷର ଆହାର ବିହାର ଦୋଷରୁ ସେହି ବ୍ୟକ୍ତିର ଶରୀର ବାତାଦି ଦୋଷ ପ୍ରକୁପିତ ହୋଇ ରୋଗ ଜନ୍ମାଇ ଥାଏ, ତାକୁ ଅସାଧାରଣ ରୋଗ କାରଣ ବୋଲିଥାଏ । ବାୟୁ, ଜଳ, ଦେଶ ଓ କାଳରୂପ ପ୍ରକୃତି ବିକୃତ କାରଣରୁ ଜନପଦ ଧ୍ୱଂସ ହୋଇଯାଏ । ଏହାର କାରଣ ଅଧର୍ମ ।

ଏଥି ସମ୍ବନ୍ଧରେ ମହର୍ଷି ଆତ୍ରେୟଙ୍କୁ ଅଗ୍ନିବେଶ ପଚାରିଛନ୍ତି ଯେ—
ଭଗବନ୍! ଭିନ୍ନ-ପ୍ରକୃତି, ଭିନ୍ନ ପ୍ରକାର ଆହାର ବିହାର ସେବୀ, ଭିନ୍ନ ପ୍ରକାର ଦେହବଳ ଓ ମନୋବଳ ବିଶିଷ୍ଟ, ଭିନ୍ନ ସାତ୍ମ୍ୟ ଓ ଭିନ୍ନ ବୟସର ପ୍ରାଣୀମାନେ ଏକ ସମୟରେ ଏକ ପ୍ରକାର ରୋଗରେ ଆକ୍ରାନ୍ତ ହୋଇ ମରନ୍ତି କାହିଁକି ? ଏହି ପ୍ରଶ୍ନର ଉତ୍ତରରେ ଆତ୍ରେୟ କହନ୍ତି ଯେ- ବତ୍ସ ! ଅଗ୍ନିବେଶ ! ତୁମେ କହିବା ପ୍ରକାରେ ମନୁଷ୍ୟମାନଙ୍କର ପ୍ରକୃତି ଓ ଆହାର ବିହାରାଦି ଭିନ୍ନହେଲେ ମଧ୍ୟ ଏହି ସଂସାରରେ ଏପରି କେତେଗୁଡ଼ିଏ ପଦାର୍ଥ ଅଛି, ଯାହାକି ସର୍ବସାଧାରଣ ପକ୍ଷରେ ସମାନଭାବରେ ଅବସ୍ଥିତ ଏବଂ ଯାହା ବିକୃତ ହେଲେ ସମାନ କାଳରେ ସମାନ ଲକ୍ଷଣଯୁକ୍ତ ରୋଗ ଉତ୍ପନ୍ନ ହୋଇ ଜନ ପଦଧ୍ୱଂସ କରିଥାଏ ।

ସମସ୍ତ ଜନପଦରେ ସର୍ବସାଧାରଣ ପକ୍ଷରେ ଯେଉଁ ପଦାର୍ଥ ଗୁଡ଼ିକ

ସମାନ ଭାବରେ ରୋଗ ହୋଇଥାଏ, ତାହା ହେଉଛି – ବାୟୁ, ଜଳ, ଦେଶ ଓ କାଳ ।

ସେଥି ମଧ୍ୟରେ ଏହି ଭଳି ବାୟୁ, ଜଳ, ଦେଶ ଓ କାଳକୁ ସର୍ବସାଧାରଣର ଆରୋଗ୍ୟ ବିଘାତକ ବୋଲି ବୁଝିବ ।

ଯଥା—୧ ବାୟୁ - ଯେଉଁ ଋତୁରେ, ଯେଉଁ ଦିଗରୁ, ଯେପରି ଭାବରେ ସ୍ୱଭାବତଃ ବାୟୁ ପ୍ରବାହିତ ହେବାର ନିୟମ, ସେହି ନିୟମର ବିରୁଦ୍ଧରେ, ଅସ୍ଥିର ବା ଅତି ଚଞ୍ଚଳ, ଅତି କଠୋର, ଅତିଶୀତ ବା ଅତି ଉଷ୍ଣ, ଅତି ରୁକ୍ଷ ବା ଅତି କ୍ଲିନ୍ନ, ଅତ୍ୟନ୍ତ ଭୟଙ୍କର ଶବ୍ଦଯୁକ୍ତ, ପରସ୍ପର ପ୍ରତିହତ, ଅତିକୁଣ୍ଡଳିତ ( ଚକ୍ରାକାରରେ ଘୂର୍ଣ୍ଣିତ ) ଅସୁଖକର; ଦୁର୍ଗନ୍ଧ, ଏବଂ ବାଷ୍ପ, ଧୂଳି, ବାଲି, ଓ ଧୂମୋପହତ ହୋଇ ଯଦି ବାୟୁ ବହେ, ( ତାହା ସର୍ବସାଧାରଣର ଆରୋଗ୍ୟ ବିଘାତକ ବୋଲି ବୁଝିବ ।

୨ ଜଳ – ଏହିପରି ଜଳ ଯଦି ଅସ୍ୱାଭାବିକ, ଗନ୍ଧ, . ବର୍ଣ୍ଣ, ରସ ଓ ସ୍ପର୍ଶଯୁକ୍ତ ହୋଇଥାଏ, ଏବଂ ଲକ୍ରୁଆ ରହେ । ପୁଣି ଯହିଁରେ ପୂର୍ବପରି ଜଳଚର ଜନ୍ତୁ ସଞ୍ଚାର କରନ୍ତି ନାହିଁ କି ମତ୍ସ୍ୟାଦି ଜଳଜନ୍ତୁ ବଞ୍ଚନ୍ତି ନାହିଁ ଏବଂ ଯାହା ଅପ୍ରୀତିକର ଓ ଗୁଣହୀନ ହୋଇଥାଏ, ( ସେହି ଜଳ ସର୍ବସାଧାରଣର ଆରୋଗ୍ୟ ବିଘାତକ ବୋଲି ବୁଝିବ )

୩ ଦେଶ– ଏହିପରି ଉର୍ବରା ସ୍ଥାନ ବା ଦେଶ ଯଦି ଅସ୍ୱାଭାବିକ ବର୍ଣ୍ଣ, ଗନ୍ଧ, ରସ ଓ ସ୍ପର୍ଶଯୁକ୍ତ କିମ୍ବା ଅତି କ୍ଲିନ୍ନ ( ସନ୍ତସନ୍ତିଆ ) ହୋଇଥାଏ, ଯହିଁରେ ସର୍ପ, ହିଂସ୍ରଜନ୍ତୁ, ମଶା, ଶଲଭ ( ଝିଣ୍ଟିକା ବା ପଙ୍ଗପାଳ ) ମାଛି, ମୂଷା, ଉଲୂକ, ଗୃଧ୍ର ( ଗିଧିଣୀ ବା ଶାଗୁଣା ) ବିଲୁଆ ଆଦି ଶ୍ମଶାନଗୃଷ୍ଟ ଜନ୍ତୁ ଅଧିକ ଭାବରେ ଦେଖାଯାନ୍ତି । ଏବଂ ଯହିଁରେ ତୃଣ, ଲତା, ଉପବନାଦିର ଶାଖା ବିସ୍ତାର ଅଭୂତପୂର୍ବ ଭାବରେ ବଢ଼ିଥାଏ, ଏବଂ ଯହିଁରେ ଧାନ୍ୟାଦି ଶସ୍ୟ ସବୁ ଝଡ଼ି ଶୁଖି ନଷ୍ଟ ହୋଇଯାଏ, ବାୟୁ ଧୂମ୍ରାକାର ଦେଖାଯାଏ । ପକ୍ଷୀମାନେ ବିକଟ ରବ କରନ୍ତି, କୁକ୍କୁରମାନେ ଆର୍ତ୍ତନାଦ କରନ୍ତି, ଏବଂ ଯହିଁରେ ମୃଗ ଆଦି ପଶୁମାନେ, ପକ୍ଷୀମାନେ ବ୍ୟାକୁଳ ହୋଇ ଇତସ୍ତତଃ ବୁଲନ୍ତି, ଏବଂ ଯେଉଁ ଦେଶବାସୀ ବିବେକଭ୍ରଷ୍ଟ ଓ ଅର୍ଥ କାମରେ ଆସକ୍ତ ହୋଇ ଧର୍ମ, ସତ୍ୟ, ଲଜ୍ଜା, ସଦାଚାର ଓ ସଦ୍‌ଗୁଣ ସବୁ ଛାଡ଼ିଦିଅନ୍ତି, ଏବଂ ଯହିଁରେ ଜଳାଶୟ ଗୁଡ଼ିକ

ନକ୍ଷତ୍ରର ସ୍ପନ୍ଦନ ଓ ଉଲ୍କାପାତ ହେଉଥିବା ଦେଖାଯାଏ ଏବଂ ପୃଥିବୀରେ ଥରକୁ ଥର ଉଲ୍କାପାତ, ବାୟୁର ସଂଘର୍ଷ ଜାତ ନିର୍ଘାତ ଓ ଭୂମିକମ୍ପ ହେଉଥିବା ଅନୁଭୂତ ହୁଏ, ପୃଥିବୀର ନଦୀଙ୍କର ଶବ୍ଦ ଓ ରୂପ ପ୍ରତ୍ୟେକ ହେଉଥିବ ଏବଂ ସୂର୍ଯ୍ୟ, ଚନ୍ଦ୍ର ଓ ତାରକାପୁଞ୍ଜ ରୂକ୍ଷ, ତାମ୍ର, ଅରୁଣ ଓ ଶ୍ୱେତମେଘ ଜାଲଦ୍ୱାରା ଆବୃତ ହେଉଥିବା ପ୍ରତୀତ ହୁଏ ଏବଂ ପୃଥିବୀରେ ବାସ କରୁଥିବା ପ୍ରାଣୀମାନେ, ଚଞ୍ଚଳ, ଉଦ୍‌ବେଗ, [illegible], [illegible], ଅନ୍ଧକାରବୃତ ଏବଂ ଭୂତ ପ୍ରେତ ଆବିଷ୍ଟ ହେଉଥିବା ଦେଖାଯାନ୍ତି, ସେହି ଦେଶ ଆରୋଗ୍ୟ ବିଘାତକ ବୋଲି ବୁଝିବାକୁ ହେବ

୪ କାଳ-ଯଦି ଋତୁମାନଙ୍କର ସ୍ୱାଭାବିକ ଲକ୍ଷଣ ବିପରୀତ ହୁଏ, ଅର୍ଥାତ୍ ଶୀତଦିନରେ ବର୍ଷା ଓ ଖରା, କିମ୍ବା ଖରାଦିନରେ ଶୀତ ଓ ଅଧିକ ବର୍ଷା ହୁଏ. ଅଥବା ଖରା, ବର୍ଷା ଓ ଶୀତର ଅତିଯୋଗ କିମ୍ବା ଅଳ୍ପ ଯୋଗ ହୁଏ, ତାହା ସର୍ବସାଧାରଣର ଆରୋଗ୍ୟ ବିଘାତକ ବୋଲି ବୁଝିବ ।

ଏହିଭଳି ଦୋଷଯୁକ୍ତ- ବାୟୁ, ଜଳ, ଦେଶ ଓ କାଳ ଜନପଦ ଧ୍ୱଂସକର ବୋଲି ପଣ୍ଡିତମାନେ କହିଛନ୍ତି ।

ଏଥି ମଧ୍ୟରେ ବାୟୁଦୋଷଠାରୁ ଜଳଦୋଷ, ତାଠାରୁ ଦେଶଦୋଷ ଏବଂ ଦେଶଦୋଷଠାରୁ କାଳଦୋଷ ଗୁରୁତର ଓ ଅପରିହାର୍ଯ୍ୟ ଅଟେ । କାରଣ କି- ବାୟୁ ଦୂଷିତ ବା ବିକୃତ ହେଲେ ନିର୍ବାତ ସ୍ଥାନରେ ରହି ସେଥିରୁ ଆତ୍ମରକ୍ଷା କରାଯାଇପାରେ । କିନ୍ତୁ ଜଳଦୋଷରୁ ଏହିପରି ସହଜରେ ଆତ୍ମରକ୍ଷା ହୁଏନାହିଁ କାରଣ-ଜଳପାନ ନ କରି କେହି ବଞ୍ଚିପାରେ ନାହିଁ । ଦୂଷିତ ଜଳକୁ ସିଝାଇ ଏବଂ ଔଷଧି ଯୋଗରେ ଶୁଦ୍ଧ କରି ତା'ର ଦୋଷ ପରିହାର କରାଯାଇପାରେ, କିନ୍ତୁ ତା' ଅପେକ୍ଷା ଭୂମିଦୋଷ ପରିହାର ଦୁଷ୍କର ଅଟେ । ଅବଶ୍ୟ ସ୍ଥାନ ପରିବର୍ତ୍ତନ ଦ୍ୱାରା କଥଞ୍ଚିତ୍ ଭୂମିଦୋଷ ପରିହାର କରାଯାଇପାରେ । କିନ୍ତୁ କାଳଦୋଷ ଦୁଷ୍ପରିହର । ଏହା ସର୍ବାପେକ୍ଷା ଗରିଷ୍ଠ ଦୋଷ । କାଳ ଦୋଷକୁ ଅତିକ୍ରମ କରିବାର କୌଣସି ଉପାୟ ନାହିଁ ।

ଏହି ସବୁ ଜନପଦଧ୍ୱଂସର କାରଣ ଶୁଣି ପୁଣି ଅଗ୍ନିବେଶ ଆତ୍ରେୟଙ୍କୁ ପଚାରିଲେ, ଭଗବନ୍ ! ଏହି ବାୟୁ, ଜଳ, ଦେଶ ଓ କାଳ ଦୂଷିତ ବା ବିକୃତ ହେବାର କାରଣ କ'ଣ ?

ଏହାର ଉତ୍ତରରେ ଆତ୍ରେୟ କହିଲେ—ବତ୍ସ ! ବାୟୁ, ଜଳ, ଦେଶ ଓ କାଳ * ଏମାନଙ୍କର ଯେଉଁ ବିକୃତି ବା ବିପର୍ଯ୍ୟୟ ଘଟେ, ତା'ର ମୂଳକାରଣ—ଅଧର୍ମ । * ସେହି ଅଧର୍ମର ମୂଳକାରଣ-ପ୍ରଜାମାନଙ୍କର

---

* ଅଥର୍ବ ବେଦୀୟ କାଲସୂକ୍ତ

କାଲେ ଭୂମିମସୃଜତ କାଲେ ତପତି ସୂର୍ଯ୍ୟଃ ।
କାଲେ ହ ବିଶ୍ୱା ଭୂତାନି କାଲେ ଚକ୍ଷୁର୍ବିପଶ୍ୟତି ॥
କାଲେ ମନଃ କାଲେ ପ୍ରାଣଃ କାଲେ ନାମ ସମାହିତମ୍ ।
କାଲେନ ସର୍ବାନନ୍ଦନ୍ତ୍ୟାଗତେନ ପ୍ରଜାଇମାଃ ॥ ( ୧୯ । ୫୩ )
କାଲଃ ସୃଜତି ଭୂତାନି କାଲଃ ସଂହରତେ ପ୍ରଜାଃ ।
କାଲଃ ସୁପ୍ତେଷୁ ଜାଗର୍ତ୍ତି ତସ୍ମାତ୍ କାଲସ୍ତୁ କାରଣମ୍ ॥
ଅନାଦି ନିଧନଂ କାଲୋ ରୁଦ୍ରଃ ସଙ୍କର୍ଷଣଃ ସ୍ମୃତଃ ।
ନସୋଽସ୍ତି ପ୍ରତ୍ୟୟୋ ଲୋକେ ଯଂ କାଲୋ ନ ଗ୍ରସତେ ॥

* ବାୟ୍ୱାଦୀନାଂ ବୈଗୁଣ୍ୟ ମୂଳମ୍ ଅଧର୍ମଃ ।

ଇତ୍ୟୁକ୍ତ୍ୱା ଜନପଦୋଦ୍ଧ୍ୱଂସନେ କାରଣାନି ପୁନରପି ଭଗବନ୍ତମ୍ ଆତ୍ରେୟମ୍ ଅଗ୍ନିବେଶ ଉବାଚ-ଅଥ ଖଲୁ ଭଗବନ୍ କୁତୋମୂଳମ୍ ଏଷାଂ ବାୟ୍ୱାଦୀନାଂ ବୈଗୁଣ୍ୟମୁତ୍ପଦ୍ୟତେ, ଯେନୋପପନ୍ନା ଜନପଦମ୍ ଉଦ୍ଧ୍ୱଂସୟନ୍ତୀତି ।

ତମୁବାଚ ଭଗବାନାତ୍ରେୟଃ—ସର୍ବେଷାମପ୍ୟଗ୍ନିବେଶ, ବାୟ୍ୱାଦୀନାଂ ଯଦ୍‌ବୈଗୁଣ୍ୟ ମୁତ୍ପଦ୍ୟତେ, ତସ୍ୟ ମୂଳମଧର୍ମଃ । ତନ୍ମୂଳଂ ଚାସତ୍‌କର୍ମ ପୂର୍ବକୃତମ୍ । ତୟୋର୍ୟୋନିଃ ପ୍ରଜ୍ଞାପରାଧ ଏବ ତଦ୍ ଯଥା—ଯଦାବୈ ଦେଶ ନଗର ନିଗମ ଜନପଦ ପ୍ରଧାନାଃ ଧର୍ମମୁତ୍କ୍ରମ୍ୟ ଅଧର୍ମେଣ ପ୍ରଜାଃ ପ୍ରବର୍ତ୍ତୟନ୍ତି, ତଦାଶ୍ରିତୋପାଶ୍ରିତାଃ ପୌରଜାନପଦାଃ ବ୍ୟବହାରୋ-ପଜୀବିନଶ୍ଚ ତମଧର୍ମମ୍ ଅଭି ବର୍ଦ୍ଧୟନ୍ତି । ତତଃ ସୋଽଧର୍ମଃ ପ୍ରସଭଂ ଧର୍ମମ୍ ଅନ୍ତର୍ଧତ୍ତେ । ତତସ୍ତେଽନ୍ତର୍ହିତଧର୍ମାଣୋ ଦେବତାଭିଃ ଅପି ତ୍ୟଜ୍ୟନ୍ତେ ତେଷାଂ ତଥାନ୍ତର୍ହିତ ଧର୍ମାଣାମ୍ ଅଧର୍ମ ପ୍ରଧାନାନାମ୍ ଅପକ୍ରାନ୍ତ ଦେବତାନାମ୍ ଋତବୋ ବ୍ୟାପଦ୍ୟନ୍ତେ । ତେନନାପୋ ଯଥାକାଳଂ ଦେବୋ ବର୍ଷତି, ନ ବା ବର୍ଷତି, ବିକୃତଂ ବା ବର୍ଷତି । ବାତା ନ ସମ୍ୟକ୍ ଅଭିବାନ୍ତି । କ୍ଷିତିର୍ବ୍ୟାପଦ୍ୟତେ, ସଲିଲାନ୍ୟୁପଶୁଷ୍ୟନ୍ତି, ଓଷଧୟଃ

ପୂର୍ବକୃତ ଅଶୁଭ କର୍ମ ଏବଂ ସେହି ଅଶୁଭ କର୍ମର ମୂଳକାରଣ ପ୍ରଜ୍ଞାପରାଧ ବା ବୁଦ୍ଧିଦୋଷ । ଯେତେବେଳେ [illegible] ନିଗମ, ( ବାଣିଜ୍ୟକେନ୍ଦ୍ର ) ଓ ଗ୍ରାମର ଅଧିପତିଗଣ ଧର୍ମ ଅତିକ୍ରମ କରି ଅଧର୍ମରେ ପ୍ରଜାମାନଙ୍କୁ ପରିଚାଳନ କରନ୍ତି, ସେତେବେଳେ ସେମାନଙ୍କର ଆଶ୍ରିତ ଓ ଉପାଶ୍ରିତ ପୁରବାସୀ ଓ ଜନପଦବାସୀମାନେ ଏବଂ ବେପାରୀମାନେ ଆପଣାର ଆଚାର ଓ ବ୍ୟବହାର ଦ୍ୱାରା ସେହି ଅଧର୍ମକୁ ବୃଦ୍ଧିକରନ୍ତି । ଅଧର୍ମ ପ୍ରବଳ ହେଲେ ଧର୍ମ ଅନ୍ତର୍ହିତ ହୁଏ । ତା'ର ଫଳରେ ଅଧର୍ମାଚାରୀ ପ୍ରଜାମାନଙ୍କୁ ଦେବତାମାନେ ପରିତ୍ୟାଗ କରନ୍ତି । ସେହି ଧର୍ମହୀନ, ଅଧର୍ମପ୍ରଧାନ, ଦେବବର୍ଜିତ ପ୍ରଜାମାନଙ୍କ ସମ୍ବନ୍ଧରେ ଋତୁମାନେ ସ୍ୱଭାବହୀନ ହୋଇଯାଆନ୍ତି । ଏହେତୁରୁ ଯଥାକାଳରେ ଇନ୍ଦ୍ରଦେବତା ବୃଷ୍ଟି କରନ୍ତିନାହିଁ । କିମ୍ବା ସର୍ବଥା ଅନାବୃଷ୍ଟି ବା ବିକୃତ ବୃଷ୍ଟି ହୁଏ । ବାୟୁ ସ୍ୱାଭାବିକ ନିୟମରେ ପ୍ରବାହିତ ହୁଏନାହିଁ । ପୃଥିବୀ ଗୁଣହୀନ ହୋଇପଡ଼େ, ଜଳ ଶୁଖିଯାଏ, ଧାନ୍ୟାଦି ଔଷଧି ସବୁ ସ୍ୱଭାବହୀନ ହୋଇ ବିକୃତି ପ୍ରାପ୍ତ ହୁଅନ୍ତି, ସେହେତୁରୁ ଅନ୍ନପାନର ଦୋଷରୁ ଅଭାବରୁ ଜନପଦ ଧ୍ୱଂସ ହୋଇଯାଏ ।

---

ସ୍ୱଭାବଂ ପରିହାପ୍ୟ ଆପଦ୍ୟନ୍ତେ ବିକୃତିଂ । ତତ ଉଦ୍ଧ୍ୱଂସନ୍ତେ ଜନପଦାଃ ସ୍ପୃଶ୍ୟାଭ୍ୟବହାର୍ଯ୍ୟ ଦୋଷାତ୍ ।

ତଥା ଶସ୍ତ୍ରପ୍ରଭବସ୍ୟାପି ଜନପଦୋଦ୍ଧ୍ୱଂସସ୍ୟ ଅଧର୍ମ ଏବ ହେତୁର୍ଭବତି । ଯେଽତିପ୍ରବୃଦ୍ଧ ଲୋଭ କ୍ରୋଧ ମୋହମାନାସ୍ତେ ଦୁର୍ବଲାନ୍ ଅବମତ୍ୟ ଆତ୍ମସ୍ୱଜନ ପରୋପଘାତାୟ ଶସ୍ତ୍ରେଣ ପରସ୍ପରମଭିକ୍ରାମନ୍ତି, ପରୈର୍ବା ଅଭିକ୍ରାମ୍ୟନ୍ତେ ।

ରକ୍ଷୋଗଣାଦିଭିର୍ବା ବିବିଧୈର୍ଭୂତସଂଘୈଃ ତମ୍ ଅଧର୍ମମ୍ ଅନ୍ୟଦ୍ ବା ପ୍ୟପଚାରାନ୍ତରମୁପଲଭ୍ୟ ଅଭିହନ୍ୟନ୍ତେ ।

ତଥା ଅଭିଶାପସ୍ୟାପି ଅଧର୍ମ ଏବ ହେତୁର୍ଭବତି । ଯେ ଲୁପ୍ତଧର୍ମାଣୋ ଧର୍ମାଦପେତାସ୍ତେ ଗୁରୁବୃଦ୍ଧସିଦ୍ଧର୍ଷି ପୂଜ୍ୟାନ୍ ଅବମତ୍ୟ ଅହିତାନି ଆଚରନ୍ତି । ତତଃ ତାଃ ପ୍ରଜାଃ ଗୁର୍ବାଦିଭିଃ ଅଭିଶପ୍ତାଃ ଭସ୍ମତାଂ ଉପୟାନ୍ତି ପ୍ରାଗେବାନେକ ପୁରୁଷ କୁଲବିନାଶାୟ ନିୟତ ପ୍ରତ୍ୟୟୋପଲମ୍ଭାତ୍ ନିୟତାଶ୍ଚାପରେ ଅନିୟତପ୍ରତ୍ୟୟୋପଲମ୍ଭାତ୍- ଅନିୟତାଶ୍ଚ ପରେ । ପ୍ରାଗପି ଚ ଅଧର୍ମାଦୃତେ ନା ଶୁଭୋତ୍ପତ୍ତିଃ ଅନ୍ୟତୋଽଭୂତ୍ ।

( ଚ° ବି° ୩ । ୨୮ )

ଯୁଦ୍ଧବିଗ୍ରହରୁ ଯେଉଁ ଜନପଦଧ୍ୱଂସ ହୋଇଥାଏ, ତା'ର ମୂଳକାରଣ **ମଧ୍ୟ** ହେଉଛି ଅଧର୍ମ । ଯେଉଁମାନେ ଅଜ୍ଞାନବଶ ଲୋଭଗ୍ରସ୍ତ ହୋଇ **ଲୋଭ,** କ୍ରୋଧ, ମୋହ ଓ ଅହଂକାରର ପ୍ରେରଣାରେ ଦୁର୍ବଳ **ଉପରେ** **ଅତ୍ୟାଚାର** କରନ୍ତି, ଆତ୍ମୀୟ ସ୍ୱଜନ ଓ ପରର ଉପଘାତ **କରନ୍ତି** ଶସ୍ତ୍ରଦ୍ୱାରା ପରସ୍ପରକୁ ଆକ୍ରମଣ କରନ୍ତି, କିମ୍ବା ପରଦ୍ୱାରା **ଆକ୍ରାନ୍ତ** ହୁଅନ୍ତି, ସେମାନେ ଧ୍ୱଂସ ପାଇଯାନ୍ତି ।

ଏହିପରି ରାକ୍ଷସ ବା ଜୀବାଣୁ ବିଷ ( ଜୀବାଣୁ ବିଷ୍ **ପ୍ରାଦୁର୍ଭାବ** ) ସଂସର୍ଗ ହେତୁରୁ **କିମ୍ବା** ଅପମାନିତ ଗୁରୁ, ବୃଦ୍ଧ, ସିଦ୍ଧପୁରୁଷ**ମାନଙ୍କର** ଅଭିଶାପ ହେତୁରୁ ଯେଉଁ ଜନପଦଧ୍ୱଂସ ହୁଏ, ତା'ର ମୂଳକାରଣ **ମଧ୍ୟ** ଅଧର୍ମ । ( ଚ° ବି° ୩ । ୧୧ )

ଅଧର୍ମର କାରଣ ପ୍ରଜ୍ଞାପରାଧ । ପ୍ରଜ୍ଞାପରାଧରୁ ପ୍ରଜାମାନେ **ଅଧର୍ମ** **ଆଚରଣ** **କରନ୍ତି**, ସେଥିଲାଗି ମାନବ ସମାଜର ଧୀରେ ଧର୍ମ **ଅଭିଭୂତ** ହୁଏ । ଏବଂ ଏହାଦ୍ୱାରା ପ୍ରକୃତି ଓ ବାୟୁ ପ୍ରଭୃତି **ବିକୃତ** ହୋଇ ଜନପଦଧ୍ୱଂସ ହୋଇଯାଏ ।

ଏଠାରେ ପ୍ରଶ୍ନ ଏହିପରି—ପ୍ରଜ୍ଞା କାହାକୁ କହନ୍ତି ? ତା'ର ଅପରାଧ **କଣ** ? ସେହି ଅପରାଧରୁ ଉତ୍ପନ୍ନ ଅଧର୍ମର ସ୍ୱରୂପ କ'ଣ ? ଏବଂ ଧର୍ମ କାହାକୁ କହନ୍ତି ?

## ଆୟୁ, ଆରୋଗ୍ୟ ଓ ଧର୍ମର ଜନନୀ ଅଟେ—ପ୍ରଜ୍ଞା

ଅସ୍ମମାନଙ୍କର ଶରୀରସ୍ଥ କର୍ମ-ପୁରୁଷ ବା ଆତ୍ମାର ବିଶୁଦ୍ଧ ବୋଧ ଶକ୍ତିକୁ ପ୍ରଜ୍ଞା ବୋଲାଯାଏ । ପ୍ରଚଳିତ ଭାଷାରେ ପ୍ରଜ୍ଞାକୁ ବୁଦ୍ଧି ବୋଲନ୍ତି । * ଯଥାର୍ଥ ବୁଦ୍ଧିମାନ ପୁରୁଷ ହିଁ ପ୍ରାଜ୍ଞ ବା ପଣ୍ଡିତ ନାମରେ ଅଭି

* ବୁଦ୍ଧିଃ ପ୍ରଜ୍ଞୋପଲବ୍ଧିଶ୍ଚ ତଥା ଖ୍ୟାତିର୍ଧୃତିଃ ସ୍ମୃତିଃ
**ପର୍ଯ୍ୟାୟ** ବାଚକୈଃ ଶବ୍ଦୈର୍ମହାନାତ୍ମା ନିଗଦ୍ୟତେ । ( **ଅନୁଗୀତା** )

ଯଃ ସର୍ବତ୍ରାନଭିସ୍ନେହସ୍ତତ୍ତତ୍ ପ୍ରାପ୍ୟ ଶୁଭାଶୁଭମ୍
ନାଭିନନ୍ଦତି ନ ଦ୍ୱେଷ୍ଟି **ତସ୍ୟପ୍ରଜ୍ଞା ପ୍ରତିଷ୍ଠିତା** ॥
ପ୍ରଜହାତି ଯଦା କାମାନ୍ ସର୍ବାନ୍ ପାର୍ଥ ମନୋଗତାନ୍
ଆତ୍ମନ୍ୟେବାତ୍ମନା ତୁଷ୍ଟଃ **ସ୍ଥିତପ୍ରଜ୍ଞସ୍ତଦୋଚ୍ୟତେ** ॥ (ଗୀତା)
“**ଋତମ୍ଭରା ତତ୍ରପ୍ରଜ୍ଞା**” ( **ପାତଞ୍ଜଳ ଦର୍ଶନ** )

ହୁଏ । ଶାସ୍ତ୍ରରେ ଲେଖାଅଛି ଯେ—

ଶ୍ରୁତଂ ପ୍ରଜ୍ଞାନୁଗଂ ଯସ୍ୟ ପ୍ରଜ୍ଞା ଚୈବ ଶ୍ରୁତାନୁଗା ।
ଅସମ୍ଭିନ୍ନାର୍ଯ୍ୟମର୍ଯ୍ୟାଦଃ ପଣ୍ଡିତାଖ୍ୟାଂ ଲଭେତ ସଃ ॥
ମାତୃବତ୍ ପରଦାରେଷୁ ପରଦ୍ରବ୍ୟେଷୁ ଲୋଷ୍ଟ୍ରବତ୍ ।
ଆତ୍ମବତ୍ ସର୍ବଭୂତେଷୁ ଯଃ ପଶ୍ୟତି ସ ପଣ୍ଡିତଃ ॥

ଅର୍ଥାତ୍ ଯା'ର ଶାସ୍ତ୍ର ଅଧ୍ୟୟନ ବା ଶ୍ରୁତ ବୁଦ୍ଧିର ଅନୁଗତ ଏବଂ ଯା'ର ବୁଦ୍ଧି ଶାସ୍ତ୍ରାନୁଗାମିନୀ ଅଟେ, ଯିଏ ଆର୍ଯ୍ୟ ମର୍ଯ୍ୟାଦାକୁ ଅତିକ୍ରମ କରେ ନାହିଁ, ସେ ପଣ୍ଡିତ ପଦବାଚ୍ୟ ହୁଏ । ଆଉର ମଧ୍ୟ-ଯେ ପର ସ୍ତ୍ରୀକୁ ମାତୃତୁଲ୍ୟ ପରଧନକୁ ଢେଙ୍କାଳ ମାଟିତୁଲ୍ୟ ଏବଂ ସମସ୍ତ ପ୍ରାଣୀଙ୍କୁ ଆତ୍ମତୁଲ୍ୟ ମନେକରେ, ତାକୁ ପଣ୍ଡିତ କହାଯିବ । ଆଉଗୋଟିଏ କଥାଯେ, ସଦାସତ୍ ବିବେକନୀ ବୁଦ୍ଧିର ନାମ ହିଁ ପଣ୍ଡା, ସେହି ପଣ୍ଡା ବା ବିଶୁଦ୍ଧ ସାତ୍ତ୍ୱିକବୁଦ୍ଧି ଯାର ଥାଏ, ତାକୁ ପଣ୍ଡିତ ବୋଲାଯାଏ । ଏହି ସମସ୍ତ ସଂସାର ବୁଦ୍ଧିର ହିଁ ପ୍ରକାଶ । ସକଳ ବେଦର ସାର ଭୂତ—ଗାୟତ୍ରୀ ମନ୍ତ୍ରରେ ବୁଦ୍ଧିର ଶୁଦ୍ଧି ନିମନ୍ତେ ହିଁ ବୁଦ୍ଧିର ପ୍ରେରକ ପରମେଶ୍ୱରଙ୍କୁ "ଧିୟୋୟୋନଃ ପ୍ରଚୋଦୟାତ୍" ବୋଲି ପ୍ରାର୍ଥନା ବା ଧ୍ୟାନକରାଯାଇଥାଏ ।

ସର୍ବଶାସ୍ତ୍ରର ସାର ଗ୍ରହଣୀ ବୁଦ୍ଧିକୁ ମେଧା ବୋଲାଯାଏ । ଏହି ମେଧା ହେଉଛି-ମହାମାୟାର ଏକ ବିଶ୍ୱପ୍ରକାଶିନୀ ବିଭୂତି । ସେହେତୁରୁ ସପ୍ତଶତୀ ଚଣ୍ଡୀରେ "ମେଧାସି ଦେବି ବିଦିତାଖିଳ ଶାସ୍ତ୍ରସାରା" ବୋଲି ଦେବୀଙ୍କୁ ସ୍ତୁତି କରାଯାଇଛି । ସମସ୍ତ ଶାସ୍ତ୍ରଚର୍ଚ୍ଚା, ସମସ୍ତ ଧର୍ମ କର୍ମ ଓ ସମସ୍ତ ସଦାଚାରର ପାଳନର ଉଦ୍ଦେଶ୍ୟ ହେଉଛି-ପ୍ରଜ୍ଞାପ୍ରସାଦନ ବା ବୁଦ୍ଧି ଶୋଧନ । ସେହେତୁରୁ ବୋଲାଯାଇଛି ଯେ--

ଯସ୍ୟ ନାସ୍ତି ସ୍ୱୟଂ ପ୍ରଜ୍ଞା ଶାସ୍ତ୍ରଂ ତସ୍ୟ କରୋତି କିମ୍ ।
ଲୋଚନାଭ୍ୟାଂ ବିହୀନସ୍ୟ ଦର୍ପଣଃ କିଂ କରିଷ୍ୟତି ॥

ଅର୍ଥାତ୍ ଯା'ର ସ୍ୱୟଂ ପ୍ରଜ୍ଞା ନାହିଁ ତା'ର ଶାସ୍ତ୍ରାଧ୍ୟୟନ ନିରର୍ଥକ, ଯେ ଅନ୍ଧ, ତା'ର ପକ୍ଷରେ ଦର୍ପଣ ନିଷ୍ପ୍ରୟୋଜନ । ପ୍ରଜ୍ଞା ବା ବୁଦ୍ଧି ତିନିପ୍ରକାର ଯଥା—୧-ସାତ୍ତ୍ୱିକୀ ୨ ରାଜସୀ ୩ ତାମସୀ

## ପ୍ରଜ୍ଞା ବା ସାତ୍ତ୍ୱିକୀ ବୁଦ୍ଧିର ଲକ୍ଷଣ ।

ପ୍ରବୃତ୍ତିଂଚ ନିବୃତ୍ତିଂଚ କାର୍ଯ୍ୟାକାର୍ଯ୍ୟେ ଭୟାଭୟେ
ବନ୍ଧଂ ମୋକ୍ଷଂ ଚ ଯୋ ବେତ୍ତି ବୁଦ୍ଧିଃ ସା ପାର୍ଥ ସାତ୍ତ୍ୱିକୀ । ( ଗୀତା )

ଅର୍ଥାତ୍ ଭୟଜନକ ଅକାର୍ଯ୍ୟରୁ ନିବୃତ୍ତି ଏବଂ ଅଭୟଜନକ ସତ୍କାର୍ଯ୍ୟରେ ପ୍ରବୃତ୍ତି ଏବଂ ବନ୍ଧନ ଓ ମୁକ୍ତି ଏ ସବୁ ବିଷୟ ଯେଉଁ ବୁଦ୍ଧି ଦ୍ୱାରା ସର୍ବଦା ଜଣାଯାଏ, ତା'ର ନାମ ସାତ୍ତ୍ୱିକୀ ବୁଦ୍ଧି ।

ବ୍ରହ୍ମା ବା ଋଷି ପ୍ରଣୀତ ବେଦାଦି ସମସ୍ତ ଧର୍ମଶାସ୍ତ୍ର, ସମସ୍ତ ଅର୍ଥଶାସ୍ତ୍ର, ସମସ୍ତ କାମଶାସ୍ତ୍ର ଓ ସମସ୍ତ ମୋକ୍ଷଶାସ୍ତ୍ର ଏହି ସାତ୍ତ୍ୱିକୀ ବୁଦ୍ଧି ପ୍ରସୂତ ଅଟେ । ସାତ୍ତ୍ୱିକୀ ବୁଦ୍ଧିକୁ ହିଁ ଋଷି ଓ ବ୍ରହ୍ମା * ବୋଲାଯାଏ । ମନୁଷ୍ୟମାନଙ୍କର ଐହିକ ସୁଖଶାନ୍ତି ନିମନ୍ତେ ଓ ପାରତ୍ରିକ କଲ୍ୟାଣ ନିମନ୍ତେ ସେମାନଙ୍କର ଗୁଣକର୍ମ ଭେଦରେ ବ୍ରାହ୍ମଣାଦି ଚାରିବର୍ଣ୍ଣ ଓ ବ୍ରହ୍ମଚର୍ଯ୍ୟାଦି ଚାରି ଆଶ୍ରମ ବ୍ରହ୍ମା ସୃଷ୍ଟି କଲେ ବୋଲି କିମ୍ବା ଆପ୍ତ ଋଷିମାନଙ୍କର ଉପଦେଶରେ ଦେଶ କାଳ ଅନୁସାରେ ଏହି ସବୁ ଧର୍ମଭେଦ ପ୍ରବର୍ତ୍ତିତ ହୋଇଥିବାରୁ ଅନାଦି ଅତୀତ କାଳରୁ ଶାସ୍ତ୍ରମାନଙ୍କରେ ଯାହା ଲେଖାଅଛି, ସେହିସବୁ ସ୍ଥଳରେ ବ୍ରହ୍ମା ଓ ଋଷି ପଦର ଅର୍ଥ ତର୍କସମ୍ମତ ବୁଦ୍ଧି ବୋଲି ମୂଳତଃ ନିର୍ଣ୍ଣୟ କରିବାକୁ ହେବ ।

୧. ଏହି ସାତ୍ତ୍ୱିକ ବୁଦ୍ଧି ହିଁ ଅନନ୍ତ ରୂପରେ ବିଭକ୍ତ ସର୍ବଭୂତ ମଧ୍ୟରେ ଅବ୍ୟୟ, ଅବିଭକ୍ତ ଏକାତ୍ମ ଜ୍ଞାନ ପ୍ରତିଷ୍ଠା କରେ ।

୨. ଏହି ବୁଦ୍ଧି ବଳରେ ହିଁ ସମସ୍ତ ଭୂତମାନଙ୍କ ମଧ୍ୟରେ ଆତ୍ମାକୁ ଏବଂ

---

* ନରାଣାଂ ପରମୋ ବ୍ରହ୍ମା ମନନେଷ୍ଟୀ ଧିୟାମୟଃ
ନନ୍ଦାନ୍ତନେ ବୁଦ୍ଧିରୂପଃ ଜଗଦ୍ ବ୍ରହ୍ମାଣ୍ଡ କାରକଃ ॥
ଅସ୍ମାତ୍ସ୍ୱଂ ତତୋ ବୁଦ୍ଧିଃ ମତ୍ତ୍ୱେଷାଂ ଚରମେଷ୍ୱିନ
ମନୁଷ୍ୟା ଅବ୍ରୁବନ୍ ଦେବାନୁତ୍କ୍ରାମତ୍ସୁ ଋଷିଷ୍ୱଥ ॥
କୋ ନ ଋଷିର୍ଭବିତାସ୍ମାକଂ ଧର୍ମମାର୍ଗ ପ୍ରଦର୍ଶକଃ
ତର୍କମେତଂ ଋଷିଂ ଦେବାଃ ପ୍ରାୟଚ୍ଛନ୍ ଶ୍ରେଷ୍ଠ୍ୟ ଏବତେ ॥
( ନଂ ସ୍ମା° ) ( ନିରୁ° ପରିଶି° )

ବୁଦ୍ଧେରେବ ହି ପର୍ଯ୍ୟାୟ ସ୍ତର୍କୋ ଯତ୍ତ୍ୱ ନିଷୂକ୍ତଂ ତଥା ।
( ମା° ଧ°ସା )

ଆତ୍ମାରେ ସମସ୍ତ ପ୍ରାଣୀଙ୍କୁ ଦର୍ଶନ କରିବାର ଯୋଗ୍ୟତା ବା ସର୍ବତ୍ର ସମଦୃଷ୍ଟି ଲାଭ କରାଯାଇଯାଏ ।

ମୋଟ କଥା ଏହିଯେ—

(୧) ସର୍ବ ଭୂତସ୍ଥିତ ଆତ୍ମାକୁ ଏକ ପରମାତ୍ମାଙ୍କର ପୃଥକ୍ ପୃଥକ୍ ଭାବରେ ଅବସ୍ଥାନ ବୋଲି ସାତ୍ତ୍ୱିକ ବୁଦ୍ଧି ବୁଝେ । ଏବଂ ସମସ୍ତ ଭୂତ ମଧ୍ୟରେ ନାମ, ରୂପ ଓ ବ୍ୟବହାର ପାର୍ଥକ୍ୟ ହେତୁରୁ ସେହି ସମସ୍ତର ପୃଥକ୍ ପୃଥକ୍ ସତ୍ତା ଅଛି ବୋଲି ରାଜସିକ ବୁଦ୍ଧି ଅବଧାରଣା କରେ । ଯେଉଁ ବୁଦ୍ଧି ତତ୍ତ୍ୱାର୍ଥକୁ ଜାଣେ ନାହିଁ, ଆଂଶିକ ପଦାର୍ଥକୁ ପୂର୍ଣ୍ଣ ବୋଲି ମନେକରି ତହିଁରେ ଆସକ୍ତ ହୁଏ ଏବଂ ଯାହା ଅହୈତୁକ ଓ ଅତି ଅଳ୍ପ, ତାହା ତାମସିକ ବୁଦ୍ଧି ଅଟେ ।

(୨) ସାତ୍ତ୍ୱିକ ବୁଦ୍ଧି ଯେଉଁସବୁ କର୍ମ କରେ, ତାହା ଶାସ୍ତ୍ରୋକ୍ତ ନିତ୍ୟ ଆସକ୍ତିରହିତ ଓ ନିଷ୍କାମ ଏବଂ ରାଜସିକ ବୁଦ୍ଧି ଯେଉଁସବୁ କର୍ମ କରେ, ତାହା ଅହଂଭାବ ଯୁକ୍ତ, ସକାମ ଓ ବହୁ ଆୟାସଯୁକ୍ତ । ତାମସ ବୁଦ୍ଧି ଯେଉଁସବୁ କର୍ମ କରେ, ତାହା ହିତାହିତ ବିଚାରଶୂନ୍ୟ, ଲାଭ ନଷ୍ଟ ବିବେଚନା ହୀନ ଏବଂ ତଦ୍ୱାରା ଅନ୍ୟର ଅନିଷ୍ଟ ହେବକି ନାହିଁ ଏବଂ ତାହା ନିଜର ଶକ୍ତି ସାଧ୍ୟ କି ନା ଏ ସବୁ ବିଚାର ନଥାଇ କେବଳ ମୋହର ପ୍ରେରଣାରେ ସେହି କର୍ମ କରିଥାଏ ।

(୩) ସାତ୍ତ୍ୱିକ ବୁଦ୍ଧି କୃତ କର୍ମ—ଆରମ୍ଭରେ ବିଷବତ୍ ଲାଗୁ ପରିଣାମରେ ଅମୃତ ତୁଲ୍ୟ ସୁଖକୁ ପ୍ରଦାନ କରେ ଏବଂ ରାଜସ ବୁଦ୍ଧି କୃତକର୍ମ-କାମିନୀ କାଞ୍ଚନାଦି ବିଷୟେନ୍ଦ୍ରିୟ ସଂଯୋଗ ଜନିତ ଆପାତ ରମଣୀୟ ଓ ପରିଣାମରେ ବିଷତୁଲ୍ୟ ଦୁଃଖ ଦେଇଥାଏ ଏବଂ ତାମସ ବୁଦ୍ଧି କୃତକର୍ମ-ଆରମ୍ଭରେ ଓ ପରେ ଆତ୍ମାର ମୋହଉତ୍ପାଦନ- ନିଦ୍ରା, ଆଳସ୍ୟ ଓ ପ୍ରମାଦରୂପ ସୁଖ ପ୍ରସବ କରିଥାଏ । ସାର କଥା ଏହିଯେ—

ସାତ୍ତ୍ୱିକ ବୁଦ୍ଧି ଯୁକ୍ତ କର୍ତ୍ତବ୍ୟାଚାରର ନାମ ଧର୍ମ । ଏଥିରୁ ଯାହା ବିପରୀତ ତାହା ଅଧର୍ମ ଅଟେ । ଅଧର୍ମ ପ୍ରଜ୍ଞାପରାଧର ଏବଂ ଧର୍ମ ପ୍ରଜ୍ଞାପ୍ରସାଦର ଫଳ ଅଟେ ମହାଭାରତର ଅନୁଶାସନ ପର୍ବରେ ଧର୍ମ ଶବ୍ଦର ଏହି ଅର୍ଥ ଲେଖାଅଛିଯେ-

"ନ ତତ୍ ପରସ୍ୟ ସନ୍ଦଧ୍ୟାତ୍ ପ୍ରତିକୂଳଂ ଯଦାତ୍ମନଃ
ଏଷଃ ସଂକ୍ଷେପତୋ ଧର୍ମଃ କାମାଦନ୍ୟଃ ପ୍ରବର୍ତ୍ତତେ ॥

ଅର୍ଥାତ୍ ନିଜ ଆତ୍ମାର ସ୍ୱରୂପ ଯାହା, ତାହାହିଁ ବିଶ୍ୱାତ୍ମା ର ସ୍ୱରୂପ । ସୁତରାଂ ନିଜକୁ ଯାହା ଭଲଲାଗେ ନାହିଁ, ତାକୁ ଅନ୍ୟ ଆତ୍ମା ଉପରେ ପ୍ରୟୋଗ କରିବ ନାହିଁ । ଏହାହିଁ ସଂକ୍ଷେପତଃ ଧର୍ମ ନାମରେ ଅଭିହିତ । ଏହାଛଡ଼ା ଆଉ ଯାହାକିଛି କର୍ମ ତାହା ରାଜସିକ, ତାମସିକ, କାମ ଓ ଲୋଭାଦି ମୂଳକ ଅଧର୍ମ ଅଟେ ।

ମହର୍ଷି ଯାଜ୍ଞବଲ୍କ୍ୟ ମଧ୍ୟ ଧର୍ମର ସ୍ୱରୂପ ପରିଚୟ ଦେଇ ଲେଖିଛନ୍ତି ଯେ-

ଇଜ୍ୟାଚାର ଦମାହିଂସା ଦାନ ସ୍ୱାଧ୍ୟାୟ କର୍ମଣାମ୍ ।
ଅୟମେବ ପରୋ ଧର୍ମଃ ଯଦ୍ ଯୋଗେନାତ୍ମଦର୍ଶନମ୍ ॥

ଅର୍ଥାତ୍ ଯଜ୍ଞାନୁଷ୍ଠାନ, ମନୋନିଗ୍ରହ, ତପସ୍ୟା, ଓ ବେଦାଧ୍ୟୟନାଦି କର୍ମକଳାପ ମଧ୍ୟରେ ଏହି ହେଉଛି ପରମ ଧର୍ମ, ଯାହାକି ବୁଦ୍ଧି ଯୋଗ ବଳରେ କର୍ମମୟ ଜଗତକୁ ବ୍ରହ୍ମର ପ୍ରକାଶ ବୋଲି ଉପଲବ୍ଧି କରିବା । ଏହିଭଳି ପ୍ରଜ୍ଞାଯୁକ୍ତ କର୍ମାଚରଣହିଁ ମାନବ ସମାଜର ଧାରକ ଓ ଉନ୍ନତି ବିଧାୟକ ହୋଇଥାଏ ।

ମହର୍ଷି କଣାଦ ଧର୍ମ ସୂତ୍ରରେ ଏହିଅର୍ଥ ଲେଖିଛନ୍ତି ଯେ—

"ଯତୋଽଭ୍ୟୁଦୟ ନିଃଶ୍ରେୟସସିଦ୍ଧିଃ ସ ଧର୍ମଃ"

ଅର୍ଥାତ୍ ଯେଉଁ ସମସ୍ତ କର୍ମାଚରଣ ଦ୍ୱାରା ଶାରୀରିକ, ମାନସିକ ପାରିବାରିକ ଓ ସାମାଜିକ ସକଳପ୍ରକାର ଅଭ୍ୟୁଦୟ ହୁଏ ଏବଂ ପାରତ୍ରିକ ଶାଶ୍ୱତ ସୁଖ ବା ମୋକ୍ଷଲାଭ ହୁଏ, ତା'ର ନାମ-ଧର୍ମ ।

ଭଗବାନ୍ ବେଦବ୍ୟାସ ଲେଖିଛନ୍ତି—

ଧାରଣାଦ୍ଧର୍ମ ଇତ୍ୟାହୁର୍ଧର୍ମୋ ଧାରୟତେ ପ୍ରଜାଃ
ଯତ୍ସ୍ୟାଦ୍ଧାରଣସଂଯୁକ୍ତଂ ସ ଧର୍ମ ଇତି ନିଶ୍ଚୟଃ ॥

ଅର୍ଥାତ୍ ଯେଉଁ ସମସ୍ତ ଆହାର-ବିହାର, ଆଚାର-ବିଚାର, ଜ୍ଞାନ-ବିଜ୍ଞାନ, ଶିକ୍ଷା-ଶାସନ ଓ ଧ୍ୟାନ ପୂଜନାଦି କର୍ମକଳାପ ମାନବ ସମାଜକୁ ଧାରଣ କରି ରଖେ, ଅର୍ଥାତ୍ ବିନାଶ ମୁଖରୁ ରକ୍ଷାକରେ, ତା'ର ନାମ-ଧର୍ମ ।

ଆଚାର୍ଯ୍ୟ ବାଗ୍‌ଭଟ୍ଟ ମଧ୍ୟ କହିଛନ୍ତି ଯେ—

ସୁଖାର୍ଥାଃ ପ୍ରାଣିନାଂ ସର୍ବାଃ ମତାଃ ସର୍ବାଃ ପ୍ରବୃତ୍ତୟଃ
ସୁଖଂ ଚ ନ ବିନା ଧର୍ମାତ୍ ତସ୍ମାଦ୍ଧର୍ମପରୋ ଭବେତ୍ ॥

ଏହି ସୁଖଦାୟକ ଧର୍ମ ହେଉଛି-ପ୍ରଜ୍ଞାପ୍ରସାଦର ଫଳ ।

ଏଥିରୁ ଯାହା ଜଣାଗଲା, ତାହା ପ୍ରଜ୍ଞାପରାଧ ଅଟେ । ପ୍ରଜ୍ଞାପରାଧର ଲକ୍ଷଣ ଓ କ୍ରିୟା ଚରକ ଏହି ଭାବରେ ଲେଖିଛନ୍ତି । ଯଥା—

ଉଦୀରଣଂ ଗତିମତାମୁଦୀର୍ଣ୍ଣାନାଂ ଚ ନିଗ୍ରହଃ ।
ସେବନଂ ସାହସାନାଞ୍ଚ ନାରୀଣାଂ ଚାତିସେବନମ୍ ॥
କର୍ମକାଳାତିପାତଶ୍ଚ ମିଥ୍ୟାରମ୍ଭଶ୍ଚ କର୍ମଣାମ୍ ।
ବିନୟାଚାରଲୋପଶ୍ଚ ପୂଜ୍ୟାନାଞ୍ଚାଭିଧର୍ଷଣମ୍ ॥
ଜ୍ଞାତାନାଂ ସ୍ୱୟମର୍ଥାନାମହିତାନାଂ ନିଷେବଣମ୍ ।
ପରମୌନ୍ମାଦିକାନାଞ୍ଚ ପ୍ରତ୍ୟୟାନାଂ ନିଷେବଣମ୍ ॥
ଅକାଳାଦେଶସଞ୍ଚାରୀ ମୈତ୍ରୀ ସଂକ୍ଲିଷ୍ଟକର୍ମଭିଃ ।
ଇନ୍ଦ୍ରିୟୋପକ୍ରମୋକ୍ତସ୍ୟ ସଦ୍‌ବୃତ୍ତସ୍ୟ ଚ ବର୍ଜ୍ଜନମ୍ ॥
ଈର୍ଷ୍ୟାମାନଭୟକ୍ରୋଧଲୋଭମୋହମଦଭ୍ରମାଃ ।
ତଜ୍ଜଂ ବା କର୍ମ ଯତ୍ କ୍ଲିଷ୍ଟଂ କ୍ଲିଷ୍ଟଂ ଯଦ୍ଦେହକର୍ମ ଚ ॥
ଯଚ୍ଚାନ୍ୟଦୀଦୃଶଂ କର୍ମ ରଜୋମୋହସମୁତ୍ଥିତମ୍ ।
ପ୍ରଜ୍ଞାପରାଧଂ ତଂ ଶିଷ୍ଟା ବ୍ରୁବତେ ବ୍ୟାଧିକାରଣମ୍ ॥

( ଚ-ଶା- ୧ ଅ )

ଅର୍ଥାତ୍ ଯେଉଁ ଯେଉଁ ଇନ୍ଦ୍ରିୟର ଯାହା ଯାହା ସ୍ୱାଭାବିକ କର୍ମ, ତାହାଠାରୁ ଅଧିକ କର୍ମ ଉଦ୍ରେକ କରିବା, କିମ୍ବା ଇନ୍ଦ୍ରିୟମାନଙ୍କର ସ୍ୱାଭାବିକ କର୍ମ ପ୍ରବୃତ୍ତିକୁ ରୋଧ କରି ସେମାନଙ୍କୁ ଅକର୍ମା କରି ରଖିବା, ଏବଂ ମନୁଷ୍ୟ ଘାତକତା ପ୍ରଭୃତି ଧାର୍ମିକ କର୍ମ କରିବା, ଅତିଶୟ ସ୍ତ୍ରୀ ସହବାସ, ସ୍ନାନ, ଭୋଜନ ଇତ୍ୟାଦି ସ୍ୱାସ୍ଥ୍ୟ ଦାୟକ କର୍ମକଳାପ ଯଥାସମୟରେ ନ କରି କାଳାତିପାତ କରିବା, ବିନୟ ଓ ସଦାଚାର ବର୍ଜନ କରିବା, ପୂଜ୍ୟ ଓ ମାନ୍ୟ ବ୍ୟକ୍ତିମାନଙ୍କୁ ଅପମାନିତ କରିବା, ଜାଣି ଶୁଣି ଅନ୍ୟାୟ ଅପଥ୍ୟ ଆଚରଣ କରିବା, ସ୍ୱାସ୍ଥ୍ୟର ପ୍ରତିକୂଳ ଶାସ୍ତ୍ର ବିରୁଦ୍ଧ କର୍ମ ଆରମ୍ଭ କରିବା, ଅସ୍ୱାସ୍ଥ୍ୟକର ଦେଶରେ ବାସ କରିବା, କାଳବିରୁଦ୍ଧ ପ୍ରକୃତି ବିରୁଦ୍ଧ ଆହାର ବିହାର କରିବା, କ୍ଲେଶ ବହୁଳ କର୍ମରେ ଆସକ୍ତ ହେବା ଏବଂ ଇନ୍ଦ୍ରିୟମାନଙ୍କୁ ଅପଥ ପରିଚାଳନ କରିବା ଏହି ସବୁ ରାଜସିକ ଓ ତାମସିକ କର୍ମ କଳାପକୁ ପ୍ରଜ୍ଞାପରାଧ ବୋଲାଯାଏ ।

ଏହାପରେ ଈର୍ଷ୍ୟା, ଶୋକ, ଭୟ, କ୍ରୋଧ, ଗର୍ବ, ଅହଂକାର, ଦମ୍ଭ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ ଓ ରାଗଦ୍ୱେଷାଦି ଯେଉଁ ସବୁ ମନୋବିକାର ଏବଂ ତଜ୍ଜନିତ ରାଜସିକ ଓ ତାମସିକ ଯେଉଁସବୁ କ୍ଳେଶ ବହୁଳ କର୍ମ ସମୂହ, ସେହି ସମସ୍ତଙ୍କୁ ପ୍ରଜ୍ଞାପରାଧ ବୋଲି ପଣ୍ଡିତମାନେ କହିଛନ୍ତି । ଏହି ପ୍ରଜ୍ଞାପରାଧ ସମସ୍ତରୋଗର ଓ ଅପମୃତ୍ୟୁର କାରଣ ଅଟେ ।

ଆଉ ଏକସ୍ଥଳରେ ସେ ଲେଖିଛନ୍ତି—

ବୁଦ୍ଧ୍ୟା ବିଷମ ବିଜ୍ଞାନଂ ବିଷମଞ୍ଚ ପ୍ରବର୍ତ୍ତନମ୍ ।
ପ୍ରଜ୍ଞାପରାଧଂ ଜାନୀୟାନ୍ମନସୋଗୋଚରଂ ହି ତତ୍ ॥

ଅର୍ଥାତ୍ ବୁଦ୍ଧିଦ୍ୱାରା ଯେଉଁ ବିଷମ (ଅଯଥାର୍ଥ ବା ଭ୍ରମ) ଜ୍ଞାନ ହୁଏ ଏବଂ ଦେଶକାଳ ପୌରୁଷ ଓ ପରିଣାମ ବିଚାର ଶୂନ୍ୟ ହୋଇ ଅସ୍ଥାନରେ ପ୍ରବୃତ୍ତି ଜନ୍ମେ, ତା'ର ନାମ-ପ୍ରଜ୍ଞାପରାଧ ।

ଅନ୍ୟତ୍ର

ଧୀଧୃତିସ୍ମୃତି ବିଭ୍ରଷ୍ଟଃ କର୍ମ ଯତ୍ କୁରୁତେଽଶୁଭମ୍ ।
ପ୍ରଜ୍ଞାପରାଧଂ ତଂ ବିଦ୍ୟାତ୍ ସର୍ବଦୋଷ ପ୍ରକୋପଣମ୍ ॥ (ଚରକ)

ଅର୍ଥାତ୍ ରଜୋଗୁଣ ଓ ତାମୋଗୁଣର ଅଧୀନ ପୁରୁଷ ସାତ୍ତ୍ୱିକ ବୁଦ୍ଧି, ଧୃତି ଓ ସ୍ମୃତିଭ୍ରଷ୍ଟ ହୋଇ ଯେଉଁସବୁ ଅଶୁଭ କର୍ମ (ଅଧର୍ମାଚରଣ) କରେ, ତାକୁ ପ୍ରଜ୍ଞାପରାଧ ବୋଲନ୍ତି । ଏହି ପ୍ରଜ୍ଞାପରାଧ ଅନ୍ତର୍ବାହ୍ୟ ସମସ୍ତ ପ୍ରକୃତିକୁ ଦୂଷିତ କରେ, ଏବଂ ଶାରୀର ଦୋଷ ଓ ମାନସ ଦୋଷକୁ ପ୍ରକୁପିତ କରେ ।

## ବୁଦ୍ଧିଭ୍ରଷ୍ଟ ପୁରୁଷର ଲକ୍ଷଣ

ବିଷମାଭିନିବେଶୋ ଯୋ ନିତ୍ୟାନିତ୍ୟେ ହିତାହିତେ ।
ଜ୍ଞେୟଃ ସ ବୁଦ୍ଧିବିଭ୍ରଂଶଃ ସମଂ ବୁଦ୍ଧିର୍ହି ପଶ୍ୟତି । (ଚରକ)

ଅର୍ଥାତ୍ ହିତକୁ ଅହିତ ଅହିତକୁ ହିତ ଏବଂ ନିତ୍ୟକୁ ଅନିତ୍ୟ, ଅନିତ୍ୟକୁ ନିତ୍ୟ ବୋଲି ଯେଉଁ ପୁରୁଷ ବୁଝେ, ତାକୁ ବୁଦ୍ଧିଭ୍ରଷ୍ଟ ପୁରୁଷ ବୋଲନ୍ତି । ଯା'ର ବୁଦ୍ଧି ଯଥାର୍ଥ ଭାବରେ ପଦାର୍ଥ ଗ୍ରହଣ କରେ, ଅର୍ଥାତ୍ ଯେଉଁ ପଦାର୍ଥ ଯାହା, ତାକୁ ସେହିପରିଭାବରେ ବୁଝେ, ତାକୁ ସମବୁଦ୍ଧି ବା ସ୍ୱସ୍ଥବୁଦ୍ଧି ବୋଲଯାଏ ।

## ଧୃତିଭ୍ରଷ୍ଟ ପୁରୁଷର ଲକ୍ଷଣ

ବିଷୟପ୍ରବଣଂ ସତ୍ତ୍ୱଂ ଧୃତିଭ୍ରଂଶାନ୍ନ ଶକ୍ୟତେ
ନିୟନ୍ତୁମହିତାଦର୍ଥାଦ୍ ଧୃତିର୍ହି ନିୟମାତ୍ମିକା ॥ ( ଚରକ )

ଅର୍ଥାତ୍ କାମିନୀ କାଞ୍ଚନାଦିରେ ଆସକ୍ତ ହୋଇଥିବା ମନକୁ ଯାହା ବଳରେ ସେଥିରୁ ନିବୃତ୍ତ କରାଯାଏ, ତାହାର ନାମ ଧୃତି । ଧୃତିଭ୍ରଷ୍ଟ ପୁରୁଷ ଅକାର୍ଯ୍ୟରେ ପ୍ରବୃତ୍ତ ହୋଇଥିବା ମନକୁ ନିୟନ୍ତ୍ରଣ କରିପାରେ ନାହିଁ ।

## ସ୍ମୃତି ଭ୍ରଷ୍ଟର ଲକ୍ଷଣ

ତତ୍ତ୍ୱଜ୍ଞାନେ ସ୍ମୃତିର୍ଯସ୍ୟ ରଜୋମୋହାବୃତାତ୍ମନଃ
ଭ୍ରଶ୍ୟତେ ସ ସ୍ମୃତିଭ୍ରଂଶଃ ସ୍ମର୍ତ୍ତବ୍ୟଂ ହି ସ୍ମୃତୌ ସ୍ଥିତମ୍ ॥
( ଚ° ଶା° ୧ । ୧୯ ୧୦୧ )

ଅର୍ଥାତ୍ ଯେଉଁ ପୁରୁଷର ସ୍ମରଣୀୟ ବିଷୟ ସ୍ମୃତିରେ ରହେନାହିଁ, ସେହି ରଜସ୍ତମୋଗୁଣାଧିକ ସ୍ମୃତିଶକ୍ତି ରହିତ ପୁରୁଷକୁ ସ୍ମୃତିଭ୍ରଷ୍ଟ ପୁରୁଷ କହନ୍ତି ।

ଏହିପରି ଧୀ, ଧୃତି ଓ ସ୍ମୃତିଭ୍ରଷ୍ଟ ପୁରୁଷ ଯେଉଁ ସବୁ ଅଶୁଭ କର୍ମ କରେ ତାହା ପ୍ରଜ୍ଞାପରାଧ ଅଟେ ।

## ପ୍ରଜ୍ଞାପରାଧ ଜାତ ଅଧର୍ମରୁ ଆଜି ସମସ୍ତ ଜନପଦ ଧ୍ୱଂସୋନ୍ମୁଖ

ଆଜି ସମସ୍ତ ଗ୍ରାମ, ନଗର, ଜିଲ୍ଲା, ପ୍ରଦେଶ, ଓ ଦେଶର ଅଧ୍ୟକ୍ଷଗଣ ଅର୍ଥାତ୍ ଗ୍ରାମପଞ୍ଚାୟତର ସଭ୍ୟବୃନ୍ଦ, ଜିଲ୍ଲାବୋର୍ଡର ସଭ୍ୟବୃନ୍ଦ, ବ୍ୟବସ୍ଥାସଭା ଓ ଲୋକସଭା, ଏବଂ ସମ୍ବାଦପତ୍ରର ସମ୍ପାଦକଗଣ, ଧର୍ମଯାଜକ ମଣ୍ଡଳି ପୁରୋହିତାଦି ଗୁରୁବର୍ଗ ଏବଂ ଶିକ୍ଷକ, ରକ୍ଷକ, ଶାସକ, ପୋଷକ ଓ ସମାଜର ସେବକ ବର୍ଗ ପ୍ରଜ୍ଞାପରାଧ ବା ବୁଦ୍ଧିଦୋଷରୁ, ନିଜର, ନିଜଦଳର ଏବଂ ନିଜ ତନ୍ତ୍ରବର୍ଗର ସ୍ୱାର୍ଥ ସିଦ୍ଧି ନିମନ୍ତେ ଧର୍ମ ବ୍ୟବସ୍ଥାକୁ ଲଂଘନ କରି ଅଧର୍ମରେ ସମାଜକୁ ପରିଚାଳନ କରୁଥିବାର ଜଣାଯାଏ । ସେଥିପାଇଁ ସେମାନଙ୍କର ଆଶ୍ରିତ ଓ ଶାସିତ ପୁରବାସୀ ଓ ଜନପଦବାସୀ ଉଚ୍ଛୃଙ୍ଖଳଭାବରେ ସେହି ଅଧର୍ମକୁ ସଦର୍ପ ବୃଦ୍ଧି କରିବାରେ ଲାଗିଛନ୍ତି । କି ଶିକ୍ଷାକ୍ଷେତ୍ର, କି ଶାସନକ୍ଷେତ୍ର, କି ବାଣିଜ୍ୟକ୍ଷେତ୍ର, କି ନ୍ୟାୟ ଅନ୍ୟାୟ ବିଚାର କ୍ଷେତ୍ର ସର୍ବତ୍ର ଅଧର୍ମର ଏକଚ୍ଛତ୍ର ଅଧିକାର ବୃଦ୍ଧି ପାଇଛି । ମଦ୍ୟମାଂସ ଭୋଜୀ, ଅର୍ଥ କାମୋନ୍ମତ୍ତ,

ନରାଧମ, ଯୁଦ୍ଧଖୋର, ବୈଜ୍ଞାନିକ ଦଳ ଭୀଷଣ ସଂହାରକ ଅସ୍ତ୍ରାଦି ନିର୍ମାଣ କରି ତଦ୍ୱାରା ବାୟୁ, ଜଳ, ଦେଶ ଓ କାଳକୁ ବିପର୍ଯ୍ୟସ୍ତ କରି ବ୍ୟଷ୍ଟି ଓ ସମଷ୍ଟି ବ୍ରହ୍ମାଣ୍ଡରେ ଘୋର ବିଷମତା ସୃଷ୍ଟି କରିଛନ୍ତି । ଯେଥିଯୋଗୁଁ ଏବେ ଅତିବୃଷ୍ଟି, ଅନାବୃଷ୍ଟି, ଋତୁବିପର୍ଯ୍ୟୟ, ଭୂମିକମ୍ପ, ମହାମାରୀ, ଦାରିଦ୍ର୍ୟ, ଦୁର୍ଭିକ୍ଷ, ଚୌର୍ଯ୍ୟ, ବ୍ୟଭିଚାର, ଅଶାନ୍ତି ଓ ଉପଦ୍ରବ ସବୁଆଡ଼େ ବଢିଛି । ସବୁଆଡ଼େ ଅପମୃତ୍ୟୁ ଓ ଆତ୍ମହତ୍ୟାର ସମ୍ବାଦ ଶୁଣାଯାଉଛି । ଦିନକୁ ଦିନ ଅତି ଭୀଷଣ ବିଶ୍ୱସଂହାରକ ବମ୍‌ମାନଙ୍କର ପରୀକ୍ଷା ଚାଲିଛି । ବର୍ତ୍ତମାନ ବୈଜ୍ଞାନିକ ଜଗତର ପ୍ରଜ୍ଞାପରାଧର ନିଦର୍ଶନ ଓ ପରିଣାମ ସମ୍ବନ୍ଧେ ୧୯୫୭ ସମ୍ବତ୍ସରର ସମ୍ବାଦ ଦେଖନ୍ତୁ ।

(୧) କିଛିଦିନ ତଳେ ବିଶ୍ୱସ୍ୱାସ୍ଥ୍ୟ ସଂଘର ଭୂତପୂର୍ବ ଅଧ୍ୟକ୍ଷ ଡାକ୍ତର ବ୍ରାକ୍ ଚିଶାମ ଲେଖିଥିଲେ ଯେ—ପ୍ରତ୍ୟେକ ଅଣୁବମ୍ ପରୀକ୍ଷାରେ ପୃଥିବୀରେ ୫୦ ହଜାର ୮୦ ଜଣ ମନୁଷ୍ୟ ମରନ୍ତି । ଏହି ପରୀକ୍ଷାର ଫଳରେ ନ୍ୟୁମୋନିଆଁ ରୋଗ ସର୍ବତ୍ର ବ୍ୟାପିବ । ( ସ ୨୮ ବଂ ସ ୩୩ ) ତାଙ୍କର ଏହି ଅନୁମାନ ପ୍ରତ୍ୟକ୍ଷରେ ପରିଣତ ହୋଇଅଛି । ଉକ୍ତ ସଂଖ୍ୟକ ଖବର ଆଉ ଏକ ସ୍ଥାନରେ ଲେଖାଅଛି ଯେ—

(୨) ଦିଲ୍ଲୀର ନିକଟବର୍ତ୍ତୀ ଜଙ୍ଗଲରେ ଏକ କ୍ଷଣ ମଧ୍ୟରେ ୪୦୦ ମାଙ୍କଡ଼ ମରିଗଲେ । ମରିବା ପୂର୍ବରୁ ସେମାନଙ୍କର ଦେହରେ କିଛି ରକ୍ତ ନଥିଲା ।

(୩) ଆଉରି ମଧ୍ୟ ସେହିପରି ଲେଖାଅଛି ଯେ—ଗତ ସପ୍ତାହରେ ଅଯୋଧ୍ୟାରେ ସୂର୍ଯ୍ୟକୁଣ୍ଡର ଜଳ ହଠାତ୍ ରକ୍ତବର୍ଣ୍ଣ ଦେଖାଗଲା । ଏକ କ୍ଷଣ ମଧ୍ୟରେ ହଜାର ୨ ମାଛ ମରି ଭାସି ଉଠିଲେ ।

(୪) ସେହି ସପ୍ତାହରେ ଲକ୍ଷ୍ନୌର ଗୋମତୀ ନଦୀରେ ଏବଂ ଓଡ଼ିଶାର ଚିଲିକା ହ୍ରଦରେ ମଧ୍ୟ ଅସଂଖ୍ୟ କଳ୍ପନାତୀତ ମଲାମାଛ ଭାସିବାର ସମ୍ବାଦ ପ୍ରକାଶ ପାଇଥିଲା । ଏହି ସବୁ ଦୁର୍ଘଟନା ଅଣୁବମ୍ ପରୀକ୍ଷାର ଫଳ ବୋଲି ଅନୁମାନ ହୁଏ ।

(୫) ୧୯୫୭ ସମ୍ବତ୍ସର ମଇ ମାସ ୨୮ ତାରିଖରେ ଆମେରିକାର ମରୁଭୂମିରେ ଏକ ଅଣୁବମ୍ ପରୀକ୍ଷା କରାଯାଇଥିଲା । ଏହାକୁ ମିଶାଇ ୬୮ ଥର ପରୀକ୍ଷା ହେଲା । ଏହି ପରୀକ୍ଷାରେ ସେଠାରେ ଭୂମିକମ୍ପ ହେଲା । ଏକାବେଳକେ ଶତସୂର୍ଯ୍ୟର ପ୍ରକାଶ ହେଲା । ଜାପାନର ହିରୋସିମା

ଓ ନାଗାସାକୀ ଉପରେ ପଡ଼ିଥିବା "ଏଟମ୍ ବମ୍" ଯାହାଦ୍ୱାରା କି ଏକ କ୍ଷଣରେ ଦେଢ଼ଲକ୍ଷ ଲୋକ ଧ୍ୱଂସ ପାଇଥିଲେ ତା'ଠାରୁ ଏହାର ଶକ୍ତି ଦୁଇଗୁଣ ।

(୬) ବର୍ଲିନ—୨୬।୮—ପଶ୍ଚିମ ଜର୍ମାନୀର ବଷ୍ୟେତ ଡ଼ାକ୍ତରୀ ପତ୍ରିକା "ମେଡ଼ିକାଲ୍ କ୍ଲିନିକ୍" ନିଜର ଏକ ସ୍ୱତନ୍ତ୍ର ସଂଖ୍ୟା ପ୍ରକାଶ କରି ପରମାଣୁ ତେଜସ୍କ୍ରିୟତାର ବିପଦ ସମ୍ପର୍କରେ ସତର୍କବାଣୀ ଶୁଣାଇଛନ୍ତି ଓ ପରମାଣୁ ବୋମା ପରୀକ୍ଷା ତୁରନ୍ତ ବନ୍ଦ କରିବା ପାଇଁ ନିବେଦନ କରିଛନ୍ତି । ଉକ୍ତ ପତ୍ରିକାର ଏହି ସଂଖ୍ୟାଟି ହିରୋସିମା, ନାଗାସାକି ଓ ବିକିନି ପରମାଣୁ ବିସ୍ଫୋରଣରେ ଯେଉଁମାନେ ପ୍ରାଣ ହରାଇଛନ୍ତି, ଆହତ ହୋଇ କଷ୍ଟ ପାଉଛନ୍ତି ଓ ସୌଭାଗ୍ୟ ବଶତଃ ବଞ୍ଚି ଯାଇଛନ୍ତି, ସେମାନଙ୍କ ପ୍ରତି ଅର୍ପଣ କରାଯାଇଛି । ପତ୍ରିକାର ସମ୍ପାଦକ ପଶ୍ଚିମ ଜର୍ମାନୀର ବିଶିଷ୍ଟ ଚିକିତ୍ସା ବିଶାରଦ ଡ଼ାକ୍ତର ଷ୍ଟାଉଡ଼େର ଏହି ସଂଖ୍ୟାର ମୁଖବନ୍ଧ ପ୍ରବନ୍ଧରେ ଲେଖିଛନ୍ତି ଯେ, ପରମାଣୁ ବୋମା ବିସ୍ଫୋରଣ ବନ୍ଦ କରିବା ପାଇଁ ଯେତେ ନିବେଦନ କରାଗଲାଣି, ଏପର୍ଯ୍ୟନ୍ତ ତା'ର ଉତ୍ତର ମିଳିନାହିଁ । କେତେକ ଦେଶରେ ପରମାଣୁ ତେଜସ୍କ୍ରିୟତାର ଭୟାବହ ପରିଣତିର ସତ୍ୟତାକୁ ସ୍ୱୀକାର କରିବା ଦେଶଦ୍ରୋହରୂପେ ବିବେଚିତ ହୋଇଛି । ବିପଦର ଗୁରୁତ୍ୱକୁ ଦୋହଡ଼ି ଦିଆଯାଉଛି । ଜନସାଧାରଣଙ୍କ ସ୍ୱତଃସ୍ଫୂର୍ତ୍ତ ଆବେଗକୁ ଅବୈଜ୍ଞାନିକ ଆଶଙ୍କା ବୋଲି ଅଭିହିତ କରାଯାଉଛି ।

ଡ଼ାକ୍ତର ଷ୍ଟାଉଡ଼େର କହିଛନ୍ତି ଯେ, "ଆମେ ଦାବୀ କରୁ ଯେ, ତେଜସ୍କ୍ରିୟତାର କୁପ୍ରଭାବରୁ ରକ୍ଷା ଦେବା ପାଇଁ କୌଣସି ବ୍ୟବସ୍ଥା ନକରି ଜନସାଧାରଣଙ୍କୁ ଏହି ବିବର୍ତ୍ତିନ ହିତରକୁ ଛାଡ଼ିଦିଆ ନଯାଉ । ଶାନ୍ତି ସମୟରେ ପରୀକ୍ଷାମୂଳକ ପରମାଣୁ ବିସ୍ଫୋରଣ ହେବା ମାନବ ସମାଜର ସ୍ୱାସ୍ଥ୍ୟ ଓ ସ୍ଥିତିପକ୍ଷେ ବିପଜ୍ଜନକ । କିନ୍ତୁ ପରମାଣୁ ଯୁଦ୍ଧ ଆରମ୍ଭ ହେଲେ ସମଗ୍ର ପୃଥିବୀ ଧ୍ୱଂସ ହୋଇଯିବ ।

ପରମାଣୁ ଯୁଦ୍ଧ ହେଲେ ଯେଉଁ ପ୍ରଜନନ ଶକ୍ତି ନଷ୍ଟ ହେବ, ତାହା ପୂରଣ କରିବା ପାଇଁ "ଶୁକ୍ର ଭଣ୍ଡାର" ଖୋଲିବା ସକାଶେ ଆମେରିକାର ପରମାଣୁ ବୈଜ୍ଞାନିକ ମୁଲର ଦେଇଥିବା ପ୍ରସ୍ତାବକୁ ସେ "ପୈଶାଚିକ ହୃଦୟହୀନତା" ବୋଲି ବର୍ଣ୍ଣନା କରିଛନ୍ତି । ସେ କହିଛନ୍ତି ଯେ, ଏହା ଦ୍ୱାରା ମନେକରାଯାଉଛି ଯେ, ପରମାଣୁ ତେଜସ୍କ୍ରିୟତାରେ ଯେଉଁମାନଙ୍କ

ଅପେକ୍ଷା ପୁରୁଷମାନେ ଅଧିକ କ୍ଷତିଗ୍ରସ୍ତ ହେବେ । ଯେଉଁ ସ୍ତ୍ରୀମାନେ ବଞ୍ଚି ରହିବେ, ସେମାନେ ଶୁକ୍ର ଭଣ୍ଡାରରୁ ଶୁକ୍ର, ନେଇ ଶିଶୁ ଜନ୍ମ କରିବାକୁ ସକ୍ଷମ ହେବେ । ଏହାଠାରୁ ବଳି ନୈରାଶକ ପ୍ରସ୍ତାବ ଆଉ କ'ଣ ହୋଇପାରେ । ( ୟୁ. ପି. ଆଇ ଏ.ଏ ୟ. ପି. )

## (୭) ରୁଷିଆର କୃତ୍ରିମ ଉପଗ୍ରହ ଦେଖି ପାଶ୍ଚାତ୍ୟ ଶକ୍ତି ଆତଙ୍କିତ ଏବଂ ତାହାର ସାମରିକ ତାତ୍ପର୍ଯ୍ୟ ତାଙ୍କ ଭାବନାର ଏବେ ବିଷୟ ହୋଇଛି

ଲଣ୍ଡନ, ତା ୮।୧୦-ରୁଷିଆର ଯେଉଁ କୃତ୍ରିମ ଉପଗ୍ରହ ଶୂନ୍ୟରେ ପୃଥିବୀ ଚାରିପଟେ ଘୂରୁଛି, ପାଶ୍ଚାତ୍ୟ ଦେଶଗୁଡ଼ିକରେ ତାହାକୁ କ୍ରେଷ୍ଟଭ-ଉପଗ୍ରହ ବୋଲି ଏବେ ଆଖ୍ୟା ଦିଆଯାଉଛି । ତାହା ପାଶ୍ଚାତ୍ୟ ରାଷ୍ଟ୍ରଗୁଡ଼ିକରେ ବଡ଼ ଆତଙ୍କ ସୃଷ୍ଟି କରିଛି । ସେଥିଯୋଗୁଁ ପାଶ୍ଚାତ୍ୟ ଦେଶର ଶାସକମାନେ ବଡ଼ ଚିନ୍ତିତ ଓ ବିଚଳିତ ହୋଇପଡ଼ିଛନ୍ତି । ତାହାର ସାମରିକ ତାତ୍ପର୍ଯ୍ୟ କ'ଣ ? ତାହାହିଁ ସେମାନଙ୍କ ପକ୍ଷରେ ପ୍ରଧାନ ଭାବନାର ବିଷୟ ହୋଇଛି । କେତେକ ବ୍ୟକ୍ତି ତାହାର ବୈଜ୍ଞାନିକ ଗୁରୁତ୍ୱ ଅବଶ୍ୟ ଉପଲବ୍ଧ କରୁଛନ୍ତି । କିନ୍ତୁ ଶାସକମାନେ ସାମରିକ କ୍ଷେତ୍ରରେ ତାହାର କି ଉପଯୋଗ ହୋଇପାରେ ଓ ରୁଷିଆ ସେଥିରୁ କି ଲାଭ ଉଠାଇପାରେ ମୁଖ୍ୟତଃ ତାହାହିଁ ଚିନ୍ତା କରୁଛନ୍ତି । ବ୍ରିଟେନ ଓ ୟୁରୋପର ଅନ୍ୟାନ୍ୟ ଦେଶର ଅଧିବାସୀ ଆମେରିକା ତୁଳନାରେ ଅଧିକ ଧୀରସ୍ଥିର ଭାବରେ ଏହି ଉପଗ୍ରହକୁ ଲକ୍ଷ୍ୟ କରୁଛନ୍ତି । କିନ୍ତୁ ଆମେରିକାର ଅଧିବାସୀଙ୍କ ମଧ୍ୟରେ ତାହା ବିଶେଷ ଚାଞ୍ଚଲ୍ୟ ସୃଷ୍ଟି କରିଛି । ଆଜିକାଲି ରୁଷିଆ, ଫ୍ରାନ୍ସ ଓ ଇଂଲଣ୍ଡ ମଧ୍ୟ ଏହିପରି ଶତ ଶତ ବିଶ୍ୱସଂହାରକ ମାରାତ୍ମକ ବମ୍ ପରୀକ୍ଷାରେ ଲାଗିଛନ୍ତି । ଏଥିଦ୍ୱାରା ବ୍ୟଷ୍ଟି ଓ ସମଷ୍ଟି ବ୍ରହ୍ମାଣ୍ଡରେ ଯେ, କି ବୈଷମ୍ୟ ସୃଷ୍ଟି ହେଉଛି-ତାହା ଜଗନ୍ନାଥ ହିଁ ଜାଣନ୍ତି । ମହର୍ଷି ବଶିଷ୍ଠ କହିଛନ୍ତି ଯେ—

"ବିରାଟ୍ ଧାତୁବିକାରେଣ ବିଷମସ୍ପନ୍ଦନାଦନା
ତଦଙ୍ଗାବୟବସ୍ୟାସ୍ୟ ଜନଜାଲସ୍ୟ ବୈଷମମ୍
ଦୁର୍ଭିକ୍ଷାବଦ୍ରୋହୋତ୍ପାତ ମାନସ୍ଫୁର୍ତି

ଅର୍ଥାତ୍ ବିରାଟ୍ ବ୍ରହ୍ମାଣ୍ଡର ଧାତୁ ବା ଧାରକ ତତ୍ତ୍ୱମାନଙ୍କର ବିଷମତା ଓ

ବିଶ୍ୱବ୍ୟାପୀ ପ୍ରାଣଶକ୍ତିର ବିସ୍ପନ୍ଦନରୁ ତା'ର ଅନ୍ତର୍ଭୁକ୍ତ ଜୀବଜନ୍ତୁଙ୍କଠାରେ ମଧ୍ୟ ବୈଷମ୍ୟ ଉତ୍ପନ୍ନ ହୋଇଥାଏ, ଯାହା ଫଳରେ ଦୁଷ୍ଟ ଗ୍ରହମାନଙ୍କର ଉଦୟ, ଉଲ୍କାପାତ, ଧୂମକେତୁର ଉଦୟ ଓ ମହାମାରୀ ଆଦି ଉତ୍ପାତ ଜାତ ହୋଇଥାଏ । ବର୍ତ୍ତମାନ ତାହା ହିଁ ହୋଇଅଛି । ଦେଖନ୍ତୁ ଯେ—

(୮) ଚଳିତ ବର୍ଷ ନଭେମ୍ବର ୭ ତାରିଖର ଚନ୍ଦ୍ରଗ୍ରହଣ ପୃଥିବୀରେ କି ଦୁର୍ଯୋଗ ଘଟାଇବ, କହି ହେଉନାହିଁ । ସେଥିପାଇଁ ଲୋକମାନଙ୍କୁ ବିପ୍ଳବର ବାର୍ତ୍ତା ଶୁଣିବ । ଏଥର ଏ ବର୍ଷ ଭିତରେ ତୃତୀୟ ମହାଯୁଦ୍ଧର ସମ୍ଭାବନା ରହିଛି । ଯେଉଁ ସଇତାନ ୧୯୧୭ ରେ ଦେଖା ଦେଇଥିଲା, ସେହି ସଇତାନ ପୁଣି ଏ ବର୍ଷ ପୃଥିବୀକୁ ଆକ୍ରମଣ କରିବ । ଚଳିତବର୍ଷ ନଭେମ୍ବର ୭ ତାରିଖର ଚନ୍ଦ୍ରଗ୍ରହଣ ୨୦୦୦ ମସିହା ପର୍ଯ୍ୟନ୍ତ ସ୍ମରଣୀୟ ହେବ । ଚଳିତବର୍ଷ ନଭେମ୍ବର ୭ ତାରିଖ ଚନ୍ଦ୍ରଗ୍ରହଣ ଠାରୁ ୧୯୫୮ ନଭେମ୍ବର ୭ ତାରିଖ ପର୍ଯ୍ୟନ୍ତ ପୃଥିବୀର ଲୋକେ ସାବଧାନ ହେବା ଉଚିତ । କାରଣ ଆଣବିକ ଅସ୍ତ୍ରଶସ୍ତ୍ର, ରକେଟ୍ ଓ ସ୍ପୁଟ୍‌ନିକ୍ ଅଣବିକ ଅସ୍ତ୍ରର ଆବିଷ୍କାର ହେତୁ ଏହି ଏକବର୍ଷ ଭିତରେ ବିଶ୍ୱ ପରିସ୍ଥିତି ସାଂଘାତିକ ହୋଇପାରେ ବୋଲି ଜଣେ ଜ୍ୟୋତିଷ ସାବଧାନବାଣୀ ଶୁଣାଇଛନ୍ତି ।

( ମାତୃଭୂମି ) ୫-୧୧-୫୭

(୯) ୧୯୫୭ ଅଗଷ୍ଟ ମାସରେ ନାନାଦେଶରେ ଧୂମକେତୁର ଉଦୟ ସମ୍ବାଦ ପ୍ରକାଶ ପାଇଛି । ଏବଂ ଭାରତୀୟ ଜ୍ୟୋତିଷ ବିଜ୍ଞାନ ପରିଷଦର ସଂସ୍ଥାପକ ଶ୍ରୀକୃଷ୍ଣ ମୁରାରି ମିଶ୍ର ଲକ୍ଷ୍ନୌଠାରୁ ଭବିଷ୍ୟ ବାର୍ତ୍ତା କହିଛନ୍ତି ଯେ ୨୦୧୮ ବିକ୍ରମାବ୍ଦର ଉତ୍ତରାର୍ଦ୍ଧରେ ମାଘକୃଷ୍ଣ ତ୍ରୟୋଦଶୀ ଦିନବାରେ ୩ ତାରିଖ, ଫେବୃଆରୀ ମାସ ୧୯୬୨ ଖ୍ରୀଷ୍ଟାବ୍ଦରେ ମକର ରାଶିରେ ସୂର୍ଯ୍ୟ, ଚନ୍ଦ୍ର, ମଙ୍ଗଳ, ବୁଧ, ଗୁରୁ, ଶୁକ୍ର, ଶନି ଓ କେତୁ ଏହି ଆଠଗ୍ରହର କେନ୍ଦ୍ରୀକରଣ ହେବ । ଏହା ମହାପ୍ରଳୟର ସୂଚକ ।

( ସପ୍ତ ୨୮ ତା ୨୭ । ୭ । ୫୭ )

(୧୦) ୯-୯-୫୭ ( ସମାଜ )

ରୁଷିଆ ଏବେ ମହାଶକ୍ତିଶାଳୀ ମାରଣାସ୍ତ୍ରର ଅଧିକାରୀ ହୋଇଛି । ସେଦୃଷ୍ଟିରୁ ନୂତନ ଯୁଦ୍ଧ ଲାଗିଲେ ସମଗ୍ର ମାନବଜାତି ଧ୍ୱଂସ ପାଇବା ନିଶ୍ଚିତ । ମସ୍କୋରେ ଅନୁଷ୍ଠିତ ବଲସେଭିକ ବିପ୍ଳବର ୪୦ତମ ବାର୍ଷିକ

ଜୁଆ୍ରବରେ ରୁଷ ଦେଶରକ୍ଷା ମନ୍ତ୍ରୀ ମାର୍ଶାଲ ମାଲିନଭସ୍କିଙ୍କ ଘୋଷଣା ।
(୧୧) ଆଚାର୍ଯ୍ୟ ସୁଶ୍ରୁତ ମଧ୍ୟ ଲେଖିଛନ୍ତି—
ଉତ୍ସନ୍ନକଷ ଚରତେ ତେବା ଜନପଦା ଉପଧ୍ୱସ୍ୟନ୍ତେ । (ସୁଶ୍ରୁତ-ସୂ ୬ ଅ. ୨୦
ଯସ୍ୟବର୍ଷାନୁବନ୍ଧଗାତ୍ରତ୍ୱା ଗର୍ହିତସ୍ଥାନଗତାଃ ପୀଡ଼ୟନ୍ତି, ସ ଜନପଦ
( ସୁଶ୍ରୁତ-ସୂ ୩୬।୦ )

ଆଶ୍ଚର୍ଯ୍ୟର କଥା ଏହିପରି-ଏହିଭଳି ବର୍ଣ୍ଣବୈଷମ୍ୟ କାରକ, ସର୍ବସଂହାରକ, ଅର୍ଥକାମ ପ୍ରଧାନ ବୈଜ୍ଞାନିକ ସଭ୍ୟତାର ପରିଣାମ ବୁଝିଥିଲେ ନାହିଁ, ବର୍ତ୍ତମାନ ତାହା ହିଁ ଆମର ଭାରତବାସିଙ୍କର ବରଣୀୟ ଓ ଅନୁକରଣୀୟ ହୋଇଅଛି ।

## ବୈଜ୍ଞାନିକ ସଭ୍ୟତାର ନିଦର୍ଶନ

(୧୨) ଆମେରିକାର ସରକାରୀ ରିପୋର୍ଟରେ ପ୍ରକାଶ ପାଇଥିଲା ଯେ, ୧୯୪୮ ରେ ସେଠାରେ ପ୍ରତ୍ୟେକ ୧୮ ସେକେଣ୍ଡରେ ଏକ ଏକ ମାରାତ୍ମକ ଅପରାଧ ଘଟିଛି । ପ୍ରତିଦିନ ୩୬ ଟି ନରହତ୍ୟା ଏବଂ ୨୫୫ ଧର୍ଷଣ ଉପରେ ବଳାତ୍କାର କରାଯାଇଛି । ସେଠାର ଡାକ୍ତର କାର୍ଟର ସାହେବ ହିସାବ କରି ଦେଖିଛନ୍ତି ଯେ—ସେ ଦେଶର ୧୨୧୩ କୋଟି ଜନତା ମଧ୍ୟରେ ପ୍ରତିମାସରେ ବ୍ୟଭିଚାର ଘଟନା ୪ କୋଟି । ସେଠାର ଡାକ୍ତର ଟର୍ନର ଲେଖିଛନ୍ତି ଯେ—୧୯୬୦ ସମୁଦ୍ଧର ସକଳ ଆମେରିକାର ଅବିବାହିତ ତରୁଣୀମାନଙ୍କ ମଧ୍ୟରେ କୌମାର୍ଯ୍ୟ ବୋଲିବା କଥାଟା ନାମ ମାତ୍ରରେ ରହିବ ନାହିଁ । ଦଶବର୍ଷ ମଧ୍ୟରେ ଆମେରିକାରେ ନୈତିକତାର ଅବନତି ଏତେଦୂର ନିମ୍ନସ୍ତରକୁ ଖସିଯିବ ଯେ—ଯାହାକି ପୃଥିବୀର ଇତିହାସରେ କେବେ ଦେଖାଯାଇନାହିଁ । ଆମେରିକାରେ ପ୍ରତିବର୍ଷ ଅନ୍ତ ଜନ୍ମରେ ୩୦ ହଜାର ପିଲ ଏହିପରି ଜନ୍ମି ଥାନ୍ତି । ଯେଉଁମାନେ କି ଜନ୍ମକାଳରୁ ଗର୍ମୀରୋଗ, ଉପଦଂଶ ଓ ଗନୋରିଆକୁ ସଙ୍ଗରେ ନେଇ ଅସିଥାନ୍ତି ଆପଣାର ପିତାମାତାର ଯୌନ ଉଚ୍ଛୃଙ୍ଖଳତାର ମୂଲ୍ୟ ନିଜର ସାରାଜୀବନରେ ସେମାନଙ୍କୁ କଳବଳ ହୋଇ ପରିଶୋଧ କରିବାକୁ ପଡ଼ିଥାଏ । ଏହାର ଆଉ ଏକ ପରିଣାମ ହୁଏ ଯେ—ଗର୍ଭରେ ବା ଜନ୍ମହେବା ସଙ୍ଗେ ସଙ୍ଗେ ପ୍ରତିବର୍ଷ ଲକ୍ଷାଧିକ ଶିଶୁ ହତ୍ୟା ହୋଇଥାଏ । ଅପରାଧମାନଙ୍କର ସଂଖ୍ୟା ନିରନ୍ତର ସେଠାରେ ବଢ଼ିବାରେ ଲାଗିଛି । ଆମେରିକାର ପ୍ରସିଦ୍ଧ

ଜର୍ଜ ଲିଂଡ଼ସ କହିଛନ୍ତି ଯେ—ଚଉଦବର୍ଷ ବୟସରେ ପହଞ୍ଚିବା ପୂର୍ବରୁ ଦଶରେ ଏକ ଆମେରିକାନ ଅବିବାହିତ ବାଳିକା ଗର୍ଭବତୀ ହୋଇଥାଏ । ଆମେରିକାରେ ଡେନବର ନାମକ ଗୋଟିଏ ଛୋଟିଆ ଗାଁ ଅଛି, ଯା'ର ଜନସଂଖ୍ୟା ୩୦୦୦୦୦, ଏଥିରୁ ୨୦୦୦ ଯୁବତୀ ବିବାହ ପୂର୍ବରୁ ଗର୍ଭବତୀ ହେବାର ଜଣାଯାଇଛି । ମଦ୍ୟବ୍ୟବସାୟ, ବେଶ୍ୟାବୃତ୍ତି, ଜୁଆ, ଚୋରି, ଲୁଟି ଓ ଖୁଣିମାନଙ୍କର ସ୍ୱେଚ୍ଛାଚାରର ବିରାମ ନାହିଁ ।

(୧୩) ବ୍ରିଟିଶ୍ ସାମ୍ରାଜ୍ୟର ରାଜଧାନୀ- ଆଧୁନିକ ସଭ୍ୟତାର କେନ୍ଦ୍ର ଲଣ୍ଡନ ବିଷୟରେ ଜର୍ଜ ବର୍ଣ୍ଣାଡ଼ଶ ଲେଖିଛନ୍ତି ଯେ—ଲଣ୍ଡନ ଏକ ସୁନ୍ଦର ଏବଂ ଐଶ୍ୱର୍ଯ୍ୟଶାଳୀ ସହର, କିନ୍ତୁ ତାହା ଅତି କଦର୍ଯ୍ୟ ଭାବରେ ପାପଗର୍ଭରେ ପଶିଯାଇଛି । ୧୯୨୫ରେ ଟ୍ରୁଥ ନାମକ ମହାନ୍ ସମାଚାର ପତ୍ରରେ ଲେଖାଥିଲା ଯେ—ଇଂଲଣ୍ଡରେ ପ୍ରତିବର୍ଷ ୩୭୦୦୦ ପିଲା ଏହିପରି ବ୍ୟଭିଚାରରୁ ଉତ୍ପନ୍ନ ହୁଅନ୍ତି ଯେ- ଯେଉଁମାନଙ୍କର ବାପା କିଏ ମାଁ କିଏ କିଛି ଜଣାଯାଏ ନାହିଁ ।

(୧୪) ବିଜ୍ଞାନ ଓ କଳାରେ ଉନ୍ନତ-ଜର୍ମାନୀର ଶିଷ୍ଟପ୍ରତିନିଧି ପାଖକୁ ସେଠାର ୩୦୦୦୦ ଅଧିବାସୀ ଆପଣାର ହସ୍ତାକ୍ଷର ସହିତ ଏକ ଆବେଦନପତ୍ର ପଠାଇଥିଲେ ଯେ- ଜର୍ମାନୀର ପୁରୁଷକୁ ପୁରୁଷ ସହିତ ବିବାହ କରିବାକୁ ଅନୁମତି ଦିଆଯାଉ ।

(୧୫) ଫ୍ରାନସ୍ ଅର୍ମ୍ମନ ସାହେବ କହନ୍ତି ଯେ- ସ୍ତ୍ରୀମାନଙ୍କର ଗର୍ଭ ରୋକିବା ପାଇଁ ଯେଉଁସବୁ ଯନ୍ତ୍ର ପ୍ରୟୋଗ କରାଯାଉଛି, ତଦ୍ୱାରା ଶତକଡ଼ା ୬୫ ଟି ଖରାପ ଦେଖାଯାଉଛି । କୃତ୍ରିମ ଉପାୟରେ ଗର୍ଭ ରୋକିବା ହେତୁରୁ କେବଳ ପ୍ୟାରିସ୍ ସହରରେ ୭୫ ହଜାର ରେଜିଷ୍ଟାର୍ଡ ଏବଂ ଏଥିରୁ ଅନେକ ଗୁଣ ଅଧିକ ଅନରେଜିଷ୍ଟାର୍ଡ ବେଶ୍ୟା ଅଛନ୍ତି । ଫ୍ରାନ୍ସର ଅନ୍ୟ ସହରରେ ମଧ୍ୟ ଏହିପରି ବେଶ୍ୟା ଓ ବ୍ୟଭିଚାରିଣୀମାନଙ୍କର ବେହଦ୍ ସଂଖ୍ୟା ରହିଛି ଏବଂ ଯୌନ ବ୍ୟଭିଚାର ଜାତ ଜନନେନ୍ଦ୍ରିୟ ରୋଗର ସୀମା ନାହିଁ ।

(୧୬) ୧୯୫୭ ସମ୍ବତ୍ସର ଡିସେମ୍ବର ୧୯ ତାରିଖରେ ଜେକୋସ୍ଲୋବାକିୟା ନ୍ୟାସନାଲ ଏସେମ୍ବ୍ଲିରେ ଗୋଟିଏ ବିଲ ସ୍ୱୀକୃତ ହୋଇଅଛି ଯେ- ଯା'ର ଅନୁରୋଧରୁ ଅବିବାହିତ ତରୁଣୀ, ମଦ୍ୟପର ସ୍ତ୍ରୀ, ଦେବଦାସୀ, ଓ

ବଳାତ୍‌କୃତା ସ୍ତ୍ରୀମାନଙ୍କର ଗର୍ଭପାତ ବୈଧବୋଲି ସବସମ୍ମତି କ୍ରମେ ଗୃହୀତ ହୋଇଅଛି । ଏବଂ ଗର୍ଭପାତନ ସ୍ୱୀକୃତ କଲି ସ୍ୱାସ୍ଥ୍ୟ ସମିତିରୁ ମିଳିବବୋଲି ସେଥିରେ ଲେଖାଅଛି । ( ସ ୨୪ । ୧୨ । ୫୭ )

(୧୮) ଜାପାନରେ ବେଶ୍ୟାବୃତ୍ତି ଅର୍ଥୋପାର୍ଜନର ଏକ ଉତ୍କୃଷ୍ଟ ବ୍ୟବସାୟ ରୂପରେ ପରିଣତ ହୋଇଅଛି । ସେଠାରେ ଏହିଭଳି ବେଶ୍ୟାମାନଙ୍କର ସଂଖ୍ୟା ୭୦।୮୦ ହଜାର, ଯାହା ଦ୍ୱାରା ପ୍ରତିବର୍ଷ ୨୦୦୦,୦୦୦,୦୦୦, ଡଲାର ଉପାର୍ଜିତ ହେଉଅଛି । ଏହିଭଳି ସ୍ତ୍ରୀମାନଙ୍କଠାରୁ ଉତ୍ପନ୍ନ ଅବୈଧ ଶିଶୁସଂଖ୍ୟା ସେଠାରେ ୨୦୦,୦୦୦ ଅଟେ ।

(୧୯) ଚୀନ ଦେଶର ନେତା ଡାକ୍ତର ସନୟାତସେନ କହିଛନ୍ତିଯେ— ପାଶ୍ଚାତ୍ୟ ସଭ୍ୟତାଦ୍ୱାରା ସଂସାରରେ ଶାନ୍ତି ସ୍ଥାପିତ ହୋଇପାରିବ ନାହିଁ ଏବଂ ବାସ୍ତବରେ କୌଣସି ଦେଶର ଉନ୍ନତି ମଧ୍ୟ ହୋଇପାରିବ ନାହିଁ । କାରଣ, ଏହି ସଭ୍ୟତାର ଅନ୍ତଃପ୍ରଦେଶରେ ହିଂସା ଓ ସ୍ୱାର୍ଥର ତରଙ୍ଗ ନିରନ୍ତର ଉଠିଥାଏ ଏବଂ ଏହି ତରଙ୍ଗହିଁ ଆଗରେ ଯାଇ ଦେଶର ସଭ୍ୟାନାଶର କାରଣ ହୋଇଥାଏ ।

(୨୦) ୟୁରୋପର ଜଣେ ବିଦ୍ୱାନ୍ ଲେଖିଛନ୍ତି ଯେ- ୟୁରୋପରେ ଯନ୍ତ୍ରମାନଙ୍କର ଆବିଷ୍କାର ଶାନ୍ତିକୁ ଦଳିଦେଇଛି । ଏହି ଯନ୍ତ୍ର ଆବିଷ୍କାର ଅଶାନ୍ତିକୁ ଦୂର କରିପାରିବ ନାହିଁ, ପ୍ରତ୍ୟୁତ ଯୁଦ୍ଧକୁ ଏକ ପ୍ରକାର ଅତ୍ୟାଗୃହୀ ବିକ୍ଷେତାର ଉନ୍ମାଦ ଠାରୁ ଅଧିକ ଭୟାନକ କରି ଗଢିବ ।

( ବୈଦିକ ସମ୍ପତ୍ତି )

(୨୧) ବେକନ୍ ନାମକ ଜଣେ ବିଦ୍‌ବାନ୍ କହିଛନ୍ତି ଯେ—ରାଜ୍ୟର ଆରମ୍ଭ ଅବସ୍ଥାରେ ଯୁଦ୍ଧର ଉପକରଣ ବୃଦ୍ଧି ହୁଏ, ମଧ୍ୟମ ଅବସ୍ଥାରେ ଜ୍ଞାନବିଜ୍ଞାନ ବୃଦ୍ଧି ଦୁହିଁଙ୍କର ଦୌଡ଼ା ଦୌଡ଼ ହୁଏ । ଏବଂ ରାଜ୍ୟର ଅବନତି ସମୟରେ କଳ, କାରଖାନା, ଶିଳ୍ପ ବାଣିଜ୍ୟର ଅଭିବୃଦ୍ଧି ହୁଏ ।

(୨୨) ପ୍ରୋଫେସର ହକ୍‌ସ୍‌ଲି ସାହେବ ପାଶ୍ଚାତ୍ୟ ସଭ୍ୟତାକୁ ସମାଲୋଚନା କରି କହିଛନ୍ତି ଯେ- ସର୍ବାପେକ୍ଷା ଉଚ୍ଚକୋଟିର ଆଧୁନିକ ସଭ୍ୟତାର ଭିତରେ ମଧ୍ୟ ଯଥାର୍ଥ ଉନ୍ନତିର ଆଦର୍ଶ କିମ୍ବା ଚିରଞ୍ଜୀବନର ଲକ୍ଷଣ ମୁଁ କେଉଁଠିହେଲେ ପାଇନି ନାହିଁ । ଏହିକଥା କହିବାପାଇଁ ମୋର କିଛି ସଙ୍କୋଚ ନାହିଁ ଯେ- ଯଦି ବର୍ତ୍ତମାନ ସଭ୍ୟତା ଓ ଜ୍ଞାନଲାଭର ଏହି

ପରିଣାମ ହୁଏ ଯେ, ପ୍ରକୃତି ଉପରେ ବଳତ୍କାର ଓ ଅର୍ଥକାମ ବୃଦ୍ଧି ଦ୍ୱାରା ଅଭାବବୃଦ୍ଧି, ଲାଳସାବୃଦ୍ଧି କେବଳ ବାଳପିତାର ହିଁ ବୃଦ୍ଧି ହୁଏ ଏବଂ ଏହାର ଫଳରେ ସାଧାରଣ ଜନତା ମଧ୍ୟରେ ଶାରୀରିକ ଓ ନୈତିକ ଅବନତିର ଚରମ ସୀମା ପ୍ରାପ୍ତ ହୁଏ । ତେବେ ମୁଁ ଏହିଭଳି ଏକ ଧୂମକେତୁର ଉଦୟ ପ୍ରାର୍ଥନା କରିବି, ଯାହା ଦ୍ୱାରା ଅବଶ୍ୟମ୍ଭାବୀ ରୂପରେ ଆଧୁନିକ ସଭ୍ୟତାର ବିନାଶ ସାଧନ ହୋଇପାରିବ ।

(୨୩) ଡାକ୍ତର ଏ. ଆର୍. ବାଲେସ ସାହେବ କହିଛନ୍ତି ଯେ- ପଶ୍ଚିମୀ ସଭ୍ୟତା'ର ବମ୍‌ଗୋଳା, ବାରୁଦର ବର୍ଷା, ମନୁଷ୍ୟ ହତ୍ୟା, ଜୀବହତ୍ୟା, ଅନ୍ୟଦେଶ ତଥା ଅନ୍ୟଜାତି ଉପରେ ନିଷ୍ଠୁର ଆଧିପତ୍ୟ ବିସ୍ତାର ଏସବୁ ନୈତିକ ଅବନତିର ଚାକଚକ୍ୟ ଏବଂ ଅନ୍ୟଜାତିକୁ କଷ୍ଟଦେଇ ଦାସତ୍ୱ ଶୃଙ୍ଖଳାରେ ବାନ୍ଧି ରଖିବାରେ ପର୍ଯ୍ୟବସିତ ଅଟେ । ମୋର କାର୍ଯ୍ୟ ମୋଟରେ କହୁଛି ଯେ- ସଭ୍ୟତା ଅଭିମାନ୍ ନୁହେଁ । ଆପଣାର ଗର୍ବ ଓ ଅହଂକାରକୁ ଚରିତାର୍ଥ କରିବାପାଇଁ ଏବଂ ଅନ୍ୟ ଆଗରେ ଦାମ୍ଭିକତା ଦେଖାଇବାପାଇଁ ଏହି ଶବ୍ଦ ବହୁତ ବଡ଼ ଓ ବହୁତ ମିଠା । ଆମେମାନେ ସଭ୍ୟବୋଲି ଗର୍ବ କରୁଛୁ-କିନ୍ତୁ ତାହା କେବଳ ଦାମ୍ଭିକତା ମାତ୍ର । ଆମେମାନେ ଆଜିସୁଦ୍ଧା କେବଳ ଅସଭ୍ୟ । ଆମର ଜୀବନ ସମ୍ପୂର୍ଣ୍ଣ ଅସଭ୍ୟତାମୟ । ଆମମାନଙ୍କ ଭିତରେ ଯେଉଁ ଜାତୀୟ ପକ୍ଷପାତ ଅନ୍ୟ ଜାତିପ୍ରତି ଦ୍ୱେଷ ଓ ଦ୍ରୋହାଦି ବୃତ୍ତି, ଧନଲୋଭ, ଈର୍ଷା ଏବଂ ଅନ୍ୟକୁ ଦଳନ କରିବାପାଇଁ କଠୋର ପ୍ରବୃତ୍ତି, ଏସବୁ ଆମମାନଙ୍କର ପ୍ରବଳ ଅସଭ୍ୟତାର ସୂଚକ ଅଟେ ।

(୨୪) ଜାପାନର ଜଣେ ବକ୍ତା ୟୁରୋପରେ ବକ୍ତୃତା ଦେବା ସମୟରେ ୟୁରୋପୀୟମାନଙ୍କୁ ସମ୍ବୋଧନ କରି ଠିକ୍ କହିଥିଲେ ଯେ- ଦୁଇହଜାର ବର୍ଷକାଳ ଯେଉଁଦିନପର୍ଯ୍ୟନ୍ତ ଆମେମାନେ ସମସ୍ତ ସଂସାର ସହିତ ଶାନ୍ତି ସମ୍ବନ୍ଧ ସ୍ଥାପନ କରିଥିଲୁ ଏବଂ ସୂକ୍ଷ୍ମ କଳାବିଦ୍ୟାରେ ପ୍ରବୀଣ ଥିଲୁ, ସେତେବେଳ ପର୍ଯ୍ୟନ୍ତ ଆମମାନଙ୍କର ଗଣନା ଅସଭ୍ୟଜାତି ମଧ୍ୟରେ ଥିଲା ଏବଂ ଯେଉଁଦିନଠାରୁ ଆମେ ଅନ୍ୟଜାତି ସହିତ ସଂଗ୍ରାମ କରିବାରେ ଲାଗିଲୁ, ହଜାର ହଜାର ମନୁଷ୍ୟ ହତ୍ୟାକଲୁ, ସେହିଦିନଠାରୁ ଆମେ ଆପଣମାନଙ୍କର ଦୃଷ୍ଟିରେ ସଭ୍ୟ ବୋଲାଇଲୁ । ( ପ୍ରା॰ ଦୁ॰ ନି॰ ଭ )

ବୋଧହୁଏ, ଏହିସବୁ ପ୍ରମାଣରୁ ପାଠକ ବର୍ଗ ବୈଜ୍ଞାନିକ ଜଗତର ପ୍ରଜ୍ଞାପରାଧର ନିଦର୍ଶନ ଭଲରୂପେ ହୃଦୟଙ୍ଗମ କରିପାରିଥିବେ । ଏହିସବୁ ପାପର ପରିଣାମରେ ପୃଥିବୀର ଜନସଂଖ୍ୟା ଓ ଯୁଦ୍ଧବ୍ୟୟ ଦିନକୁ ଦିନ ଅତି ଉତ୍କଟଭାବରେ ବୃଦ୍ଧି ହେବାରେ ଲାଗିଛି ଏବଂ ବେଳକୁ ବେଳ ପ୍ରଜାମାନଙ୍କ ଉପରେ ଅତ୍ୟଧିକ କରଭାର ମଧ୍ୟ ବଢିଚାଲିଛି ।

(୨୪) ସଂଯୁକ୍ତ ରାଷ୍ଟ୍ରସଂଘ ସଂକଳିତ ସୂଚନା ପତ୍ରରୁ ଜଣାଯାଏ ଯେ— ବର୍ତ୍ତମାନ ପୃଥିବୀରେ ପ୍ରତିମିନିଟରେ ୧୭୦ ପ୍ରଜାର ଜନ୍ମ ଏବଂ ୯୦ ଜଣର ମୃତ୍ୟୁ ହେଉଅଛି । ଏହି ହିସାବରେ ପ୍ରତିମିନିଟରେ ୮୦ ଜଣ ବଢୁଅଛନ୍ତି । ପୃଥିବୀରେ ବର୍ତ୍ତମାନ ୨ ଅର୍ବୁଦ ୭୦ କୋଟି ଲୋକ ଅଛନ୍ତି ଯେଉଁମାନଙ୍କ ଭିତରେ ପ୍ରତିଦିନ ୧ ଲକ୍ଷ ୫୦ ହଜାର ଲୋକ ବଢୁଅଛନ୍ତି । ଏହି ହିସାବରେ ଏହି ଶତାବ୍ଦୀ ଶେଷରେ ପୃଥିବୀର ଲୋକସଂଖ୍ୟା ଦ୍ୱିଗୁଣିତ ହେବବୋଲି ୨୦୦ ବେରେ ହିସାବରୁ ଜଣାଯାଉଛି ।

( ସ୍ୱ. ତ. ଚ. ୨୮-ସଂଖ୍ୟା ୩୩ )

(୨୫) ପ୍ରଜା ସୋସଲିଷ୍ଟ ସଭ୍ୟ ଶ୍ରୀ ଏନ୍. ଜି. ରଙ୍ଗଆଙ୍କ ପ୍ରତି କରାଯାଇଥିବା ପ୍ରଶ୍ନର ଉତ୍ତରରୁ ଜଣାଯାଏ ଯେ-ପୃଥିବୀର ପ୍ରତ୍ୟେକ ମନୁଷ୍ୟ ୨୦-୨୦ ଟଙ୍କା ଦେଲେ ଯେତେ ଧନ ହେବ, ଅଥବା ପୃଥିବୀର ପ୍ରତ୍ୟେକ ପରିବାରରୁ ୭୫୦-୭୫୦ ଲେଖାରେ ଟଙ୍କା ଆଦାୟ କଲେ ଯେତିକି ଟଙ୍କା ହେବ, ଭାରତର ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନାରେ ସେତିକି ଟଙ୍କା ବ୍ୟୟ ହେବ । ଏଥିରୁ ପ୍ରଜାମାନଙ୍କ ଉପରେ ହେବା କରପୀଡ଼ା ସହଜରେ ଅନୁମେୟ ।

(୨୬) ଭାରତ ସରକାରଙ୍କ ସୈନ୍ୟବିଭାଗରେ ଭାରତର ସୁରକ୍ଷା ନିମନ୍ତେ ଭାରତସରକାର ଯୁଦ୍ଧୋପକରଣ ସଂଗ୍ରହାର୍ଥେ ବାର୍ଷିକ ଯାହା ବ୍ୟୟ କରନ୍ତି, ତାହା ତାଙ୍କର ଆଦାୟ ହେବା ରାଜସ୍ୱର ପ୍ରାୟ ଅର୍ଦ୍ଧ ଏଥି ସମ୍ବନ୍ଧେ ଆଚାର୍ଯ୍ୟ କୃପାଳିନୀ କହନ୍ତି ଯେ-"ଦେଶ ସ୍ୱାଧୀନ ଭାରତର ସୈନ୍ୟବିଭାଗରେ ବ୍ୟୟ କରୁଛି" । ଏହି ସବୁ ପ୍ରମାଣରୁ ବର୍ତ୍ତମାନ ସମଗ୍ର ପୃଥିବୀରେ ବିଶେଷତଃ ଭାରତବର୍ଷରେ ଜନବୃଦ୍ଧି, ଦମ୍ଭବୃଦ୍ଧି, ବ୍ୟାଧିବୃଦ୍ଧି ଋଣବୃଦ୍ଧି, ପାପବୃଦ୍ଧି ଦୁର୍ନୀତି ଓ ଦୁର୍ମତିର ବୃଦ୍ଧି ଭିତରେ ଦୁର୍ଗନ୍ଧର ବୃଦ୍ଧି ଯେ କେତେଦୂର ଘଟିଛି ଓ ଘଟିବ, ତାହା ଏଠାରେ ଲେଖିବା ଅନାବଶ୍ୟକ ।

ପ୍ରକୃତ ହିନ୍ଦୁର-ପରିଚୟ

ମହାତ୍ମା ଚଇନାବାଞ୍ଚବ ହିନ୍ଦୁର ପରିଚୟ ଦେଇ ଲେଖିଛନ୍ତି ଯେ—

"ଯୋ ବର୍ଣ୍ଣାଶ୍ରମନିଷ୍ଠାବାନ୍ ଗୋଭକ୍ତଃ ଶ୍ରୁତିମାତୃକଃ
ମୂର୍ତ୍ତିଂ ଚ ନାବଜାନାତି ସର୍ବଧର୍ମସମାଦରଃ ।
ଉତ୍ପ୍ରେକ୍ଷତେ ପୁନର୍ଜନ୍ମ ତସ୍ମାନ୍ ମୋକ୍ଷମୀହତେ ॥
ଭୂତାନୁକୂଲ୍ୟଂ ଭଜତେ ସ ବୈ ହିନ୍ଦୁରିତି ସ୍ମୃତଃ ।
ହିଂସୟା ଦୂୟତେ ଚିତ୍ତଂ ତେନ ହିନ୍ଦୁରିତୀରିତଃ ।

ଅର୍ଥାତ୍ ବର୍ଣ୍ଣାଶ୍ରମ ଧର୍ମରେ ଯାହାର ନିଷ୍ଠା ବା ବିଶ୍ୱାସ ଥାଏ, ଯେ ଗୋଭକ୍ତ ଓ ବେଦଭକ୍ତ, ଯେ ମୂର୍ତ୍ତିକୁ ଅନାଦର କରେନାହିଁ ଏବଂ ସମସ୍ତ ଧର୍ମକୁ ସମାନଭାବରେ ଆଦର କରେ, ଯେ ପୁନର୍ଜନ୍ମ ବିଶ୍ୱାସ କରେ ଏବଂ ସେଥିଲାଗି ମୋକ୍ଷକାମନା କରେ, ପୁଣି ସମସ୍ତ ପ୍ରାଣିମାନଙ୍କୁ ଯେ ଦୟାକରେ, ସେ ହିନ୍ଦୁନାମରେ ଅଭିହିତ ହୁଏ । ଅଥବା ହିଂସା କର୍ମ ଦେଖିଲେ ଯାହାର ମନ ଦୁଃଖିତ ବା ସନ୍ତପ୍ତ ହୁଏ, ତାଙ୍କୁ ହିନ୍ଦୁ ବୋଲନ୍ତି ।

ଏହିଭଳି ବୃଦ୍ଧସ୍ମୃତିରେ ଲେଖାଅଛି ଯେ—

ହିଂସୟା ଦୂୟତେ ଯସ୍ତୁ ସଦାଚରଣ ତତ୍ପରଃ ।
ବେଦ ଗୋପ୍ରତିମାସେବୀ ସ ହିନ୍ଦୂ ମୁଖବର୍ଣ୍ଣଭାକ୍ ॥

ଅର୍ଥାତ୍ ହିଂସା ପ୍ରବୃତ୍ତି ଦେଖିଲେ ଯେ ଦୁଃଖିତ ହୁଏ ଏବଂ ଯେ ସଦାଚରଣତତ୍ପର, ଅର୍ଥାତ୍ ଶୁଦ୍ଧାଚାର ସମ୍ପନ୍ନ ବ୍ରାହ୍ମଣ ଏବଂ ସଦାଚରଣତତ୍ପର ଅର୍ଥାତ୍ ସର୍ବଦା ରଣ ବା ଯୁଦ୍ଧ କରିବାପାଇଁ ଉଦ୍ୟତ କ୍ଷତ୍ରିୟ ଏବଂ ସଦାଚରଣ ତତ୍ପର ଅର୍ଥାତ୍ ସର୍ବଦା ବାଣିଜ୍ୟାର୍ଥରେ ଦେଶ ବିଦେଶରେ ସଞ୍ଚାର କରିବାପାଇଁ ତତ୍ପର ବୈଶ୍ୟ ଏବଂ ସଦାଚରଣେ ତତ୍ପର ଅର୍ଥାତ୍ ଉକ୍ତ ତିନି ବର୍ଣ୍ଣର ସର୍ବଦା ଚରଣ ସେବାକରିବା ତତ୍ପର ହୋଇଥିବା ଶୂଦ୍ର, ଏହିପରି ଚାରି ବର୍ଣ୍ଣରେ ଯେଉଁ ସମାଜ ବିଭକ୍ତ, ଯେଉଁ ସମାଜରେ ବ୍ରାହ୍ମଣ-ବେଦ, ଗୋ, ପ୍ରତିମା ସେବୀ ଅର୍ଥାତ୍ ବେଦବାଣୀର ମୂର୍ତ୍ତି ସ୍ୱରୂପ ସମସ୍ତ ଦେବମାନଙ୍କର ଅନନ୍ୟ ସେବକ ଏବଂ ଯେଉଁ ସମାଜରେ କ୍ଷତ୍ରିୟ-ବେଦ ଗୋ-ପ୍ରତିମା ସେବୀ ଅର୍ଥାତ୍ ବେଦରକ୍ଷକ ଭୂମିରକ୍ଷକ ଓ ଦେବପ୍ରତିମା ରକ୍ଷକ ଏବଂ ଯେଉଁ ସମାଜରେ ବୈଶ୍ୟ

ବେଦ-ଗୋ-ପ୍ରତିମା ସେବା ଅର୍ଥାତ୍ ବେଦର ପୋଷକ, ଗୋଜାତିର ପୋଷକ ଏବଂ ଦେବପ୍ରତିମାର ପୋଷକ ଅଟେ, ଏବଂ ଯେଉଁ ସମାଜରେ ଶୂଦ୍ର-ବେଦ-ଗୋ-ପ୍ରତିମା ସେବା ଅର୍ଥାତ୍ ବେଦ, ବର୍ଣ୍ଣ, ପ୍ରତିମା ଓ ଗୋଜାତି ଯେଉଁ ବର୍ଣ୍ଣଙ୍କ ପୁରୁଷର ପ୍ରତିମା- ତା'ର ଅଙ୍ଗଭୂତ * ବ୍ରାହ୍ମଣ କ୍ଷତ୍ରିୟ ଓ ବୈଶ୍ୟର ସେବକ, ସେହି ବର୍ଣ୍ଣାଶ୍ରମ ଧର୍ମାତ୍ମକ ମାନବ ସମାଜକୁ ହିନ୍ଦୁ ସମାଜ ବୋଲନ୍ତି । ବେଦରେ ମଧ୍ୟ ଗୋରକ୍ଷକ ଓ ବେଦଧାରକଙ୍କୁ ହିନ୍ଦୁ ବୋଲଯାଇଛି । ଋଗ୍‌ବେଦ ଓ ଅଥର୍ବ ବେଦରେ ଲେଖାଅଛି ଯେ—

“ହିଂକୃଣ୍ୱତୀ ବସୁପତ୍ନୀ ବସୂନାଂ ବତ୍ସମିଚ୍ଛନ୍ତୀ ମନସାଭ୍ୟାଗାତ୍ ।
ଦୁହାମଶ୍ୱିଭ୍ୟାଂ ପୟୋ ଅଘ୍ନ୍ୟେୟଂ ସା ବର୍ଦ୍ଧତାଂ ମହତେ ସୌଭଗାୟ ॥
( ଋ° । ୭୮ । ୨୭ ଅଥର୍ବ° ୯ । ୧୦ । ୪ )

ଏହି ମନ୍ତ୍ରର ପୂର୍ବାର୍ଦ୍ଧ ପ୍ରଥମ ଅକ୍ଷର ହିଂ ଏବଂ ଉତ୍ତରାର୍ଦ୍ଧର ପ୍ରଥମ ଅକ୍ଷର-ଦୁ ହିଂଦୁର ଅର୍ଥ-ଗୋରୁ ଓ ସାମବେଦ ଏବଂ ଦୁ-ଟିର ଅର୍ଥ ଧାରଣ କରିବା, ଅର୍ଥାତ୍ ବେଦ ଧାରକ ଓ ଗୋପୂଜକ ଜାତିର ନାମ ହିନ୍ଦୁ । ହିନ୍ଦୁ ଧର୍ମର ଓ ବର୍ଣ୍ଣଧର୍ମର ମୂଳ ବେଦ ।

ମନୁ ଲେଖିଛନ୍ତି ଯେ— ବେଦୋଽଖିଳୋ ଧର୍ମମୂଳମ୍ ( ମନୁ° ୨।୬ ) ଅର୍ଥାତ୍ ସମସ୍ତ ବେଦ ( ଜ୍ଞାନ ) ଧର୍ମର ମୂଳ ଅଟେ । ଆଉରି ମଧ୍ୟ ଲେଖାଅଛି ଯେ—

“ଯଃ କଶ୍ଚିତ୍ କସ୍ୟଚିଦ୍ଧର୍ମୋ ମନୁନା ପରିକୀର୍ତ୍ତିତଃ ।
ସ ସର୍ବୋଽଭିହିତୋ ବେଦେ ସର୍ବଜ୍ଞାନମୟୋ ହି ସଃ ॥
( ମନୁ )

ଅର୍ଥାତ୍ ଯେକୌଣସି ଜାତି ପକ୍ଷରେ ଯାହା କିଛି ଧର୍ମ ମନୁ କହିଛନ୍ତି, ସେ ସବୁ ସମସ୍ତ ବେଦରେ କୁହାଯାଇଛି । ଯେହେତୁ ବେଦ ସମସ୍ତ ଜ୍ଞାନର ଅକ୍ଷୟ ଭଣ୍ଡାର । ହିନ୍ଦୁର ଧର୍ମ ସନାତନ; ହିନ୍ଦୁଧର୍ମର ଉପାସ୍ୟଦେବତା ସନାତନ ଏବଂ ହିନ୍ଦୁମାନଙ୍କର ବେଦବେଦ୍ୟ ବ୍ରହ୍ମ ସନାତନ ଅଟେ । ପାଶ୍ଚାତ୍ୟ ପଣ୍ଡିତମାନେ କହନ୍ତି ଯେ- ବେଦ ମନ୍ତ୍ରର କୌଣସି ଛନ୍ଦ

* ବ୍ରାହ୍ମଣୋଽସ୍ୟ ମୁଖମାସୀଦ୍ ବାହୂ ରାଜନ୍ୟଃ କୃତଃ ।
ଊରୂ ତଦସ୍ୟ ଯଦ୍ବୈଶ୍ୟଃ ପଦ୍‌ଭ୍ୟାଂ ଶୂଦ୍ରୋଽଜାୟତ ॥
( ଋକ୍‌ବେଦ )

ଏହାର ପ୍ରମାଣ ମିଳେନାହିଁ । ବେଦ ହିଁ ସୃଷ୍ଟିର ଆଦିଗ୍ରନ୍ଥ । *
ପାଶ୍ଚାତ୍ୟ ବେଦବିଦ୍ୱାନ୍ ମାକ୍ସମୂଲର କହିଛନ୍ତି ଯେ—
“ଯଦି ଜ୍ଞାନର ଚରମ ସୀମା କିଛି ଥାଏ, ତାହା ବେଦରେ ହିଁ ଅଛି । ଜ୍ଞାନ ସମ୍ବନ୍ଧରେ ବେଦ ଅପେକ୍ଷା ବଡ଼ କଥା କେବେ କେହି କହିନାହାନ୍ତି କି, କହିପାରିବ ନାହିଁ ।” ଆଉ ମଧ୍ୟ ବେଦର ସାର ଉପନିଷଦ୍ ସମ୍ବନ୍ଧେ ସେ କହିଛନ୍ତି ଯେ- “ଆମମାନଙ୍କର ଉପରେ ଅସଂଖ୍ୟ ଗ୍ରହ ଉପଗ୍ରହ ଖଚିତ ଯେଉଁ ଅସୀମ ଅନନ୍ତ ଆକାଶ ରହିଛି, ତା’ଉପରେ ବିଶାଳ ବସ୍ତୁ ଏହି ଭୂଲୋକରେ କ’ଣ ଅଛି ? ଏହି ପ୍ରଶ୍ନ ମୋତେ ଯଦି କେହି ପଚାରେ, ତେବେ ମୁଁ ଏହାର ଉତ୍ତର ଦେବି ଯେ- ବେଦ ଉପନିଷଦ୍‌ର ଉପଦେଷ୍ଟା ହିନ୍ଦୁ ଋଷିମାନଙ୍କର ହୃଦୟହିଁ ଆକାଶତୁଲ୍ୟ ଅନନ୍ତ ଓ ଅସୀମ । ଜର୍ମାନର ଆଉ ଜଣେ ବେଦବିଦ୍ୱାନ୍ ଲେଖିଛନ୍ତି ଯେ- “ଯଦି ପୃଥିବୀର ସମସ୍ତ ଧର୍ମଗ୍ରନ୍ଥ ଧ୍ୱଂସ ହୋଇଯାଇ କେବଳ ହିନ୍ଦୁ ମହର୍ଷିମାନଙ୍କର ୧୨ ଟି ଉପନିଷଦ୍ ରହିଯାଏ, ତାହେଲେ ଧର୍ମ ସମ୍ବନ୍ଧରେ ଆଉ କିଛି ଚିନ୍ତା-କରିବାକୁ ହେବନାହିଁ ।

ସମୁଦାୟ କଥାର ସାରାଂଶ ଏହି ଯେ- ବେଦରେ ଯାହା ଅଛି, ଜଗତରେ ସମସ୍ତ ଶାସ୍ତ୍ରରେ ତାହା ହିଁ ଅଛି । ବେଦରେ ଯାହା ନାହିଁ, ତା’ହା ଜଗତର କୌଣସି ଶାସ୍ତ୍ରରେ ନାହିଁ । ଅତଏବ ବେଦଭାଷ୍ୟକାର ସାୟଣାଚାର୍ଯ୍ୟ ବେଦ ଶବ୍ଦର ଏହି ଅର୍ଥ ଲେଖିଛନ୍ତି ଯେ—

---

* ବେଦ ଦୁଇଭାଗରେ ବିଭକ୍ତ । ଏକ ମନ୍ତ୍ର ଭାଗ, ଦୁଇ ବ୍ରାହ୍ମଣ ଭାଗ । ମନ୍ତ୍ରଭାଗ, ତିନି ପ୍ରକାର-ଋକ୍ (ପଦ୍ୟ) ଯଜୁ- ( ଗଦ୍ୟ ) ସାମ- ( ଗାନ ) ଏହି ତିନ ପ୍ରକାର ମନ୍ତ୍ରମାନଙ୍କର ସଂଗ୍ରହ ଅଥର୍ବ ବେଦ । ଋଗ୍‌ବେଦର ସଂହିତା ୨୧, ଯଜୁର୍ବେଦର ୧୦୧, ସାମ ବେଦର ୧୦୦୦ ଏବଂ ଅଥର୍ବ ବେଦର ୯, ସର୍ବମୋଟ ୧୧୩୧ । ଏ ବାଦେ ବେଦର ଅଙ୍ଗ ୬- ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦ, ଓ ଜ୍ୟୋତିଷ । ବେଦର ଉପାଙ୍ଗ ୪-ପୁରାଣ, ନ୍ୟାୟ, ମୀମାଂସା ଓ ଧର୍ମ ଶାସ୍ତ୍ର । ଉପବେଦ ୪ ପ୍ରକାର- ୧ ଆୟୁର୍ବେଦ, ୨ ଧନୁର୍ବେଦ, ୩ ଗାନ୍ଧର୍ବବେଦ, ୪ ଅର୍ଥବେଦ ବା ସ୍ଥାପତ୍ୟବେଦ । ତନ୍ତ୍ରଶାସ୍ତ୍ର ପୁରାଣର ଅନ୍ତର୍ଗତ । ରାମାୟଣ ଓ ମହାଭାରତାଦି ଇତିହାସ ବେଦାର୍ଥର ବିସ୍ତାର ।

ପ୍ରତ୍ୟକ୍ଷେଣାନୁମିତ୍ୟା ବା ଯସ୍ତୂପାୟୋ ନ ବୁଧ୍ୟତେ
ତମର୍ଥଂ ବେଦ ବେଦେନ ତସ୍ମାଦ୍ ବେଦସ୍ୟ ବେଦତା ॥

ଅର୍ଥାତ୍ ପ୍ରତ୍ୟକ୍ଷ ଓ ଅନୁମାନ ପ୍ରମାଣଦ୍ୱାରା ଯେଉଁସବୁ ବିଷୟର ବୋଧ ହୁଏ ନାହିଁ, ସେହି ସମସ୍ତ ବିଷୟର ବୋଧ ବେଦଦ୍ୱାରା ହିଁ ହୋଇଥାଏ । ଅତଏବ ଅତୀନ୍ଦ୍ରିୟ ବିଷୟମାନଙ୍କର ବୋଧକ ଶାସ୍ତ୍ରର ନାମ ବେଦ ।

ଏହି ଜଗତର ସୃଷ୍ଟି ପ୍ରଳୟ, ଜନ୍ମମୃତ୍ୟୁ, ଇହକାଳ ପରକାଳ, ଧର୍ମ ଅଧର୍ମ ଓ ଜ୍ଞାନ ବିଜ୍ଞାନାଦି ଦୈତ ପ୍ରପଞ୍ଚର ମୂଳ ରହସ୍ୟ ବେଦଚର୍ଚ୍ଚା ଦ୍ୱାରା ହିଁ ଜଣାଯାଇଥାଏ ।

## ହିନ୍ଦୁଧର୍ମ ଓ ବୈଦିକ ସୃଷ୍ଟି କାଳ

ଏହି ଦୃଶ୍ୟମାନ ସଂସାର ସୃଷ୍ଟି ହେବାର କେତେକାଳ ହେଲା ? ଏହି ପ୍ରଶ୍ନର ଉତ୍ତରରେ ପାଶ୍ଚାତ୍ୟ ବିଦ୍ୱାନ୍‌ମାନଙ୍କ ମଧ୍ୟରେ ଐକମତ୍ୟ ଦେଖାଯାଏ ନାହିଁ । କିଏ କହନ୍ତି— ସୃଷ୍ଟି ହେବାର ଆଜକୁ ୫ ହଜାର ବର୍ଷ ହେଲା । ଖ୍ରୀଷ୍ଟିୟାନ୍‌ମାନେ ୬ ହଜାର ୯ ଶହ ୮୫ ବର୍ଷ ପୂର୍ବରୁ ଏହି ସୃଷ୍ଟି ହେଲାବୋଲି ମାନୁଥିଲେ । କିନ୍ତୁ ଏବେ କେତେଦିନହେଲା ବହୁତ ପୁରାତନ କାଳର କେତେଖଣ୍ଡ ଅସ୍ଥି ଦେଖି ସେମାନଙ୍କର ଧାରଣା ବଦଳିଯାଇଛି । କେତେକ ପାଶ୍ଚାତ୍ୟ ପଣ୍ଡିତ ଗ୍ରହ ନକ୍ଷତ୍ରମାନଙ୍କର ଉଷ୍ଣତାର ହ୍ରାସକୁ ବୁଝି ଏହି ଜଗତର ଉତ୍ପତ୍ତି ୪୦ ଲକ୍ଷବର୍ଷ ହେଲା, ବୋଲି ସିଦ୍ଧାନ୍ତ କରିଛନ୍ତି । ଏହାପରେ ସେ ଦେଶର ଭୂଗର୍ଭ ତତ୍ତ୍ୱ ବିଶାରଦମାନେ ପୃଥିବୀ ଉତ୍ପନ୍ନ ହେବାର ଦଶ କୋଟି ବର୍ଷ ହେଲାବୋଲି ଲେଖିଯାଇଛନ୍ତି । ପ୍ରୋଫେସର ଜୋଲିନ ସମୁଦ୍ରର କ୍ଷାର ଜଳକୁ ଦେଖି ନିର୍ଣ୍ଣୟ କରିଛନ୍ତି ଯେ— ସଂସାରରେ ସମୁଦ୍ର ସୃଷ୍ଟି ହେବାର ଦଶକୋଟି ବର୍ଷ ହେଲା । ଚୀନ ଦେଶବାସୀ ବୈଜ୍ଞାନିକ ୯ କୋଟି ୬୦ ଲକ୍ଷ ୨ ହଜାର ୪୨୩ ବର୍ଷ ହେଲା ଏହି ସୃଷ୍ଟିର ଆରମ୍ଭ ବୋଲି ମାନନ୍ତି । ପ୍ରସିଦ୍ଧ ଅସ୍ଥିତତ୍ତ୍ୱବେତ୍ତା ଡକ୍ଟର ବର୍ଲାଟୁନ ଏବଂ ପ୍ରୋଫେସର ସ୍ମିଥ ଏଣ୍ଡରସନ ଆଦି ପୃଥିବୀର ଉଷ୍ଣତାକୁ ପରୀକ୍ଷାକରି ଏହାର ଉତ୍ପତ୍ତିକାଳ ୧୦ କୋଟି ବର୍ଷ ହେଲାବୋଲି ପ୍ରମାଣିତ କରିଛନ୍ତି । ୟୁରେନିୟମ, ହିଲିୟମ, ପୋଲୋନିୟମ ଆଦି ଧାତୁମାନଙ୍କର ପରୀକ୍ଷକ ବୈଜ୍ଞାନିକମାନଙ୍କର ମତରେ ପୃଥିବୀର

ଉତ୍ପତ୍ତି କାଳ ୩୦ କୋଟି ବର୍ଷ ହେଲା । ପ୍ରୋ: ନଗ୍ରଥଙ୍କ ସୃଷ୍ଟି-ନିର୍ମାଣ କାଳ ୩୫ କୋଟି ବର୍ଷବୋଲି ମାନନ୍ତି । ( ପ୍ଲାନେଟ ଡାର୍କିନ, ପୃଷ୍ଠା ୭୧୪ ) ପ୍ରୋ: ରେଡ଼ ଅଦ୍ୟାବଧି ସୃଷ୍ଟି କାଳ ୫୦ କୋଟି ବର୍ଷବୋଲି ମାନନ୍ତି । ପ୍ରୋ: ହକସଲ ଏହି ସୃଷ୍ଟି ହେବାର ୧ ଅର୍ବୁଦ ବର୍ଷ ହେଲାବୋଲି ନିର୍ଣ୍ଣୟ କରିଛନ୍ତି । ( ବଲ୍ଡ଼ଲାଇଫ ପୃଷ୍ଠା ୧୮୨ ) କେହି କେହି ସୃଷ୍ଟି ନିର୍ମାଣ କାଳ ୧ ଅର୍ବୁଦ ୬୦ କୋଟି ବର୍ଷ ହେଲାବୋଲି ମତ ପ୍ରକାଶ କରିଛନ୍ତି (କଲ୍ୟାଣ) କିନ୍ତୁ ଏହିଭଳି ଆଂଶିକ ଜ୍ଞାନ ବା ଅଯଥାର୍ଥ ଜ୍ଞାନ ସମ୍ଭୂତ ସନ୍ଦେହ ସଙ୍କୁଳ ମତଭେଦ ହିନ୍ଦୁମାନଙ୍କର ଶାସ୍ତ୍ରରେ ନାହିଁ । ସୃଷ୍ଟି କାଳ ସମ୍ବନ୍ଧ ହିନ୍ଦୁ ଶାସ୍ତ୍ରର ସିଦ୍ଧାନ୍ତ ଏହି ଯେ- * ଏହି ସଂସାର ସୃଷ୍ଟି ହେବାର

---

* ହିନ୍ଦୁମାନେ ପ୍ରତ୍ୟେକ ଶୁଭକାର୍ଯ୍ୟରେ ଗୋଟିଏ ସଙ୍କଳ୍ପପାଠ କରନ୍ତି । ତନ୍ମଧ୍ୟରୁ ସୃଷ୍ଟି ସମ୍ବତ୍ସର ସମ୍ବନ୍ଧରେ ଓ ମନ୍ୱନ୍ତର ଧର୍ମପକ୍ଷେ- ସେହି ସଙ୍କଳ୍ପ-ଯଥା— "ଓଁ ତତ୍ସତ୍ ଅଦ୍ୟ ବ୍ରହ୍ମଣୋ ଦ୍ୱିତୀୟ ପରାର୍ଦ୍ଧେ ଶ୍ରୀଶ୍ୱେତବାରାହ କଳ୍ପେ ବୈବସ୍ୱତମନ୍ୱନ୍ତରେ ଅଷ୍ଟାବିଂଶତିତମେ କଳିଯୁଗେ, କଳି ପ୍ରଥମଚରଣେ ଇତ୍ୟାଦି ।

ଏଥିରୁ ଜଣାଯାଏ ଯେ- ସୃଷ୍ଟି କର୍ତ୍ତା ବ୍ରହ୍ମାଙ୍କର ପରମାୟୁ ( ତାଙ୍କର ଦିନ ମାନରେ ) ୧୦୦ ବର୍ଷ । ବ୍ରହ୍ମାଣ୍ଡ ସୃଷ୍ଟି ଆରମ୍ଭଠାରୁ ପ୍ରଳୟ ପର୍ଯ୍ୟନ୍ତ ଏତିକି ସମୟ ବ୍ୟତୀତ ହୋଇଥାଏ । ବ୍ରହ୍ମା ବା ଅକ୍ଷର ପୁରୁଷଙ୍କର ପୂର୍ବପରାର୍ଦ୍ଧ ଅର୍ଥାତ୍ ତାଙ୍କର ଆୟୁର ୫୦ ବର୍ଷ ବିତିଗଲାଣି । ଦ୍ୱିତୀୟ ପରାର୍ଦ୍ଧର ପ୍ରଥମ କଳ୍ପ [ ଦିନ ] ବର୍ତ୍ତମାନ ଚାଲିଛି- ଯା'ର ନାମ- ଶ୍ୱେତବାରାହକଳ୍ପ- ଅର୍ଥାତ୍ ଆଜିକାଲି ବ୍ରହ୍ମାଙ୍କର ୫୧ ବର୍ଷର ପ୍ରଥମ ଦିନ ଚାଲିଛି ଏବଂ ଏହାର ୧୩ ଦଣ୍ଡ ୪୨ ପଳ ୩ ବିପଳ ୪୩ ପ୍ରତିବିପଳ ବିତିଗଲାଣି । ଗୀତାରେ ଲେଖାଅଛି ଯେ—

"ଦୈବିକାନାଂ ଯୁଗାନାଂ ତୁ ସହସ୍ରଂ ପରିସଂଖ୍ୟୟା"
ବ୍ରାହ୍ମମେକମହର୍ଜ୍ଞେୟଂ ତାବତୀ ରାତ୍ରିମେବ ଚ ।
ଅବ୍ୟକ୍ତାଦ୍ବ୍ୟକ୍ତୟଃ ସର୍ବାଃ ପ୍ରଭବନ୍ତ୍ୟହରାଗମେ ॥
ରାତ୍ର୍ୟାଗମେ ପ୍ରଲୀୟନ୍ତେ ତତ୍ରୈବାବ୍ୟକ୍ତସଂଜ୍ଞକେ ।
ଅବ୍ୟକ୍ତୋଽକ୍ଷର ଇତ୍ୟୁକ୍ତସ୍ତମାହୁଃ ପରମାଂ ଗତିମ୍ ॥ [ଗୀତା]

ଆଜକୁ ୧ ଅର୍ବୁଦ, ୯୭ କୋଟି ୨୯ ଲକ୍ଷ, ୪୯ ହଜାର ୫୭ ବର୍ଷ ହେଲା । ଏଥିରୁ ୧୬ ଲକ୍ଷ ୭୨ ହଜାର ବର୍ଷ ଜଳପ୍ଲାବାଦି ସୃଷ୍ଟି ଅନନ୍ତର ହେବାପରେ ପୃଥିବୀ ମନୁଷ୍ୟର ନିବାସୋପଯୋଗୀ ହୋଇଥିଲା ଏବଂ ପୃଥିବୀରେ ମନୁଷ୍ୟ ସୃଷ୍ଟି ହେଲା । ଅତଏବ ୧୯୬ କୋଟି, ୫୮ ଲକ୍ଷ ୮୫ ହଜାର ୧୯ ବର୍ଷହେଲା ମନୁଷ୍ୟର ବାସ ପୃଥିବୀରେ ଆରମ୍ଭ ହୋଇଅଛି । ଏଥି ମଧ୍ୟରୁ ୫ ହଜାର ୨୯ ବର୍ଷ ବାଦ୍ ଦେଲେ ୧୯୬ କୋଟି ୫୮ ଲକ୍ଷ, ୮୦ ହଜାର ବର୍ଷ ପର୍ଯ୍ୟନ୍ତ ହିନ୍ଦୁମାନଙ୍କର ରାଜତ୍ୱ ସମସ୍ତ ପୃଥିବୀରେ ଅକ୍ଷୁଣ୍ଣ ଥିଲା । ସୃଷ୍ଟିର ଆରମ୍ଭରେ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କର* ମାନସ ପୁତ୍ର ସ୍ୱାୟମ୍ଭୁବ ମନୁ (ଧର୍ମଶାସ୍ତ୍ରକାର) ବେଦଧର୍ମକୁ ପୃଥିବୀରେ ବିସ୍ତାରକରିବା ପାଇଁ ପୃଥିବୀବାସୀ ତାଙ୍କର ପ୍ରଜାମାନଙ୍କୁ ଏହି ଆଦେଶ ଦେଇଥିଲେ ଯେ-

ଏତଦ୍ଦେଶ ପ୍ରସୂତସ୍ୟ ସକାଶାଦଗ୍ରଜନ୍ମନଃ ।
ସ୍ୱଂ ସ୍ୱଂ ଚରିତ୍ରଂ ଶିକ୍ଷେରନ୍ ପୃଥିବ୍ୟାଂ ସର୍ବମାନବାଃ ॥
( ମନୁଃ ୨ଅ ୨୦ ଶ୍ଳୋ )

ଅର୍ଥାତ୍ ଏହି ଭାରତବର୍ଷ ପ୍ରସୂତ ଅଗ୍ରଜନ୍ମା ବ୍ରାହ୍ମଣମାନଙ୍କଠାରୁ ସମଗ୍ର ପୃଥିବୀବାସୀ ନିଜନିଜର ଆଚରଣ ବା ବ୍ୟବହାର ଶିକ୍ଷାକରିବାକୁ ହେବ, ଇତିହାସ ଅନୁସନ୍ଧାନ କଲେମଧ୍ୟ ଜଣାଯାଏ ଯେ- ସମସ୍ତ ଧର୍ମର ମୂଳ

---

* ବ୍ରହ୍ମାଙ୍କର ପରିଚୟ ବେଦାନ୍ତ ପଞ୍ଚଦଶୀରେ ଲେଖାଅଛି ଯେ- ଆମ୍ଭମାନଙ୍କର ସ୍ଥୂଳ ଦେହାଭିମାନୀ ପୁରୁଷର ନାମ- ବିଶ୍ୱ, ସୂକ୍ଷ୍ମ- ଦେହାଭିମାନୀର ନାମ- ତୈଜସ ଏବଂ ଅଜ୍ଞାନ ସୂକ୍ଷ୍ମ କାରଣ ଦେହାଭିମାନୀର ନାମ- ପ୍ରାଜ୍ଞ । ଏହି ସମସ୍ତ ବ୍ରହ୍ମାଣ୍ଡର ସ୍ଥୂଳଦେହ ସମଷ୍ଟିକୁ ଏକ ଅଖଣ୍ଡ ଚୈତନ୍ୟବୋଲି ଯେଉଁ ମନେକରେ, ସେହି ବିରାଟ୍ ସ୍ଥୂଳ ଦେହାଭିମାନୀ ପୁରୁଷର ନାମ- ବିରାଟ୍ । ଏହିପରି ବ୍ରହ୍ମାଣ୍ଡର ସୂକ୍ଷ୍ମଦେହ ସମୂହ ସମଷ୍ଟିର ଅଭିମାନୀ ପୁରୁଷର ନାମ- ବ୍ରହ୍ମା ଏବଂ ସର୍ବାପେକ୍ଷା ସୂକ୍ଷ୍ମାତିସୂକ୍ଷ୍ମ କାରଣ ଦେହ ସମୂହ ସମଷ୍ଟିର ଅଭିମାନୀ ପୁରୁଷର ନାମ- ଈଶ୍ୱର । ଈଶ୍ୱରଙ୍କ ଠାରୁ ବ୍ରହ୍ମା, ବ୍ରହ୍ମାଙ୍କଠାରୁ ମନୁ, ଏବଂ ମନୁଙ୍କ-ଠାରୁ ମାନବ ସୃଷ୍ଟି ହେଲା ।

ଯୋ ବ୍ରହ୍ମାଣଂ ବିଦଧାତି ପୂର୍ବଂ ଯୋ ବୈ ବେଦାଂଶ୍ଚ ପ୍ରହିଣୋତି ତସ୍ମୈ ।
ତଂ ହ ଦେବଂ ଆତ୍ମବୁଦ୍ଧି ପ୍ରକାଶଂ ମୁମୁକ୍ଷୁର୍ବୈ ଶରଣମହଂ ପ୍ରପଦ୍ୟେ ॥
[ ଶ୍ୱେତାଶ୍ୱତର ]

ବୈଦିକ ବ୍ରାହ୍ମଣ । * (ଅଧୁନା ବ୍ରାହ୍ମଣ କିଏ ? ତାହା ଆମେ ପରେ କହିବୁ)

ଋଗ୍‌ବେଦର ଐତରେୟ ବ୍ରାହ୍ମଣରେ ମଧ୍ୟ ଋଷିମାନଙ୍କର ଏହି ଘୋଷଣା ଦେଖିବାକୁ ମିଳେ—

"ଋଷି ! ସାମ୍ରାଜ୍ୟଂ ଭୌଜ୍ୟଂ, ସ୍ୱାରାଜ୍ୟଂ, ବୈରାଜ୍ୟଂ ପାରମେଷ୍ଠ୍ୟଂ ରାଜ୍ୟଂ ମହାରାଜ୍ୟ ମାଧିପତ୍ୟମୟଂ ସମନ୍ତ ପର୍ଯ୍ୟାୟୀସ୍ୟାତ୍ ସାର୍ବଭୌମଃ ସାର୍ବାୟୁଷ ଆନ୍ତାଦାପରାର୍ଦ୍ଧାତ୍ ପୃଥିବ୍ୟୈ ସମୁଦ୍ରପର୍ଯ୍ୟନ୍ତାୟା ଏକରାଟ୍ ଇତି ।

---

* ୧ ଆରବ ଦେଶବାସୀ ମୁସଲମାନ ସମ୍ପ୍ରଦାୟ ମଧ୍ୟରେ ସେଖ୍ ନାମରେ କୋଟିଏ ଶାଖା ବିଦ୍ୟମାନ ଅଛି । ଭାରତବର୍ଷରେ ଲୋକେ ଯେପରି ବ୍ରାହ୍ମଣଙ୍କୁ ସମ୍ମାନ ଦିଅନ୍ତି, ଆରବ ଦେଶରେ ସେଖମାନଙ୍କୁ ସେହିପରି ସମ୍ମାନ ଦିଆଯାଇଥାଏ । ମୁସଲମାନ ଧର୍ମ ଗ୍ରହଣକରିବା ପୂର୍ବରୁ ସେଠାର ଅଧିବାସୀମାନେ ଆପଣାକୁ ବ୍ରାହ୍ମଣ ବୋଲି କହୁଥିଲେ । ରାମାନୁଜ ସମ୍ପ୍ରଦାୟର ମୂଳପ୍ରବର୍ତ୍ତକ ଯବନାଚାର୍ଯ୍ୟ ମଧ୍ୟ ସେହି ଆରବ ଦେଶ ନିବାସୀ ବ୍ରାହ୍ମଣ ଥିଲେ । ବୋଧହୁଏ, ଏହି ସେଖଜାତି ମନୂକ୍ତ ବର୍ଣ୍ଣସଙ୍କର ବ୍ରାହ୍ମଣ ଶୈଖ । ମନୁ ଲେଖିଛନ୍ତି ଯେ—

"ବ୍ରାତ୍ୟାତ୍ତୁ ଜାୟତେ ବିପ୍ରାତ୍ ପାପାତ୍ମା ଭୂର୍ଜ୍ଜକଣ୍ଟକଃ ।
ଆବନ୍ତ୍ୟ ବାଟଧାନୌ ଚ ପୁଷ୍ପଧଃ ଶୈଖ ଏବ ଚ ॥ [ ମନୁ ]

[ ବୈଂ: ସଂ: ]

୨ ଏହିପରି ଖ୍ରୀଷ୍ଟ ଧର୍ମର ପ୍ରବର୍ତ୍ତକ ଈଶାମସୀହ [ ଯିଶୁଖ୍ରୀଷ୍ଟ ] ମଧ୍ୟ କାଶ୍ମୀରବାସୀ କ୍ରୀଗ ମହାଗୁଷ୍ଟିସ୍ୟ ବ୍ରାହ୍ମଣ ଥିଲେ । ଖ୍ରୀଷ୍ଟଗୋଷ୍ଠୀଙ୍କର ଜନ୍ମ ଯେଉଁ ବଂଶରେ, ସେହି ବଂଶରେ ହିଁ ଯିଶୁଖ୍ରୀଷ୍ଟ ଜନ୍ମ ଗ୍ରହଣ କରିଥିଲେ । ଖ୍ରିସ୍ତ ସଙ୍ଘଧାରୀ ବ୍ରାହ୍ମଣ ଆଜିଯାଏଁ କାଶୀରେ ଅଛନ୍ତି, ଖ୍ରିସ୍ତର ଅପଭ୍ରଂଶ ହିଁ ଖ୍ରିସ୍ତ, ଖ୍ରିସ୍ତି, କ୍ରିଶ୍ଚିୟାନ, କ୍ରାଇଷ୍ଟ ବୋଲି କାଶୀନିବାସୀ ଜଗତ୍ ବିଖ୍ୟାତ ମହାମହୋପାଧ୍ୟାୟ ପଂ, ଶିବକୁମାର ଶାସ୍ତ୍ରି ପ୍ରଭୃତିଙ୍କ ମତ ।

[ ସ୍ୱତନ୍ତ୍ରମ୍ ୪-୨-୧୯୪୮ ]

୩ ଯୀଶୁଖ୍ରୀଷ୍ଟ ବହୁକାଳ ପର୍ଯ୍ୟନ୍ତ ଭାରତବର୍ଷରେ ରହି କାଶୀ, ରାଜସ୍ଥାନ ଏବଂ ଓଡ଼ିଶା ଜଗନ୍ନାଥ ପୁରୀରେ ଧର୍ମଶିକ୍ଷା ଲାଭକରି ବୌଦ୍ଧାଦି ଧର୍ମଗ୍ରନ୍ଥ ଅଧ୍ୟୟନ କରି ସର୍ବ ଧର୍ମର ସମନ୍ୱୟରେ ତାଙ୍କର ସ୍ୱତନ୍ତ୍ର ଧର୍ମପ୍ରଚାର କରିଥିଲେ । [ ସ ୨ । ୧ । ୪୮ ]

ଅର୍ଥାତ୍ ସମୁଦ୍ର ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ପୃଥିବୀ ଏକମାତ୍ର ବୈଦିକ ଶାସନରେ ଶାସିତ ହେଉ । ବାସ୍ତବରେ ତାହା ହିଁ ହୋଇଥିଲା । ସୃଷ୍ଟିର ଆରମ୍ଭରେ ସମସ୍ତ ମାନବ ବୈଦିକ ହିନ୍ଦୁ ହିଁ ଥିଲେ ।

ହିନ୍ଦୁମାନଙ୍କର ଧର୍ମର ଉପଜୀବ୍ୟ- ବେଦ ଅନାଦି ଅନନ୍ତ, ବେଦ ପ୍ରତିପାଦ୍ୟ ବ୍ରହ୍ମ ଅନାଦି ଅନନ୍ତ, ଧର୍ମାଧର୍ମର ପ୍ରବାହ- ଅନାଦି ଅନନ୍ତ କାଳଚକ୍ରର ପ୍ରବାହ- ଅନାଦି ଅନନ୍ତ ଏବଂ ପ୍ରାଣୀ ସୃଷ୍ଟିର ପ୍ରବାହ ମଧ୍ୟ ଅନାଦି ଅନନ୍ତ ଅଟେ । ଅନାଦି ହିନ୍ଦୁଧର୍ମର ପ୍ରବର୍ତ୍ତକ କେହି ନାହିଁ । ଏହା ବେଦ ତୁଲ୍ୟ ଅନାଦି ଓ ସନାତନ ଧର୍ମ ଯେପରି ବୌଦ୍ଧଧର୍ମର ପ୍ରବର୍ତ୍ତକ ବୁଦ୍ଧ, ଖ୍ରୀଷ୍ଟ ଧର୍ମର ପ୍ରବର୍ତ୍ତକ ଯିଶୁଖ୍ରୀଷ୍ଟ, ପାରସୀ ଧର୍ମର ଜରଥୁଷ୍ଟ୍ର ଏବଂ ମୁସଲମାନ ଧର୍ମର ପ୍ରବର୍ତ୍ତକ ମହମ୍ମଦ, ସେହିପରି ହିନ୍ଦୁ ଧର୍ମର ଜନ୍ମଦାତା କେହି ନାହିଁ ।

* ପାରସୀ ଧର୍ମର ପ୍ରାଦୁର୍ଭାବ ଆଜ ସରିକି ୫ ହଜାର ବର୍ଷ ହେଲା । ବୌଦ୍ଧ ଧର୍ମର ୨ ହଜାର ୫ ଶହ, ଈଶାଇ ଧର୍ମର ୧୯ ଶହ, ଏବଂ ମୁସଲମାନ ଧର୍ମର ପରମାୟୁ ଆଜ ସରିକି ୧୩ ଶହ ବର୍ଷ ହେଲା । ଏହିସବୁ ସମୟ ପୂର୍ବରୁ ଏହିସବୁ ଧର୍ମର ନାମ ଗନ୍ଧ ପୃଥିବୀରେ ନ ଥିଲା । ସେତେବେଳେ ଥିଲା କେବଳ ଭାରତୀୟ ସନାତନ ବୈଦିକ ହିନ୍ଦୁଧର୍ମ ।

ବେଦ ବିଦ୍ୱାନ୍ ଜର୍ମାନ ମେକସ୍ ମୁଲାର ମହୋଦୟ ୧୮୮୨ ଖ୍ରୀଷ୍ଟାବ୍ଦରେ ବାର୍ଲିନ ସହରରେ ବକ୍ତୃତା ପ୍ରସଙ୍ଗରେ କହିଥିଲେ ଯେ- ଯଦି କେହି ମୋତେ ପଚାରେ- ଏହି ସଂସାରକୁ ସଭ୍ୟତା ଶିଖାଇଲା କିଏ ? ଏହାର ଉତ୍ତରରେ ମୁଁ କହିବି ଯେ- ଇଣ୍ଡିଆ । ଯଦି କେହି ମୋତେ ପଚାରେ, ଈଶ୍ୱର, ଜୀବ ଓ ପୁନର୍ଜନ୍ମ ସମ୍ବନ୍ଧେ ଯଥାର୍ଥ ବିଚାର କରିଛି କିଏ ? ତେବେ ମୋର ମୁହଁରୁ ବାହାରିପଡିବ ଯେ- ଇଣ୍ଡିଆ ” [ ବ୍ୟାଂ ଦେ ]

---

* ପଶ୍ଚିମ ଭାରତରେ ଅତି ପ୍ରାଚୀନ କାଳରେ ବୃଦ୍ଧାଶ୍ୱ ନାମକ ଜଣେ ଋଷି ଥିଲେ । ତାଙ୍କର ଦୌହିତ୍ରଙ୍କ ନାମ ଜରଥୁଷ୍ଟ୍ର, ସେହି ପାରସୀ ଧର୍ମର ପ୍ରବର୍ତ୍ତକ ଅଟନ୍ତି । ଏହିପରି ପୁଲସ୍ତ୍ୟ ଓ ଅଗସ୍ତ୍ୟ ଋଷି ଦ୍ରାବିଡ଼ ଧର୍ମର ପ୍ରବର୍ତ୍ତକ ବୋଲି ଐତିହାସିକ ମାନେ କହନ୍ତି ଏବଂ ଆଦି ଦ୍ରାବିଡ଼ମାନେ ପୁଲସ୍ତ୍ୟ ଋଷିଙ୍କର ପୌତ୍ର ରାବଣର ବଂଶଧର ବୋଲି ଆପଣାର ପରିଚୟ ଦେଇଥାନ୍ତି ।

### ହିନ୍ଦୁର ଧର୍ମଗ୍ରନ୍ଥ ବେଦର ଭାଷା ହିଁ ପୃଥିବୀର ମୂଳଭାଷା

ଯେଉଁ ଆଦିଜ୍ଞାନ ଏବଂ ଆଦିଭାଷା ଈଶ୍ୱରଙ୍କଠାରୁ ମନୁଷ୍ୟଙ୍କୁ ମିଳିଲା, ତାହା ହିଁ ବେଦ । ବେଦ କୌଣସି ପୁସ୍ତକର ନାମ ନୁହେଁ । ତାହା ଅନନ୍ତ ଅନନ୍ତ ଜ୍ଞାନ ବିଜ୍ଞାନର ମହାର୍ଣ୍ଣବ । ସୃଷ୍ଟି ସମକାଳୀନ ଭାରତୀୟ ଯେ- ମନୁଷ୍ୟମାନଙ୍କର ମୂଳଭାଷା କେଉଁଟି ଥିଲା, ଏହି ବିଷୟରେ ମତଭେଦ ନାହିଁ । ଯେତେବେଳେ ଈଶ୍ୱର ମନୁଷ୍ୟଙ୍କୁ ଭାଷା ଦେଲେ, ସେତେବେଳେ ଉର୍ଦ୍ଧ୍ୱରେ ବ ହିଁ ଥିଲା, ଏହାର କାରଣ ? ସେହି ବେଦମନ୍ତ୍ରର ପ୍ରତ୍ୟେକ ଜ୍ଞାନବିଜ୍ଞାନ ସାଗର ବେଦଭାଷା ସଂସ୍କୃତରୁ ହିଁ ପୃଥିବୀର ସମସ୍ତ ଭାଷା ନିର୍ଗତ ହୋଇଅଛି । କାରଣ ଜଗତର ସମସ୍ତ ଭାଷା ଲୌକିକ ଓ ପ୍ରାକୃତ । କିନ୍ତୁ ଦେବଭାଷା ସଂସ୍କୃତ କୌଣସି ଲୌକିକ ନୁହେଁ । ଏହା ଆଦି ସୃଷ୍ଟିର ଦେବବ୍ରାହ୍ମଣ, ଦେବକ୍ଷତ୍ରିୟ, ଦେବବୈଶ୍ୟ ଓ ଦେବଦାସ ( ଶୂଦ୍ର ) ର ଭାଷା *

(୧) ଏହି ସମ୍ବନ୍ଧରେ ପାଶ୍ଚାତ୍ୟ ବିଦ୍ୱାନ୍ ଗୋଲଡ଼ଷ୍ଟୁକାର କହନ୍ତି ଯେ— ସଂସ୍କୃତ ଭାଷା- ବାସ୍ତବିକ ହିଁ ସଂସ୍କୃତ । ଏହାଭଳି ବୈଜ୍ଞାନିକ ଭାଷା ପୃଥିବୀରେ ଆଉ ନାହିଁ ।

(୨) ବଣ୍ଟେଲିଂ ନାମକ ସେଠାର ଆଉଜଣେ ବିଦ୍ୱାନ୍ କହନ୍ତି ଯେ— ପାଣିନିଙ୍କର ବ୍ୟାକରଣ ପଢ଼ିଲେ ମନେ ହୁଏ, ଏହା କୌଣସି ମନୁଷ୍ୟକୃତ ନୁହେଁ, ବାସ୍ତବିକ ହିଁ ଏହା ଈଶ୍ୱରକୃତ ।

(୩) କାଶୀକୁଇନ୍ସ କଲେଜର ଭୂତପୂର୍ବ ପ୍ରିନ୍ସିପାଲ ମି: ଗ୍ରିଫ୍ କହନ୍ତି ଯେ- ମୁଁ ଏକଅଣା ମୂଲ୍ୟରେ "ତର୍କସଂଗ୍ରହ" ( ନ୍ୟାୟଶାସ୍ତ୍ରର ଗୋଟିଏ ପ୍ରାଥମିକ ଗ୍ରନ୍ଥ ) ପାଠକରି ଦର୍ଶନଶାସ୍ତ୍ରରେ ଯେଉଁ ଜ୍ଞାନଲାଭ କରିଛି, ସମଗ୍ର ୟୁରୋପୀୟ ଦର୍ଶନ ଶାସ୍ତ୍ର ପାଠ କରିମଧ୍ୟ ସେଇଜ୍ଞାନ ଲାଭ କରିପାରିନାହିଁ । ( ବେ୦ ପ୦ )

(୪) ଜର୍ମାନର ଦାର୍ଶନିକ, ଶୋପେନହାଉର କହନ୍ତି ଯେ- ଉପନିଷଦର ଉତ୍କୃଷ୍ଟ କଲ୍ୟାଣମୟ ଜ୍ଞାନଠାରୁ ବଳି ଆଉ ସଂସାରରେ ପଢ଼ିବାପାଇଁ ଆଉ କିଛି ହେଲେ ନାହିଁ । ମୋର ଜୀବନ ଓ ମରଣର ଏହା ହିଁ ଅବଲମ୍ବନ ।

---

* ମହାଭାରତର ଅନ୍ତର୍ଗତ ବିଷ୍ଣୁ ସହସ୍ରନାମର ଫଳଶ୍ରୁତିରୁ ଏବଂ ବାଲ୍ମୀକିରାମାୟଣର ପ୍ରଥମ ସର୍ଗର ଉପସଂହାର ଶ୍ଲୋକରୁ ବ୍ରାହ୍ମଣାଦି ଚତୁର୍ବର୍ଣ୍ଣର ଧର୍ମଭାଷା ସଂସ୍କୃତବୋଲି ଜଣାଯାଏ ।

(୫) ଅଯୋଧ୍ୟାରୁ ପ୍ରକାଶିତ ସଂସ୍କୃତମ୍ ପତ୍ରର ସମ୍ପାଦକ ମହାମହୋପାଧ୍ୟାୟ ପଣ୍ଡିତ ଶ୍ରୀ କାଳୀପ୍ରସାଦ ଶାସ୍ତ୍ରୀ ଭାରତୀୟ ଭୌତିକ ବିଜ୍ଞାନର ସମ୍ବନ୍ଧରେ ପରିଚୟ ସମ୍ବନ୍ଧ ତା ୫ । ୧୧ । ୫୭ ଶକରେ ସମ୍ପାଦକୀୟ ସ୍ତମ୍ଭରେ ଲେଖିଛନ୍ତି ଯେ- ଭରଦ୍ୱାଜର୍ଷିଙ୍କର ନିରୁକ୍ତ ଗ୍ରନ୍ଥ ( ଏହା ବେଦର ଅଙ୍ଗ ) ଅନୁସନ୍ଧାନ କଲେ ଅଧୋଲିଖିତ ବିଜ୍ଞାନଗୁଡ଼ିକର ନାମ ଉପଲବ୍ଧ ହୁଏ, ଯଥା— ଭାଷାବିଜ୍ଞାନ, ବେଦବେଦାଙ୍ଗ ବିଜ୍ଞାନ, ସ୍ୱର୍ଗନରକ ବିଜ୍ଞାନ, ସଂଖ୍ୟା ବିଜ୍ଞାନ, ପୃଥିବୀ ବିଜ୍ଞାନ, ଅନ୍ତରୀକ୍ଷ ବିଜ୍ଞାନ, ସୌରଜଗତ୍ ବିଜ୍ଞାନ, ବିଦ୍ୟୁତ୍ ବିଜ୍ଞାନ, ଉଦକମାନ ବିଜ୍ଞାନ, ଅନ୍ନୋତ୍ପତ୍ତି ବିଜ୍ଞାନ, ଅଗ୍ନି ବିଜ୍ଞାନ, ସୃଷ୍ଟି ବିଜ୍ଞାନ, ସୌରାକର୍ଷଣ ବିଜ୍ଞାନ, ପୃଥିବ୍ୟାଦିଭ୍ରମଣ ବିଜ୍ଞାନ, ଦେବ ବିଜ୍ଞାନ ପିତୃ ବିଜ୍ଞାନ, ସଚେନ୍ଦ୍ରିୟ ବିଜ୍ଞାନ, ସପ୍ତଗ୍ରହ ବନ୍ଧନ ବିଜ୍ଞାନ, ଜୀବାତ୍ମା-ବିଜ୍ଞାନ ଓ ବ୍ରହ୍ମବିଜ୍ଞାନାଦି । ଏତାଦେ-

କଲିକତାରୁ ପ୍ରକାଶିତ "ଭାରତମିତ୍ର" ନାମକ ଦୈନିକ ପତ୍ରିକାରେ ତା ୭ । ୧୧ । ୧୯୨୫ ଦିବସର ଚତୁର୍ଥ ଓ ଷଷ୍ଠ ସଂଖ୍ୟାରେ ତତ୍ରତ୍ୟ ବିଶ୍ୱବିଦ୍ୟାଳୟର ଲେକ୍‌ଚରର ଭୂଦେବ ମୁଖାର୍ଜୀ ମହୋଦୟ "ଫରବର୍ଡ" ନାମକ ଇଂରେଜୀ ପତ୍ରରୁ ଅନୁବାଦ କରି ହୈଦରାବାଦର ଗୋଟିଏ ସଂସ୍କୃତ ପୁସ୍ତକାଳୟର ପରିଚୟ ସମ୍ବନ୍ଧେ ଲେଖିଛନ୍ତି ଯେ- ହୈଦ୍ରାବାଦ ନିବାସୀ ଡା. ମହମ୍ମଦ ସୈୟଦ କାସିମ୍, ( ଯାହାଙ୍କର କି ପୂର୍ବ ପୁରୁଷମାନେ ବିଜାପୁର ମହାରାଜାଙ୍କର ପୁରୋହିତ ଓ ମନ୍ତ୍ରୀ ଥିଲେ ) ଗୋଟିଏ ପ୍ରାଚୀନ ଗ୍ରନ୍ଥାଳୟର ଅଧ୍ୟକ୍ଷ ଅଟନ୍ତି । ଏହି ପୁସ୍ତକାଳୟରେ ତାଳପତ୍ର ଲିଖିତ ବହୁତ ପୁସ୍ତକ ଅଛି । ସେଥିମଧ୍ୟରେ ବେଦ, ଧର୍ମ, ଦର୍ଶନ, କଳା, ବିଜ୍ଞାନ, ଇତିହାସ, ଆୟୁର୍ବେଦ, ଜ୍ୟୋତିଷ ଓ ସାମୁଦ୍ରିକ ବିଷୟକ ପୁସ୍ତକ ଏତେ ଅଧିକପରିମାଣରେ ଅଛିଯେ, ଯାର ବିଷୟ ବିଭାଗପୂର୍ବକ ସୂଚିପତ୍ର ନିର୍ମାଣ ମଧ୍ୟ ଅଧ୍ୟକ୍ଷଙ୍କ ପକ୍ଷରେ ଅସମ୍ଭବପର ବୋଧ ହେଉଛି । ବାସ୍ତବରେ ଏହି ପୁସ୍ତକାଳୟରେ ଥିବା ପୁସ୍ତକମାନଙ୍କରେ ବର୍ଣ୍ଣିତ ବିଷୟଗୁଡ଼ିକ ମହାଶ୍ଚର୍ଯ୍ୟ-ଜନକ । ଉଦାହରଣ ସ୍ୱରୂପରେ ଏଠାରେ କେତେକ ବିଷୟ ଦିଆଯାଉଛି-

୧- ମୃତଦେହର ( ମୁର୍ଦ୍ଦାର ବା ଶବ ) କୁ ଚିରକାଳ ପର୍ଯ୍ୟନ୍ତ ରଖିବାର ଉପାୟ । ( ମିଶର ଦେଶର ପିରାମିଡମାନଙ୍କରେ ସହସ୍ର ବର୍ଷର ସୁରକ୍ଷିତ

ଶବ ଅଦ୍ୟାପି ମିଳୁଛି ଏବଂ ଜୟପୁରର ଆଶ୍ଚର୍ଯ୍ୟାଗାରରେ ୭୦୦ ବର୍ଷର ପୁରାତନ ଚୀନଦେଶର ମହିଳାର ଶବ ଲୋକେ ଦେଖିବାକୁ ପାଉଛନ୍ତି । ବୋଧହୁଏ, ପ୍ରାଚୀନ ଭାରତୀୟମାନଙ୍କ ଠାରୁ ମିସର ଓ ଚୀନ ଏହି ବିଦ୍ୟା ଶିକ୍ଷାକରିଥିଲେ ।

୨- ନିଜର ଅଭିଳାଷ ଅନୁସାରେ କପଡ଼ାର ବର୍ଣ୍ଣ ବା ରଙ୍ଗ ପରିବର୍ତ୍ତନ ।

୩- ବିନା ତାରରେ ଚାରି-ହଜାର ମାଇଲ ଦୂରରେ ଥିବା ଯୁକ୍ତି ସମ୍ମତ ବିଜ୍ଞାନ ନିୟମରେ ନିର୍ମିତ ହୋଇଥିବା ଦୁଇଟି ପଥରର ମାଧ୍ୟମରେ କଥୋପକଥନ ।

୪- ଭୂଗର୍ଭ ବିଦ୍ୟା- ଏଥିରେ ଏହିଭଳି ସବୁ ଉପାୟ ନିର୍ଦ୍ଦିଷ୍ଟ ହୋଇଅଛି- ଯାହାଦ୍ୱାରା ପୃଥିବୀର ଅଭ୍ୟନ୍ତରରେ ଥିବା ପଥର, ସ୍ୱର୍ଣ୍ଣାଦି ଧାତୁ, ରତ୍ନ ଓ ଖଣିଜ ପଦାର୍ଥାଦିମାନଙ୍କର ସଙ୍କେତ ଲାଭକରାଯାଇପାରେ ।

୫- ଆଶ୍ଚର୍ଯ୍ୟକର ଦର୍ପଣ- ଏହିଭଳି ଗୋଟିଏ ଦର୍ପଣ ନିର୍ମାଣ କରିବାର ବିଧାନ ଏଥିରେ ବର୍ଣ୍ଣିତ ହୋଇଅଛି ଯେ- ଯେଉଁ ଦର୍ପଣକୁ ସମୁଦ୍ର ଜଳରେ ରଖିଲେ ସମୁଦ୍ର ଭିତରେ ଥିବା ସମସ୍ତ ପଦାର୍ଥ ସୁସ୍ପଷ୍ଟଭାବରେ ଦେଖାଯାଇପାରିବ ।

୬. ହିମୋପଲ ବାରଣ- ଦରକାର ସମୟରେ ଉଷ୍ଣ ପ୍ରଦେଶରେ ହିମ ( ବରଫ ) ପାତନ, ଶୀତ ପ୍ରଦେଶରୁ ହିମ ବାରଣ ।

୭. ପର୍ବତ ପାତନ- ବଡ଼ ବଡ଼ ପର୍ବତମାନଙ୍କୁ ସ୍ଥାନ ଚ୍ୟୁତକରିପକାଇବା, ଖଣ୍ଡ ଖଣ୍ଡ କରି ଉଡ଼ାଇ ନେଇ ସମତଳ କରିବାର ବିଧାନ ଏଥିରେ ଅଛି ।

୮. ଜଳୋନ୍ନୟନ- ଅତି ନିମ୍ନରେ ଥିବାଜଳକୁ ଉପରକୁ ଉଠାଇ ନେବାର ବିଧାନ ଏଥିରେ ଅଛି ।

୯. ବିନା ଅଗ୍ନି-ସଂଯୋଗରେ ଲୌହାଦି ଧାତୁମାନଙ୍କର ଦ୍ରବୀକରଣ ।

୧୦. ଉଷ୍ଣଜଳ ପ୍ରସ୍ରବଣ ନିର୍ମାଣ- ହଜାର ହଜାର ବର୍ଷ ପର୍ଯ୍ୟନ୍ତ ଅନାୟାସରେ ଜଳକୁ କପରି ଉଷ୍ଣକରି ରଖାଯାଇପାରେ, ତାର ଉପାୟ । ଦିଲ୍ଲୀରେ ଏବଂ ଆଗ୍ରାରେ ଉଷ୍ଣଜଳର ଝରଣା ଥିଲା, ତାର ରହସ୍ୟ ଜାଣିବାପାଇଁ ଆଧୁନିକ ଇଞ୍ଜିନିୟରମାନେ ତାକୁ ନଷ୍ଟକରିଦେଲେ । କିନ୍ତୁ ତାର ରହସ୍ୟ ଜାଣିପାରିଲେ ନାହିଁ କି ନଷ୍ଟୋଦ୍ଧାର କରିପାରିଲେ ନାହିଁ ।

୧୧. ସ୍ୱର୍ଣ୍ଣ ନିର୍ମାଣ- ତମ୍ବାରୁ ସୁନା ତିଆରି ହୁଏ, ଏହା କେହି କେହି

ଜାଣନ୍ତି । କିନ୍ତୁ ଏହି ପୁସ୍ତକରେ ସାଧାରଣ ମାଟିରୁ ମଧ୍ୟ ସ୍ୱର୍ଣ୍ଣ ନିର୍ମାଣ ବିଧି ବର୍ଣ୍ଣିତ ହୋଇଅଛି ।

୧୨. ମହର୍ଷି ଭାରଦ୍ୱାଜ- ମ୍ୟାରିକୁ ବନ୍ଦୁବୋଲନ୍ତି । ଏହି ପୁସ୍ତକ ନିର୍ଦ୍ଦିଷ୍ଟ ସ୍ଥାନରେ ମହାକାଶ ଯାତ୍ରୀମାନଙ୍କର ମଧ୍ୟ ଗ୍ରହକରଣ ଅନୁସନ୍ଧାନ ପରିବର୍ତ୍ତନ ବର୍ଣ୍ଣିତ ହୋଇଅଛି ।

ଏସବୁ ଲେଖିବା ପରେ ଶ୍ରୀ ଭୂଦେବ ମୁଖାର୍ଜୀ ମହାଶୟ ଲେଖିଛନ୍ତି ଯେ- ବିଦେଶୀମାନଙ୍କର ଈର୍ଷା ଓ ଅତ୍ୟାଚାରରୁ ଭାରତୀୟ ବିଜ୍ଞାନାଦି ଶାସ୍ତ୍ରମାନଙ୍କର ଭୟଙ୍କର ବିନାଶ ସାଧିତ ହେଲେ ମଧ୍ୟ ଆର୍ଯ୍ୟମାନଙ୍କର ଏହିପରି ଆଶ୍ଚର୍ଯ୍ୟଜନକ ଗ୍ରନ୍ଥ ବର୍ତ୍ତମାନ ମୁଦ୍ଧା ଅଛି, ଯାହାଦ୍ୱାରା କି ଅନେକ ଲୁପ୍ତ ବିଦ୍ୟାର ପୁନରୁଦ୍ଧାର କରାଯାଇପାରେ ।

୧୩. କେରଳଲିପିରେ ଲେଖାଯାଇଥିବା ( ଅପ୍ରକାଶିତ ) ଭୂବଲୟ ନାମକ ଜ୍ଞାନବିଜ୍ଞାନ ପୂର୍ଣ୍ଣ ସଂସ୍କୃତ ଗ୍ରନ୍ଥ ବର୍ତ୍ତମାନ ଜଗତରେ ଅଦ୍ୱିତୀୟ ବୋଲି କିଛିଦିନ ତଳେ ସମସ୍ତ ଖବର କାଗଜମାନଙ୍କରେ ପ୍ରକାଶ ପାଇଥିଲା ।

୧୪. ଆର୍ଯ୍ୟମାନଙ୍କର ଆକାଶ ବିଜ୍ଞାନ ଏହାଠାରୁ ଆହୁରି ଅତି ଚମତ୍କାର । ଭରଦ୍ୱାଜ ସଂହିତାରେ ଆକାଶରେ ୪୯୨ ମାର୍ଗ ନିର୍ଦ୍ଦିଷ୍ଟ ହୋଇଅଛି । ବ୍ୟୋମଯାନମାନଙ୍କର ବିଭିନ୍ନପ୍ରକାରେ ଚାଳନ ମଧ୍ୟ ଉପଦିଷ୍ଟ ହୋଇଅଛି । ବର୍ତ୍ତମାନ ବୈଜ୍ଞାନିକ ଜଗତରେ ଏତେପ୍ରକାର ଆକାଶମାର୍ଗ ଏବେ ମୁଦ୍ଧା ଅଜ୍ଞାତ

୧୫. ପଣ୍ଡିତ କାଳୀଚରଣ ଶ୍ରୀ ବନ୍ଦ୍ୟୋପାଧ୍ୟାୟ ଲେଖିଛନ୍ତି ଯେ— ସଂସ୍କୃତ ପୁସ୍ତକମାନଙ୍କର ସୂଚୀ ଦେଖିଲେ ଜଣାଯାଉଛି ଯେ- କେବଳ ଜର୍ମାନୀର ବାର୍ଲିନ ଲାଇବ୍ରେରୀରେ ୪୦ ହଜାର ହସ୍ତଲିଖିତ ସଂସ୍କୃତ ପୁସ୍ତକ ଅଛି ଏବଂ ଇଂଲଣ୍ଡର ଇଣ୍ଡିଆ ହାଉସର ପୁସ୍ତକାଳୟରେ ୩୦ ହଜାର । ବହୁତ ବିଦ୍ୱାନମାନଙ୍କର ଅଭିପ୍ରାୟ ଏହି ଯେ- ଜର୍ମାନୀର ବୈଜ୍ଞାନିକ ଉନ୍ନତିର ବିଶେଷ କାରଣ ବୈଦିକ ବିଜ୍ଞାନ । ଏହେତୁରୁ ହିଁ ସେ ଦେଶରେ ସଂସ୍କୃତର ଆଦର ଓ ସମ୍ମାନ ଏତେ ଦୂର । ଏବେ ଶୁଣାଯାଉଛି ଯେ— ଜର୍ମାନୀରେ ବେଦର ପ୍ରଚାର ଓ ଉନ୍ନତ ବୈଜ୍ଞାନିକ ଗବେଷଣା ସଫଳତାର ସହିତ ଚର୍ଚ୍ଚା କରିବାର ବ୍ୟବସ୍ଥା କରାଯାଉଛି । ଏହିପରି ଆମେରିକା କଂଗ୍ରେସ ପୁସ୍ତକାଳୟରେ ହସ୍ତଲିଖିତ ୬୭୦୦ ସଂସ୍କୃତ ଗ୍ରନ୍ଥ ଅଛି । କିନ୍ତୁ ସଂସ୍କୃତପ୍ରାଣ ଭାରତବର୍ଷରେ ଆଜି ତାହା ମୃତଭାଷା ।

୬. ଫ୍ରାନ୍ସର ଦାର୍ଶନିକ କାରମାଇକେଲ ଏବଂ ଆମେରିକାର ଦାର୍ଶନିକ ଏମର୍ସନ କହିଛନ୍ତି ଯେ- ୟୁରୋପ ଓ ଆମେରିକାର ଦେଶମାନଙ୍କରେ ଯେତେ ବିଜ୍ଞାନ ମିଳେ, ଏବଂ ଆଗାମୀରେ ଯାହା ମିଳିବ, ସେ ସବୁ ହିନ୍ଦୁମାନଙ୍କର ସଂସ୍କୃତ ଗ୍ରନ୍ଥମାନଙ୍କର ଏକ ଅଂଶ ମାତ୍ର ହେବ ।

୭. ମୋନେଭରିକ୍ ମୋଲେ କହନ୍ତି ଯେ- "ଗ୍ରୀକ୍ ଦର୍ଶନ ଶାସ୍ତ୍ରର ଯୁକ୍ତିତର୍କ ଭାରତୀୟ ଦର୍ଶନର ଯୁକ୍ତିତର୍କ ଆଗରେ ସୂର୍ଯ୍ୟାଲୋକ ମଧ୍ୟରେ ପ୍ରଦୀପ ତୁଲ୍ୟ ଜଣାପଡ଼େ" ।

୮. ଡାକ୍ତର ବେଲେଂଟାଇନଙ୍କ ମତରେ ସଂସ୍କୃତ ସମସ୍ତ ଭାଷାର ଜନନୀ ।

୯. ଡକ୍ଟର କୋଲ୍ଜିନ କହିଛନ୍ତି- "ବେଦର ଚରମ ଭାଗ ଉପନିଷଦ୍ ଅଧ୍ୟୟନ କଲେ ଯେତେବେଳେ ଜୀବିତାବସ୍ଥାରେ ଏତେ ଶାନ୍ତି ମିଳେ, ସେତେବେଳେ ମରଣ କାଳରେ ମଧ୍ୟ ଏହା ମୋତେ ଶାନ୍ତି ଦେବ । "

## ବେଦ ବା ସଂସ୍କୃତ ଭାଷା ଭାଷୀ ଆଦିମାନବ ଓ ତାର ଉତ୍ପତ୍ତି କ୍ଷେତ୍ର

ବେଦ ବା ସଂସ୍କୃତ ଭାଷାଭାଷୀ ଆଦି ମାନବ କିଏ ଏବଂ ତାର ଉତ୍ପତ୍ତି **କ୍ଷେତ୍ର** କେଉଁଠାରେ ? ଏହି ପ୍ରଶ୍ନର ଉତ୍ତର ସଂକ୍ଷେପରେ ଦେବାକୁ ହେଲେ ଏତିକି କହିବାକୁ ହେବ ଯେ- ବ୍ରାହ୍ମଣ ହିଁ ସଂସ୍କୃତ ଭାଷାଭାଷୀ ଆଦିମାନବ ଏବଂ ହିମାଳୟ ହିଁ ସେହି ବ୍ରାହ୍ମଣମାନଙ୍କର ଉତ୍ପତ୍ତି କ୍ଷେତ୍ର । * । ଚରକ ସଂହିତାର ପ୍ରଥମ ଅଧ୍ୟାୟ ଚତୁର୍ଥପାଦରେ ଲେଖାଅଛି ଯେ- ଭୃଗୁ, ଅଙ୍ଗିରା, ଅତ୍ରି, ବଶିଷ୍ଠ, କଶ୍ୟପ, ଅଗସ୍ତ୍ୟ, ପୁଲସ୍ତ୍ୟ, ବାମଦେବ, ଅସିତ, ଗୌତମ ପ୍ରଭୃତି ଋଷିମାନଙ୍କର ପୂର୍ବ ନିବାସ ହିମାଳୟ । ଏହି ଋଷିମାନେ ହିଁ ବେଦନିଧି ବ୍ରହ୍ମାଙ୍କର ମାନସ ପୁତ୍ର ଅଗ୍ରଜନ୍ମା, ବ୍ରାହ୍ମଣ । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏହି ଚାରି ବର୍ଣ୍ଣ ମଧ୍ୟରେ ବ୍ରାହ୍ମଣ ଏକା ପ୍ରଧାନ ।

---

* ସସର୍ଜ ବ୍ରାହ୍ମଣାନ୍ ପୂର୍ବଂ ସୃଷ୍ଟ୍ୟାଦୌ ସ ଚତୁର୍ମୁଖଃ
ସର୍ବେ ବର୍ଣ୍ଣାଃ ପୃଥକ୍ ପଶ୍ଚାଦେଷାଂ ବଂଶେଷୁ ଜଜ୍ଞିରେ ॥
[ ଭବିଷ୍ୟପୁଂ ୪୧ ଅ ]

ହିମାଳୟାଭିଧାନୋଽୟଂ ଖ୍ୟାତୋ ଲୋକେଷୁ ପାବନଃ
+ + + + + +
ପ୍ରସୂତଃ ସର୍ବ ବର୍ଣ୍ଣାନାଂ ପ୍ରସୂତେ ଭରତର୍ଷଭ ॥ [ ମହାଭାରତ ]

ଏହି କଥା ବେଦ ବଚନାନୁସାରେ ମନୁ ଆଦି ଧର୍ମ ଶାସ୍ତ୍ରମାନଙ୍କରେ ମଧ୍ୟ ଲେଖା ଯାଇଛି । ଏଠାରେ ପ୍ରଶ୍ନ ଏହି ଯେ- ବ୍ରାହ୍ମଣ କିଏ ? ଏହି ଶରୀରସ୍ଥିତ ଜୀବ ବା କର୍ମଯୁକ୍ତ ଧର ନାମ- ବ୍ରାହ୍ମଣ, ନାଁ ଦେହ ବ୍ରାହ୍ମଣ ? ନାଁ ଜାତି ବ୍ରାହ୍ମଣ ? ନାଁ ଜ୍ଞାନ ବ୍ରାହ୍ମଣ ? ନାଁ, କର୍ମ ବ୍ରାହ୍ମଣ ? ନାଁ ଧାର୍ମିକ ବ୍ରାହ୍ମଣ ? ଯଦି ବୋଲ- ଜୀବ ବ୍ରାହ୍ମଣ, ତାହା ହୋଇ ନପାରେ । କାରଣ କି-ଅତୀତ ଅନାଗତ ଅନେକ ଶରୀର ମଧ୍ୟରେ ଜୀବ ଏକ ରୂପରେ ହିଁ ରହେ, ଏକମାତ୍ର ଜୀବର ଧର୍ମାଧର୍ମ ସମ୍ପର୍କରୁ ଅନେକ ପ୍ରକାର ଦେହ ଧାରଣ ସମ୍ଭବ ହୋଇଥାଏ, ଏବଂ ସମସ୍ତ ଶରୀରରେ ଜୀବ ଏକ ରୂପରେ ରହେ । ଯେହେତୁରୁ ଜୀବ ବ୍ରାହ୍ମଣ ନୁହେ । ତେବେ କି ଦେହକୁ ବ୍ରାହ୍ମଣ ବୋଲିବାକୁ ହେବକି ? ନାଁ ତାହା ହୋଇ ନପାରେ । କାରଣ କି, ବ୍ରାହ୍ମଣଠାରୁ ଚଣ୍ଡାଳ ପର୍ଯ୍ୟନ୍ତ ସମସ୍ତ ମନୁଷ୍ୟମାନଙ୍କର ଶରୀର ପଞ୍ଚ ଭୌତିକ ହେତୁ ଜନ୍ମ, ଜରା, ମରଣ ଓ ଧର୍ମାଧର୍ମାଦି ସମସ୍ତଙ୍କ ପକ୍ଷରେ ସମାନ । ଆଉରି ମଧ୍ୟ ବ୍ରାହ୍ମଣ- ଶ୍ୱେତବର୍ଣ୍ଣ, କ୍ଷତ୍ରିୟ- ରକ୍ତବର୍ଣ୍ଣ, ବୈଶ୍ୟ ପୀତବର୍ଣ୍ଣ ଓ ଶୂଦ୍ର କୃଷ୍ଣବର୍ଣ୍ଣ ଏହିପରି କିଛି ନିୟମ ନାହିଁ ।

"ନ ବ୍ରାହ୍ମଣାଶ୍ଚନ୍ଦ୍ର ମରୀଚଗୌରାଃ ।
ନ କ୍ଷତ୍ରିୟାଃ କିଂଶୁକ ବର୍ଣ୍ଣଭାଜ ॥
ନ ଚୈବ ବୈଶ୍ୟା ହରିତାଳ ବର୍ଣ୍ଣାଃ
ଶୂଦ୍ରା ନ ଚାଙ୍ଗାର ସମାନ ବର୍ଣ୍ଣାଃ ॥

ଆଉରି ମଧ୍ୟ ଦେହକୁ ଯଦି ବ୍ରାହ୍ମଣ ବୋଲଯାଏ, ତେବେ ମୃତ ପିତୃପିତାମହାଦିର ଶରୀରକୁ ଦାହ କଲେ ପୁତ୍ରଆଦିମାନଙ୍କର ବ୍ରହ୍ମହତ୍ୟାଦି ଦୋଷ ଘଟିବା, ଅସମ୍ଭବ ନୁହେ । ସେଇ କାରଣରୁ ଦେହ ବ୍ରାହ୍ମଣ ନୁହେ । ଯଦି ଜାତିକୁ ବ୍ରାହ୍ମଣ ବୋଲ, ତାହା ମଧ୍ୟ ନୁହେ, କାରଣ,- ପୁରାଣାଦି ଶାସ୍ତ୍ରରେ ଲେଖାଅଛି ଯେ— ମୃଗୀଗର୍ଭରୁ ଋଷ୍ୟଶୃଙ୍ଗ, କୁଶଠାରୁ କୌଶିକଋଷି, ଜମ୍ବୁକଠାରୁ ଜାମ୍ବୁକ ଋଷି, ବଲ୍ମୀକରୁ ବାଲ୍ମୀକି ଋଷି କୈବର୍ତ୍ତକନ୍ୟାଠାରୁ ବ୍ୟାସ, ଶଶପୃଷ୍ଠରୁ ଗୌତମ, ଉର୍ବଶୀ ଗର୍ଭରୁ ବଶିଷ୍ଠ ଏବଂ କଳସରୁ ଅଗସ୍ତ୍ୟ ଋଷି ଜାତ ହୋଇଥିଲେ । ଏମାନେ ବ୍ରାହ୍ମଣ ଜାତିରୁ ଉତ୍ପନ୍ନ ନ ହେଲେ ମଧ୍ୟ ବ୍ରହ୍ମଜ୍ଞ ଋଷି ଥିଲେ । ଯେହେତୁ ଜାତି ବ୍ରାହ୍ମଣ ନୁହେ । ଯଦି ଜ୍ଞାନ ବ୍ରାହ୍ମଣ ବୋଲ, ତାହା ମଧ୍ୟ ନୁହେ । କାରଣକି,-

ଜନକ ଶ୍ରୀକୃଷ୍ଣ ଓ ଭୀଷ୍ମାଦି ଋଷି ମୁନିମାନେ ମଧ୍ୟ ଜ୍ଞାନୀ ଥିଲେ କିନ୍ତୁ ସେମାନେ ବ୍ରାହ୍ମଣ ନ ଥିଲେ । ସେହେତୁରୁ ଜ୍ଞାନ ବ୍ରାହ୍ମଣ ନୁହେ । ଯଦି ବୋଲ କର୍ମ ବ୍ରାହ୍ମଣ, ତାହା ମଧ୍ୟ ନୁହେ । କାରଣକି, ସମସ୍ତ ପ୍ରାଣିମାନଙ୍କର ପ୍ରାରବ୍ଧ, ସଞ୍ଚିତ ଓ ଆଗାମି କର୍ମ କଳାପ ସମାନ ଅଛି । କର୍ମ ବା ଧର୍ମାଧର୍ମ ଦ୍ୱାରା ହିଁ ପ୍ରେରିତ ହୋଇ ସମସ୍ତେ କାର୍ଯ୍ୟ କରିଥାନ୍ତି । ସେହେତୁରୁ କର୍ମ ବ୍ରାହ୍ମଣ ନୁହେ । ଯଦି ବୋଲ ଧାର୍ମିକ ବ୍ରାହ୍ମଣ, ତାହା ମଧ୍ୟ ନୁହେ । କ୍ଷତ୍ରିୟ ଓ ବୈଶ୍ୟାଦି ମଧ୍ୟରେ ବହୁତ ଧାର୍ମିକ ମଧ୍ୟ ଦେଖାଯାନ୍ତି । ସେହେତୁରୁ ଧାର୍ମିକ ବ୍ରାହ୍ମଣ ନୁହେ । ତେବେ ବ୍ରାହ୍ମଣ କିଏ ? ଏହି ପ୍ରଶ୍ନର ଉତ୍ତରରେ ବଜ୍ରସୂଚିକ ଉପନିଷଦରେ ଲେଖାଅଛି ଯେ—
ଯେ କେହି ହେଉ, ଯେ ସେହି ଆତ୍ମାକୁ ଅଦ୍ୱିତୀୟ, ଜାତିଗୁଣ କ୍ରିୟାହୀନ, କ୍ଷୁଧା, ତୃଷା, ଜନ୍ମମରଣାଦି ଦୋଷରହିତ, ଅନନ୍ତ, ସଚ୍ଚିଦାନନ୍ଦ ସ୍ୱରୂପ, ନିର୍ବିକଳ୍ପ ଅଥଚ ଅଶେଷ କଳ୍ପର ଆଧାର, ସମସ୍ତ ପ୍ରାଣିମାନଙ୍କର ଅନ୍ତର୍ଯାମୀ, ଆକାଶ ତୁଲ୍ୟ ସର୍ବବ୍ୟାପକ, ଅପ୍ରମେୟ, ଅଖଣ୍ଡ ଅନୁଭବୈକ ବେଦ୍ୟ ବୋଲି ଯାହାକୁ ପ୍ରତ୍ୟକ୍ଷ କରି କୃତାର୍ଥ ହୋଇଥାଏ । ସେହି କାମରାଗାଦି ଦୋଷ ରହିତ, ଶମଦମାଦି ସମ୍ପନ୍ନ, ତୃଷ୍ଣା ଆଶା ଓ ମୋହାଦି ବର୍ଜିତ ଏବଂ ଦମ୍ଭ ଓ ଅହଂକାରାଦି ବିମୁକ୍ତ ମନୁଷ୍ୟକୁ ହିଁ ବ୍ରାହ୍ମଣ ବୋଲାଯାଏ । ( ବଜ୍ରସୂଚିକୋପନିଷତ୍ )

ଆଦର୍ଶ ବ୍ରାହ୍ମଣ ଲକ୍ଷଣ ।

ଜୀବିତଂ ଯସ୍ୟ ଧର୍ମାର୍ଥଂ ଧର୍ମୋ ହର୍ଯ୍ୟ * ର୍ଥମେବ ଚ ।
ଅହୋରାତ୍ରଶ୍ଚ ପୁଣ୍ୟାର୍ଥଂ ତଂ ଦେବା ବ୍ରାହ୍ମଣଂ ବିଦୁଃ ॥
ଅହେରିବ ଗଣାଦ୍ଭୀତଃ ସମ୍ମାନାନ୍ମରଣାଦିବ ।
ମରଣାଚ୍ଚ ନ ଭୀତୋ ଯଃ ତଂ ଦେବା ବ୍ରାହ୍ମଣଂ ବିଦୁଃ ॥
ନ କ୍ରୁଧ୍ୟେନ୍ନ ପ୍ରହୃଷ୍ୟେଚ୍ଚ ମାନିତୋଽମାନିତଶ୍ଚ ଯଃ ।
ସର୍ବଭୂତେଷ୍ୱଭୟଦଃ ତଂ ଦେବା ବ୍ରାହ୍ମଣଂ ବିଦୁଃ ॥
ବିମୁକ୍ତଂ ସର୍ବସଙ୍ଗେଭ୍ୟୋ ମୁନିମାକାଶବତ୍ ସ୍ଥିତମ୍ ।
ଅସ୍ୱଂ ଏକଚରଂ ଶାନ୍ତଂ ତଂ ଦେବା ବ୍ରାହ୍ମଣଂ ବିଦୁଃ ॥
ଦ୍ୱନ୍ଦ୍ୱାରାମେଷୁ ସର୍ବେଷୁ ଯ ଏକୋ ରମତେ ମୁନିଃ ।

---

* ଏଠାରେ ହରି ଶବ୍ଦର ଅର୍ଥ ସର୍ବଭୂତସ୍ଥିତ ହରି ।

ଯସ୍ମିନ୍ ଶାନ୍ତା ଅନବଧ୍ୟାଯୂନ୍ ତଂ ଦେବା ବ୍ରାହ୍ମଣଂ ବିଦୁଃ ।
ଯେନ ସର୍ବମିଦଂ ବୁଦ୍ଧଂ ପ୍ରକୃତି ର୍ବିକୃତିଶ୍ଚ ଯା ॥
ଗତିଜ୍ଞଃ ସର୍ବଭୂତାନାଂ ତଂ ଦେବା ବ୍ରାହ୍ମଣଂ ବିଦୁଃ ।
ଅଭୟଂ ସର୍ବଭୂତେଭ୍ୟଃ ସର୍ବେଷାମଭୟଂ ଯତଃ ॥
ସର୍ବଭୂତାତ୍ମଭୂତୋ ଯଃ ତଂ ଦେବା ବ୍ରାହ୍ମଣଂ ବିଦୁଃ । ( ବ: ପୁ:, ମ: ଭା:)

ଅର୍ଥାତ୍ ଯା'ର ଜୀବନ ଧର୍ମରକ୍ଷା ନିମନ୍ତେ, ଯା'ର ଧର୍ମରକ୍ଷା ସର୍ବଭୂତସ୍ଥିତ ହରିଙ୍କରସନ୍ତୋଷ ନିମନ୍ତେ ଏବଂ ଯା'ର ଅହୋରାତ୍ର ସତ୍କାର୍ଯ୍ୟ ନିମନ୍ତେ, ତାଙ୍କୁ ବ୍ରାହ୍ମଣ ବୋଲି ଯାଏ । ( ୧ ) ଯେ ସର୍ପଙ୍କୁ ଡରିଲାପରି ଜନସମୂହ ମଧ୍ୟରେ ରହିବାକୁ ଭୀତ ହୁଅନ୍ତି, ସମ୍ମାନକୁ ମରଣତୁଲ୍ୟ ମନେକରନ୍ତି, ମରଣକୁ ଡରନ୍ତି ନାହିଁ, ତାଙ୍କୁ ବ୍ରାହ୍ମଣ ବୋଲିଯାଏ । ( ୨ ) ସମ୍ମାନରେ ଯେ ହୃଷ୍ଟ ହୁଏନାହିଁ, ଅପମାନରେ ଯେ କ୍ଷୁବ୍ଧ ହୁଏନାହିଁ, ଏବଂ ସମସ୍ତ ପ୍ରାଣିମାନଙ୍କୁ ଯେ ଅଭୟଦାନ କରେ, ତାଙ୍କୁ ବ୍ରାହ୍ମଣ ବୋଲିଯାଏ । ( ୩ ) ଯେ ଆକାଶ ପରି ସର୍ବସଙ୍ଗବିମୁକ୍ତ, ଯା'ର ନିଜସ୍ୱ ବୋଲି କିଛି ନଥାଏ, ଏବଂ ଯେ ଏକାକୀ ଓ ଶାନ୍ତ, ତାଙ୍କୁ ବ୍ରାହ୍ମଣ ବୋଲିଯାଏ । [ ୪ ] ଯେ ଏହି ଦ୍ୱୈତପ୍ରପଞ୍ଚ ମଧ୍ୟରେ ଅଦ୍ୱୈତ ଭାବରେ ବିହାର କରେ ଏବଂ ଆତ୍ମାଠାରୁ ଭିନ୍ନ କିଛି ଅଛି ବୋଲି ବୁଝେ ନାହିଁ, ତାଙ୍କୁ ବ୍ରାହ୍ମଣ ବୋଲିଯାଏ । [ ୫ ] ଯେ ସର୍ବଜ୍ଞ, ପୁଣି ପ୍ରକୃତି ଓ ତା'ର ବିକୃତିର ରହସ୍ୟ ଯେ ଜାଣନ୍ତି ଏବଂ ପ୍ରାଣିମାନଙ୍କର ସାଂସାରିକ ଗତି ରହସ୍ୟ ଯେ ବୁଝନ୍ତି, ତାଙ୍କୁ ବ୍ରାହ୍ମଣ ବୋଲିଯାଏ । [ ୬ ] ସମସ୍ତ ପ୍ରାଣିଠାରୁ ଯା'ର ଭୟ ରହେନାହିଁ, ଯାହାଠାରୁ କୌଣସି ପ୍ରାଣୀ ଭୟପ୍ରାପ୍ତ ହୁଏନାହିଁ, ଏବଂ ସର୍ବଭୂତସ୍ଥିତ ଆତ୍ମାକୁ ଯେ ନିଜର ଆତ୍ମାଠାରୁ ଅଭିନ୍ନ ମନେକରେ ସେ ବ୍ରାହ୍ମଣ ନାମରେ ଅଭିହିତ ହୋଇଥାଏ ।

## ବେଦଜ୍ଞ ବ୍ରାହ୍ମଣର ପ୍ରାଧାନ୍ୟ

ଏହିଭଳି ବ୍ରହ୍ମଜ୍ଞ ବ୍ରାହ୍ମଣଠାରୁ ହିଁ ସମଗ୍ର ପୃଥିବୀବାସୀ ନିଜ ନିଜର ଚରିତ୍ର ଓ ବ୍ୟବହାର ଶିକ୍ଷା କରିବାକୁ ହେବବୋଲି ମାନବଜାତିର ଆଦିପୁରୁଷ ମନୁଙ୍କର ଆଦେଶ । * । ସେ ଏକ ସ୍ଥାନରେ ଲେଖିଛନ୍ତି ଯେ—

* ଏତଦ୍ଦେଶ ପ୍ରସୂତସ୍ୟ ସକାଶାଦଗ୍ର ଜନ୍ମନଃ ।
ସ୍ୱଂ ସ୍ୱଂ ଚରିତ୍ରଂ ଶିକ୍ଷେରନ୍ ପୃଥିବ୍ୟାଂ ସର୍ବମାନବାଃ ॥

"ସୈନାପତ୍ୟଞ୍ଚ ରାଜ୍ୟଞ୍ଚ ଦଣ୍ଡନେତୃତ୍ୱମେବ ଚ ।
ସର୍ବ ଲୋକାଧିପତ୍ୟଞ୍ଚ ବେଦଶାସ୍ତ୍ରବିଦର୍ହତି ॥ [ମନୁ ୧୨ ଅ]

ଅର୍ଥାତ୍ ଯେ ବେଦଶାସ୍ତ୍ର ଜାଣେ, ସେ ସେନାମାନଙ୍କ ଉପରେ ଆଧିପତ୍ୟ, ଦଣ୍ଡ ବିଭାଗରେ ନେତୃତ୍ୱ, ରାଜ୍ୟଶାସନ ବିଭାଗରେ ଅଧ୍ୟକ୍ଷତା ଏବଂ ସମସ୍ତ ଲୋକ ଉପରେ ଅଧିନାୟକତ୍ୱ ସ୍ଥାପନ କରିବାକୁ ଯୋଗ୍ୟ ।

ଅତ ପ୍ରାଚୀନ କାଳରେ ଏହିଭଳି ବେଦଜ୍ଞ ସ୍ଥିତପ୍ରଜ୍ଞ ବ୍ରାହ୍ମଣମାନଙ୍କର ଉପଦେଶ ଅନୁସାରେ ହିଁ ସୁଶୃଙ୍ଖଳାବରେ ବୈଦିକ ବର୍ଣ୍ଣାଶ୍ରମ ଧର୍ମ ପ୍ରତିଷ୍ଠିତ ହୋଇଥିଲା । ବ୍ୟାସ ଲେଖିଛନ୍ତି ଯେ-

ଗୃହୀତ୍ୱା ବର୍ଣ୍ଣୀୟଂ ନୃତ୍ୱରଲଶ୍ରମାଧର୍ମାଃ ସର୍ବେ ନ ଧ୍ୟେ ବ୍ରାହ୍ମଣାନାଂ ବିନାଶାତ୍ ।

ଆଚାର୍ଯ୍ୟ ଶଙ୍କର ମଧ୍ୟ ଲେଖିଛନ୍ତି—

ବ୍ରାହ୍ମଣସ୍ୟ ରକ୍ଷଣାତ୍ ରକ୍ଷିତଃ ସ୍ୟାଦ୍ ବୈଦିକୋ ଧର୍ମଃ
ତଦଧୀନତ୍ୱାତ୍ ବର୍ଣ୍ଣାଶ୍ରମଧର୍ମାଣାମ୍ [ଗୀ ଭାଷ୍ୟ]

ଅର୍ଥାତ୍ ବୈଦିକ ବର୍ଣ୍ଣାଶ୍ରମ ଧର୍ମ ବ୍ରାହ୍ମଣର ଉପରେ ନିର୍ଭର କରେ, ସୁତରାଂ ବ୍ରାହ୍ମଣଙ୍କୁ ରକ୍ଷାକରିବା ଦ୍ୱାରା ହିଁ ବର୍ଣ୍ଣାଶ୍ରମ ଧର୍ମ ରକ୍ଷିତ ହୁଏ । ଅତି ପୂର୍ବକାଳରେ ଏହିଭଳି ଗୀତପ୍ରାଣ, ସମଦର୍ଶୀ, ତପସ୍ୱୀ, ବ୍ରାହ୍ମଣମାନେ ହିଁ ଦେଶ କାଳାନୁସାରେ ବର୍ଣ୍ଣାଶ୍ରମ ଧର୍ମର ବ୍ୟବସ୍ଥାପକ ଥିଲେ । ଜାତିବ୍ରାହ୍ମଣ, ଜାତିକ୍ଷତ୍ରିୟ, ଜାତି ବୈଶ୍ୟ ଓ ଜାତିଶୁଦ୍ରମାନେ ସେମାନଙ୍କର ଆଦେଶର ଅନୁବର୍ତ୍ତୀ ଥିଲେ । ମହାଭାରତରେ ଲେଖାଅଛି ଯେ—

"ସ୍ୱଧର୍ମନିରତା ବିପ୍ରାଃ କ୍ଷତ୍ରିୟା ସ୍ତାନନୁବ୍ରତାଃ
କ୍ଷତ୍ରିୟାନୁଗତା ବୈଶ୍ୟାଃ ଶୂଦ୍ରା ବୈଶ୍ୟାନନୁବ୍ରତାଃ [ମ, ଭା]

ମହର୍ଷି ବାଲ୍ମୀକି ମଧ୍ୟ ତାଙ୍କର ରାମାୟଣରେ ରାମରାଜ୍ୟର ସ୍ୱରୂପ ବର୍ଣ୍ଣନାକରି ଲେଖିଛନ୍ତି—

କ୍ଷତ୍ରଂ ବ୍ରହ୍ମମୁଖଂ ଚାସୀଦ୍ ବୈଶ୍ୟାଃ କ୍ଷତ୍ରମନୁବ୍ରତାଃ
ଶୂଦ୍ରାଃ ସ୍ୱକର୍ମନିରତାଃ ତ୍ରୀନ୍ ବର୍ଣ୍ଣାନୁପଚାରିଣଃ ।
( ବାଂ ରାଂ )

ସେଇ ପ୍ରାଚୀନ କାଳରେ ଧର୍ମରେ ହିଁ ପ୍ରଜାମାନେ ପରସ୍ପର ପରସ୍ପରର ରକ୍ଷକଥିଲେ । କରଗ୍ରାହୀ ଦଣ୍ଡଧର ରାଜା ସେସମୟରେ ନ ଥିଲେ ।

## ବୈଦିକ ସ୍ୱରାଜ୍ୟ ବା ଧର୍ମରାଜ୍ୟ

ସେ ସମୟର ଇତିହାସ କହୁଛି ଯେ—

ନ ବୈରାଜ୍ୟଂ ନ ରାଜାସୀନ୍ ନଚ ଦଣ୍ଡ୍ୟୋ ନ ଚ ଦାଣ୍ଡିକଃ
ଧର୍ମେଣୈବ ପ୍ରଜାଃ ସର୍ବାଃ ରକ୍ଷନ୍ତି ସ୍ମ ପରସ୍ପରମ୍ ।

ସେତେବେଳେ ସ୍ୱରାଜ୍ୟ ଶବ୍ଦର ଅର୍ଥ ଥିଲା-ଆତ୍ମରାଜ୍ୟ ବା ସମସ୍ତ ପ୍ରାଣୀଠାରେ ସମାନ ଭାବରେ ଆତ୍ମଭାବ ପ୍ରତିଷ୍ଠା । ସେହେତୁରୁ ମନୁ ଲେଖିଛନ୍ତି—

" ସର୍ବଭୂତେଷୁ ଚାତ୍ମାନଂ ସର୍ବଭୂତାନି ଚାତ୍ମନି
ସମଂ ପଶ୍ୟନ୍ନାତ୍ମଯାଜୀ ସ୍ୱାରାଜ୍ୟମଧିଗଚ୍ଛତି । ( ମନୁ )

ସେତେବେଳେ ନିଜର ଉଦର ପୂରଣ ପାଇଁ ଆବଶ୍ୟକ ହେବା ପଦାର୍ଥ ଛଡ଼ା ଲୋଭର ବଶବର୍ତ୍ତୀ ହୋଇ ଅଧିକାଧିକ ଧନ ସଞ୍ଚୟ କରିବା ଲୋକକୁ ଦଣ୍ଡଦେବାର ବ୍ୟବସ୍ଥା ଥିଲା, ତାକୁ ଚୋର ବୋଲି କହା ଯାଉ ଥିଲା । ଶ୍ରୀମଦ୍‌ଭାଗବତ ପୁରାଣରେ ଲେଖା ଅଛି ଯେ—

" ଯାବଦ୍ ଭ୍ରିୟେତ ଜଠରଂ ତାବତ୍ସ୍ୱତ୍ୱଂ ହି ଦେହିନାମ୍
ଅଧିକଂ ଯୋଽଭିମନ୍ୟେତ ସ ସ୍ତେନୋ ଦଣ୍ଡମର୍ହତି ।
( ଭା. ୭।୧୪।୮ )

ସେ ସମୟରେ କେହି ଚୋର ନ ଥିଲେ, କୃପଣ ନ ଥିଲେ, ରୋଗୀ ନଥିଲେ, ଅଯାଜ୍ଞିକ ନ ଥିଲେ, ମୂର୍ଖ ନ ଥିଲେ କୁଳାଙ୍ଗାର ନ ଥିଲେ ଓ କୁଳଟା ନ ଥିଲେ । ସେ ସମୟରେ ଜଣେ ଆଦର୍ଶ ରାଜା ( ଅଶ୍ୱପତି ) ଋଷିଙ୍କର କୁଶଳ ସମ୍ବାଦ ପ୍ରଶ୍ନର ଉତ୍ତରରେ କହିଥିଲେ ଯେ—

" ନ ମେ ସ୍ତେନୋ ଜନପଦେ ନ କଦର୍ଯ୍ୟୋ ନ ମଦ୍ୟପଃ
ନାନାହିତାଗ୍ନିର୍ନାବିଦ୍ୱାନ୍ ନ ସ୍ୱୈରୀ ସ୍ୱୈରିଣୀ କୁତଃ ।
( ଛାନ୍ଦୋଗ୍ୟ )

ଅର୍ଥାତ ମୋର ରାଜ୍ୟରେ ଚୋର, କୃପଣ, ରୋଗୀ, ନାସ୍ତିକ, ମୂର୍ଖ ଭାଉଆ ଓ କୁଳଟା କେହି ନାହାନ୍ତି । ସେଇ ଧାର୍ମିକ ଯୁଗରେ ଲୋଭ ମୋହ ବିବର୍ଜ୍ଜିତ, ଜିତେନ୍ଦ୍ରିୟ କ୍ରୋଧରହିତ, ସାଙ୍ଗବେଦବିତ୍, ଧନୁର୍ବେଦଜ୍ଞ, ଅର୍ଥଶାସ୍ତ୍ର ଓ ଧର୍ମଶାସ୍ତ୍ରର ରହସ୍ୟବେତ୍ତା, ନୀତିନିପୁଣ, ଶସ୍ତ୍ରାସ୍ତ୍ର ରହସ୍ୟଜ୍ଞ, ଅଭିଶାପ ଓ ଅନୁଗ୍ରହ ପ୍ରଦାନ-ସମର୍ଥ, ତପସ୍ୱୀ ବ୍ରାହ୍ମଣମାନେ ହିଁ

ରାଜାମାନଙ୍କର ଆଚାର୍ଯ୍ୟ ଓ ପୁରୋହିତ ଥିଲେ, ଯେଉଁ ବ୍ରାହ୍ମଣର ପ୍ରଭାବରେ ରାଜାମାନେ ବିପଥଗାମୀ ହେଉନଥିଲେ । ଶୁକ୍ରନୀତିରେ ପୁରୋହିତର ଲକ୍ଷଣ ଏହିପରି ଲେଖାଅଛି ଯେ—

## ଆଦର୍ଶ ବ୍ରାହ୍ମଣ ପୁରୋହିତ

ଜିତେନ୍ଦ୍ରିୟୋ ଜିତକ୍ରୋଧଃ ଲୋଭମୋହ ବିବର୍ଜିତଃ
ଷଡଙ୍ଗବିତ୍ ସାଙ୍ଗଧନୁର୍ବେଦବିଚ୍ଚାର୍ଥ ଧର୍ମବିତ୍
ଯତ୍କୋପଭୀତ୍ୟା ରାଜାପି ଧର୍ମନୀତିରତୋ ଭବେତ୍
ନୀତି ଶସ୍ତ୍ରାସ୍ତ୍ର ବ୍ୟୂହାଦି କୁଶଳଃ ସ୍ୟାତ୍ ପୁରୋହିତଃ
ସୈବାଚାର୍ଯ୍ୟଃ ପୁରୋଧା ଯଃ ଶାପାନୁଗ୍ରହୟୋଃ କ୍ଷମଃ
ବ୍ରାହ୍ମଣଂ ତଂ ସଧର୍ମିଷ୍ଠଂ ଦୃଷ୍ଟ୍ୱା ବିଭ୍ୟତି ଚେତରେ
ଅନ୍ୟଥା କ୍ଷତ୍ରିୟାଦ୍ୟାସ୍ତୁ ତସ୍ମାଦ୍ ବିପ୍ରସ୍ତମଣ୍ଡନରେତ୍ ।
ଷଡ୍ଭାଗ ଭୃତ୍ୟାଦାସ୍ୟତ୍ୱେ ପ୍ରଜା ଭସ୍ମ ନୃପଃ କୃତଃ । (ଶୁ° ନୀ°)
" ପ୍ରଜାନାଂ ତୁ ନୃପଃ ସ୍ୱାମୀ ରାଜ୍ଞଃ ସ୍ୱାମୀ ପୁରୋହିତଃ ( ମ. ଭା. )

## ଧାର୍ମିକ ରାଜ୍ୟଶାସନ ବ୍ୟବସ୍ଥା ସଭା

" ଯଂ ପୌରଜାନପଦାଃ ସର୍ବେ ବିଶ୍ୱାସଂ ଧର୍ମତୋ ଗତାଃ
ସର୍ବକର୍ମ ବିଶେଷଜ୍ଞୋ ମନ୍ତ୍ରୀ ଭବିତୁମର୍ହତି । ୧ ।
ଚତୁରୋ ବ୍ରାହ୍ମଣାନ୍ ବୈଦ୍ୟାନ୍ ପ୍ରଗଲ୍ଭାନ୍ ସ୍ନାତକାଂଶ୍ଚୁଚୀନ୍
କ୍ଷତ୍ରିୟାନ୍ ତଥ ଚାଷ୍ଟୌ ଚ ବଳିନଃ ଶସ୍ତ୍ରଧାରଣାନ୍
ବୈଶ୍ୟାନ୍ ବିତ୍ତେନ ସମ୍ପନ୍ନାନ୍ ଏକବିଂଶତି ସଂଖ୍ୟୟା
ତ୍ରୀଂଶ୍ଚ ଶୂଦ୍ରାନ୍ ବିନୀତାଂଶ୍ଚ ଶୁଚୀନ୍ ପୂର୍ବେଷୁ କର୍ମସୁ
ଅଷ୍ଟାଭିଶ୍ଚ ଗୁଣୈର୍ଯୁକ୍ତଂ ସୂତଂ ପୌରାଣିକଂ ତଥା
ପଞ୍ଚାଶଦ୍ ବର୍ଷ ବୟସଂ ପ୍ରଗଲ୍ଭ ମନସୂୟକମ୍
ଏତାନ୍ ସମ୍ଭାବ୍ୟାମାତ୍ୟାନ୍ ରାଜା କୁର୍ଯ୍ୟାତ୍ ସହାୟକାନ୍ । ( ମ. ଭା. ଶା. )

ଅର୍ଥାତ୍ ପୁରବାସୀ ଓ ଜନପଦବାସୀ ଯାହାକୁ ଧାର୍ମିକ ବୋଲି ବିଶ୍ୱାସ କରନ୍ତି ଏବଂ ଯେ ସମସ୍ତ ପ୍ରଜାମାନଙ୍କର କର୍ମ ବ୍ୟବସ୍ଥା, ବୃତ୍ତି ବ୍ୟବସ୍ଥା * କରିବାପାଇଁ ବିଶେଷଜ୍ଞ, ସେ ଧାର୍ମିକ ରାଜାର ମନ୍ତ୍ରୀ ହେବାକୁ ଯୋଗ୍ୟ ।

---

* ସର୍ବେଷାଂ ବ୍ରାହ୍ମଣୋ ବିଦ୍ୟାଦ୍ ବୃତ୍ତ୍ୟୁପାୟାନ୍ ଯଥାବିଧି ।
ପ୍ରବ୍ରୂୟାଦ୍ ଇତରେଭ୍ୟଶ୍ଚ ସ୍ୱୟଂ ଚୈବ ତଥାଭବେତ୍ ॥ [ ମନୁ ]

ଅର୍ଥାତ୍ ଧାର୍ମିକ ରାଜା ନିଜର ରାଜ୍ୟଶାସନ ବ୍ୟବସ୍ଥାସଭାର ସହାୟକ ରୂପେ ଯୋଗ ଦେବାପାଇଁ ଏହିଭଳି ବ୍ୟକ୍ତିମାନଙ୍କୁ ବାଛି ଗ୍ରହଣ କରିବେ। ଯହିଁରେ କି, ବ୍ରହ୍ମଚର୍ଯ୍ୟାନନ୍ତର ଗୃହସ୍ଥାଶ୍ରମରେ ପ୍ରବିଷ୍ଟ, ବାଗ୍ମୀ, ଶୁଦ୍ଧବୁଦ୍ଧି, ବ୍ରାହ୍ମଣ,- ବେଦବିଦ୍ୟ ଚାରିଜଣ ଏବଂ ବଳିଷ୍ଠ, ଶସ୍ତ୍ରବିଦ୍ୟା ଧୁରନ୍ଧର କ୍ଷତ୍ରିୟ ଅଠରଜଣ ଏବଂ ଧନାଢ୍ୟ ବୈଶ୍ୟ ଏକୋଇଶିଜଣ ପୁଣି ସମସ୍ତଶିଳ୍ପ କର୍ମଦକ୍ଷ ବିନୀତ ଓ ଶୁଦ୍ଧବୁଦ୍ଧି ଶୂଦ୍ର ତିନି ଜଣ ଏବଂ ୫୦ ବର୍ଷ ବୟସ୍କ, ବାଗ୍ମୀ, ଅସୂୟାରହିତ, ସଦ୍‌ଗୁଣସଂଯୁକ୍ତ ଜଣେ ସୂତଜାତୀୟ ପୌରାଣିକ ଥିବେ। ଏହିଭଳି ସଭ୍ୟମାନଙ୍କୁ ବାଛି ଧାର୍ମିକ ରାଜ୍ୟଶାସନବ୍ୟବସ୍ଥା ସଭା ପୂର୍ବକାଳରେ ଗଢାଯାଉଥିଲା।

## ଧାର୍ମିକ ରାଜ୍ୟରେ କୁଳ ସ୍ତ୍ରୀମାନଙ୍କର ଗୌରବ।

ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତାଃ।
ଯତ୍ରୈତାସ୍ତୁ ନ ପୂଜ୍ୟନ୍ତେ ସର୍ବାସ୍ତତ୍ରାଫଳାଃ କ୍ରିୟାଃ॥
ଶୋଚନ୍ତି ଜାମୟୋ ଯତ୍ର ବିନଶ୍ୟତ୍ୟାଶୁ ତତ୍କୁଳମ୍।
ଜାମୟୋ ଯାନି ଗେହାନି ଶପନ୍ତ୍ୟପ୍ରତିପୂଜିତାଃ॥
ତାନି କୃତ୍ୟାହତାନୀବ ବିନଶ୍ୟନ୍ତି ସମନ୍ତତଃ।

ଅର୍ଥାତ୍ ଯେଉଁ ସମାଜରେ କୁଳସ୍ତ୍ରୀମାନେ ପୂଜିତା ହୁଅନ୍ତି, ସେଇ ସମାଜରେ ଦେବତାମାନେ ବିହାର କରନ୍ତି। କିନ୍ତୁ କୁଳସ୍ତ୍ରୀମାନେ ଯେଉଁ ଗୃହରେ ବା ସମାଜରେ କାନ୍ଦନ୍ତି, ସେଇଗୃହ ବା ସମାଜ ଅଭିଶାପର ପ୍ରୟୋଗରେ ଆହତ ହେଲାପରି ନଷ୍ଟ ହୋଇଯାଏ।

## ଧାର୍ମିକ ହିନ୍ଦୁ ସମାଜରେ ହରିଜନମାନଙ୍କ ସ୍ଥାନ

କୃଷ୍ଣୋତ୍ସବସମାୟାତାନ୍ ଦୃଷ୍ଟ୍ୱା ହରିଜନାନ୍ କ୍ୱଚିତ୍।
ନୈବ କାର୍ଯ୍ୟାଶୁଚେଃ ଶଙ୍କା ପୁଣ୍ୟାସ୍ତେ ଭକ୍ତିସଂଯୁତାଃ।
ସର୍ବେ ବିପ୍ର ସମାଜ୍ଞେୟାଃ ଶ୍ୱପଚାଦ୍ୟା ନ ସଂଶୟଃ॥
( ନିମ୍ବାର୍କ ବ୍ରତନିର୍ଣ୍ଣୟ )

ମ୍ଲେଚ୍ଛୋ ବା ପ୍ୟନ୍ତ୍ୟଜୋ ବାପି ଷଣ୍ଢୋ ବାପି ମୁମୁକ୍ଷୁର।
ହୀନ ଯୋନୌ ଯଦା ଜାତଃ ଜ୍ୟୋତିର୍ଲିଙ୍ଗଂ ପ୍ରପଶ୍ୟତି॥
ତସ୍ୟ ଜନ୍ମ,ଭବେଦ୍ଭୂୟା ବିମଲେ ସଜ୍ଜନେ କୁଲେଯୁନଃ। ( ତନ୍ତ୍ରଶାସ୍ତ୍ର )

ଅର୍ଥାତ୍ ଦେବଯୋଗାଦି ଧାର୍ମିକ ଉତ୍ସବରେ ଭକ୍ତିଯୁକ୍ତ ହୋଇ ଯୋଗ ଦେଉଥିବା ଚାଣ୍ଡାଳାଦି ହରିଜନମାନେ ଅସ୍ପୃଶ୍ୟ ନୁହନ୍ତି । ସେମାନେ ସେହି ସମୟରେ ବ୍ରାହ୍ମଣ ତୁଲ୍ୟ ପବିତ୍ର ।

(୧) ମ୍ଳେଚ୍ଛହେଉ ବା ଚଣ୍ଡାଳହେଉ, ସେ ଯଦି ଜ୍ୟୋତିର୍ଲିଙ୍ଗଙ୍କୁ ଦର୍ଶନକରେ, ସେ ଜନ୍ମାନ୍ତରରେ ଉତ୍ତମ କୁଳରେ ଜାତହୁଏ । (୨) ଆହୁରି ମଧ୍ୟ ଲେଖାଅଛି- ଯେ ଚ ପୂଜ୍ୟନ୍ତି ଶିବଂ ନିତ୍ୟଂ ଲିଙ୍ଗରୂପିଣମେବ ଚ । ସ୍ତ୍ରୀୟୋ ବା ପ୍ୟଥ ବା ଶୂଦ୍ରାଃ ଶ୍ୱପଚୋ ହ୍ୟନ୍ତବାସିନଃ ତେ ଶିବଂ ପ୍ରାପ୍ନୁୟୁର୍ଲୋକେ ସର୍ବଦୁଃଖ ବିନାଶନଂ ।   (୩) ହି-ପୁ-(ପା: ୧୬ ଶ୍ଳୋ)

କିନ୍ତୁ ଦୁଃଖର ବିଷୟ ଯେ- ବର୍ତ୍ତମାନ ଦାମ୍ଭିକ ଭ୍ରଷ୍ଟ ସ୍ୱାର୍ଥାନ୍ଧ ହିନ୍ଦୁସମାଜ ଏହିସବୁ ଶାସ୍ତ୍ରୀୟ ଉପଦେଶ ପ୍ରତି ଭ୍ରୂକ୍ଷେପ କରୁନାହିଁ ।

## ବୈଦିକ ହିନ୍ଦୁ ସମାଜର ବୈଜ୍ଞାନିକ ସ୍ୱରୂପ

ବ୍ରାହ୍ମଣୋଽସ୍ୟ ମୁଖମାସୀଦ୍ ବାହୂ ରାଜନ୍ୟଃ କୃତଃ ।
ଉରୂ ତଦସ୍ୟ ଯଦ୍ ବୈଶ୍ୟଃ ପଦ୍ଭ୍ୟାଂ ଶୂଦ୍ରୋ ଅଜାୟତ [ପୁରୁଷସୂକ୍ତ]

ଅର୍ଥାତ୍ ଏହି ବିରାଟ୍ ପୁରୁଷର ମୁଖ ବ୍ରାହ୍ମଣ, ବାହୁ କ୍ଷତ୍ରିୟ, ଊରୁ ବା ଉଦର * ବୈଶ୍ୟ ଏବଂ ପାଦ ଶୂଦ୍ର ଅଟେ । ଚରକ କହନ୍ତି ଯେ—

"ପୁରୁଷୋଽୟଂ ଲୋକସମ୍ମିତଃ । ଯାବନ୍ତୋ ହି ମୂର୍ତ୍ତିମନ୍ତୋ ଲୋକେ ଭାବବିଶେଷାଃ ତାବନ୍ତଃ ପୁରୁଷେ, ଯାବନ୍ତଃ ପୁରୁଷେ ତାବନ୍ତୋ ଲୋକେ ।
[ ଚରକ ]

ଅର୍ଥାତ୍ ପିଣ୍ଡ ଓ ବ୍ରହ୍ମାଣ୍ଡ ସମାନ । ଯାହା ଯାହା ବ୍ରହ୍ମାଣ୍ଡରେ ଅଛି, ତାହା ତାହା ପିଣ୍ଡରେ ଏବଂ ଯାହା ଯାହା ପିଣ୍ଡରେ ଅଛି, ତାହା ତାହା ବ୍ରହ୍ମାଣ୍ଡରେ ଅଛି ।

ଜାତି ଓ ବ୍ୟକ୍ତିର ରୂପ ସମାନ ଅଟେ । ଏହି ସଂସାରରେ ଯେପରି ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ନାମରେ ଶିକ୍ଷକ, ରକ୍ଷକ, ପୋଷକ ଓ ସେବକ ଚାରି ଜାତିର ମନୁଷ୍ୟ ଦେଖାଯାନ୍ତି, ସେହିପରି ପିଣ୍ଡ ( ଶରୀର ) ରେ ମଧ୍ୟ ଏହି ଚାରି ବର୍ଣ୍ଣର ଚାରିପ୍ରକାର ଗୁଣକ୍ରିୟା ବିଦ୍ୟମାନ ଅଟେ । ମୁଖ ବାହୁ ଆଦି ଅଙ୍ଗରେ ମନୁଷ୍ୟର- ମୁଖ- ବ୍ରାହ୍ମଣ,

* ମଧ୍ୟଂ ତଦସ୍ୟ ଯଦ୍ ବୈଶ୍ୟଃ ( ଋ.ବେ. ୧୯ । ୬ । ୬ )

ଏଥିରେ ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା ଓ ଚର୍ମ ଏହି ପାଞ୍ଚ ପ୍ରକାର ଜ୍ଞାନେନ୍ଦ୍ରିୟ ରହେ । ଦେଖିବାପାଇଁ ଆଖି, ଶୁଣିବାପାଇଁ କାନ, ସୁଗନ୍ଧ ଦୁର୍ଗନ୍ଧ ଶୁଙ୍ଘିବାପାଇଁ ନାକ, ମଧୁର ଅମ୍ଳାଦିରସ ଚାଖିବାପାଇଁ ଏବଂ କଥା କହିବାପାଇଁ ଜିଭ ଏବଂ କୋମଳତା, କାଠିନ୍ୟ, ଉଷ୍ଣ ଓ ଶୀତ-ଇତ୍ୟାଦି ଜାଣିବାପାଇଁ ଚର୍ମେନ୍ଦ୍ରିୟର ସାହାଯ୍ୟ ଆବଶ୍ୟକ । ଏହି ସମସ୍ତ ଜ୍ଞାନାୟତନ ମୁଖମଣ୍ଡଳ ଅନ୍ୟ କୌଣସି ଅଙ୍ଗରେ ସମ୍ମିଳିତଭାବରେ ରହିନାହିଁ, ଏହି କାରଣରୁ ଶିରୋମଣ୍ଡଳ ଶ୍ରେଷ୍ଠ କୁହାଯାଏ ।

କେତେକ ସମୟରେ ମନୁଷ୍ୟ ଆହାର ଜନିତ ଅଙ୍ଗମାନଙ୍କୁ ବସ୍ତ୍ର ଓ ଭୂଷଣ ଦ୍ୱାରା ଆଚ୍ଛାଦିତ କରିଥାଏ । କିନ୍ତୁ ଜ୍ଞାନର ଆକର ଏହି ମଣ୍ଡଳ ( ମୁଖ ) କୁ ବିଲକୁଲ ଖୋଲା ଛାଡ଼ିଦେଇଥାଏ । ଯଦି ଆଖିକୁ ଘୋଡ଼ାଇଦିଆଯାଏ, ତେବେ ଦେଖିବାର ବନ୍ଦ, ଯଦି କାନକୁ ଘୋଡ଼ାଇ ଦିଆଯାଏ, ତେବେ ଶୁଣିବାର ବନ୍ଦ, ଯଦି ମୁହଁକୁ ଘୋଡ଼ାଇ ଦିଆଯାଏ, ତେବେ କହିବାର ବନ୍ଦ ଏବଂ ଯଦି ନାକକୁ ବନ୍ଦ କରିଦିଆଯାଏ ତେବେ ଶୁଙ୍ଘିବାର ବନ୍ଦ ହେବା ସଙ୍ଗେ, ଶ୍ୱାସ ପ୍ରଶ୍ୱାସ ଗତି ମଧ୍ୟ ବନ୍ଦ ହୋଇଯାଏ । ବାହାରେ ବୁଲିବା ସମୟରେ ଲୋକେ ଅନ୍ୟ ଅଙ୍ଗମାନଙ୍କୁ କେତେକ ବସ୍ତ୍ରାବୃତ କରିଥାନ୍ତି, ସେହିପରି ମୁଣ୍ଡରେ ପଗଡ଼ି ଲୁଗା ଘୋଡ଼ାଇଦିଆଯାଏ । ତେବେ ତାହା କେବଳ ମୁଣ୍ଡର ଆବରଣ ହୁଏନାହିଁ । କିନ୍ତୁ ସମଗ୍ର ମଣ୍ଡଳଟିକୁ ଏପରିଭାବରେ ରଖିଦେଲେ, ଯେପରିକି ବ୍ରାହ୍ମଣ ଜ୍ଞାନେନ୍ଦ୍ରିୟ ଓ କର୍ମେନ୍ଦ୍ରିୟ ହେଲେ ସମସ୍ତେ ସମାନ ଅବଯୋଗ୍ୟ ପ୍ରାପ୍ତ ହୋଇଥାଏ । ଆକ୍ରମଣ ଦେଖନ୍ତୁ ଯେ- ପ୍ରତ୍ୟେକ ଶରୀର ମଧ୍ୟରେ ଭୋଜନ ପ୍ରାପ୍ତି କରାଏ ମୁଖ- ଭାତ, ରୋଟି, ଦରମିଠା, ବିକୃତ ଇତ୍ୟାଦିକ ଭୋଜନକୁ ନେଇ ମାଡ଼ିରେ- ମୁଖ, ଶରୀରରୁ ଅଧିକ ବସ୍ତୁକୁ ବାହାର କରିଦିଏ- ମୂତ୍ର, ଏବଂ ଭିତରର ଦ୍ରବ୍ୟକୁ ଚର୍ବଣ କରି ନାଭି ମଧ୍ୟରେ ଉପଯୋଗି ରୂପରେ ପରିଣତ କରେ, ମୁହଁ । ଯଦି ମୁଖ ଉପରୁ ଅନୁପଯୋଗି ଦ୍ରବ୍ୟକୁ ବାହାର କରିବା ବଡ଼ ବଡ଼ ଖଣ୍ଡ, ଗିଳିଦିଏ, ତା'ର ଫଳ କ'ଣ ହୁଏ? ସମସ୍ତେ ଜାଣନ୍ତି, ସେସବୁ ଖାଦ୍ୟ ଗୁଣ୍ଡରେ ଅଟକି ଯାଏ ଏବଂ ହଜମ ହୋଇଥିବା ସବୁ ଆହାର ମଧ୍ୟ ବାହ୍ୟରୋଗ ବାହାରିପଡ଼େ ।

(୧) ମୁଖର କାର୍ଯ୍ୟ ଏହି ଯେ- ଭିତରର ବସ୍ତୁକୁ ଶରୀରର ଉପଯୋଗି

କରି- ଭିତରକୁ ଗ୍ରହିବା, ଯେବେ ଯଦି ମୁଖ ଲୋଭୀ ହୁଏ ଏବଂ ନିଜେ ଖାଇଥିବା ପଦାର୍ଥକୁ ନିଜ ଭିତରେ ହିଁ ରଖେ, ତଳାର ତଳକୁ ତାକୁ ଖସାଇ ଦିଏନାହିଁ, ତା'ହେଲେ ତଦ୍ୱାରା କେବଳ ମୁଖର ନୁହେଁ, କିନ୍ତୁ ସାରା ଶରୀରର ଅନିଷ୍ଟ ହୋଇଥାଏ । ଯଦି ମୁଖରେ ହିତ ଅହିତ ଦ୍ରବ୍ୟର ପରୀକ୍ଷାକରିବାର ଶକ୍ତି ନଷ୍ଟ ହୋଇଯାଏ । ତେବେ ମଧ୍ୟ ଏହି ପରିଣାମ ହୁଏ । ବ୍ରାହ୍ମଣ ଯଦି ଜ୍ଞାନହୀନ ହୁଏ, ତାପରେ ଯଦି ଲୋଭ ଆଡମ୍ବର ଧରିକରି ରହେ, ତେବେ ମଧ୍ୟ ସମାଜରେ ଏହି ଅବସ୍ଥା ଘଟିଥାଏ ।

ମୁଖ ହିଁ ପଢାଏ ଏବଂ ପଢେ, ମୁଖର ଅଂଶ ମସ୍ତିଷ୍କ ହିଁ ବୁଝେ ଓ ମନେ ରଖେ । ଯଦି ମୁଖ ନ ରହେ, ତା'ହେଲେ ଜୀବନ ଧାରଣ ବନ୍ଦ ହୋଇଯାଏ, ସେମିତି କ ଶରୀରକୁ ବଞ୍ଚିବାର ମଧ୍ୟ କଠିନ ହୁଏ । ଏହେତୁରୁ ଶରୀରକୁ ନାଶକରିବାକୁ ହେଲେ ପ୍ରଥମେ ମୁଖକୁ କାଟିଦେବାକୁ ହୁଏ ।

ଆଜିକାଲିର ଲୋକେ ମୂର୍ଖତାଦୋଷରୁ ଏହି ମୁଖକୁ କାଟିଦେବାକୁ ଚାହାନ୍ତି । କିନ୍ତୁ ଏଥିଦ୍ୱାରା ସମାଜର ଶରୀର ଧ୍ୱଂସ ଉଚ୍ଛିନ୍ନ ହୋଇଯିବ, ସମାଜ ମରିଯିବ, ତାହାର ଶରୀରକୁ ବଞ୍ଚିବାର କଠିନ ହେବ, ଏହା ସେମାନେ ଜାଣନ୍ତି ନାହିଁ ।

ଏହିସବୁ କାରଣରୁ ଉକ୍ତ ବେଦ ମନ୍ତ୍ରରେ ମୁଖକୁ ହିଁ ବ୍ରାହ୍ମଣ ବୋଲାଯାଇଛି ।

(୨) ଏବେ ବାହୁକୁ ଦେଖନ୍ତୁ- ବାହୁକୁ କ୍ଷତ୍ରିୟ କୁହାଯାଏ, ଏହା ହେଉଛି- ବୀରତ୍ୱର । ଯଦି ମସ୍ତିଷ୍କଉପରେ ଠେଙ୍ଗା ପ୍ରହାର କରିବାକୁ କେହି ଉଦ୍ୟତ ହୁଏ, ତେବେ ତାକୁ ରୋକିବାପାଇଁ ଆଗ କାହାରେ କିଏ ? ଏହାର ଉତ୍ତର ବାହୁ ବା ହାତ । ଯଦି ଆଖିରୁ ଲୁହପିଠି ଝରିଯାଏ, ତେବେ ତାକୁ ଠିକ୍ କରେ କିଏ ? ସେଇ ବାହୁ । ଯଦି ପାଦରେ କଣ୍ଟା ପଶିଯାଏ, ତା'କୁ ବାହାରକରେ କିଏ ? ସେଇ ବାହୁ । ଯଦି ଶତ୍ରୁ ଉପରେ ଠେଙ୍ଗା ଚଳାଇବାକୁ ହୁଏ, ତେବେ ଉଦ୍ୟତ ହୁଏ କିଏ ? ସେଇ ବାହୁ । କେହି ହେଲେ ମୁଖରେ, ଜଂଘରେ ବା ପାଦରେ ଲାଠି ଚଳାଏ ନାହିଁ । ଏହି ପ୍ରକାରେ ସାରା ଶରୀରର ରକ୍ଷାଭାର ବାହୁ ଉପରେ ହିଁ ରହେ । ଏହିଭଳି ବ୍ରାହ୍ମଣ, ବୈଶ୍ୟ ଶୂଦ୍ରମାନଙ୍କର ମଧ୍ୟ ରକ୍ଷାଭାର କ୍ଷତ୍ରିୟ ଉପରେ ରହେ । ଯଦି ବାହୁ ବ୍ୟାୟାମକୁ ଛାଡ଼ି ଦୁର୍ବଳ ହୋଇଯାଏ, ତେବେ ମସ୍ତିଷ୍କଉପରେ ଅନ୍ୟର ଜୋତା ମାଡ ମଧ୍ୟ ବର୍ଷିଯାଏ । କ୍ଷତ୍ରିୟର

ଦୁର୍ବଳତାରେ ଫଳ ମସ୍ତିଷ୍କଠାରୁ ଆରମ୍ଭ କରି ଶୂଦ୍ର ପର୍ଯ୍ୟନ୍ତ ଭୋଗକରିବାକୁ ପଡେ ।

ଏହିସବୁ କାରଣରୁ ହିଁ ଉକ୍ତ ବେଦ ମନ୍ତ୍ରରେ ବାହୁକୁ କ୍ଷତ୍ରିୟ କୁହାଯାଇଛି ।

(୩) ମୁଣ୍ଡ ବା ମୁଖ ବ୍ରାହ୍ମଣ, ଅଟେ, ବାହୁ ବା ଭୁଜ କ୍ଷତ୍ରିୟ ଅଟେ । ଏହାର ବିଷୟର ତ ହୋଇଗଲା । ଏହାର ତଳଭାଗ ପେଟ, ଅଣ୍ଟା ବା ଜଙ୍ଘ ବୈଶ୍ୟ ଅଟେ । " ଊରୂ ତଦସ୍ୟ ଯଦ୍ ବୈଶ୍ୟଃ " (ଯଜୁ: ଅ: ୩୧।୧୧) "ମଧ୍ୟଂ ତଦସ୍ୟ ଯଦ୍ ବୈଶ୍ୟଃ" ( ଅଥର୍ବ: ୧୯।୬।୬ ) ଏହା ହେଉଛି ସଂଗ୍ରହ ଭାଗ । ଶରୀରର ଉପଯୋଗି ସମସ୍ତ ପଦାର୍ଥ ପେଟରେ ଜମା ହୁଏ, ସମାଜର ଉପଯୋଗୀ ସମସ୍ତ ପଦାର୍ଥ ବୈଶ୍ୟମାନଙ୍କଠାରେ ସଂଗୃହୀତ ହୋଇ ରହେ । ଆଖି ଉତ୍ତମ ଖାଦ୍ୟ ଦେଖିଲା, ହାତ ତାକୁ ଉଠାଇଲା, ମୁହଁ ତାକୁ ଚୋବାଇ ଗଳାର ତଳକୁ ଖସାଇଲା । ଏବେ ସେସବୁ ଜମାହେଲା କେଉଁଠାରେ ? ଏହାର ଉତ୍ତର ପେଟରେ ବା ମଧ୍ୟଭାଗରେ । ସମଗ୍ର ଶରୀରର ଚାଳନ ଓ ପୋଷଣର କେନ୍ଦ୍ର ହେଉଛି- ଉଦର । ଯଦି ଉଦର ଖାଲି ହୋଇଯାଏ, ତେବେ ଆଖି ବ୍ୟାକୁଳ ହୋଇ ଉଠେ, ମୁଣ୍ଡ ଘୂରେ, ବାହୁରେ ଶକ୍ତି ରହେନାହିଁ, ଜଙ୍ଘ ଓ ପାଦ ଦୁର୍ବଳ ହୋଇପଡେ, ଉଠେ ନାହିଁ । ବୈଶ୍ୟମାନଙ୍କର ଦରିଦ୍ରତାରେ ସମସ୍ତ ସମାଜ ଅଧୋଗତି ପ୍ରାପ୍ତ ହୁଏ । ଯଦି ଉଦରଭାଗ ସଞ୍ଚିତ ଦ୍ରବ୍ୟକୁ କେବଳ ଆପଣା ପାଇଁ ରଖେ, ଏଣେ ତେଣେ ପହଞ୍ଚାଏ ନାହିଁ, ତାହେଲେ ଲଘୁ କୋଷ୍ଠତା ହେବାରୁ ତା'ସହିତ ସମସ୍ତ ଶରୀରର ମୃତ୍ୟୁ ହୁଏ । ସଂଗ୍ରହ ଓ ତ୍ୟାଗ ଏହି ଦୁଇଟି ବୈଶ୍ୟର ଧର୍ମ । ଏହି କାରଣରୁ ହିଁ ଉଦର [ ପେଟ ] କୁ ଉକ୍ତ ବେଦମନ୍ତ୍ରରେ ବୈଶ୍ୟ କୁହାଯାଇଛି ।

(୪) ବୈଶ୍ୟର ଅଧୋଭାଗ ପାଦ ଶୂଦ୍ର ଅଟେ । ଏହା ସେବା ଭାଗ । ସମ୍ପୂର୍ଣ୍ଣ ଶରୀରର ଭାର ପାଦ ଉପରେ ହିଁ ରହେ । ପାଦ ବ୍ୟତିରେକେ ଉପରର ସମସ୍ତ ଅଙ୍ଗ ବ୍ୟର୍ଥ । ପାଦ ଯଦି ଦୃଢ ନ ଥାଏ, ତେବେ ଶରୀରର ପତନ ଅନିବାର୍ଯ୍ୟ ଅଟେ ।

ପାଦ ସ୍ୱୟଂ ଜ୍ଞାନହୀନ । ଏହି କାରଣରୁ ମସ୍ତିଷ୍କ ଭାଗ ତାକୁ ଯେପରି

ଭାବରେ ଚଳାଇବାକୁ ଚାହେଁ, ସେ ସେହିପରି ଭାବରେ ଚଳେ। ସେପରି ମସ୍ତିଷ୍କର ଆଦେଶ ବ୍ୟତିରେକେ ନିଜର ଇଚ୍ଛାନୁସାରେ ଚଳେ, ତେବେ ସେ ସ୍ୱୟଂ ଖସିପଡିବ, ସାରା ଶରୀରକୁ ମଧ୍ୟ ଖସାଇ ନେଇବ।

ପାଦ [ଶୂଦ୍ର] କୁ କୁମାର୍ଗ ଗମନରୁ ରକ୍ଷା କରିବା ହେଉଛି ବ୍ରାହ୍ମଣ-ସ୍ଥାନୀୟ ମୁଖର ଏକାଂଶରେ ସ୍ଥିତ ମସ୍ତିଷ୍କର-ଧର୍ମ। ପାଦକୁ ଶୀତୋଷ୍ଣରୁ ରକ୍ଷା କରିବାପାଇଁ ତଳିରେ ଜୋତା ପିନ୍ଧାଇବା ଏବଂ ସେଥିରେ କଣ୍ଟା ଫୋଟିଲେ ବାହାର କରିଦେବା ଏବଂ ତୈଳାଭ୍ୟଙ୍ଗାଦି ଦ୍ୱାରା ତାକୁ ବଳବାନ୍ କରିବା ଏସବୁ କ୍ଷତ୍ରିୟ ସ୍ଥାନୀୟ ବାହୁର ଧର୍ମ। ଏବଂ ତାକୁ ପୋଷକ ପଦାର୍ଥ ଯୋଗାଇବା ବୈଶ୍ୟ ସ୍ଥାନୀୟ ଉଦରର ଧର୍ମ ଅଟେ।

ବେଦୋକ୍ତ ବର୍ଣ୍ଣାଶ୍ରମ ଧର୍ମର-ଏହା ହେଲା ସଂକ୍ଷିପ୍ତ ଚିତ୍ର। ଏହି ବର୍ଣ୍ଣାଶ୍ରମ ଧର୍ମହିଁ ଭାରତବର୍ଷରେ ବଞ୍ଚେଇଛି। ବୈଦିକକାଳ [ସୃଷ୍ଟି ଆରମ୍ଭ] ରୁ ହିଁ ଚାରି ବର୍ଣ୍ଣ ଥିଲେ- ଏବଂ ସେମାନଙ୍କର ଧର୍ମ କର୍ମ ମଧ୍ୟ ନିର୍ଦ୍ଧାରିତ ହୋଇଥିଲା। ଏହିକଥା ଉକ୍ତ ବେଦମନ୍ତ୍ରରୁ ସ୍ପଷ୍ଟ ହେଉଅଛି। (*) ଉକ୍ତ ବେଦମନ୍ତ୍ରର ଏହି ଅର୍ଥ ନୁହେଁଯେ- ବୈଦିକ ଯୁଗରେ ଉକ୍ତ ଚାରିବର୍ଣ୍ଣ କେବଳ ଥିଲା, ଅନ୍ୟ କୌଣସି ଜାତି ବା ଉପଜାତି ନଥିଲା। ଅଥବା ସେହି ସମୟରେ ବିରାଟ୍ ପୁରୁଷର, ମୁଖ, ବାହୁ, ଉରୁ, ପାଦ ଛଡା ଅନ୍ୟ କୌଣସି ଅଙ୍ଗ ନ ଥିଲା। ଏହା ନୁହେଁ। ସେହି ସମୟରେ ମଧ୍ୟ ନିଷାଦ, ଶ୍ୱପଚ ଆଦି ଅନ୍ୟଜାତି ଥିଲେ। ଯେପରି କେବଳ ମୁଖ, ବାହୁ, ଉରୁ, ପାଦ ଏହି ଚାରି ଅଙ୍ଗଦ୍ୱାରା ଶରୀର ଧାରଣ ଅସମ୍ଭବ। ମଳମୂତ୍ର ଆଦି ତ୍ୟାଗ ନିମନ୍ତେ ଯେପରି ଶରୀର ମଧ୍ୟରେ ଅସ୍ପୃଶ୍ୟ ଅଙ୍ଗ (ଗୁହ୍ୟ ଉପସ୍ଥ) ମଧ୍ୟ ଅନିବାର୍ଯ୍ୟ ରୂପରେ ଆବଶ୍ୟକ, ସେହିପରି ସମାଜରେ ମଧ୍ୟ। ଯେପରି ଅସ୍ପୃଶ୍ୟ ଅଙ୍ଗଛଡା କୌଣସି ଶରୀର ଜୀବିତ ରହିପାରେ ନାହିଁ, ସେହିପ୍ରକାରେ ଅସ୍ପୃଶ୍ୟଜାତି ଛଡା କୌଣସି ସମାଜ ମଧ୍ୟ ବଞ୍ଚି ରହିପାରିବ ନାହିଁ। କାରଣକି- ଅସ୍ପୃଶ୍ୟ ଜାତି ସମାଜର ଆବଶ୍ୟକ ଓ ଅନିବାର୍ଯ୍ୟ ଅଙ୍ଗ ଅଟେ।

ବେଦରେ ସଙ୍କେତରେ ସମସ୍ତ କଥା କୁହାଯାଇଛି। ଯେପରି ଶରୀର ମଧ୍ୟରେ ସମସ୍ତ ଅଙ୍ଗମାନଙ୍କର ସୀମା, ମର୍ଯ୍ୟାଦା, ଅଧିକାର ଓ କାର୍ଯ୍ୟ

ବଣ୍ଟନ କରିଯାଇଛନ୍ତି । ସେହିପ୍ରକାରର ସମାଜରୂପରେ ମଧ୍ୟ ହେବା ଉଚିତ । *
[ ସଙ୍କଳିତ ]

## ବ୍ରାହ୍ମଣାଦି ବର୍ଣ୍ଣର ସ୍ୱାଭାବିକ ଗୁଣ କର୍ମ ବିଭାଗ

ବ୍ରାହ୍ମଣକ୍ଷତ୍ରିୟବିଶାଂ ଶୂଦ୍ରାଣାଞ୍ଚ ପରନ୍ତପ ।
କର୍ମାଣି ପ୍ରବିଭକ୍ତାନି ସ୍ୱଭାବପ୍ରଭବୈର୍ଗୁଣୈଃ ॥
ଶମୋ ଦମସ୍ତପଃ ଶୌଚଂ କ୍ଷାନ୍ତିରାର୍ଜବମେବ ଚ ।
ଜ୍ଞାନଂ ବିଜ୍ଞାନମାସ୍ତିକ୍ୟଂ ବ୍ରହ୍ମକର୍ମ ସ୍ୱଭାବଜମ୍ ॥
ଶୌର୍ଯ୍ୟଂ ତେଜୋ ଧୃତିର୍ଦାକ୍ଷ୍ୟଂ ଯୁଦ୍ଧେ ଚାପ୍ୟପଲାୟନମ୍ ।
ଦାନମୀଶ୍ୱରଭାବଶ୍ଚ କ୍ଷାତ୍ରଂ କର୍ମ ସ୍ୱଭାବଜମ୍ ॥
କୃଷିଗୋରକ୍ଷ୍ୟବାଣିଜ୍ୟଂ ବୈଶ୍ୟକର୍ମ ସ୍ୱଭାବଜମ୍ ।
ପରିଚର୍ଯ୍ୟାତ୍ମକଂ କର୍ମ ଶୂଦ୍ରସ୍ୟାପି ସ୍ୱଭାବଜମ୍ ॥ [ ଗୀତା ]

ଅର୍ଥାତ୍ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରମାନଙ୍କର କର୍ମବିଭାଗ ସ୍ୱଭାବଜାତ ଗୁଣଦ୍ୱାରା ହିଁ ହୋଇଥାଏ । ଏଠାରେ ସ୍ୱଭାବ ଶବ୍ଦର ଅର୍ଥ

* ଇଂରେଜୀ ଭାଷାରେ- ବ୍ରାହ୍ମଣାଦି ଚାରି ବର୍ଣ୍ଣର କ୍ରମିକ ନାମ—
(୧) ପ୍ରିଷ୍ଟ- ସୋଲଜର- ମର୍ଚ୍ଚେଣ୍ଟ- ୱାର୍କମ୍ୟାନ- ଅଥବା କ୍ଲର୍ଜି- ନୋବଲ୍ସ କାମନର୍, ଲେବରର ।
(୨) ମହମ୍ମଡ଼ନ ଭାଷାରେ- ଅଲିମ୍, ଆମିର, ତାଜିର- ମଜଦୁର ।
(୩) ପାର୍ସୀ ଭାଷାରେ- ଅଥର୍ବନ୍, ଅରଥେସ୍ତାର, ବସ୍ତ୍ୟ, ହୁତକ୍ଷ, ।
(୪) ଜାପାନରେ ଶିଂତୋ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ- ଶୋଗୁନ- ସମୁରାଇ, ହେଇମିନ- ଏଟା ।

ଭାରତବର୍ଷ ଛଡ଼ା ଅନ୍ୟତ୍ର ବର୍ଣ୍ଣାନୁସାରେ ବୃତ୍ତି ବ୍ୟବସ୍ଥା ନାହିଁ । ଯେଉଁଥିରୁ ସେ ଦେଶମାନଙ୍କରେ ସର୍ବଦା ଅସନ୍ତୋଷ, ଦ୍ୱନ୍ଦ୍ୱ ଓ ସଂଘର୍ଷ ଲାଗିଛି । ରୁଷରେ ସାମ୍ୟବାଦୀମାନଙ୍କରେ- କୃଷକ ଓ ଶ୍ରମିକମାନଙ୍କର ହିଁ ପ୍ରାଧାନ୍ୟ ରହିଛି । ସେଠାରେ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଏହି ତିନି ବର୍ଣ୍ଣ ଶୂଦ୍ରର ଅଧୀନ । ଏହିପରି ଇଂଲଣ୍ଡରେ ବୈଶ୍ୟ ପ୍ରଧାନ ପୁଞ୍ଜିବାଦର ସମସ୍ତେ ଅଧୀନ । ଏହିପରି ଜର୍ମାନୀରେ ନାଜିବାଦ ଏବଂ ଆମେରିକାରେ କ୍ଷାତ୍ରିୟ ସାମ୍ରାଜ୍ୟବାଦ ନିଶ୍ଚୟ ପ୍ରଧାନ ଅଟେ । ସେଠାରେ ବ୍ରାହ୍ମଣ, ବୈଶ୍ୟ ଓ ଶୂଦ୍ର ବର୍ଗ କ୍ଷତ୍ରିୟର ହିଁ ସେବକ ।

ହେଉଛନ୍ତି- ଈଶ୍ୱରଙ୍କେ। ସେଇ ଈଶ୍ୱର ଶକ୍ତିରୁ ଯେଉଁ ସତ୍ତ୍ୱାଦି ତ୍ରିଗୁଣର ପ୍ରଭବ ବା ଉତ୍ପତ୍ତି ହୋଇଥାଏ, ସେଗୁଡ଼ିକୁ ସ୍ୱଭାବ ପ୍ରଭବ ଗୁଣ ବୋଲାଯାଏ। କିମ୍ବା ସ୍ୱଭାବ ବୋଲନ୍ତେ ପୂର୍ବ ଜନ୍ମର ସଂସ୍କାର, ତହିଁରୁ ଯେଉଁ ଗୁଣମାନେ ଉଦ୍‌ଭୂତ ହୋଇଥାନ୍ତି, ତଦ୍ୱାରା ବ୍ରାହ୍ମଣାଦି ମାନଙ୍କର କର୍ମବିଭାଗ ହୋଇଥାଏ।

କର୍ମ-ସତ୍ତ୍ୱାଦି ତ୍ରିଗୁଣର ହିଁ ବାହ୍ୟ ପ୍ରକାଶ। କର୍ମ ହିଁ ମନୁଷ୍ୟର ବନ୍ଧନ ଓ ମୁକ୍ତିର ପ୍ରତ୍ୟକ୍ଷ କାରଣ। କର୍ମମୟୀ ତ୍ରିଗୁଣରୂପିଣୀ ପ୍ରକୃତି ଅଟନ୍ତି ଭଗବାନ୍‌ଙ୍କ ଶକ୍ତି, ସୁତରାଂ ସମସ୍ତ କର୍ମପ୍ରକାଶ ହିଁ ଭଗବଦିଚ୍ଛିତ ଓ ଭଗବନ୍‌ମହିମାର ପ୍ରକାଶ। ଏହି କର୍ମ ବିଜ୍ଞାନ ହିଁ ବର୍ଣ୍ଣାଶ୍ରମ ଧର୍ମର ପ୍ରାଣ ସ୍ୱରୂପ। ଏହା ମାନବ ସମାଜର ମଙ୍ଗଳମୟ ପଥରେ ଅଗ୍ରସର ହେବାର ଏକମାତ୍ର ବିଧାନ। କର୍ମ ଶୃଙ୍ଖଳାକୁ ପ୍ରକୃତ ବିଜ୍ଞାନ ଉପରେ ପ୍ରତିଷ୍ଠିତ କରିବାପାଇଁ ଏହି ବ୍ରହ୍ମବିଜ୍ଞାନମୟ ବ୍ରାହ୍ମଣ୍ୟ ଧର୍ମହିଁ ସମର୍ଥ ହୋଇଅଛି। ଅନ୍ୟ କୌଣସି ଦେଶରେ କୌଣସି କାଳରେ କୌଣସି ସଭ୍ୟଜାତି ଏହାକୁ ପୂର୍ଣ୍ଣଭାବେ ହୃଦୟଙ୍ଗମ କରିବାକୁ ସମର୍ଥ ହୋଇନାହିଁ। ବାସ୍ତବ କଥା ଏହିଯେ- ମନୁଷ୍ୟ ଯାହା କର୍ମ କରେ, ତାହା ତା'ର ସ୍ୱଭାବଜାତ ନୁହେଁ। ତାହା ମୂଳତଃ ଅନାଦି ପ୍ରକୃତି ସମ୍ପନ୍ନ ଅନାଦି ପରମେଶ୍ୱରଙ୍କର ଲୀଳା। ମନୁଷ୍ୟ ନିଜେ ସେଇ ପରମେଶ୍ୱରଙ୍କର ହିଁ ଗୋଟିଏ ଅଭିମାନମୟ ଅଂଶମାତ୍ର। ସୁତରାଂ ଯାହାଦ୍ୱାରା ମନୁଷ୍ୟ ନିଜର କର୍ମକୁ ବ୍ରହ୍ମକର୍ମ ରୂପେ ପରିଣତ କରିବାକୁ ସମର୍ଥ ହୁଏ, ସେଇଭଳି ଜ୍ଞାନଶକ୍ତି ଲାଭ ହିଁ ମନୁଷ୍ୟଜାତି ପକ୍ଷରେ କଲ୍ୟାଣପ୍ରାପ୍ତିର ଏକମାତ୍ର ପନ୍ଥା। ସେଇଭଳି ଜ୍ଞାନମୟ ସ୍ୱଭାବ ଯେଉଁମାନଙ୍କର, ସେଇମାନେ ହିଁ ବ୍ରାହ୍ମଣ। ଶମ, ଦମ, ତପସ୍ୟା, ଶୁଦ୍ଧି, କ୍ଷମା, ସରଳତା, ଜ୍ଞାନ, ବିଜ୍ଞାନ, ଏବଂ ଆସ୍ତିକ୍ୟବୋଧ, ଏହି ସମସ୍ତ ହିଁ ବ୍ରାହ୍ମଣର ସ୍ୱଭାବ ଜାତକର୍ମ। ଏହାପରେ ତେଜ, ଧୈର୍ଯ୍ୟ, କର୍ମଦକ୍ଷତା, ଯୁଦ୍ଧରେ ବା କଠୋର କର୍ମରେ ଧୈର୍ଯ୍ୟ, ଦାନଶୀଳତା, ଈଶ୍ୱର ଭାବ ଅର୍ଥାତ୍ ସୁଗୁରୁରୂପେ କର୍ମନିୟନ୍ତ୍ରଣ ଶକ୍ତି- ଏହି ସବୁ କ୍ଷତ୍ରିୟର ସ୍ୱଭାବଜାତ କର୍ମ। ଏହାପରେ କୃଷି ଦ୍ୱାରା ପ୍ରଚୁର ଶସ୍ୟୋତ୍ପାଦନ ଗୋରକ୍ଷା ଓ କ୍ରୟବିକ୍ରୟାଦି ରୂପେ ବାଣିଜ୍ୟ ଏହିସବୁ ବୈଶ୍ୟର ସ୍ୱଭାବଜାତ କର୍ମ। ଏବଂ ଏହି ତିନି ବର୍ଣ୍ଣର ପ୍ରକୃତ

ସେବାରେ ନିୟୋଜିତ ହେବା ଶୂଦ୍ରର * ସ୍ୱଭାବଜାତ କର୍ମ ।

ସ୍ୱଭାବଗତ କର୍ମର ମୂଳରେ ମନୁଷ୍ୟ ଯଦି ଭଗବାନଙ୍କର ସଂଯୋଗ ଦେଖିପାରେ, ତାହେଲେ ସେହି ସ୍ୱାଭାବିକ କର୍ମ ନିକୃଷ୍ଟ ହେଲେ ମଧ୍ୟ ତାହା ସ୍ୱତଃ ପରିବର୍ତ୍ତିତ ହୋଇ ଆତ୍ମାଭିମୁଖୀ ଉଚ୍ଚତର ବୃତ୍ତିରୂପରେ ପରିଣତ ହୋଇଥାଏ । ସୁତରାଂ କର୍ମର ମୂଳରେ ଭଗବତ୍ ସଂଯୋଗ ଦର୍ଶନ ହିଁ କର୍ମ ସମ୍ପାଦନର ଏକମାତ୍ର ପ୍ରଶସ୍ତ ଉପାୟ ।

ଜୀବର ଜନ୍ମଗ୍ରହଣର ଉଦ୍ଦେଶ୍ୟ ହେଉଛି- ଆତ୍ମସାକ୍ଷାତ୍କାର । ଏହା ହିଁ ପରମଧର୍ମ ନାମରେ ଅଭିହିତ ।

"ଅୟଂତୁ ପରମୋଧର୍ମଃ ଯଦ୍ ଯୋଗେନାତ୍ମଦର୍ଶନମ୍ ॥"

ଏହି ପରମଧର୍ମ ପ୍ରତି ଲକ୍ଷ୍ୟ ରଖି ଈଶ୍ୱରାଭିମୁଖୀ ବସ୍ତୁଙ୍କ ସ୍ପନ୍ଦନଲାଭ କରିବା ହିଁ କର୍ମର ଉଦ୍ଦେଶ୍ୟ ।

ଏହି ଉଦ୍ଦେଶ୍ୟ ଯଦି ନାହିଁ, ଯଦି ଭୌତିକ ସୁଖପ୍ରାପ୍ତି ନିମନ୍ତେ ହିଁ କର୍ମ ଅନୁଷ୍ଠିତ ହୁଏ, ତା'ହେଲେ ସେହି କର୍ମକୁ ଆସୁର କର୍ମବୋଲି ବୁଝିବାକୁ ହେବ । ବର୍ତ୍ତମାନ ମନୁଷ୍ୟସମାଜ ଆସୁରିକ ଭାବାପନ୍ନ ଓ ବିଭ୍ରାନ୍ତ । ଏମାନଙ୍କ ଦୃଷ୍ଟିରେ ବର୍ଣ୍ଣଗତ କର୍ମ ବିଭାଗର ମୂଲ୍ୟ ନଥାଇପାରେ, କିନ୍ତୁ ଆତ୍ମାଭିମୁଖୀ ମନୁଷ୍ୟ ସମାଜ ବର୍ଣ୍ଣଗତ କର୍ମ ବିଭାଗର ଛଡ଼ା ସାଧନରେ ଅଗ୍ରସର ହୋଇପାରେ ନାଁ ।

## ସାର୍ବଭୌମ ମାନବ ଧର୍ମ

ସତ୍ୟଂ ଦୟା ତପଃ ଶୌଚଂ ତିତିକ୍ଷେକ୍ଷା ଶମୋ ଦମଃ ।
ଅହିଂସା ବ୍ରହ୍ମଚର୍ଯ୍ୟଂ ଚ ତ୍ୟାଗଃ ସ୍ୱାଧ୍ୟାୟ ଆର୍ଜବମ୍ ॥
ସନ୍ତୋଷଃ ସମଦୃକ୍ ସେବା ଗ୍ରାମ୍ୟେହୋପରମଃ ଶନୈଃ ।
ନୃଣାଂ ବିପର୍ଯ୍ୟୟେହେକ୍ଷା ମୌନମାତ୍ମବିମର୍ଶନମ୍ ॥
ଅନ୍ନାଦ୍ୟାଦେଃ ସଂବିଭାଗୋ ଭୂତେଭ୍ୟଶ୍ଚ ଯଥାର୍ହତଃ ।
ତେଷ୍ୱାତ୍ମଦେବତାବୁଦ୍ଧିଃ ସୁତରାଂ ନୃଷୁ ପାଣ୍ଡବ ॥

---

* ଏଠାରେ ଶୂଦ୍ର ପଦରେ ସମସ୍ତ ଅନାର୍ଯ୍ୟ ଜାତିକୁ ବୁଝିବାକୁ ହେବ ।
ସେବାଂ ତୁ ବିବିଧାଂ କୁର୍ଯ୍ୟା ଶାସ୍ତ୍ରୈରିଷ୍ଟ ପରିଶ୍ରମୈଃ
ଶିଳ୍ପୈଶ୍ଚ ବିବିଧୈରେବଂ ଭୃତଯୋ ଲଭ୍ୟତେ ତତଃ
ସ୍ୱ ବର୍ଣ୍ଣାଦନ୍ୟ ବର୍ଣ୍ଣେଭ୍ୟୋ ବା ସା ଶୂଦ୍ରସ୍ୟ ଜୀବିକା (ମ॰ ଭା॰)

ଶ୍ରବଣଂ କୀର୍ତ୍ତନଂ ଚାସ୍ୟ ସ୍ମରଣଂ ମହତାଂ ଗତେଃ ।
ସେବେଜ୍ୟାବନତିର୍ଦାସ୍ୟଂ ସଖ୍ୟମାତ୍ମସମର୍ପଣମ୍ ॥
ନୃଣାମୟଂ ପରୋ ଧର୍ମଃ ସର୍ବେଷାଂ ସମୁଦାହୃତଃ ।
ତ୍ରିଂଶଲ୍ଲକ୍ଷଣବାନ୍ ରାଜନ୍ ସର୍ବାତ୍ମା ଯେନ ତୁଷ୍ୟତି ॥

[ ଭାଗବତ ]

ଅର୍ଥାତ୍ ସତ୍ୟକୁ ଆଶ୍ରୟ କରି ସମସ୍ତ ବ୍ୟବହାର କରିବା, ଦୀନ ଦୁଃଖିପ୍ରତି ଦୟା ପ୍ରକାଶ କରିବା, ବ୍ରତ ଉପବାସାଦି ତପସ୍ୟା କରିବା, ସ୍ନାନାଦି ଦ୍ୱାରା ଶରୀରର ବାହ୍ୟମଳ ଏବଂ ସଦ୍‌ଭାବନା ଦ୍ୱାରା କାମ କ୍ରୋଧାଦି ଅନ୍ତର୍ମଳ ବିଦୂରିତ କରିବା, ମନ ଓ ଇନ୍ଦ୍ରିୟମାନଙ୍କୁ ସଂଯତ କରିବା, ଆତତାୟୀଭିନ୍ନ କୌଣସି ପ୍ରାଣୀକୁ ହିଂସା ନ କରିବା ଏବଂ ବ୍ରହ୍ମଚର୍ଯ୍ୟ ଦାନ, ଆତ୍ମଚିନ୍ତନ, ସରଳତା, ସନ୍ତୋଷ, ସମଦର୍ଶୀ ମହାତ୍ମାମାନଙ୍କର ସେବା, ପ୍ରବୃତ୍ତିମୂଳକ କର୍ମରୁ ଧୀରେ ଧୀରେ ନିବୃତ୍ତ ହେବା, ସାଧାରଣ ମନୁଷ୍ୟର ବୁଦ୍ଧି ବିପର୍ଯ୍ୟୟ, ଭାଗ୍ୟବିପର୍ଯ୍ୟୟ, ଓ କର୍ମ ବିପର୍ଯ୍ୟୟକୁ ଦେଖିବା, ମୌନୀହୋଇ ରହିବା, ଆଧ୍ୟାତ୍ମିକ ବିଚାର କରିବା, ଅନ୍ନାଦି ଦ୍ରବ୍ୟ ଯଥୋଚିତ ସମସ୍ତ ପ୍ରାଣୀ ମାନଙ୍କୁ ବାଣ୍ଟିବା, ସମସ୍ତ ପ୍ରାଣୀମାନଙ୍କଠାରେ ବିଶେଷତଃ ମନୁଷ୍ୟମାନଙ୍କଠାରେ ଆତ୍ମବୁଦ୍ଧି ଓ ଦେବତା ବୁଦ୍ଧି ରଖିବା, ଏବଂ ସମସ୍ତ ଆତ୍ମାର ଆଶ୍ରୟଭୂତ ପରମେଶ୍ୱରଙ୍କର ନାମ ସଂକୀର୍ତ୍ତନ, ତାଙ୍କର ଗୁଣକର୍ମ ସ୍ମରଣ, ଶ୍ରବଣ କରିବା, ସେବା, ପୂଜନ, ନମସ୍କାର, ଦାସଭାବ, ସଖ୍ୟ ଓ ଆତ୍ମସମର୍ପଣ କରିବା, ଏହି ତିରିଶି ଲକ୍ଷଣ ଯୁକ୍ତ ଧର୍ମ ସର୍ବସାଧାରଣ ମନୁଷ୍ୟର ପରମ ଧର୍ମ ଅଟେ । ଏହି ଧର୍ମାଚରଣ ଦ୍ୱାରା ସର୍ବାତ୍ମା ଭଗବାନ୍ ପ୍ରସନ୍ନ ହୁଅନ୍ତି ।

## ଲୌକିକ ସୁଖ ସାଧନ ଦ୍ୱିବିଧ ଧର୍ମ

ଅଧ୍ୟାତ୍ମଦେବତାତୁଷ୍ଟ୍ୟୈ ଯତ୍କର୍ମ ବିହିତ କୃତମ୍ ।
ବାଗ୍ଭି ପ୍ରାଣେନ ମନସା ତଦଷ୍ଟମଭିଧୀୟତେ ॥
ଅଗ୍ନିହୋତ୍ରଂ ତପଃ ସତ୍ୟଂ ଦେବାନାଞ୍ଚାନୁପାଳନମ୍ ।
ଆତିଥ୍ୟଂ ବୈଶ୍ୱଦେବଞ୍ଚ ଇଷ୍ଟମିତ୍ୟଭିଧୀୟତେ ॥
ସର୍ବସାଧାରଣାର୍ଥାୟ ପ୍ରବର୍ତ୍ତ୍ୟତେ ଯଚ୍ଚିରମ୍ ।
ବହୁଦ୍ରବ୍ୟ ବ୍ୟୟସାପେକ୍ଷଂ କର୍ମ ତତ୍ପୂର୍ତ୍ତମୁଚ୍ୟତେ ॥

ବାପୀକୂପ ତଡ଼ାଗାଦି ଦେବତାୟତନାନି ଚ ।
ଅନ୍ନପ୍ରଦାନ ମାରାମଃ ପୂର୍ତ୍ତ ମିତ୍ୟଭିଧୀୟତେ ॥
ଦାନଶାଳାଂ ପାଠଶାଳାଂ ମଠଂ ଶୀତେଽନଲଂ ତଥା ।
ଘାଟଂ ବାଟମନ୍ନସତ୍ରଂ କୁଲ୍ୟାବାଟଦ୍ରୁମାଂସ୍ତଥା ॥
ପଣ୍ୟଶାଲାଞ୍ଚ ଭୈଷଜ୍ୟଶାଲାଂ ପୁସ୍ତକାଳୟାନ୍ ।
ନୌକାଂ ସେତୁଂ ଘଟ୍ଟବନ୍ଧଂ କୁର୍ଯ୍ୟାତ୍ ପୂର୍ତ୍ତଂ ବଦନ୍ତି ତତ୍ ॥
ବହିର୍ବେଦି ଚ ଯଦ୍ଦାନଂ ତଦ୍ଦତ୍ତମଭିଧୀୟତେ ।
ଶରଣାଗତସଂତ୍ରାଣଂ ଭୂତାନାଞ୍ଚାପ୍ୟହିଂସନମ୍ ॥
ସମ୍ପାଦନଂ ଯୋଗକ୍ଷେମଂ ସ୍ୱମର୍ଥଂ ଯଃ ସମର୍ପୟେତ୍ ।
ପରସ୍ମୈ ତଦ୍ଦରିଦ୍ରାୟ ତଦ୍ଦତ୍ତମିତି କଥ୍ୟତେ ॥
ଭୂମିଂ ସୁବର୍ଣ୍ଣଂ ଗାଂ ବସ୍ତ୍ରମନ୍ନଂ ପୁସ୍ତକଂ ଗୃହମ୍ ।
ଔଷଧଂ ଭୋଜନଂ ଦଦ୍ୟାତ୍ ତଦ୍ଦତ୍ତମିତି କଥ୍ୟତେ ॥
[ ଗୀତା-ବିଜ୍ଞାନ ଭାଷ୍ୟ ]

ଅର୍ଥାତ୍ ଅଧ୍ୟାତ୍ମ ଦେବତାର ସନ୍ତୋଷ ନିମନ୍ତେ କାୟମନୋ ବାକ୍ୟରେ ବ୍ୟକ୍ତି ବିଶେଷ ଯେଉଁ କର୍ମାନୁଷ୍ଠାନ କରାଯାଏ, ତାକୁ ଇଷ୍ଟ ବୋଲନ୍ତି । ଅଗ୍ନିହୋତ୍ର, ତପସ୍ୟା, ସତ୍ୟ, ଦେବତା ପୂଜା, ଅତିଥିସତ୍କାର ଓ ବୈଶ୍ୱଦେବ ଏହିସବୁ କର୍ମକୁ ମଧ୍ୟ ଇଷ୍ଟ ବୋଲଯାଏ । ସର୍ବସାଧାରଣ ନିମନ୍ତେ ଯେଉଁ କର୍ମ ପ୍ରେରଣାକରେ ଏବଂ ଯାହା ବହୁଧନ ବ୍ୟୟସାଧ୍ୟ, ତାକୁ ପୂର୍ତ୍ତ କହନ୍ତି । ବାପୀ, କୂପ, ତଡ଼ାଗ ଓ ବଡ଼ ବଡ଼ ବନ୍ଧ ନିର୍ମାଣ, ଦେବାଳୟ ନିର୍ମାଣ, ଅନ୍ନସତ୍ର ଓ ଆରାମ ପ୍ରତିଷ୍ଠା, ପାନ୍ଥଶାଳା, ବେଦବିଦ୍ୟାଳୟ, ମଠ ( ଗୁରୁବାସ ) ଶୀତ ଋତୁରେ ଅଗ୍ନିସେବନର ବ୍ୟବସ୍ଥା, ଗ୍ରୀଷ୍ମ ଋତୁରେ ଜଳଦାନର ବ୍ୟବସ୍ଥା, ମାର୍ଗନିର୍ମାଣ, ବର୍ତ୍ତ୍ମ ନିର୍ମାଣ, କେନାଲ ନିର୍ମାଣ, ମାର୍ଗ ସମୀପରେ ଛାୟାପ୍ରଧାନ ବୃକ୍ଷରୋପଣ, ବଜାର, ହାଟ, ଔଷଧାଳୟ, ପାଠାଗାର, ନୌକା, ଜାହାଜ, ସେତୁ ( ଶଙ୍ଖ ପୋଲ ) ଓ ଘାଟ ( ଜଳାବତରଣ ମାର୍ଗ ) ନିର୍ମାଣ ଏହିସବୁ କର୍ମକୁ ପୂର୍ତ୍ତ ବୋଲଯାଏ । ଶରଣାର୍ଥିରକ୍ଷଣ, ପ୍ରାଣିମାନଙ୍କର ଅହିଂସା ସାଧନ, ଦରିଦ୍ରମାନଙ୍କର ଉଦ୍ଦେଶ୍ୟରେ ଭୂମି ଅନ୍ନ ବସ୍ତ୍ର, ପୁସ୍ତକ, ଗୃହ, ଔଷଧ ଓ ଭୋଗ୍ୟବସ୍ତୁ ପ୍ରଦାନ ଏହିସବୁ କର୍ମକୁ ଦତ୍ତ ବୋଲାଯାଏ ।

ଏହିପରି କର୍ମ ଶୁଦ୍ଧ ସାର୍ବଭୌମ ମାନବ ଧର୍ମ ।

## ହିନ୍ଦୁ ସମାଜର କ୍ଷୟରୋଗର ଲକ୍ଷଣ ଓ ମୃତ୍ୟୁଚିହ୍ନ ।

ବହୁକାଳ ହେଲା ବେଦଚର୍ଚ୍ଚାର ଅଭାବରୁ *(୧) ପ୍ରଜ୍ଞାପରାଧରୁ ଏବଂ ଅସୁର ସଂସର୍ଗାଦି ନାନାକାରଣରୁ ବୈଦିକ ବର୍ଣ୍ଣାଶ୍ରମ ଧର୍ମ ନଷ୍ଟଭ୍ରଷ୍ଟ ହୋଇଯାଇଛି । ଭାରତବର୍ଷରେ ଏବେ ଆଦର୍ଶ ଦେବ ବ୍ରାହ୍ମଣ, ଦେବ କ୍ଷତ୍ରିୟ, ଦେବ ବୈଶ୍ୟ ଓ ଦେବ ଦାସ ଶୂଦ୍ର ନାହାନ୍ତି ବୋଲି କହିଲେ ଏଥିରେ ଅତ୍ୟୁକ୍ତି ହେବନାହିଁ । କଳିର ପ୍ରଭାବରୁ *(୨) ବ୍ରହ୍ମଚର୍ଯ୍ୟ ଆଶ୍ରମର, ଅଭାବ, ନିଦମାସ୍ୟ ଅସୁର ସଂବାଦ, ଲର୍ଡମେକାଲେ ପ୍ରବର୍ତ୍ତିତ ସଦୋଷ ଶିକ୍ଷା ପଦ୍ଧତି, ଶାସନ ଦୋଷ, ଆହାର ଦୋଷ ଓ ସ୍ୱାର୍ଥାନ୍ଧତା ଇତ୍ୟାଦି କାରଣରୁ ସମସ୍ତ ହିନ୍ଦୁ ସମାଜ ଆଜି ଅସୁରଭାବାପନ୍ନ ହୋଇ ପଡ଼ିଛି ।

---

୧ * ଅନଭ୍ୟାସାଚ୍ଚ ବେଦାନାମାଚାରସ୍ୟ ଚ ବର୍ଜ୍ଜନାତ୍ ।
ଆଳସ୍ୟାଦନ୍ନଦୋଷାଚ୍ଚ ମୃତ୍ୟୁର୍ବିପ୍ରାନ୍ ଜିଘାଂସତି । [ ମନୁ ]

୨ * "କଳିବୈଭବ" ( ଶ୍ରୀ ଶ୍ରୀ ନିବାସ ଶାସ୍ତ୍ରୀକୃତ-ଦକ୍ଷିଣ ଭାରତ )

କ୍ୱ ବ୍ରାହ୍ମଣାଃ କ୍ୱ ଚ ନୃପାଃ କ୍ୱ ଚ ବୈଶ୍ୟବାର୍ତ୍ତା ।
ଶୂଦ୍ରାଃ କ୍ୱ ସଙ୍କରଗଣା କ୍ୱ ତଥାପରେଽପି ।
ହା ! ସଙ୍କରେ ଜଗତି ପଞ୍ଚସହସ୍ରପୂର୍ଣ୍ଣେ ।
ବର୍ଣ୍ଣାନ୍ତକେ ଶିବ ! କଲୌ ବିହିତାଧିପତ୍ୟେ ॥
ବର୍ଣ୍ଣାବଶେଷୁ ମ୍ଲେଚ୍ଛକୈଃ ବତ ସଙ୍ଗତାସୁ ।
ହା ! ବ୍ରାହ୍ମଣୀଷୁ ବୃଷଳୈରପି ତୃପ୍ତିଭାକ୍ଷୁ ॥
ଜନ୍ତୁଃ କ୍ୱଚନ୍ତ ଶିବଶିବଃ କ୍ୱ ଚ ନାସ୍ତି ପାବନ୍ ।
ସଦ୍ ବର୍ଣ୍ଣବୀଜ ମୁଭୟଂ କ୍ୱଚଦେବ ଶୁଦ୍ଧମ୍ ॥
ଦାସୀସୁତାଶ୍ଚ କୁଳଟାତନୁଜାଶ୍ଚ କାଳାତ୍ ।
ଆଚାର୍ଯ୍ୟକଂ ଦଧତି ଭାଗବତାଶ୍ଚ ଜାତାଃ ॥
ଅଜ୍ଞାତସମ୍ଭବମହୋ ଦ୍ୱିଜବେଶ ଭୂପମ୍ ।
ଉତ୍ସୃଷ୍ଟ ପୈତୃକ ମୁଶନ୍ତି ଚ ସାମ୍ପ୍ରତେନ୍ଦ୍ରମ୍ ॥
ମଦ୍ୟଂ ପିବନ୍ତି ମଦୟନ୍ତି ଚ ବାରକନ୍ୟାଃ ।
ଶୈଳୂଷତାଞ୍ଚ ଦଧତେଽପି ନଟନ୍ତି ଭୂପାଃ ॥
ଗାୟନ୍ତି କାମଗଦିତଂ ଶିବ ବାଦୟନ୍ତି ।
ବନ୍ଧା ମୁଖେନ ନଖଜଂ ବତ ଚର୍ମଜଞ୍ଚ ॥

ଦମ୍ଭ, ଦର୍ପ, ଦୁରହଂକାର, କ୍ରୋଧ, ପାରୁଷ୍ୟ ଓ ଅଜ୍ଞାନାନ୍ଧ ଆସୁରଭାବ ସର୍ବସ୍ୱ ବୃଦ୍ଧି ହେବା ଯୋଗୁଁ ହିନ୍ଦୁସମାଜ ମଧ୍ୟରେ ଆଜି ସହସ୍ର ସହସ୍ର ଜାତି, ଉପଜାତି, ଉପୋପଜାତି ସୃଷ୍ଟି ହେବାରେ ଲାଗିଛି । ଦଳଗତ ସ୍ୱାର୍ଥ ସିଦ୍ଧି ନିମନ୍ତେ ଶତ ଶତ ସମ୍ପ୍ରଦାୟ, ସହସ୍ର ସହସ୍ର ପ୍ରକାର ଦେବତା ଉପାସନା ଏବଂ ତଜ୍ଜନିତ ପରସ୍ପର ମଧ୍ୟରେ ଘୃଣା ଓ ବିଦ୍ୱେଷର ବିଷ ବିସର୍ପିତ ହୋଇ ଉଠିଛି । ଗୁଣ କର୍ମର ବିଭାଗ ଅନୁସାରେ ଯେଉଁ ବର୍ଣ୍ଣ ବିଭାଗର ସୃଷ୍ଟି ହୋଇଥିଲା * ଆଜି ଆଉ ତାହା ନାହିଁ । ଆଜି ଭାତ ବିକା,

କ୍ୱେବ ଶ୍ରୁତିସ୍ମୃତି ବିହିତ ମହେତିହାଃ ।
କାବ୍ୟାନ୍ତ୍ରବାକ୍ୟନିବହାଃ ନବ୍ୟମାଦର୍ଯାତାଃ ॥
ବେଦବ୍ରତାଃ କ୍ୱ ବଟୁନାଂ କ୍ୱ କୁଲଂ ଗୁରୂଣାମ୍ ।
କ୍ୱେବାଶ୍ରମଃ ଶିବ ବଲାବବଷ୍ଟ ପ୍ରପଞ୍ଚମ୍ ॥
ମୌଞ୍ଜୀ କ୍ୱ ଚ କ୍ୱ ଚ ଶିଖା ବିଧିବଦ୍ଧ ସିଦ୍ଧା ।
ଦଣ୍ଡଃ କ୍ୱ ବର୍ଣ୍ଣ ବିହିତଃ କ୍ୱ ଚ କୃଷ୍ଣଚର୍ମ ॥
ଧର୍ମା କ୍ୱ ଭୂତଧରଣଂ ସମିଦାହୃତିଃ କ୍ୱ ।
ଦ୍ୱିଗ ଷଟ୍‌କଂ କ୍ୱ ଚ ଗୁରୋ ରଭିବାଦନଞ୍ଚ ॥
ଶୌଚବ୍ରଗାହନ ଜପାଃ କ୍ୱ କଥଞ୍ଚ ସନ୍ଧ୍ୟା ।
ବେଦାଙ୍ଗଶିକ୍ଷଣମପି କ୍ୱ ଚ ବା ବିନଷ୍ଟଃ ॥
ଗ୍ରାସାପୃଷଃ କ୍ୱ ଚ ତପଃ କ୍ୱାଚ ସିଦ୍ଧି ବାର୍ତ୍ତା ।
ହା ହା ! ବଟୁ ଷ୍ୱପି କଳୌ କଳିଟାଧିପତ୍ୟେ ॥
ହା ହା ! ନଟନ୍ତି ବଟବଃ କୁହଚଭୁ ପଠନ୍ତି ।
ନ୍ରପତାନ୍ନ ଭୋଜନରତାଃ କୁହରନ୍ତି ଶୂଳା ॥
ଆପୃପିକାଃ କ୍ୱଚନ କେଚନ ଜାରଶୂରାଃ ।
ଇତ୍ଥଂ ଚରନ୍ତି ବହୁଧା ବିଗତ ବ୍ୟବସ୍ଥାମ୍ ॥
କଚ୍ଛୋଜ୍ଝି ସତ୍‌କଟି ନକୁଲ ଶିଖାଭିରାମମ୍ ।
କାମାତମୋଜ୍ଜଳବତଃ ପ୍ରସରଂ ବଟୂନାମ୍ ॥
ହା ! ବ୍ରହ୍ମଚର୍ଯ୍ୟମତୁଳଂ କରପିଣ୍ଡ ପୁଷ୍ଟମ୍ ।
ଶିଷ୍ଟୈକ ଗର୍ହିତମହୋ ସତତଂ ସମିଦ୍ଧେ ॥

* ଚାତୁର୍ବର୍ଣ୍ଣ୍ୟଂ ମୟା ସୃଷ୍ଟଂ ଗୁଣ କର୍ମ ବିଭାଗଶଃ । ( ଗୀତା )

ଶସ୍ତ୍ର ବିକ୍ରୀ, ନାସ ବିକ୍ରୀ, ରାଜ ଭୃତ୍ୟ ; ପ୍ରେତର ଅଣ୍ଠାକ୍ଷିଆ, ବର୍ଣ୍ଣଭଙ୍ଗ ଜାତି ବ୍ରାହ୍ମଣମାନେ ହିଁ ଗୋସାଇଁ ପଦ ବାଚ୍ୟ ହୋଇଛନ୍ତି । ଯେଉଁ ବକବ୍ରତି, ମାର୍ଜାରଲିଙ୍ଗୀ ଜାତି ବ୍ରାହ୍ମଣମାନଙ୍କୁ ପାଣିମଧ୍ୟ ପିଇବାକୁ ଦେବନାହିଁ - କି ବାକ୍ୟମାତ୍ରରେ ମଧ୍ୟ ପୂଜାକରିବ ନାହିଁ ବୋଲି ମନୁ ଲେଖିଥିଲେ, ସେହି ଅନୃତ୍ୟ ପ୍ରଚାରକ ପୁରୋହିତ, ପଣ୍ଡା ଓ ପଣ୍ଡିତଂମନ୍ୟ ପାଷଣ୍ଡ ଜାତି ବ୍ରାହ୍ମଣମାନେ ହିଁ ଆଜି ହିନ୍ଦୁସମାଜର ଗୁରୁ ଆସନ ଅଧିକାର କରି ବସିଛନ୍ତି । * ଅମୁକକି- ଧର୍ମଶାସ୍ତ୍ରୋକ୍ତ ପଞ୍ଚମହାପାତକ ଓ

---

ନ ଜଚ୍ଚା [ ଜାତ୍ୟା ] ବସଲୋ ହୋତି ନ ଜଚ୍ଚା ହୋତି ବ୍ରାହ୍ମଣୋ ।
କମ୍ମୁନା ବସଲୋ ହୋତି କମ୍ମୁନା ହୋତି ବ୍ରାହ୍ମଣୋ ॥

[ ବସଲସୁତ୍ତ-ବୌଦ୍ଧ ସିଦ୍ଧାନ୍ତ ]

କମ୍ମୁଣା ବମ୍ଭଣୋ ହୋଇ କମ୍ମୁଣା ହୋଇ ଖତ୍ତିଓ ।
କମ୍ମୁଣା ବଇସୋ ହୋଇ ସୁଦ୍ଦୋ ହବଇ କମ୍ମୁଣା ॥

( ଜୈନାଗମ )

ଯୋଽନଧୀତ୍ୟ ଦ୍ୱିଜୋ ବେଦମନ୍ୟତ୍ର କୁରୁତେ ଶ୍ରମମ୍ ।
ସ ଜୀବନ୍ନେବ ଶୂଦ୍ରତ୍ୱମାଶୁ ଗଚ୍ଛତି ସାନ୍ୱୟଃ ॥ ( ମନୁଃ )
ତପଃ ଶ୍ରୁତଂଚ ଯୋନିଶ୍ଚ ତ୍ରୟଂ ବ୍ରାହ୍ମଣ୍ୟ କାରଣମ୍ ।
ତପଃ ଶ୍ରୁତାଭ୍ୟାଂ ଯୋ ହୀନଃ ଜାତି ବ୍ରାହ୍ମଣ ଏବ ସଃ ॥
ଦେବୋ ମୁନିର୍ଦ୍ୱିଜୋ ରାଜା ବୈଶ୍ୟଃ ଶୂଦ୍ରୋ ନିଷାଦକଃ ।
ପଶୁର୍ମ୍ଲେଚ୍ଛୋଽପିଚଣ୍ଡାଲୋ ବିପ୍ରା ଦଶ ବିଧାଃ ସ୍ମୃତାଃ ॥

( ଅତ୍ରି ସ୍ମୃତି )

* ଐତରେୟ ବ୍ରାହ୍ମଣରେ ଲେଖାଅଛି ଯେ— "ଯଥା ବା ଇଦଂ ନିଷାଦା ବା ସେଲଗାଃ ( ଚୋର ) ବିତ୍ତବନ୍ତଂ ପୁରୁଷଂ ଅରଣ୍ୟେ ଗୃହୀତ୍ୱା କର୍ତ୍ତମନ୍ୱସ୍ୟ ( ଗର୍ତ୍ତେ ପ୍ରକ୍ଷିପ୍ୟ ) ବିତ୍ତମାଦାୟ ଦ୍ରବନ୍ତି । ଏବମେବ ଋତ୍ୱିଜଃ ଯଜମାନଂ କର୍ତ୍ତମନ୍ୱସ୍ୟ ବିତ୍ତମାଦାୟ ଦ୍ରବନ୍ତି, ଯେ ଅନେବମ୍ବିଦୋ ଯାଜୟନ୍ତି । ତସ୍ମ ତ୍ରିବିଧା ଋତ୍ୱିଜୋ ହେୟା ଉକ୍ତାଃ । ତେଷୁ ପ୍ରଥମାସ୍ତେ ଯେ ଧନାଭିଳାଷୟା ଯାଜକା ଭବିତୁମିଚ୍ଛନ୍ତି । ଦ୍ୱିତୀୟାସ୍ତେ ଯେ ଖଡ୍ଗଂ ପ୍ରଦର୍ଶ୍ୟ ଅର୍ଥାତ୍ ଯଦି ଇଥଂ ନ କରିଷ୍ୟସି, ତର୍ହିତ୍ୱାଂ ଇଥଂ ଆଚରିଃ

ଉପପାତକ ସମ୍ବନ୍ଧ ଆଜି ହିନ୍ଦୁ ସମାଜର ନିତ୍ୟକର୍ମ ରୂପରେ ପରିଣତ ହୋଇଅଛି * ।

---

ଆଗମିଷ୍ୟନ୍ତି ଇତି ଯଜ୍ଞଂ କାଙ୍କ୍ଷନ୍ତି । ବ୍ରାହ୍ମଣାସ୍ତେ ଯେ ଅତପସ୍ୱିନଃ ଋତ୍ୱିଜଃ ଭବନ୍ତି । ଏତାନ୍ କୁଶଳିନଃ ଋତ୍ୱିଗ୍ଭ୍ୟଃ ଦେବାସ୍ତୈରେବ ବଦ୍ଧ୍ୟା କୁର୍ବନ୍ତି, ଯଥା ମନୁଷ୍ୟା ବାନ୍ଧବାନ୍ । ( ଗୀ. ଭା. ୮।୧୧ )

ପୁରୀଷମ୍ୟ ଚ ରୋଷସ୍ୟ ହିଂସାଶ୍ଚାସ୍ତୁରସ୍ୟ ଚ । ଆଚ୍ଛାଦୟନ୍ତି ସଂଗୃହ୍ୟ ବ୍ୟାଘ୍ରଚର୍ମପରିଚ୍ଛଦମ୍ । ଯେ ବକବ୍ରତିନୋ ବିପ୍ରା ଯେ ଚ ମାର୍ଜାରଲିଙ୍ଗିନଃ । ନ ବାର୍ଯ୍ୟପି ପ୍ରଯଚ୍ଛେତ୍ତାନ୍ ତାଙ୍ଗୁଲେଶାନି ନାର୍ଚ୍ଚୟେତ୍ । ନଶ୍ୟନ୍ତି ହବ୍ୟକବ୍ୟାନି ନରାଣାମବିଜାନତାମ୍ । ଭସ୍ମୀଭୂତେଷୁ ବିପ୍ରେଷୁ ମୋହାଦ୍ଦତ୍ତାନି ଦାତୃଭିଃ । ( ମନୁ )

ଧାନ୍ୟାର୍ଥଂ ଭସ୍ୟ ବୈ ରକ୍ଷଃ ଯସ୍ୟ ଛେଦଶ୍ଚ ହ୍ୟ ଯନ୍ତ୍ରିଣଃ । ଦୃଶ୍ୟନ୍ତେ ବ୍ରାହ୍ମଣା ମୂର୍ଖା ଦାନମାନାଦିକୈ ରତି । ଅପୂଜ୍ୟା ଯତ୍ର ପୂଜ୍ୟନ୍ତେ ପୂଜ୍ୟା ଯତ୍ର ତିରସ୍କୃତାଃ । ତ୍ରୀଣି ତତ୍ର ପ୍ରବର୍ତ୍ତନ୍ତେ ଦୁର୍ଭିକ୍ଷଂ ମରଣଂ ଭୟମ୍ ।

[ ବ୍ରା. ଷ. ମା. ]

"ନିନ୍ଦକ ବ୍ରାହ୍ମଣ ସଦ୍‌ଖର, ତାକୁ ନ ଦିଅନ୍ତୁ ଦାନ ।
କୁଟୁମ୍ବ ସହିତ ନରକେ ଚଲ ସାଥିଲିଏ ଯଜମାନ । [ ତୁଳସୀ ଦାସ ]

"ଅସୀନଂ ମୀମାଂସା ଦେବଲୋ ଗ୍ରାମଯାଜକଃ । ଧାର୍ମିକଃ ଚାଟକ ଶୈବ ଷଡେତେ ବ୍ରାହ୍ମଣାଧମାଃ । ( ବେ. ଚ. )

"ଚିକିତ୍ସକାନ୍ ଦେବଲକାନ୍ ମାଂସବିକ୍ରୟିଣ ସ୍ତଥା ।
ବିପଣେନ ଚ ଜୀବନ୍ତଃ ବର୍ଜ୍ୟାଃ ସ୍ୟୁର୍ହବ୍ୟକବ୍ୟୟୋଃ । [ ମନୁ ]

* ( ମହାପାତକ ) ବ୍ରହ୍ମହତ୍ୟା ସୁରାପାନଂ ସ୍ତେୟଂ ଗୁର୍ବଙ୍ଗନାଗମଃ ।
ମହାନ୍ତି ପାତକାନ୍ୟାହୁଃ ସଂସର୍ଗଶ୍ଚାପି ତୈଃ ସହ ॥
ଅନୃତଂ ଚ ସମୁତ୍କର୍ଷେ ରାଜଗାମି ଚ ପୈଶୁନମ୍ ।
ଗୁରୋଶ୍ଚାଲୀକନିର୍ବନ୍ଧଃ ସମାନି ବ୍ରହ୍ମହତ୍ୟୟା ॥
ବ୍ରହ୍ମୋଜ୍ଝତା ବେଦନିନ୍ଦା କୌଟସାକ୍ଷ୍ୟଂ ସୁହୃଦ୍ବଧଃ ।
ଗର୍ହିତାନ୍ନାଦ୍ୟୟୋର୍ଜଗ୍ଧିଃ ସୁରାପାନସମାନି ଷଟ୍ ॥
ନିକ୍ଷେପସ୍ୟାପହରଣଂ ନରାଶ୍ୱରଜତସ୍ୟ ଚ ।
ଭୂମିବଜ୍ରମଣୀନାଂ ଚ ରୁକ୍ମସ୍ତେୟସମଂ ସ୍ମୃତମ୍ ॥

* ବଜ୍ରଯାନୀ ବୌଦ୍ଧ ତୁଲ୍ୟ ପଞ୍ଚମକାର ସେବୀ ବାମାଗ୍ରମୀ ବ୍ରାହ୍ମଣର ମଧ୍ୟ ଆଜି ସ୍ପୃଶ୍ୟାସ୍ପୃଶ୍ୟ ବର୍ଗର ଖଣ୍ଡଣ ଆକାର ଧାରଣ କରିଛି । ବ୍ରାହ୍ମଣର ବୁଦ୍ଧି ଦୋଷରୁ ଆଜି ଆଠକୋଟି ହିନ୍ଦୁ ମୁସଲମାନରେ ପରିଣତ ହୋଇ ଭାରତର ସର୍ବନାଶର କାରଣ ରୂପେ ଠିଆହୋଇଛନ୍ତି, ଭାରତଖଣ୍ଡ ବିଖଣ୍ଡ ହୋଇଅଛି, ଶତ ଶତ ଦେବ ମନ୍ଦିର କସେଇ ଖାନାରେ ପରିଣତ ହୋଇଅଛି । ପ୍ରାୟ ଏକକୋଟି ଲୋକ ସେଥିଲାଗି ଧନ ଜନ ସମ୍ପନ୍ନ, ଅନ୍ନ ବସ୍ତ୍ରହୀନ ଶରଣାର୍ଥୀ ହୋଇଛନ୍ତି, ସ୍ତ୍ରୀମାନେ ବେଶ୍ୟାବୃତ୍ତି ଅବଲମ୍ବନ କରିଛନ୍ତି, ପ୍ରାୟ କୋଟିଏ ଲୋକ ଖ୍ରୀଷ୍ଟଧର୍ମରେ ପ୍ରବେଶ କରିଛନ୍ତି । ଅଳ୍ପଦିନ ତଳେ ଦକ୍ଷିଣ ଭାରତରେ ସବର୍ଣ୍ଣ ଓ ହରିଜନମାନଙ୍କ ସଂଘର୍ଷରେ ପୁଲିସର ଗୁଳିରେ ୪୦ ଜଣ ମରିଛନ୍ତି, ପଞ୍ଚାଶଖଣ୍ଡ ଗ୍ରାମ ପୋଡ଼ି ଦିଆଯାଇଛି ଓ ଲକ୍ଷ ଲକ୍ଷ ଲୋକ ଘର ଛାଡ଼ି ପଳାଇଛନ୍ତି । [ସଂସ୍କୃତ ସଂଖ୍ୟା-୪।୧୧।୧୯୫୭]

ରେତଃ ସେକଃ ସ୍ୱଯୋନୀଷୁ କୁମାରୀଷ୍ୱନ୍ତ୍ୟଜାସୁ ଚ ।
ସଖ୍ୟୁଃ ପୁତ୍ରସ୍ୟ ଚ ସ୍ତ୍ରୀଷୁ ଗୁରୁତଳ୍ପ ସମଂ ବିଦୁଃ ॥
( ଉପପାତକ ) ଗୋବଧୋ ଽଯାଜ୍ୟ ସଂଯାଜ୍ୟ ପାରଦାର୍ଯାତ୍ମବିକ୍ରୟଃ ।
କନ୍ୟାୟା ଦୂଷଣଂ ଚୈବ ବାର୍ଦ୍ଧୁଷ୍ୟଂ ବ୍ରତଲୋପନମ୍ ॥
ସର୍ବାକରେ ଷ୍ୱଧୀକାରଃ ମହାଯନ୍ତ୍ର ପ୍ରବର୍ତ୍ତନମ୍ ।
ଇନ୍ଧନାର୍ଥ ମଶୁଷ୍କାଣାଂ ଦ୍ରୁମାଣାମବପାତନମ୍ ॥
ତଡ଼ାଗାରାମ ଦାରାଣା ମପତ୍ୟସ୍ୟ ଚ ବିକ୍ରୟଃ ।
ହିଂସୌଷଧୀନାଂ ସ୍ତ୍ର୍ୟାଜୀବୋଽଭିଚାରୋ ମୂଳକର୍ମ ଚ ॥
ଭୃତାଧ୍ୟାପନା ଦାନଂ ଅପଣ୍ୟାନାଂ ଚ ବିକ୍ରୟଃ ।
ଅନାହିତାଗ୍ନିତା ସ୍ତେୟଂ ଋଣାନାଂ ଚ କୌଶିଲବ୍ୟସଂ ଚ କ୍ରିୟା ॥
ଅସଚ୍ଛାସ୍ତ୍ରାଧିଗମନଂ ନାସ୍ତିକ୍ୟଂ ଉପପାତକମ୍ ।
[ ମନୁ ]

* ବଜ୍ରଯାନୀ ବୌଦ୍ଧ ଧର୍ମର ନମୁନା ଯଥା—

ବେଶ୍ୟାରତ୍ନଂ ସୁରାରତ୍ନଂ ରତ୍ନଂ ଦେବମନୋଭୂବଃ ।
ଏତତ୍ ରତ୍ନତ୍ରୟଂ ବନ୍ଦେ ଅନ୍ୟତ୍ କାଚମଣି ସ୍ମୃତମ୍ ॥
[ ନୀଳପଟେଲ ଦର୍ଶନ ]

ଭକ୍ଷ୍ୟାଭକ୍ଷ୍ୟ ବିନର୍ମୁକ୍ତଃ ପେୟାପେୟ ବିବର୍ଜିତଃ ।
ଗମ୍ୟାଗମ୍ୟ ବିନର୍ମୁକ୍ତଃ ଭବେଦ୍ ଯୋଗୀ ସମାହିତଃ ॥ (ଜ୍ଞାନସିଦ୍ଧି)

ଧନକୁ ଧନ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଅସ୍ପୃଶ୍ୟ ଜାତି ମାନଙ୍କର
ବିଦ୍ୱେଷବହ୍ନି ପ୍ରଜ୍ୱଳିତ ହୋଇ ଉଠିଛି । ଧାର୍ମିକ ମୂର୍ଖମାନେ ଆଜି

ନୃପାଳକୁଳ ସମ୍ଭୂତାଂ ବୈଶ୍ୟିକାଂ ବା ଶ୍ୱପଚଜନଃ ।
ଶୂଦ୍ରସ୍ୟ ଚ କୁଲୋତ୍ପନ୍ନାଂ ଯୋଷିତଂ ସିଦ୍ଧିମାପ୍ନୁୟାତ୍ ॥ (ଜ୍ଞାନସିଦ୍ଧି)
ରଜକ ଶୂଦ୍ରକନ୍ୟାନାଂ ଜାତ୍ୟା ନୈବ ବିଚାରୟେତ୍ ।
ଉପଭୁଞ୍ଜନ୍ ବଧୂନା ନିତ୍ୟମିଦଂ ଗୁହ୍ୟଂ ନିବେଦୟେତ୍ ॥
[ ଗୁହ୍ୟ ସମାଜତନ୍ତ୍ର ]

ବାମାଚାରୀ ମତ- ( ଗୁପ୍ତସାଧନ ତନ୍ତ୍ର ୭ ମ ପଟଳ )
"ମଦ୍ୟଂ ମାଂସଂ ତଥା ମତ୍ସ୍ୟା ମୁଦ୍ରା ମୈଥୁନ ମେବଚ ।
ପଞ୍ଚତତ୍ତ୍ୱମିଦଂ ଦେବି ନିର୍ବାଣ ମୁକ୍ତିହେତବେ ॥
ପୀତ୍ୱାପୀତ୍ୱା ପୁନଃ ପୀତ୍ୱା ଯାବତ୍ ପତତି ଭୂତଳେ ।
ପୁନରୁତ୍ଥାୟ ବୈ ପୀତ୍ୱା ପୁନର୍ଜନ୍ମ ନ ବିଦ୍ୟତେ ॥
[ ମହା ନିର୍ବାଣ ତନ୍ତ୍ର ]

ମାତୃଯୋନିଂ ପରିତ୍ୟଜ୍ୟ ବିହରେତ୍ ସର୍ବଯୋନିଷୁ ।
ବେଦଶାସ୍ତ୍ର ପୁରାଣାନି ସାମାନ୍ୟଂ ଗଣିକା ଇବ ॥
[ ଜ୍ଞାନ ସଂକଳନୀ ତନ୍ତ୍ର ]

ରଜଃସ୍ୱଲା ପୁଷ୍କରଂ ତୀର୍ଥଂ ଚାଣ୍ଡାଳୀ ତୁ ସ୍ୱୟଂ କାଶୀ, ଚର୍ମକାରୀ ପ୍ରୟାଗଃ ସ୍ୟାତ୍ ରଜକୀ ମଥୁରା ମତା ଅଯୋଧ୍ୟା ପୁକ୍କସୀ ପ୍ରୋକ୍ତା । [ ରୁଦ୍ରଯାମଳ ତନ୍ତ୍ର ]

ବାମାଚାରୀମାନଙ୍କର ଗୋଟିଏ ଉଚ୍ଚାର୍ଯ୍ୟ ମନ୍ତ୍ର- ଯଥା—

"ଐଁ ଐଁ ଭଗଭୁଗେ ଭଗିନି ଭଗୋଦରି ଭଗମାଳେ ଭଗାବହେ ଭଗଗୁହ୍ୟେ ଭଗଯୋନେ, ଭଗନିପାତିନି, ସର୍ବଭଗବଶଂକରି ଭଗରୂପେ ନିତ୍ୟକ୍ଳିନ୍ନେ, ଭଗସ୍ୱରୂପେ ସର୍ବାଣି ଭଗାନି ମେ ହ୍ୟାନୟ ବରଦେ ରେତେ ସୁରେତେ ଭଗକ୍ଳିନ୍ନେ କ୍ଳିନ୍ନଦ୍ରବେ କ୍ଲେଦୟ ଦ୍ରାବୟ ଅମୋଘେ ଭଗବିଚ୍ଚେ କ୍ଷୁଂ କ୍ଷୋଭୟ ସର୍ବସତ୍ତ୍ୱାନ୍ ଭଗେଶ୍ୱରି ଐଁ ବ୍ଲୂଂ ଜଂ ବ୍ଲୂଂ ମେଂ ବ୍ଲୂଂ ମୋଂ ବ୍ଲୂଂ ହେଂ ବ୍ଲୂଂ ହେଂ କ୍ଳିନ୍ନେ ସର୍ବାଣି ଭଗାନି ମେ ବଶମାନୟ ସ୍ତ୍ରୀଂ ହର ବ୍ଲେଂ ହ୍ରୀଂ ଭଗମାଳିନୀ ନିତ୍ୟା ଶ୍ରୀପାଦୁକାଂ ପୂଜୟାମି ନମଃ ।
[ ମନ୍ତ୍ର ମହୋଦଧି ୧୨ ତରଙ୍ଗ ]

ସନ୍ୟାସି ବେଶ ଧାରି ମଠ ମନ୍ଦିରମାନଙ୍କୁ ଦିଆଯାଇଥିବା କୋଟି କୋଟି ଟଙ୍କାର ସମ୍ପତ୍ତି ବିଳାସ ବ୍ୟସନରେ ବ୍ୟୟ କରୁଛନ୍ତି । * ବୈଷ୍ଣବ ଧର୍ମ ମଧ୍ୟ ତଥୈବଚ ।

ଅଚ୍ୟୁତଗୋଷ୍ଠୀ ବୈଷ୍ଣବମାନଙ୍କର ଧର୍ମ ମଧ୍ୟ ଘୋର ବ୍ୟଭିଚାରର ପୂର୍ଣ୍ଣ * ଏବଂ ସେମାନଙ୍କର ନାମଯଜ୍ଞ କେବଳ ଦାମ୍ଭିକତା ଓ ଆତ୍ମ ବଞ୍ଚନା ମାତ୍ର । * ମୋଟ କଥା ଏହିକି- କୌଣସିଠାରେ ଏବେ ଧର୍ମ ନାମରେ ସଙ୍କଳ୍ପିତ ଆତ୍ମଦେବତାର ପୂଜା ନାହିଁ । ଲୋକ ବଞ୍ଚନାର୍ଥ, କେବଳ ଜିହ୍ୱା ଓ ଜନନେନ୍ଦ୍ରିୟର ତୃପ୍ତି ସାଧନାର୍ଥ ପବିତ୍ର ଧର୍ମ ନାମରେ ନାନା ଅସଂଖ୍ୟ ଘଣ୍ଟା ମାଟି, ପାଣି, ପଥର ଓ କାଠର ପୂଜା ହିଁ ଚଳନ୍ତି !

* ପବିତ୍ରାର୍ଥ ପାଶ୍ଚାତ୍ୟ ସଭ୍ୟତାର ସମର୍ଗ ମୋହେଁ ମନ୍ତ୍ର ସମସ୍ତଙ୍କର

---

* ଜଟିଳୋ ମୁଣ୍ଡୀ ଲୁଞ୍ଚିତକେଶଃ କାଷାୟାମ୍ବର ବହୁକୃତବେଶଃ ।
ପଶ୍ୟନ୍ନପି ଚ ନ ପଶ୍ୟତି ମୂଢ଼ଃ ଉଦରନିମିତ୍ତଂ ବହୁକୃତବେଶଃ ॥ [ଚ, ପଞ୍ଜରିକା]

* ବୈଷ୍ଣବ ଓ ବୈଷ୍ଣବୀ ଧର୍ମର ଉଦାହରଣ- ଯଥା—

ଇଦଂ ବୃନ୍ଦାବନଂ ରମ୍ୟଂ ମାଂ ବଦ୍ଧି ଯଦୁନନ୍ଦନ ।
ଆତ୍ମାନଂ ରମଣୀଂ ବଦ୍ଧି ବିହରସ୍ୱ ଯଥାସୁଖମ୍ ॥ (ମା॰ ଧ॰ ସା॰)

ମନ୍ତ୍ରକ- ଅର୍ଜୁନ ଓ ଶ୍ରୀକୃଷ୍ଣଙ୍କର ପ୍ରଶ୍ନୋତ୍ତର ରୂପରେ ଏହା ପ୍ରଚଳିତ ଅଛି ଯେ-

ଅନାଥାନାଂ ବିଧବାନାଂ କା ଗତିଃ ସ୍ୟାତ୍ ଜନାର୍ଦ୍ଦନ ।
ଅହଂ ବୈଷ୍ଣବ ରୂପେଣ ଧର୍ମ୍ମଂ ସ୍ଥାପୟାମ୍ୟହମ୍ ।
"ମାଗୁଣିମାନଙ୍କର ମେଳ, ଗୁଣୀ ମେଦ୍ରୁର କୋଳ ॥
ବାବା ମାରି ହରି ହରି ବୋଲ" ।

ନାମଯଜ୍ଞ ପ୍ରକୃତ ରହସ୍ୟ, ତାହା ଆମ୍ଭର ପକ୍ଷ—

ତେ ଧର୍ମଂ ଚୈତନ୍ୟସ୍ୟ କୃଷ୍ଣ କୃଷ୍ଣେତିବାଦିନଃ ।
ତେ ହରେର୍ଦ୍ଦ୍ୱେଷିଣଃ ପାପାଃ ଧର୍ମାର୍ଥଂ ଜନ୍ମ ଯଦ୍ଧରେଃ ॥
[ ବହ୍ନି ପୁରାଣ ]

ଯଜନ୍ତେ ନାମଯଜ୍ଞୈସ୍ତେ ଦମ୍ଭେନାବିଧିପୂର୍ବକମ୍ ॥ [ ଗୀତା ]

* ଅଗ୍ନି ଦେବା ମନୁଷ୍ୟାଣାଂ ଦିବି ଦେବା ମନୀଷିଣାମ୍ ବାଳାନାଂ କାଷ୍ଠ ଲୋଷ୍ଟ୍ରେଷୁ ବୁଧସ୍ୟାତ୍ମନି ଦେବତାଃ ॥
ତୀର୍ଥାଦି ସର୍ବତ୍ର ବସନ୍ତି ମ୍ଲେଚ୍ଛାଃ ଦେବାଳୟେ ପକ୍ଷିଗଣା ବସନ୍ତି ।

ସମାଜାୟାଚାର, ଦୁର୍ନୀତିପରତା ଓ ଘୋର ବର୍ଣ୍ଣ ସଙ୍କରତା ଉତ୍ପନ୍ନ ହୋଇ ସନ୍ତାନମାନଙ୍କରେ ବିଷମ ସଂଘର୍ଷ ସୃଷ୍ଟି କରିଛନ୍ତି । ଗୋପାଳଙ୍କ ଗୋଷ୍ଠ ତଥା ତାଙ୍କୁ ବଞ୍ଚାଇଛନ୍ତି-ସ୍ୱଜନ କିବର୍ଣ୍ଣସଂସ ବଢ଼ିନ୍ତି । * ଏହିଜନ୍ୟ ସ୍ମୃତିର ପରିଣାମସମ୍ବନ୍ଧରେ ମନୁ ଲେଖିଛନ୍ତି ଯେ—

"ବ୍ୟଭିଚାରେଣ ବର୍ଣ୍ଣାନାମବେଦ୍ୟାବେଦନେନ ଚ ।
ସ୍ୱକର୍ମଣାଂ ଚ ତ୍ୟାଗେନ ଜାୟନ୍ତେ ବର୍ଣ୍ଣସଙ୍କରାଃ ॥
ଯତ୍ର ତ୍ୱେତେ ପରିଧ୍ୱଂସାଜ୍ଜାୟନ୍ତେ ବର୍ଣ୍ଣଦୂଷକାଃ ।
ରାଷ୍ଟ୍ରିକୈଃ ସହ ତଦ୍ରାଷ୍ଟ୍ରଂ କ୍ଷିପ୍ରମେବ ବିନଶ୍ୟତି ॥
ଯଦ୍‌ରାଷ୍ଟ୍ରଂ ଶୂଦ୍ରଭୂୟିଷ୍ଠଂ ନାସ୍ତିକାକ୍ରାନ୍ତମଦ୍ୱିଜମ୍ ।
ବିନଶ୍ୟତ୍ୟାଶୁ ତତ୍କୃତ୍ସ୍ନଂ ଦୁର୍ଭିକ୍ଷବ୍ୟାଧିପୀଡ଼ିତମ୍ ॥ [ ମନୁ ]
ସର୍ବେ ଯତ୍ର ପ୍ରଣେତାରଃ ସର୍ବେ ପଣ୍ଡିତମାନିନଃ ।
ସର୍ବେ ପ୍ରାଧାନ୍ୟମିଚ୍ଛନ୍ତି ତଦ୍‌ବୃନ୍ଦମାଶୁ ନଶ୍ୟତି ॥
ଅନାୟକା ବିନଶ୍ୟନ୍ତି ନଶ୍ୟନ୍ତି ବହୁନାୟକାଃ ।
ସ୍ତ୍ରୀନାୟକା ବିନଶ୍ୟନ୍ତି ନଶ୍ୟନ୍ତି ବାଲନାୟକାଃ ॥ [ ସୁଂ ରଂ ଭାଃ ]

ଦୁଃଖର ବିଷୟ ଯେ- ଆଜି ଆମର ଦେଶ ବିକଟ ବର୍ଣ୍ଣସଙ୍କରତା,

---

ଭବେତ୍ତାଂ ତାଦୃଶ ନ ଫଲଂ ଲଭନ୍ତେ ମୀର୍ଥା ବଶାହାଚ ତତୈବଦାନାତ୍ ॥
[ ଅଖଣ୍ଡ-ଜ୍ୟୋତି ]

ଅତ୍ରମା ସଜ୍ଜନା ବସ୍ତ୍ରା ନିର୍ଲଜ୍ଜା ଧାନଧାରଣା ।
ଦ୍ୱିଜାମ୍ୟା ସ୍ତମ୍ଭା ପୂଜା ହୋମସାଧା ତତ୍ତୀର୍ଥିକା ॥ [ ଅଗ୍ନିପୁରାଣ ]

* କଲିକତା ଠାରୁ ଶ୍ରୀନିବାସ ପୋଦ୍ଦାର ମହୋଦୟ ସନ୍ମାର୍ଗ ପତ୍ରର ସମ୍ପାଦକଙ୍କ ନିକଟକୁ ତା ୮ । ୪ । ୫୮ ରେ ଲେଖିଛନ୍ତି ଯେ- ଭାରତରେ ପ୍ରତିଦିନ ୩୦ ଠାରୁ ୩୫ ହଜାର ଗର୍ଭିଣୀ ଗୋହତ୍ୟା ହେଉଛି । ସେ ଲେଖିଛନ୍ତି ୧୯୫୩ ସମ୍ବତ୍ସରରେ ୨୦ ହଜାର ୧୯୫୪ ରେ ୬୭ ହଜାର ୧୯୫୫ ରେ ୯୩ ହଜାର ୧୯୫୬ ରେ ୧ ଲକ୍ଷ ୨୦ ହଜାର ମାଙ୍କଡ ଭାରତରୁ ବିଦେଶକୁ ପଠାଯାଇଥିଲା । ଏକଥା ମଧ୍ୟ ସେ ଲେଖିଛନ୍ତି ୧୯୫୬ ସମ୍ବତ୍ସରରେ କେବଳ ଷ୍ଟେସନରୁ ୨ ଲକ୍ଷ ୫୦ ହଜାର ମାଙ୍କଡ଼ ଭାରତରୁ ବିଦେଶକୁ ଯାଇଥିଲେ । ଏଥିରେ ଜନ୍ତୁମାନଙ୍କର ଗଣନା ନାହିଁ, ଏହାର ନାମ କି ଭାରତ ସରକାର ?

ବୀଭତ୍ସର, ସ୍ୱାର୍ଥପରତା, ମୂର୍ଖତା, ନାସ୍ତିକ ବହୁଳତା, ଅଦୂରଦର୍ଶିତା ପ୍ରବଞ୍ଚକତା, ଅନାସ୍ଥିକତା, ବଳାତ୍କାରିତା, ହିଂସାତ୍ମକତା ଓ ବାଳକାମୁକତା ଇତ୍ୟାଦି ଦୋଷରୁ ବିଷମ ଅସ୍ୱାସ୍ଥ୍ୟମାନ ଦେଶର ଚାରି ପଟରେ ଏବେ ଘଟିଯାଉଛି । କେବଳ ଆମର ଦେଶ କାହିଁକି,- ପୃଥିବୀରେ ଏବେ ଏପରି କୌଣସି ଦେଶ ନାହିଁ, ଯହିଁରେ କି ପ୍ରଜାମାନେ ଆଶ୍ୱସ୍ତ ଭାବରେ ନିଜର ଦେହ ଶାରୀରିକ କିମ୍ବା ମାନସିକ ସ୍ୱାସ୍ଥ୍ୟ ଭୋଗୁଥାନ୍ତି । ତେବେ ଏହାର ପ୍ରତିକାର କ'ଣ ? ଆଜି ଯେଉଁ ବୈଜ୍ଞାନିକ ଅସୁରମାନଙ୍କ ଦ୍ୱାରା ଉଦ୍ଭାବିତ ଲୀଳା କ୍ଷେତ୍ରସଂହାରକ ପରମାଣୁ ବମ୍, ହାଇଡ୍ରୋଜେନ ବମ୍ ନାଇଟ୍ରୋଜେନ ବମ୍, ରୋଗ ଉତ୍ପାଦକ ଜୀବାଣୁ ବମ୍, ବିଷାକ୍ତ ଗ୍ୟାସ, ଯୁଦ୍ଧଜାହାଜ, ପିସ୍ତଲ, ବନ୍ଧୁକ, ତରବାରୀ, ତୋପ ଓ ରକେଟ ପ୍ରଭୃତି ଉଗ୍ର ମୂର୍ତ୍ତି ଧାରଣ କରି, ଜଳସ୍ଥଳ, ଅନ୍ତରୀକ୍ଷ ସର୍ବତ୍ର ଧାଇଁ ଦୈତ୍ୟମା ସୃଷ୍ଟି କରି, ଶାନ୍ତି ଓ ସ୍ୱାସ୍ଥ୍ୟକୁ ଦଳିଦେଇ ସମଗ୍ର ଭୂମଣ୍ଡଳକୁ ମୃତ୍ୟୁର କରାଳ କବଳକୁ ଟାଣି ନେଉଛି । ଏବଂ ତା ୨୦।୩-ରେ ଭାରତର ପ୍ରାକ୍ତନ ମୁଖ୍ୟ ମନ୍ତ୍ରୀ ଓଡ଼ିଶାର ଗଣ୍ୟମାନ୍ୟ ଜ୍ୟୋତିଷମାନଙ୍କର ମତ ଗଣନା କରି ଯାହା ଘୋଷଣା କରିଥିଲେ ଆଗାମୀ ୧୯୭୩ ଅକ୍ଟୋବର ମାସଠାରୁ ୧୯୭୪ ଜୁଲାଇ ମଧ୍ୟରେ ଭାରତପାଇଁ ନାହିଁ ନଥିବା ଏପରି ମହାଯୁଦ୍ଧ ଲାଗିବାର ସମ୍ଭାବନା ବୋଲି ୧୯୭୭-୭୮ ମଧ୍ୟରେ କୌଣସି ଏକ ମହତ୍ୱପୂର୍ଣ୍ଣ ଘଟଣା ଘଟିପାରେ ବୋଲି ମଧ୍ୟ ସେ ଯେଉଁ ଭବିଷ୍ୟତବାଣୀ କହିଥିଲେ । ( କେନ୍ଦ୍ର ଓଡ଼ିଶା ଅନୁଷ୍ଠାନ ସମ୍ମିଳନୀରେ ଭାଷଣ ଦେବାକୁ ଯାଇ ସେ ଏହା କହିଥିଲେ । ୨୩ । ୩ । ୭୮ "ସମାଜ" ) ଏହି ବିପତ୍ତି ସଙ୍କୁଳ ଧ୍ୱଂସ ମୁଖରୁ ଜାତି ଜଗତକୁ ରକ୍ଷାକରିବାର ଉପାୟ କ'ଣ ? ଏବେ ଏହି ପ୍ରଶ୍ନର ଏକମାତ୍ର ଉତ୍ତର ହେଉଛି- ଆୟୁର୍ବେଦୋକ୍ତ ସଦାଚାର ପାଳନ ଓ ରସାୟନ ଅଭ୍ୟାସ ଅଥବା ତାର ସହିତ ମନୁଙ୍କ ସାର୍ବଭୌମ ଧର୍ମଗୁଡ଼ିକ ପ୍ରତିଷ୍ଠା । ମନୁ ଲେଖିଛନ୍ତି ଯେ- ସାର୍ବଭୌମ ଧର୍ମ ଚାରିପ୍ରକାର ।

ଯଥା- ଅହିଂସା ସତ୍ୟମସ୍ତେୟଂ ଶୌଚ ମିନ୍ଦ୍ରିୟ ନିଗ୍ରହଃ
ଏତଂ ସାମାସିକଂ ଧର୍ମଂ ଚାତୁର୍ବର୍ଣ୍ୟେଽବ୍ରବୀନ୍ମନୁଃ

ଅର୍ଥାତ୍ (୧) କାୟମନୋ ବାକ୍ୟରେ ସର୍ବଦା ଅହିଂସା (୨) ସତ୍ୟ ବ୍ୟବହାର (୩) ପରଦ୍ରବ୍ୟ ଅପହରଣ କରିବାର ପ୍ରବୃତ୍ତି ଦମନ ବା ଅଚୌର୍ଯ୍ୟ,

(୪) ଅନ୍ତର୍ବାହ୍ୟ ପବିତ୍ର ଆତ୍ମଚିନ୍ତନ (୫) ଏବଂ ସମସ୍ତ ଇନ୍ଦ୍ରିୟମାନଙ୍କର ନିଗ୍ରହ ବା ଦମନ ଏହି ପାଞ୍ଚଟି ହେଉଛି- ବର୍ତ୍ତମାନବର ଧର୍ମ ।

ଜୀବ ଜଗତରେ ଜୀବନରକ୍ଷାର୍ଥେ ଏହି ଧର୍ମକୁ ହିଁ ଆୟୁର୍ବେଦର ଚରମାଗ୍ରଣୀ ଆତ୍ରେୟାଦି ଋଷି ବୃନ୍ଦ ଏବଂ ଚରକ ଓ ବାଗ୍ଭଟ ପ୍ରଭୃତି ଆୟୁର୍ବିଦଗଣ ପ୍ରକାରାନ୍ତରରେ ଜଗତକୁ ଉପଦେଶ ଦେଇଛନ୍ତି । ଚରକ ଲେଖିଛନ୍ତି ଯେ-

"ଅହିଂସା ପ୍ରାଣିନାଂ ପ୍ରାଣବର୍ଦ୍ଧନାନାମ୍ ଉତ୍କୃଷ୍ଟ ତମଂ, ବୀର୍ଯ୍ୟଂ ବଲବର୍ଦ୍ଧନାନାମ୍, ବିଦ୍ୟା ବୃଂହଣାନାମ୍, ଇନ୍ଦ୍ରିୟଜୟୋ ନନ୍ଦନାନାମ୍, ତତ୍ତ୍ୱାବବୋଧୋ ହର୍ଷଣାନାମ୍, ବ୍ରହ୍ମଚର୍ଯ୍ୟମୟନାନାମ୍ ।

ବାଗ୍ଭଟ ଲେଖିଛନ୍ତି—

ହିଂସାସ୍ତେୟାନ୍ୟଥାକାମଂ ପୈଶୂନ୍ୟଂ ପରୁଷାନୃତେ ।
ସମ୍ଭିନ୍ନାଳାପ ବ୍ୟାପାଦମଭିଧ୍ୟାଦୃଗ୍ ବିପର୍ଯ୍ୟୟମ୍ ॥

ପାପଂ କର୍ମେତି ଦଶଧା କାୟବାଙ୍ମାନସୈସ୍ତ୍ୟଜେତ୍ । ( ବା.ସୂ. ୨।୧୧)

ଆହୁରି ମଧ୍ୟ ଲେଖିଛନ୍ତି—

ସୁଖାର୍ଥାଃ ପ୍ରାଣିନାଂ ସମ୍ମତ୍ ମତାଃ ସର୍ବାଃ ପ୍ରବୃତ୍ତୟଃ ।
ସୁଖଂ ଚ ନ ବିନା ଧର୍ମାତ୍ ତସ୍ମାଦ୍ଧର୍ମପରୋ ଭବେତ୍ ॥

ଅର୍ଥାତ୍ ସମସ୍ତ ପ୍ରାଣିମାନଙ୍କର ବିଶେଷତଃ ମାନବ ସମାଜର ଆହାର ବିହାରାଦି ସକଳ ପ୍ରବୃତ୍ତି ସୁଖ ବା ସ୍ୱାସ୍ଥ୍ୟମୂଳକ ଅଟେ । ସେହି ସୁଖ ବା ସ୍ୱାସ୍ଥ୍ୟଲାଭ ଧର୍ମାଚରଣ ବ୍ୟତିରେକେ ହୁଏନାହିଁ । ସୁତରାଂ ସ୍ୱାସ୍ଥ୍ୟ ଅଭିଳାଷୀ ପ୍ରତ୍ୟେକ ମନୁଷ୍ୟ ଧର୍ମପରାୟଣ ହେବା ଉଚିତ । ଧର୍ମାଚରଣ ସମ୍ବନ୍ଧେ ମହାଭାରତରେ ଲେଖାଅଛି ଯେ—

"ଅନ୍ୟୋଧର୍ମଃ ସମସ୍ଥସ୍ୟ ବିଷମସ୍ଥସ୍ୟ ଚାପରଃ ।
ନୈକାନ୍ତିକୋ ଧର୍ମଃ ଧର୍ମୋଽହ୍ୟାବସ୍ଥିକଃ ସ୍ମୃତଃ ॥

ଅର୍ଥାତ୍ ସୁସ୍ଥର ଧର୍ମ ଅନ୍ୟପ୍ରକାର ଏବଂ ଅସୁସ୍ଥର ଧର୍ମ ତାଠାରୁ ଭିନ୍ନପ୍ରକାର ଅଟେ । କୌଣସି ଧର୍ମ ଆତ୍ୟନ୍ତିକ ନୁହେଁ, ଅବସ୍ଥାନୁସାରେ ହିଁ ଧର୍ମବ୍ୟବସ୍ଥା କରାଯାଇଥାଏ ।

ଆଜି ପୃଥିବୀର ଅବସ୍ଥା ଯେପରି ଆକାର ଧାରଣ କରିଛି- ତାକୁ ଏବେ ଧ୍ୱଂସ ମୁଖରୁ ରକ୍ଷାକରିବା ପାଇଁ ସ୍ୱାର୍ଥସଂକୁଳ ସାମ୍ପ୍ରଦାୟିକ

ଧର୍ମୀଭିମାନ ଗୁଡ଼ିକ ସର୍ବଜନ ସାର୍ବଭୌମ ମାନବ ଧର୍ମର ପ୍ରଚାର ଓ ପ୍ରତିଷ୍ଠା ଆବଶ୍ୟକ । ଆଶା ଓ ଆଶ୍ୱସନାର ବିଷୟ ଏହି ଯେ- ସେଇ ମାନବଧର୍ମ ପ୍ରତିଷ୍ଠା କରିବାପାଇଁ ଏବେ କରୁଣାମୟ ଈଶ୍ୱରଙ୍କର ପରମେଶ୍ୱରଙ୍କର ପ୍ରେରଣା ଆସିଛି । ବିଶ୍ୱଧର୍ମର କେନ୍ଦ୍ର ସ୍ୱାଧୀନ ଭାରତ ଏବେ ଆପଣାକୁ ସାମ୍ପ୍ରଦାୟିକ ଧର୍ମନିରପେକ୍ଷ ରାଷ୍ଟ୍ର ବୋଲି ଘୋଷଣା କରିଛି । ଆଜି ବିଶ୍ୱନେତା ବିଶ୍ୱଜୀବନର ଅଭୟଦାତା, ଭାରତବର୍ଷର ଅଗ୍ର ଜନ୍ମା, ବ୍ରାହ୍ମଣ ପଣ୍ଡିତ ଜବାହରଲାଲ ନେହେରୁ ମୂର୍ତ୍ତିମାନ୍ ଆୟୁର୍ବେଦ ରୂପେ ଦଣ୍ଡାୟମାନ ହୋଇ ସାରା ପୃଥିବୀକୁ ମନ୍ତ୍ର ପାଞ୍ଚ ପ୍ରକାର ଧର୍ମ ହିଁ ପଞ୍ଚଶୀଳନୀତି ନାମରେ ଉପଦେଶ ଦେଇ ଏହି ପୂଣ୍ୟଭୂମିର ଜଗଦ୍‌ଗୁରୁ ବୈଭବ ପୁଣି ଏଠାରେ ପ୍ରତିଷ୍ଠା କରିବାପାଇଁ ବିଶ୍ୱଧର୍ମ ସମ୍ମେଳନକୁ ଏଠାକୁ ଆହ୍ୱାନ କରିଛନ୍ତି । ଆଜି ଧର୍ମଭ୍ରଷ୍ଟ ମରଣୋନ୍ମୁଖ ବୈଜ୍ଞାନିକ ଜଗତ ଉର୍ଦ୍ଧ୍ୱ ଉଦ୍‌ଗ୍ରୀବ ହୋଇ ବିସ୍ମୟ ବିସ୍ଫାରିତ ନେତ୍ରରେ ଭାରତୀୟ ବ୍ରହ୍ମଣ୍ୟ ଧର୍ମର ପ୍ରଭାବକୁ ଅନାଇଁ ରହିଛି । ଭାରତୀୟ ବ୍ରାହ୍ମଣ ମୁଖରେ ଉପଦିଷ୍ଟ, ୧ ନିରସ୍ତ୍ରୀକରଣ ୨ ନିର୍ଲୋଭ ୩ ଦୁର୍ନୀତି ନିବାରଣ ୪ ବିଶ୍ୱମୈତ୍ରୀ ସ୍ଥାପନ ଓ ୫ ସହାବସ୍ଥାନ ଏହି ପଞ୍ଚଶୀଳ ନୀତି ବା ପାଞ୍ଚପ୍ରକାର ଧର୍ମାଚରଣ ଛଡ଼ା ଏବେ ପୃଥିବୀକୁ ବଞ୍ଚାଇବାର ଅନ୍ୟ କୌଣସି ଉପାୟ ନାହିଁ ବୋଲି ସମସ୍ତେ ବୁଝିଛନ୍ତି । ବିଶ୍ୱବନ୍ଧୁ ବ୍ରାହ୍ମଣ ପଣ୍ଡିତ ନେହେରୁ ନୂଆଁ ଦିଲ୍ଲିଠାରେ ଅନୁଷ୍ଠିତ ହୋଇଥିବା ବିଶ୍ୱଧର୍ମ ସମ୍ମିଳନୀର ପ୍ରଥମ ଅଧିବେଶନରେ ସ୍ପଷ୍ଟଭାବେ ଘୋଷଣା କରିଛନ୍ତି ଯେ * ଶୀତଳଯୁଦ୍ଧ ସମଗ୍ର ମାନବଜାତିର ମନକୁ ହିଂସା ଓ ଘୃଣା ଦ୍ୱାରା ବିଷାକ୍ତ କରିଦେଉଛି । ଏ ପଥ ଅବଲମ୍ବନ ଦ୍ୱାରା କୌଣସି ପ୍ରଶ୍ନର ସମାଧାନ ହୋଇ ପାରିବ ନାହିଁ । ସେ ଦୃଢଭାବରେ କହିଛନ୍ତି ଯେ- ଆଜି ଗ୍ରହଜଗତ ଭ୍ରମଣ କରିବାର ସମ୍ଭାବନା ଦେଖାଦେବା ଫଳରେ ପୃଥିବୀର ଗତି ଦ୍ରୁତଭାବରେ ବଦଳିଯିବାରେ ଲାଗିଛି । ମନୁଷ୍ୟ ହାତରେ ଆଜି ଯେଉଁ ନୂତନ ଶକ୍ତି ପଡ଼ିଛି, ତାହାର ବ୍ୟବହାର ମାନବଜାତିର ମଙ୍ଗଳ କିମ୍ବା ଧ୍ୱଂସ ପାଇଁ ବ୍ୟବହୃତ ହେବ, ତାହା କେହି କହିପାରିବେ ନାହିଁ । ଯଦି ଶୀତଳ ଯୁଦ୍ଧର ଧାରା ଏହିପରି ଭାବରେ ଚାଲେ ତାହେଲେ ପୃଥିବୀକୁ ଧ୍ୱଂସମୁଖରୁ ରକ୍ଷାକରିବା କଷ୍ଟକର ହେବ । ସେ କହିଛନ୍ତି ଯେ ଥରେ ଶକ୍ତିଶାଳୀ କ୍ଷେପଣାସ୍ତ୍ର ପ୍ରୟୋଗ କଲାଗଲେ ତାହାକୁ

* ଶୀତଳ ଯୁଦ୍ଧ ( ମନ୍ତ୍ର ଯୁଦ୍ଧ )

ଫେରାଇ ଆଣିବା ଓ ପ୍ରତିଷ୍ଠିତ କରିବା ଆଜି ସମ୍ଭବ ହେବନାହିଁ । ପଣ୍ଡିତ ନେହେରୁ କହିଛନ୍ତି ଯେ ହିଂସାର ପଥ ତ୍ୟଜି ଶାନ୍ତି ଓ ବନ୍ଧୁତାର ପଥ ଧରିବା ଛଡ଼ା ପୃଥିବୀ ପକ୍ଷରେ ଅନ୍ୟ ଗତି ନାହିଁ । ଦେଶର ଶତ୍ରୁତା ପରିହାର କରି ବନ୍ଧୁତା ସ୍ଥାପନର ପଥ ଗ୍ରହଣ ନ କଲେ ତାହେଲେ ଦୁଇଟିର ଲୋକଙ୍କର ଜିଘାଂସା ଓ ଈର୍ଷା ଫଳରେ ଯଦି ପୃଥିବୀ ଧ୍ୱଂସକାରୀ କାର୍ଯ୍ୟ ଆରମ୍ଭ କରି ଦିଏ ତେବେ ପରିଣାମ କେତେ ଭୟାବହ ହେବ ତାହା କେହି କଳ୍ପନା କରି ପାରିବ ନାହିଁ ।

ସେ କହିଛନ୍ତି ଯେ ମୁଁ ଆପଣମାନଙ୍କୁ ଧର୍ମ ସମ୍ପର୍କରେ କିଛି କହିବି ନାହିଁ ଏହା ମୋର ଚିନ୍ତାର ବାହାରେ । ଧର୍ମ ହେଉ, ରାଜନୀତି ହେଉ, କିମ୍ବା ଅନ୍ୟ ଯେ କୌଣସି ବସ୍ତୁ ହେଉ ତାହା ପ୍ରଚାର କରି କୌଣସି ଲାଭ ହେବ ନାହିଁ ବୋଲି ମୁଁ ନିଜ ଅଭିଜ୍ଞତାରୁ ଦେଖିଛି । କେବଳ ନିଜର କାର୍ଯ୍ୟ ଫଳରେ ଲୋକଉପକାର ଘଟିଥାଏ ।

ପଣ୍ଡିତ ନେହେରୁ କହିଛନ୍ତି ଯେ ଆମ ଦେଶରେ ମଧ୍ୟ ଲୋକେ ପ୍ରାଚୀନ ନୀତିଗୁଡ଼ିକୁ ପୂର୍ଣ୍ଣଭାବରେ କାର୍ଯ୍ୟରେ ପାଳନ କରୁନାହାନ୍ତି । ଆମେ ମୁହଁରେ ସମସ୍ତେ 'ବସୁଧୈବ କୁଟୁମ୍ବକଂ' ନୀତିବାକ୍ୟ ଗାଉଥାଉ । କିନ୍ତୁ କାର୍ଯ୍ୟରେ ଆମେ ଗୋଟିଏ ପରିବାରରେ ରହିବାର ନୀତିରେ ବିଶ୍ୱାସ କରୁନାହୁଁ । ଆମେ ନିଜ ନିଜ ମଧ୍ୟରେ ଜାତି, ପ୍ରଦେଶ ଓ ଅନ୍ୟ ବିଷୟର ଆଳ ଧରି ଲଢ଼େଇ କରିବାରେ ବ୍ୟସ୍ତ ରହିଥାଉ । ଏଥିରୁ ପ୍ରମାଣିତ ହୁଏ ଯେ ଆମର ମନ ଦ୍ୱିଧା ବିଭକ୍ତ ହୋଇ ରହିଛି । ଗୋଟିଏ ଅଂଶ ନୀତିବାକ୍ୟ ଗାଉଛି ଓ ଅନ୍ୟ ଅଂଶ ଭିନ୍ନକାର୍ଯ୍ୟ କରିବାରେ ଲାଗିଛି । ଏ ଭଳି କାର୍ଯ୍ୟଦ୍ୱାରା ଆଜିର ଭଲ ଫଳ ଲାଭର ଆଶା ନାହିଁ । ବକ୍ତୃତା ଦ୍ୱାରା ନୁହେଁ, କେବଳ ପ୍ରକୃତ କାର୍ଯ୍ୟ ଦ୍ୱାରା ପୃଥିବୀ ପ୍ରଭାବିତ ହୋଇପାରିବ । ସେହି ସମ୍ମିଳନୀର ସଭାପତି ଡକ୍ଟର ରାଧାକୃଷ୍ଣନ ତାଙ୍କ ଅଭିଭାଷଣରେ କହିଛନ୍ତି ଯେ ଭୌତିକ ଜଗତରୁ ଆଧ୍ୟାତ୍ମ ଜଗତକୁ ହୃଦୟ ଓ ମନ ନ ଫେରାଇଲେ ମାନବ ସମାଜର ଭବିଷ୍ୟତ ସୁରକ୍ଷିତ ହୋଇପାରିବ ନାହିଁ ।

ସେ କହିଲେ ଯେ ଯେଉଁ ସବୁ ନୀତି ନିୟମ ପାଳନ ଦ୍ୱାରା ଲୋକମାନେ ଆତ୍ମୋନ୍ନତି ସାଧନ କରନ୍ତି ତାହା ହିଁ ଧର୍ମ । ବିଜ୍ଞାନର ସୂକ୍ଷ୍ମ ବିଚାରରେ ଗ୍ରହଣୀୟ ନ ହେଲେ ବର୍ତ୍ତମାନ ତାହାକୁ ଧର୍ମ ବୋଲି କୁହାଯାଇ ପାରିବ

ଆୟୁର୍ବେଦୋକ୍ତ ଧର୍ମାଚରଣ ହିଁ ଜଗତର ଜୀବନରକ୍ଷକ ଗିଠିଭିଷ୍ଠ ୧୧୬

ଆଜି ଶେଷ ଦିନର ଅଧିବେଶନରେ କଂଗ୍ରେସ ସଭାପତି ଶ୍ରୀଯୁକ୍ତ ୟୁ, ଏନ୍, ଢେବର ଭାଷଣ ଦେଇ କହିଲେ ଯେ- ବିଶ୍ୱଶାନ୍ତି ପ୍ରତିଷ୍ଠା ସବୁ ଧର୍ମର ପ୍ରଧାନ ଲକ୍ଷ୍ୟ । ଏହି ମହାନ ସତ୍ୟକୁ ଜନସାଧାରଣଙ୍କ ଆଗରେ ଉପସ୍ଥାପିତ କରିବା ଦିଗରେ ସବୁ ଧର୍ମର ପ୍ରଚାରକ ଗଣ ଉଦ୍ୟମ କରିବା ଉଚିତ । ଆଜିର ଆଲୋଚନାରେ ରୁଷିଆ, ଆମେରିକା, ବର୍ମା, ଅଷ୍ଟ୍ରେଲିଆ, ଇଂଲଣ୍ଡ, ସୁଇଜରଲଣ୍ଡ, ଅଷ୍ଟ୍ରିଆ, ହୋଲାଣ୍ଡ, ସିଂହଳ, ଜାପାନ, ଫ୍ରାନସ, ପାକିସ୍ଥାନ ଓ ହଂକଂଗର ପ୍ରତିନିଧିଗଣ ଭାଗ ନେଇଥିଲେ ।

ଏ ଅଧିବେଶନରେ ସର୍ବସମ୍ମତିକ୍ରମେ ଏକ ପ୍ରସ୍ତାବ ଗୃହୀତ ହୋଇଛି । ଏ ପ୍ରସ୍ତାବରେ କୁହାଯାଇଛି ଯେ- ମାନବସମାଜର ସ୍ୱାଧୀନତା ରକ୍ଷା ଓ ବିଶ୍ୱଶାନ୍ତିପ୍ରତିଷ୍ଠା ଦୃଷ୍ଟିରୁ ବିଭିନ୍ନ ଧର୍ମ ମଧ୍ୟରେ ବାଦ ବିବାଦ ରହିବା ଉଚିତ ନୁହେଁ । ପୃଥିବୀର ସବୁ ଶ୍ରେଣୀର ଲୋକଙ୍କ ମଧ୍ୟରେ ମୈତ୍ରୀ ଓ ଭାତୃଭାବ ଯେପରି ପ୍ରତିଷ୍ଠିତ ହୁଏ, ସେ ଦିଗରେ ସମସ୍ତଙ୍କୁ ମିଳିତ ଉଦ୍ୟମ କରିବାକୁ ହେବ । [ ୟୁ, ପି, ପି, ଟି ] ୨୦ । ୧୧ । ( ୫୭ ସମାଜ )
ଏହିପରି "ଦାନମେକଂ କଳୌଯୁଗେ" ଏହି ଯୁଗଧର୍ମ ଅନୁସାରେ ନିରନ୍ନ, ନିରୁପାୟ, ଅଭାବଗ୍ରସ୍ତ ଜର୍ଜରିତ, ଦୀନଦୁଃଖୀ ପ୍ରଜାମାନଙ୍କୁ ବଞ୍ଚାଇବା ପାଇଁ ମହାତ୍ମା ବିନୋବାଙ୍କର ଭୂଦାନଯଜ୍ଞର ପ୍ରଚୁର ମଧ୍ୟ ସଫଳ ସଫଳତା ଓ ସାର୍ଥକତା ଆଜକୁ ଗତି କରିଛି। ସେ କହୁଛନ୍ତି ଯେ- "ବ୍ୟକ୍ତିକ ଧର୍ମ ଓ ଲୋକସେବା ପରସ୍ପର ଭିତରେ ସମ୍ବନ୍ଧ ରହିବ ହିଁ ରହିବ । କାରଣକି- ଧାର୍ମିକତା ବ୍ୟତିରେକେ ନୀତି ।ଦୟ ଏବଂ ସତ୍ୟାଦୟ ବ୍ୟତିରେକେ ସର୍ବୋଦୟ ବା ହେବ କିପରି ? ସେ କହୁଛନ୍ତି- "ସ୍ୱେଚ୍ଛାରେ ଗାଁ ର ସବୁ ଜମିକୁ ଏକତ୍ର କରି ସମ୍ମିଳିତ ସ୍ୱତ୍ୱର ବ୍ୟବସ୍ଥା କରାଗଲେ ହିଁ ସ୍ଥାୟୀ ଭାବରେ ଖାଦ୍ୟ ସମସ୍ୟାର ସମାଧାନ ହୋଇପାରିବ ।" [ ମାତୃଭୂମି ] ୧୩-୯-୫୭

ଭଗବାନ୍ ଆଶୀର୍ବାଦ କରନ୍ତୁ, ବ୍ରାହ୍ମଣର କଠୋର ତପସ୍ୟା ଜଗତକୁ ଅଭୟଦାନ କରୁ । ଏବଂ ସମଗ୍ର ଜଗତ ଏକ ମନରେ ଏକ ପ୍ରାଣରେ ଏକ କଣ୍ଠରେ ଚରଣରେ ନମସ୍କାର ସ୍ୱୀକାର କରୁ ଯେ ।

"ଏତଦ୍ଦେଶ ପ୍ରସୂତସ୍ୟ ସକାଶାଦଗ୍ର ଜନ୍ମନଃ
ସ୍ୱଂ ସ୍ୱଂ ଚରିତ୍ରଂ ଶିକ୍ଷେରନ୍ ପୃଥିବ୍ୟାଂ ସର୍ବମାନବାଃ"
ଓଁ ଶାନ୍ତିଃ, ଶାନ୍ତିଃ, ଶାନ୍ତିଃ
ଜୟ ସନାତନ ବୈଦିକ ଧର୍ମର ଜୟ ।

ବର୍ତ୍ତମାନ ଦେଶର ପରିସ୍ଥିତି ଓ ବିଷୟର ଗୁରୁତ୍ୱ ହେତୁରୁ ଧର୍ମାଧର୍ମର ବିଚାର ଏଠାରେ ଖୁବ୍ ଲମ୍ବା ହୋଇଗଲା, ପାଠକମାନେ ନୈର୍ଦ୍ଧୈର୍ଯ୍ୟ କ୍ଷମା କରିବେ । ଏହି ପ୍ରବନ୍ଧର ଉପସଂହାରରେ ଏତିକି ମାତ୍ର ବକ୍ତବ୍ୟ ଯେ-ମନୁ ଲେଖିଛନ୍ତି—

"ବେଦାଦ୍ଧର୍ମୋ ହି ନିର୍ବଭୌ ॥

ଅର୍ଥାତ୍ ବେଦରୁ ହିଁ ଧର୍ମର ପ୍ରକାଶ ହେଲା । ଏତେବେ ବେଦ କାହାକୁ କହନ୍ତି ? ଏହି ପ୍ରଶ୍ନର ଉତ୍ତରରେ ଚରକ ଲେଖିଛନ୍ତି ଯେ—

"ଆପ୍ତାଗମସ୍ତାବଦ୍‌ବେଦଃ, ଯଃ କଶ୍ଚିତ୍ ବେଦାର୍ଥାଦବୈପରୀତଃ ପରୀକ୍ଷକୈଃ ପ୍ରଣୀତଃ ଲୋକାନୁଗ୍ରହ ପ୍ରବୃତ୍ତଃ ଶାସ୍ତ୍ରବାଦଃ ସ ଚ ଆପ୍ତାଗମଃ । ଆପ୍ତାଗମିକ ଯାନି ଯାନି ଏତଦ୍ୟଂ ଚୈକିତ୍ସିକଂ ବଚଃ ଶ୍ରୋତବ୍ୟ ମନୁଷ୍ଠାନବ୍ୟଂ ଚ ।"

ଅର୍ଥାତ୍ ଭ୍ରମ, ପ୍ରମାଦ ପ୍ରତାରଣାରହିତ ବହୁଦର୍ଶୀ ଋଷିମାନଙ୍କର ଉପଦେଶ ହିଁ ବେଦ । ତାହା ହିଁ ସମସ୍ତଙ୍କର ଶ୍ରୋତବ୍ୟ ଓ ଅନୁକର୍ତ୍ତବ୍ୟ । ଆଉରି ମନୁ ମଧ୍ୟ ଲେଖିଛନ୍ତି—

ଏକୋଽପି ବେଦବିଦ୍ଧର୍ମଂ ଯଂ ବ୍ୟବସ୍ୟେଦ୍ ଦ୍ୱିଜୋତ୍ତମଃ
ସ ବିଜ୍ଞେୟଃ ପରୋ ଧର୍ମୋ ନାଜ୍ଞାନାମୁଦିତୋଽୟୁତୈଃ ॥
ହିତସ୍ମାଜ୍ଜାନ୍ୟଥୋକ୍ତାନାଂ ଧର୍ମାଃ କୀର୍ତ୍ତିତଂ ସ୍ମୃତିତମ୍
ବିଦ୍ୟାନ ଚ ଶିଷ୍ଟାନ ସମାଦଧ୍ୟାନ ସଦାତଃ ॥ ( ମନୁ )
ପରିତ୍ୟଜେତ୍ ଅର୍ଥକାମୌ ଧର୍ମସ୍ୟ ପରିପନ୍ଥିନୌ
ଧର୍ମଂ ଚାପ୍ୟସୁଖୋଦର୍କଂ ଲୋକ ବିଦ୍ୱିଷ୍ଟମେବ ଚ ॥ ( ମନୁ )

ଏହିସବୁ ପ୍ରମାଣରୁ ସାମ୍ପ୍ରଦାୟିକ ଧର୍ମାଭିମାନ ତ୍ୟାଗକରି ବର୍ତ୍ତମାନ କ୍ଷୟ ରୋଗର ପ୍ରତିକାର ନିମନ୍ତେ ସଙ୍ଘଶକ୍ତି ହିଁ ହିନ୍ଦୁମାନଙ୍କର ଅବଲମ୍ବନୀୟ ।

## ସଂଘଶକ୍ତି ସଂଗ୍ରହ ନିମନ୍ତେ ବେଦର ଉପଦେଶ

ଯଥା—ସହୃଦୟଂ ସାମନସ୍ୟ ମବିଦ୍ୱେଷଂ କୃଣୋମି ବଃ
ଅନ୍ୟୋ ଅନ୍ୟ ମଭିହର୍ଯ୍ୟତ ବତ୍ସଂ ଜାତମିବାଘ୍ନ୍ୟା ॥
( ଅଥର୍ବ ୩ କାଣ୍ଡ ୩୦ ସୂକ୍ତ )

ଅର୍ଥାତ୍ ହେ ମନୁଷ୍ୟଗଣ ତୁମମାନଙ୍କର ପ୍ରତ୍ୟେକର ହୃଦୟ ( ବୁଦ୍ଧି )

ସମାନ ହେଉ, ମନ ଉତ୍ତମ ବିଚାରକରୁ । ଏବଂ ତୁମ୍ଭମାନଙ୍କର ପରସ୍ପର ମଧ୍ୟରେ କୌଣସି ପ୍ରକାର ଝଗଡ଼ା ନ ରହୁ । ତୁମେମାନେ ପରସ୍ପର ମଧ୍ୟରେ ଅତ୍ୟନ୍ତ ପ୍ରେମ ସହିତ ବ୍ୟବହାର କର । ଯେପରି ଗାଈ ଆପଣାର ନୂଆଁ ବାଛୁରୀ ସହିତ ପ୍ରେମ କରେ, ସେହିପରି ତୁମେ ଅନ୍ୟ ଉପରେ ପ୍ରେମ କର ।

ଅନୁବ୍ରତଃ ପିତୁଃ ପୁତ୍ରୋ ମାତ୍ରା ଭବତୁ ସମ୍ମନାଃ
ଜାୟା ପତ୍ୟେ ମଧୁମତୀଂ ବାଚଂ ବଦତୁ ଶନ୍ତିବାମ୍ ।

ଅର୍ଥାତ୍ ପୁତ୍ର ପିତାର ଅନୁକୂଳ କର୍ମ ଆଚରଣ କରୁ । ମାତା ସହିତ ପୁତ୍ରର ଉତ୍ତମଭାବ ରହୁ, ଧର୍ମପତ୍ନୀ ପତି ସହିତ ମଧୁମୟୀ ବାଣୀ ବ୍ୟବହାର କରୁ ।

ମା ଭ୍ରାତା ଭ୍ରାତରଂ ଦ୍ୱିକ୍ଷନ୍ ମା ସ୍ୱସାରମୁତ ସ୍ୱସା
ସମ୍ୟଞ୍ଚଃ ସବ୍ରତା ଭୂତ୍ୱା ବାଚଂ ବଦତ ଭଦ୍ରୟା ॥
(ଅଥର୍ବ. ୩।୩୦)

ଅର୍ଥାତ୍ ଭାଇ ଭାଇଙ୍କ, ଭଉଣୀ ଭଉଣୀଙ୍କ ଦ୍ୱେଷପ୍ରବୃତ୍ତି ରଖନା, ସମସ୍ତେ ମିଳିମିଶି କର୍ମାନୁଷ୍ଠାନ କର । କଲ୍ୟାଣ ଦାୟକ ବୁଦ୍ଧିରେ କଥାବାର୍ତ୍ତା କର ।

ସମାନୀ ପ୍ରପା ସହ ବୋ ଅନ୍ନଭାଗଃ
ସମାନେ ଯୋକ୍ତ୍ରେ ସହ ବୋ ଯୁନଜ୍ମି ॥
ସମ୍ୟଞ୍ଚୋଽଗ୍ନିଂ ସପର୍ଯ୍ୟତ
ଅରା ନାଭିମିବାଭିତଃ ॥ (ଅଥର୍ବବେଦ)

ଅର୍ଥାତ୍ ତୁମମାନଙ୍କର ପାନଶାଳ ଏକ ହେଉ । ତୁମମାନଙ୍କର ଅନ୍ନବିଭାଗ ଏକ ରୂପରେ ହେଉ । ତୁମମାନଙ୍କୁ ଏକ ରଜ୍ଜୁରେ ମୁଁ ଯୋଗ କରୁଛି ତୁମେମାନେ ସମସ୍ତେ ମିଳିମିଶି ଏକଜୁଟ ହୋଇ ଅଗ୍ନି (ବ୍ରହ୍ମ) ଉପାସନା କର । ଯେପରି ଶଗଡର ନାଭିର (ଭୁମ୍ବର) ଚାରିଆଡେ ଅର ରହିଥାଏ ।

ସଂଗଚ୍ଛଧ୍ୱଂ ସଂବଦଧ୍ୱଂ ସଂବୋ ମନାଂସି ଜାନତାମ୍
ଦେବାଭାଗଂ ଯଥାପୂର୍ବଂ ସଂଜାନାନା ଉପାସତେ ॥
(ଋଗ୍‌ବେଦ ୧ । ୧୯୧ । ୧୨)

ତୁମେମାନେ ମିଳମିଶି ଯାଅ, ଉତ୍ତମ କଥାବାର୍ତ୍ତା କର । ତୁମର ମନକୁ ନିର୍ମଳକର, ଯେପରି ପୂର୍ବର ଜ୍ଞାନୀଲୋକମାନେ କର୍ତ୍ତବ୍ୟ ପାଳନ କରୁଥିଲେ, ସେହିପ୍ରକାରେ ତୁମେମାନେ କର ।

ସମାନୋ ମନ୍ତ୍ରଃ ସମିତିଃ ସମାନୀ ସମାନ ମନଃ ସହଚିତ୍ତମେଷାମ୍
ସମାନଂ ମନ୍ତ୍ରମଭିମନ୍ତ୍ରୟେ ବଃ ସମାନେନ ବୋ ହବିଷା ଜୁହୋମି ॥

( ଋଗ୍‌ବେଦ-୧୦ । ୧୯୧ । ୩ )

ଅର୍ଥାତ୍ ତୁମମାନଙ୍କର ବିଚାର ସମସ୍ତଙ୍କ ପାଇଁ ସମାନ ହେଉ । ତୁମମାନଙ୍କର ସଭା ସମସ୍ତଙ୍କର ପ୍ରବେଶ ଯୋଗ୍ୟ ହେଉ । ତୁମମାନଙ୍କର ମନ ସମାନ ( ପକ୍ଷପାତରହିତ ) ହେଉ, ଏଥି ନିମନ୍ତେ ତୁମମାନଙ୍କୁ ସମାନ ବିଚାରରେ ମୁଁ ଉପଦେଶ ଦେଉଛି ଏବଂ ସମସ୍ତଙ୍କ ପାଇଁ ଅନ୍ନଭୋଗ ଏକ ପ୍ରକାର ବ୍ୟବସ୍ଥା କରୁଛି ।

ସମାନୀ ବ ଆକୂତିଃ ସମାନା ହୃଦୟାନି ବଃ
ସମାନମସ୍ତୁ ବୋ ମନଃ ଯଥାବଃ ସୁ ସହାସତି ॥

( ଋ, ୧୦ । ୧୯୧ । ୩ )

ତୁମର କର୍ତ୍ତବ୍ୟ ସମାନ ହେଉ, ତୁମମାନଙ୍କର ହୃଦୟ ( ବୁଦ୍ଧି ) ସମାନ ହେଉ । ତୁମମାନଙ୍କର ମନ ସମାନ ହେଉ, ଯେପରି ତୁମମାନଙ୍କର ପରସ୍ପର ମଧ୍ୟରେ ଉତ୍ତମ ଏକତା ଆସିବ, ସେହିପରି ଆଚରଣ କର ।

ଏହିପରି ଆତ୍ମୋପମ୍ୟ ବୁଦ୍ଧିରେ ସବୁକୁ ସମାନ ଜ୍ଞାନ, ଏହି ସାମ୍ୟବାଦ ପ୍ରତିଷ୍ଠା ହିଁ ମାନବର ଧର୍ମ ।

ବର୍ତ୍ତମାନ ଯୁଗର ସାମ୍ୟବାଦ ଏହି ଭାବମୂଳକ ନୁହେଁ, ଏହା ଅର୍ଥକାମମୂଳକ ଓ ଅତି ଭୟାନକ । କେବଳ ପ୍ରଜ୍ଞାପରାଧରୁ ଏହି ସାମ୍ୟବାଦ ଉଦ୍‌ଭୂତ ବୋଲି ମନେ ହୁଏ * । ଏପ୍ରକାର ସାମ୍ୟବାଦର ପ୍ରତିଷ୍ଠା ଅସମ୍ଭବ ।

* କେହି ଜଣେ କାଳରହସ୍ୟଜ୍ଞ ଭାବୁକ କବି କଳିଯୁଗର ସାମ୍ୟବାଦିମାନଙ୍କ କୌଣସି କୁଳଟାର ଉକ୍ତି ଏହିପରି ଲେଖିଛନ୍ତି ଯେ-

"ବ୍ରହ୍ମୈବ ସର୍ବମପରଂ ନ ହି କଶ୍ଚିଦସ୍ତି
ତସ୍ମାନ୍ମମ ସଖି ପରସ୍ପରେ ଭେଦବୁଦ୍ଧିଃ ॥
ଜାରେ ତଥା ନିଜପତୌ ଚ ସମାରତିର୍ମେ
ମୂଢାଃ କମର୍ଥମସତୀତି କଦର୍ଥୟନ୍ତି ॥

## "ସଂଘେ ଶକ୍ତିଃ କଲୌଯୁଗେ"

ସଂଘାତବାନ୍ ମର୍ତ୍ତ୍ୟଲୋକଃ ପରସ୍ପର ମୁପାର୍ଜିତଃ ॥ [ ଗ୦ ଭା୦ ]

ମହାଭାରତରେ ବିଦୁର ମଧ୍ୟ ଏହିକଥା କହିଛନ୍ତି-ଯଥା—

"ନ ବୈ ଭିନ୍ନା ଜାତୁ ଚରନ୍ତି ଧର୍ମମ୍
ନ:ବୈ ସୁଖଂ ପ୍ରାପ୍ନୁବନ୍ତୀହ ଭିନ୍ନାଃ
ନ ବୈ ଭିନ୍ନାଃ ଗୌରବମାପ୍ନୁବନ୍ତି
ନ ବୈ ଭିନ୍ନାଃ ପ୍ରଶମଂ ରୋଚୟନ୍ତି ॥
ନ ବୈ ତେଷାଂ ସ୍ୱଦତେ ପଥ୍ୟମୁକ୍ତମ୍
ଯୋଗକ୍ଷେମଂ କଳ୍ପତେ ନୈବ ତେଷାମ୍ ॥
ଭିନ୍ନାନାଂ ବୈ ମନୁଜେନ୍ଦ୍ର ପରାୟଣମ୍
ନ ବିଦ୍ୟତେ କିଞ୍ଚିଦନ୍ୟଦ୍ବିନାଶାତ୍ ॥

ଏହି ସବୁ ଉପଦେଶାନୁସାରେ ଶକ୍ତି ସଞ୍ଚୟ କରନ୍ତୁ ହିଁ, ବର୍ତ୍ତମାନ ହିନ୍ଦୁମାନଙ୍କର ସଂଗଠନ ଆବଶ୍ୟକ । ଏହିବିଷୟରେ ସନ୍ଦେହ ନାହିଁ ଯେ-ସମସ୍ତ ସନାତନୀ, ଆର୍ଯ୍ୟସମାଜୀ, ସିକ୍ଖ, ଜୈନ ଓ ବୌଦ୍ଧ ଏହି ପାଞ୍ଚ ପ୍ରକାର ସମ୍ପ୍ରଦାୟ ଏକ ସୂତ୍ରରେ ଆବଦ୍ଧ ଓ ଅହିନ୍ଦୁଠାରୁ ପୃଥକ୍ ଅଟନ୍ତି । ଏହିସବୁ ଯଦି ସଙ୍ଘବଦ୍ଧ ହୁଅନ୍ତି, ତା ହେଲେ ସାରା ପୃଥିବୀରେ ହିନ୍ଦୁମାନଙ୍କର ସଂଖ୍ୟା ଏକ ଅର୍ବୁଦରୁ ଅଧିକ ହୋଇଯାଏ । ଯାହାକି ବର୍ତ୍ତମାନ ଅନ୍ତାରାଷ୍ଟ୍ରିୟ ଦୃଷ୍ଟିରେ ସମସ୍ତ ପୃଥିବୀର ଜନସଂଖ୍ୟାର ଅଧେ ଭାଗରୁ ଅଧିକ ହୋଇଥାଏ । ଏହି ପାଞ୍ଚ ପ୍ରକାର ସମ୍ପ୍ରଦାୟକୁ ହିନ୍ଦୁ ବୋଲିବାର କାରଣ ଏହି ଯେ—

ଓଁକାର ମୂଳମନ୍ତ୍ରାଢ୍ୟଃ ପୁନର୍ଜନ୍ମ ଦୃଢ଼ାଶୟଃ
ଗୋଭକ୍ତୋ ଭାରତଗୁରୁ ର୍ହିନ୍ଦୁର୍ହିଂସନଦୂଷକଃ ॥

[ ମାଧବ ଦିଗ୍ବିଜୟ ]

ଅର୍ଥାତ୍ ଉକ୍ତ ପାଞ୍ଚ ପ୍ରକାର ସମ୍ପ୍ରଦାୟର ମୂଳମନ୍ତ୍ର ଅଟେ ଓଁକାର, ଏସମସ୍ତେ ଜନ୍ମାନ୍ତର ବିଶ୍ୱାସ କରନ୍ତି, ଗୋରୁମାନଙ୍କୁ ଭକ୍ତି କରନ୍ତି, ଏସମସ୍ତେ ଭାରତର ଶିଷ୍ୟ ଏବଂ ହିଂସା କର୍ମର ବିରୋଧୀ । ଅତଏବ ଏହି ସମସ୍ତେ ହିନ୍ଦୁ ପଦବାଚ୍ୟ । ଭଗବାନ୍ ପରମେଶ୍ୱର ଆଶୀର୍ବାଦ କରନ୍ତୁ ।

ହିନ୍ଦୁ ସମାଜର ସଦ୍‌ବୁଦ୍ଧିର ଉଦୟ ହେଉ । ଏହାହିଁ ଶେଷ ପ୍ରାର୍ଥନା ।

ସର୍ବେ ଭବନ୍ତୁ ସୁଖିନଃ ସର୍ବେ ସନ୍ତୁ ନିରାମୟାଃ
ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିଦ୍ ଦୁଃଖଭାଗ୍ ଭବେତ୍ ॥

## ଜନପଦଧ୍ୱଂସକର ରୋଗର ପ୍ରତିକାର ସମ୍ବନ୍ଧେ ଆୟୁର୍ବେଦ

ଚରକ ଲେଖିଛନ୍ତି ଯେ—

"ବିଗୁଣେଷ୍ୱପି ଖଲ୍ୱେତେଷୁ ଜନପଦୋଦ୍ଧ୍ୱଂସକରେଷୁ ଭାବେଷୁ ଭେଷଜେନ ଉପପାଦ୍ୟମାନାନାଂ ଅଭୟଂ ଭବତି ରୋଗେଭ୍ୟଃ । (ଚ୦ ବି୦ ୩।୧୨)

ଅର୍ଥାତ୍ ଜନପଦ ଧ୍ୱଂସକାରକ ବାୟୁ, ଜଳ, ଦେଶ ଓ କାଳ ଏହି ଚାରି ପଦାର୍ଥ ଦୂଷିତ ହେଲେ ମଧ୍ୟ ଯଦି ଔଷଧ ଉପଚାରର ବ୍ୟବସ୍ଥା କରାଯାଏ, ତେବେ ରୋଗଭୟ ରହେ ନାହିଁ ।

ସେ କହୁଛନ୍ତି ଯେ—

ବାତାଜ୍ଜଲଂ ଜଳାଦ୍ଦେଶଂ ଦେଶାତ୍କାଳଂ ସ୍ୱଭାବତଃ
ବିଦ୍ୟାଦ୍ଦୁଷ୍ପରିହାର୍ଯ୍ୟତ୍ୱାଦ୍ ଗରୀୟସ୍ତରମର୍ଥବିତ୍ ॥
ଚତୁର୍ଷ୍ୱପି ତୁ ଦୁଷ୍ଟେଷୁ କାଲାନ୍ତେଷୁ ଯଦା ନରାଃ
ଭେଷଜେନୋପପାଦ୍ୟନ୍ତେ ନ ଭବନ୍ତ୍ୟାତୁରାସ୍ତଦା ॥
ଯେଷାଂ ନ ମୃତ୍ୟୁ ସାମାନ୍ୟଂ ସାମାନ୍ୟଂ ନଚ କର୍ମଣାମ୍
କର୍ମ ପଞ୍ଚବିଧଂ ତେଷାଂ ଭେଷଜଂ ପରମୁଚ୍ୟତେ ॥
ରସାୟନାନାଂ ବିଧିବଚ୍ଚୋପଯୋଗଃ ପ୍ରଶସ୍ୟତେ
ଶସ୍ୟତେ ଦେହବୃତ୍ତିଶ୍ଚ ଭେଷଜୈଃ ପୂର୍ବମୁଦ୍ଧୃତୈଃ ॥
ସତ୍ୟଂ ଭୂତେ ଦୟା ଦାନଂ ବଲୟୋ ଦେବତାର୍ଚ୍ଚନମ୍
ସଦ୍‌ବୃତ୍ତସ୍ୟାନୁବୃତ୍ତିଶ୍ଚ ପ୍ରଶମୋ ଗୁପ୍ତିରାତ୍ମନଃ ॥
ହିତଂ ଜନପଦାନାଞ୍ଚ ଶିବାନାମୁପସେବନମ୍
ସେବନଂ ବ୍ରହ୍ମଚର୍ଯ୍ୟସ୍ୟ ତଥୈବ ବ୍ରହ୍ମଚାରିଣାମ୍ ॥
ସଂକଥା ଧର୍ମଶାସ୍ତ୍ରାଣାଂ ମହର୍ଷୀଣାଂ ଜିତାତ୍ମନାମ୍
ଧାର୍ମିକୈଃ ସାତ୍ତ୍ୱିକୈର୍ନିତ୍ୟଂ ସହାସ୍ୟା ବୃଦ୍ଧସମ୍ମତୈଃ ॥
ଇତ୍ୟେତଦ୍ ଭେଷଜଂ ପ୍ରୋକ୍ତ ମାୟୁଷଃ ପ୍ରତିପାଳନମ୍
ଯେଷାମନିୟତୋ ମୃତ୍ୟୁସ୍ତସ୍ମିନ୍ କାଳେ ସୁଦାରୁଣେ ॥

[ ଚ୦ ବି୦ ଅ ୧୬ । ୨୩ ]

ଅର୍ଥାତ୍ ଜନପଦ ଧ୍ୱଂସକର ପଦାର୍ଥମାନଙ୍କ ମଧ୍ୟରେ ଦୂଷିତ ବାୟୁ, ଦୂଷିତଜଳ, ଦୂଷିତ ଦେଶ ଓ ଦୂଷିତ କାଳ ( ଋତୁବିପର୍ଯ୍ୟୟାଦି ) ପ୍ରଧାନ କାରଣ ଅଟେ । ବାୟୁଦୋଷ ଠାରୁ ଜଳଦୋଷ, ଜଳଦୋଷ ଠାରୁ ଦେଶ ବା ନିବାସସ୍ଥାନ ଦୋଷ ଏବଂ ତାହାରୁ କାଳଦୋଷ ଗୁରୁତର ଓ ଅପରିହାର୍ଯ୍ୟ ଅଟେ । ଯେବେ ଉପଯୁକ୍ତ ଔଷଧ ଉପଚାର କରାଯାଏ, ତେବେ ଉକ୍ତ ବାୟୁଆଦି ଚାରିପଦାର୍ଥ ଦୂଷିତ ହେଲେ ମଧ୍ୟ ପ୍ରାଣିମାନେ ରୋଗରେ ପଡନ୍ତି ନାହିଁ । ଯେଉଁମାନଙ୍କର ଭାଗ୍ୟ ଓ କର୍ମ-ଅସାଧାରଣ, ସେମାନଙ୍କ ପକ୍ଷରେ ସେହି ସମୟରେ ଶରୀର ଶୋଧନାର୍ଥେ ପଞ୍ଚକର୍ମ ଚିକିତ୍ସାହିଁ ଶ୍ରେୟ ଔଷଧ । ସେଇ ସମୟରେ ଚରକ ସୁଶ୍ରୁତାଦି କଥିତ ରସାୟନ ସେବନ ଏବଂ ମୂଳରୁ ଉଦ୍ଧୃତ ହୋଇଥିବା ଔଷଧି ଧାରଣ ପ୍ରଶସ୍ତ ଅଟେ ।

ସତ୍ୟଭାଷଣ, ପ୍ରାଣିମାନଙ୍କ ଉପରେ ଦୟା * ପ୍ରାଣିମାନଙ୍କ ଉଦ୍ଦେଶ୍ୟରେ ଅନ୍ନବସ୍ତ୍ରାଦି ଦାନ, ଦେବଶାନ୍ତ୍ୟାର୍ଥ ଆତ୍ମୋତ୍ସର୍ଗ, ଜ୍ଞାନଲୋକମାନଙ୍କର ପୂଜା, ଶାସ୍ତ୍ରୀୟ ସଦ୍‌ବୃତ୍ତ ପାଳନ, ସନ୍ତୋଷ, ମନ୍ତ୍ରଜପ, ଆରୋଗ୍ୟ ପ୍ରଦ ଦେଶରେ ନିବାସ, ବ୍ରହ୍ମଚର୍ଯ୍ୟ ପାଳନ, ବୃଦ୍ଧ ପୁରୁଷମାନଙ୍କ ନିକଟରେ ବାସ, ଜିତେନ୍ଦ୍ରିୟ ମହର୍ଷିମାନଙ୍କ ସହିତ ଧର୍ମଶାସ୍ତ୍ରଚର୍ଚ୍ଚା । ପ୍ରତିଦିନ ଧାର୍ମିକ, ସାତ୍ତ୍ୱିକ, ଜ୍ଞାନବୃଦ୍ଧ ଓ ମାନନୀୟ ପୁରୁଷମାନଙ୍କ ସହିତ ଆଳାପ, ଏହି ସବୁ ଧର୍ମାନୁଷ୍ଠାନ ସେଇ ଜନପଦଧ୍ୱଂସକର ଦାରୁଣ କାଳରେ ଯେଉଁମାନଙ୍କର ମୃତ୍ୟୁ ଅନିୟତ, ସେମାନଙ୍କ ପକ୍ଷରେ ଆୟୁରକ୍ଷକ ଉପଚାର ଅଟେ ।

"ଧର୍ମ ଏବ ହତୋହନ୍ତି ଧର୍ମୋ ରକ୍ଷତି ରକ୍ଷିତଃ"

ଚରକୋକ୍ତ ସଦାଚାର ରସାୟନ-ଯଥା—

"ସତ୍ୟବାଦିନମକ୍ରୋଧଂ ନିବୃତ୍ତଂ ମଦ୍ୟମୈଥୁନାତ୍ ।
ଅହିଂସକ ମନାୟାସଂ ପ୍ରଶାନ୍ତଂ ପ୍ରିୟବାଦିନମ୍ ॥
ଦେବ ଗୋବ୍ରାହ୍ମଣାଚାର୍ଯ୍ୟ ଗୁରୁବୃଦ୍ଧାର୍ଚ୍ଚନେରତମ୍ ।
ଆନୃଶଂସ୍ୟପରଂ ନିତ୍ୟଂ ନିତ୍ୟଂ କାରୁଣ୍ୟ ବେଦିନମ୍ ॥
ସମଜାଗରଣସ୍ୱପ୍ନଂ ନିତ୍ୟଂ କ୍ଷୀର ଘୃତାଶିନମ୍ ।
ଦେଶକାଳ ପ୍ରମାଣଜ୍ଞଂ ଯୁକ୍ତିଜ୍ଞମନହଂକୃତମ୍ ॥

ଶସ୍ତାଚାରମସଙ୍କୀର୍ଣ୍ଣମଧ୍ୟାତ୍ମପ୍ରବଣେନ୍ଦ୍ରିୟମ୍ ।
ଉପାସିତାରଂ ବୃଦ୍ଧାନାମାସ୍ତିକାନାଂ ଜିତାତ୍ମନାମ୍ ॥
ଧର୍ମଶାସ୍ତ୍ରପରଂ ବିଦ୍ୟାନ୍ନରଂ ନିତ୍ୟରସାୟନମ୍ ॥ (ଚରକ)
ଦୀର୍ଘମାୟୁଃ ସ୍ମୃତିଂ ମେଧାଂ ଆରୋଗ୍ୟଂ ତରୁଣଂ ବୟଃ ।
ଦେହେନ୍ଦ୍ରିୟବଳଂ କାନ୍ତିଂ ନରୋ ବିନ୍ଦେତ୍ ରସାୟନାତ୍ ॥
[ ଭାବ ପ୍ରକାଶ ]

ନକେବଳଂ ଦୀର୍ଘମିହାୟୁରଶ୍ନୁତେ ।
ରସାୟନଂ ଯୋ ବିଧିବନ୍ନିଷେବତେ ॥
ଗତିଂ ସ ଦେବର୍ଷିନିଷେବିତାଂ ଶୁଭାମ୍ ।
ପ୍ରପଦ୍ୟତେ ବ୍ରହ୍ମ ତଥୈବଚାକ୍ଷରମ୍ ॥ [ ଚରକ ]

ଶାସ୍ତ୍ରାନୁସାରିଣୀ ଚର୍ଯ୍ୟା ଚିତ୍ତଜ୍ଞାଃ ପାର୍ଶ୍ୱବର୍ତ୍ତିନଃ ।
ବୁଦ୍ଧିରସ୍ଖଳିତାର୍ଥେଷୁ ପରିପୂର୍ଣ୍ଣଂ ରସାୟନମ୍ ।
ଦାନଂ ଶୀଳଂ ଦୟା ସତ୍ୟଂ ବ୍ରହ୍ମଚର୍ଯ୍ୟଂ କୃତଜ୍ଞତା ।
ରସାୟନାନି ମୈତ୍ରୀ ଚ ପୁଣ୍ୟାୟୁର୍ବୃଦ୍ଧିକୃଦ୍‌ଗଣଃ ॥
[ ରସରତ୍ନ ସମୁଚ୍ଚୟ ]

ଅର୍ଥାତ୍ ସତ୍ୟବାଦିତା, କ୍ରୋଧହୀନତା, ମଦ୍ୟ ଓ ମୈଥୁନରୁ ନିବୃତ୍ତି ଅହିଂସା, ପରିଶ୍ରମଶୀଳତା, ଶାନ୍ତିପ୍ରିୟତା, ପ୍ରିୟବାଦିତା, ଜପ ଓ ସ୍ନାନ ଶୌଚ ପରାୟଣତା, ଧୀରତା, ଦାନଶୀଳତା, ତପଶ୍ଚର୍ଯ୍ୟା, ଦେବତା, ଗୋରୁ * ବ୍ରାହ୍ମଣ, ଆଚାର୍ଯ୍ୟ ଓ ବୃଦ୍ଧମାନଙ୍କର ସେବା, ଅକ୍ରୂରତା, ଦୟାଶୀଳତା, ଯଥାସମୟରେ ଜାଗରଣ ଓ ନିଦ୍ରାଭ୍ୟାସ, ନିତ୍ୟ କ୍ଷୀର ଓ ଘୃତର ଅଭ୍ୟାସ, ଦେଶ ଓ କାଳ ଅନୁସାରେ ପଥ୍ୟ ସେବନ, ଓ ଔଷଧ ଯୋଗ ସାମର୍ଥ୍ୟ, ଅହଂକାରତ୍ୟାଗ, ସଦାଚାରପାଳନ, ଆତ୍ମଚିନ୍ତନ, ଆସ୍ତିକତା, ଜିତେନ୍ଦ୍ରିୟତା, ଜ୍ଞାନୀମାନଙ୍କ ସହିତ ସଙ୍ଗ ଓ ଓ ଧର୍ମଶାସ୍ତ୍ର ଚର୍ଚ୍ଚା ଏହି ସବୁ ସଦାଚାର ନିତ୍ୟରସାୟନ ଅଟେ । ଅର୍ଥାତ୍

---

* ଆନନ୍ଦର ସମ୍ବାଦ ଯେ- ତା ୨୩ । ୪ । ୫୮ ରେ ଭାରତର ସୁପ୍ରିମ କୋର୍ଟରାୟ ଦେଇ କହିଛନ୍ତି ଯେ- ସବୁ ବୟସର ଗାଈ, ବଳଦ, ମଇଁଷି, ପୋଢ଼ ଏବଂ ଏମାନଙ୍କ ବାଛୁରୀଙ୍କ ହତ୍ୟା ସୁବ୍ୟବସ୍ଥା ନିଷେଧ ।
[ ସମାଜ ୨୫ । ୪ । ୫୮ ]

ଏହି ସବୁ ନିତ୍ୟକର୍ମ ରୂପରେ ଅଭ୍ୟାସ କଲେ ବିନା ରସାୟନ ଔଷଧ ସେବନରେ ମଧ୍ୟ ରସାୟନ ଫଳଲାଭ ହୋଇଥାଏ ।

(ଚରକ) ବାଗ୍‌ଭଟ କହିଛନ୍ତି ଯେ- ରସାୟନ ଅଭ୍ୟାସ କଲେ ଦୀର୍ଘାୟୁ, ସ୍ମୃତି, ମେଧା, ଆରୋଗ୍ୟ, ସ୍ଥିର ଯୌବନ ଦେହ ଓ ଓ ଇନ୍ଦ୍ରିୟମାନଙ୍କର ବଳ ଓ କାନ୍ତି ଲାଭ ହୁଏ । ଏହି ସବୁ ରସାୟନ ଅଭ୍ୟାସର ଚରମ ଫଳ ସମ୍ବନ୍ଧେ ଚରକ ଲେଖିଛନ୍ତି ଯେ- ଯଥାବିଧି ରସାୟନ ଅଭ୍ୟାସ ଦ୍ୱାରା ପୁରୁଷ ଯେ- କେବଳ ଦୀର୍ଘାୟୁ ଲାଭ କରେ, ତାହା ନୁହେଁ । କିନ୍ତୁ ଦେବତା ଓ ଋଷିମାନଙ୍କର ପରିଣାମରେ ଯେଉଁ ଗତି ହୁଏ, ରସାୟନ ସେବୀ ପୁରୁଷର ମଧ୍ୟ ସେହି ସଦ୍‌ଗତି ଲାଭ ହୋଇଥାଏ ଏବଂ ନିଧ ମଧ୍ୟ ଅକ୍ଷର ବ୍ରହ୍ମସାରୂପ୍ୟକୁ ପ୍ରାପ୍ତ ହୋଇ ପ୍ରକୃତ ସ୍ୱାସ୍ଥ୍ୟ ଲାଭକରେ ।

## ଆମର ଧର୍ମନିରପେକ୍ଷ ରାଷ୍ଟ୍ରର ବର୍ତ୍ତମାନ ସ୍ୱାସ୍ଥ୍ୟ ସମସ୍ୟା

ରାଷ୍ଟ୍ରୀୟ ଜ୍ଞାନ ବିଦ୍ୟାର ପରମଗୁରୁ, ମହାମନ୍ତ୍ରୀ ଚାଣକ୍ୟ ତାଙ୍କର ଅର୍ଥଶାସ୍ତ୍ରରେ ଲେଖିଛନ୍ତି ଯେ—

"ସୁଖସ୍ୟ ମୂଳଂ ଧର୍ମଃ ।୧। ଧର୍ମସ୍ୟ ମୂଳମର୍ଥଃ ।୨। ଅର୍ଥସ୍ୟ ମୂଳଂ ରାଜ୍ୟଂ ।୩। ରାଜ୍ୟସ୍ୟ ମୂଳମିନ୍ଦ୍ରିୟଜୟଃ ।୪। ଇନ୍ଦ୍ରିୟଜୟସ୍ୟ ମୂଳଂ ବିନୟଃ ।୫। ବିନୟସ୍ୟ ମୂଳଂ ବୃଦ୍ଧୋପସେବା ।୬। ବୃଦ୍ଧସେବାୟା ବିଜ୍ଞାନମ୍ ।୭। ବିଜ୍ଞାନେନ ଆତ୍ମାନଂ ସମ୍ପାଦୟେତ୍ ।୮। ସମ୍ପାଦିତାତ୍ମା ଜିତାତ୍ମା ଭବତି ।୯। ଜିତାତ୍ମା ସର୍ବାର୍ଥୈଃ ସଂଯୁଜ୍ୟେତ ।୧୦। ଅର୍ଥସମ୍ପତ୍ ପ୍ରକୃତି ସମ୍ପଦଂ କରୋତି ।୧୧। ପ୍ରକୃତି ସମ୍ପଦା ହ୍ୟନାୟକମପି ରାଜ୍ୟଂ ନୀୟତେ ।୧୨। ପ୍ରକୃତିକୋପଃ ସର୍ବକୋପେଭ୍ୟୋ ଗରୀୟାନ୍ ।୧୩।

ଅର୍ଥାତ ସୁଖ ବା ସ୍ୱାସ୍ଥ୍ୟର ମୂଳ ଅଟେ ଧର୍ମ । ଧର୍ମର ମୂଳ ଅଟେ ଅର୍ଥ । ଅର୍ଥର ମୂଳ ଅଟେ ରାଜ୍ୟ ବା ରାଷ୍ଟ୍ର । ରାଷ୍ଟ୍ରର ମୂଳ ଅଟେ ଇନ୍ଦ୍ରିୟଜୟ, ଇନ୍ଦ୍ରିୟ ଜୟର ମୂଳ ବିନୟ ବା ସତ୍‌ଶିକ୍ଷା ଓ ସତ୍‌ଶିକ୍ଷାର ମୂଳ ଜ୍ଞାନବୃଦ୍ଧମାନଙ୍କର ସେବା । ଜ୍ଞାନବୃଦ୍ଧମାନଙ୍କର ସେବାର ଫଳ ବିଜ୍ଞାନଲାଭ । ବିଜ୍ଞାନ ଲାଭ ଦ୍ୱାରା ଆତ୍ମ ପ୍ରତିଷ୍ଠା ସମ୍ପାଦିତ ହୁଏ । ଆତ୍ମ ପ୍ରତିଷ୍ଠା ସମ୍ପନ୍ନ ପୁରୁଷ ଜିତାତ୍ମା ହୁଏ । ଜିତାତ୍ମା ପୁରୁଷ ସର୍ବାର୍ଥ-

ସମ୍ପନ୍ନ ହୋଇ ଉଠେ । ଅର୍ଥ ସମ୍ପତ୍ତି ସୁଶିକ୍ଷିତ ପ୍ରଜା ସମ୍ପତ୍ତିକୁ ( ମନ୍ତ୍ରୀ, ସେନା, ମିତ୍ର ଆଦି ସମ୍ପତ୍ତିକୁ ) ଉତ୍ପାଦନ କରେ । ସୁଶିକ୍ଷିତ ପ୍ରଜାସମ୍ପତ୍ତି ଦ୍ୱାରା ନେତାରହିତ ରାଜ୍ୟ ମଧ୍ୟ ସୁପରିଚାଳିତ କରାଯାଇ ପାରେ । ପ୍ରଜାମାନଙ୍କର ପ୍ରକୋପ ବା ଆତ୍ମ ବିକ୍ଷୋଭ ସମସ୍ତ ପ୍ରକୋପଠାରୁ ବଳବାନ୍ ଅଟେ । ଅନ୍ୟ ସ୍ଥଳରେ ସେ ଏପରି କହନ୍ତି ଯେ- ସ୍ୱଧର୍ମଃ ସ୍ୱର୍ଗାୟ ଆନନ୍ତ୍ୟାୟ ଚ । ତସ୍ୟ ଅତିକ୍ରମେ ଲୋକଃ ସଙ୍କରାତ୍ ଉଚ୍ଛିଦ୍ୟେତ । ଅର୍ଥାତ୍ ସ୍ୱଧର୍ମାଚରଣ ସୁଖ ଓ ମୋକ୍ଷର ସାଧନ । ସ୍ୱଧର୍ମକୁ ଲଙ୍ଘନ କଲେ ବୃତ୍ତି ସଙ୍କରତା, ବର୍ଣ୍ଣ ସଙ୍କରତା ଉତ୍ପନ୍ନ ହୁଏ । ଯେଉଁଥିଲାଗି ପ୍ରଜାମାନେ ଉଚ୍ଛିନ୍ନ ହୋଇଯାନ୍ତି । ଏସବୁ ଉପଦେଶ ପ୍ରଥାସ୍ଥାନରେ ସେ ବିଶଦ ଭାବରେ ବ୍ୟାଖ୍ୟା ସମୟରେ ମଧ୍ୟ ଏହା ଲେଖିଛନ୍ତି ଯେ—

ତସ୍ମାତ୍ ସ୍ୱଧର୍ମଂ ଭୂତାନାଂ ରାଜା ନ ବ୍ୟଭିଚାରୟେତ୍
ସ୍ୱଧର୍ମଂ ସନ୍ଦଧାନୋ ହି ପ୍ରେତ୍ୟ ଚେହ ଚ ନନ୍ଦତି ॥
ବ୍ୟବସ୍ଥିତାର୍ଯ୍ୟମର୍ଯ୍ୟାଦଃ କୃତବର୍ଣ୍ଣାଶ୍ରମସ୍ଥିତିଃ
ତ୍ରୟ୍ୟା ହି ରକ୍ଷିତୋ ଲୋକଃ ପ୍ରସୀଦତି ନ ସୀଦତି ॥

ଏଥିପୂର୍ବେ ପ୍ରକାରାନ୍ତରରେ ଏହି କଥା କୁହାଯାଇଛି ଯେ- ଧର୍ମ ଓ ଅଧର୍ମ ସହିତ ସୁଖ ଦୁଃଖର ( ସ୍ୱାସ୍ଥ୍ୟ ଅସ୍ୱାସ୍ଥ୍ୟର ) ସୁଖ ଦୁଃଖ ସହିତ ଶରୀରର ଏବଂ ଶରୀର ସହିତ ରାଷ୍ଟ୍ରର ସମ୍ବନ୍ଧ ଘନିଷ୍ଠ ଅଟେ । ଯଦିବା ରାଷ୍ଟ୍ରୀୟ ସରକାର କିମ୍ବା ରାଷ୍ଟ୍ର ପ୍ରତିନିଧି ମନ୍ତ୍ରୀ ଯଦି ଧାର୍ମିକ ହୁଏ, ତା'ହେଲେ ପ୍ରଜାମାନେ ତା'ର ଅନୁଗାମିନୀ ହୋଇଥାନ୍ତି । ରାଷ୍ଟ୍ରର କର୍ଣ୍ଣଧାରମାନେ ଯେବେ ଧର୍ମ ନିରପେକ୍ଷ ହୁଅନ୍ତି, ତେବେ ପ୍ରଜାମାନେ ମଧ୍ୟ ସ୍ୱୀୟ ଧର୍ମକୁ ଉପେକ୍ଷା କରନ୍ତି ନାହିଁ । ସେଥିପାଇଁ ଶାସ୍ତ୍ରରେ ଲେଖାଅଛି ଯେ—

"ରାଜ୍ଞି ଧର୍ମିଣି ଧର୍ମିଷ୍ଠାଃ ପାପେ ପାପାଃ ସମେ ସମାଃ
ରାଜାନମନୁବର୍ତ୍ତନ୍ତେ ଯଥା ରାଜା ତଥା ପ୍ରଜାଃ ॥

ଗୀତାରେ ମଧ୍ୟ ଭଗବାନ୍ କହିଛନ୍ତି—

ଯଦ୍ ଯଦାଚରତି ଶ୍ରେଷ୍ଠ ସ୍ତତ୍ତଦେବେତରୋ ଜନଃ
ସ ଯତ୍ ପ୍ରମାଣଂ କୁରୁତେ ଲୋକସ୍ତଦନୁବର୍ତ୍ତତେ ॥

ଦୁଃଖର ବିଷୟ ଯେ- ଆଜି ଧର୍ମନିରପେକ୍ଷ ଆମର ଭାରତ ରାଷ୍ଟ୍ରର ସେହି

ପଟା ପଡ଼ିଛି । ନାନାଧର୍ମ ସଙ୍କୁଳ ଭାରତ ଆଜି ନାନା କାରଣରୁ ଆପଣାକୁ ଧର୍ମନିରପେକ୍ଷ ରାଷ୍ଟ୍ର ବୋଲି ଘୋଷଣା କରିବା ଯୋଗୁ ଭାରତୀୟ ପ୍ରଜାମାନେ ନିଜ ନିଜ ଧର୍ମର ଗଣ୍ଡି ଭେଦ କରି ଶରୀରରେ ତ ସଂସ୍କୃତି ବିଧି ନିଷେଧ ଲଙ୍ଘନ କରିଛନ୍ତି । ସାର୍ବଭୌମ ମାନବ ଧର୍ମ-ପ୍ରତିଷ୍ଠା ଏବେ କେବଳ କଥାରେ ହିଁ ରହିଛି । ଏଥି ପୂର୍ବେ ପ୍ରଜାମାନଙ୍କ ଭିତରେ ଯାହା କିଛି କାର୍ଯ୍ୟାକାର୍ଯ୍ୟ ବିଚାର ବୁଦ୍ଧି ଥିଲା, ତାହା ଏବେ ପ୍ରାୟ ଉଠିଯାଇଛି । ଅଭୋଜ୍ୟ ଭୋଜନ, ଅପେୟ ପାନ, ଅଗମ୍ୟାଗମନ, ଅକାର୍ଯ୍ୟକରଣ ଇତ୍ୟାଦିକୁ ଏବେ ପାପ କର୍ମ ବୋଲି ଅନେକାଂଶ ପ୍ରଜା ମଣୁନାହାନ୍ତି । ପାଶ୍ଚାତ୍ୟ ସଭ୍ୟତାର ବାହ୍ୟ ଅନୁକରଣ ଜନିତ ଅଭାବ ବୃଦ୍ଧି ଓ ଉତ୍କଟ ଭୋଗଲାଳସାର ମୋହରେ ପଡ଼ି ଏବେ ପ୍ରାୟ ସମସ୍ତ ପ୍ରଜା ଧର୍ମଭ୍ରଷ୍ଟ ଉଚ୍ଛୃଙ୍ଖଳ ହୋଇ ପଡ଼ିଛନ୍ତି । ସବୁ କ୍ଷେତ୍ରରେ ଅର୍ଥଲୋଲୁପତା ବେପାରର ବଞ୍ଚନାବୁଦ୍ଧି ହିଁ ପ୍ରାଧାନ୍ୟ ଲାଭକରିଛି । ତାହା ଯୋଗୁଁ ଏବଂ ଉତ୍କଟ ଅଭାବବୃଦ୍ଧି ଯୋଗୁଁ କାହାରିହେଲେ ଏବେ ମାନସିକ ସ୍ୱାସ୍ଥ୍ୟ ନାହିଁ । ଧର୍ମ ପରିବର୍ତ୍ତନ ସମସ୍ୟା, ସ୍ତ୍ରୀ ଓ ପୁରୁଷର ଶିକ୍ଷାସମସ୍ୟା, ଭାରତ ବିଭାଗସମସ୍ୟା, ସ୍ପୃଶ୍ୟାସ୍ପୃଶ୍ୟ ସମସ୍ୟା, ଶରଣାର୍ଥୀ ସମସ୍ୟା, ରାଷ୍ଟ୍ରଭାଷା ସମସ୍ୟା, ଦୁର୍ନୀତି ଦୂରୀକରଣ ସମସ୍ୟା, ଭୂଦାନ ସମସ୍ୟା, ପ୍ରଜାବୃଦ୍ଧି ଓ ଭାଗଚାଷ ସମସ୍ୟା ଇତ୍ୟାଦି ବହୁ ନେଇ ସମସ୍ତଙ୍କର ମନରେ ଏବେ ଅଶାନ୍ତି, ଅସ୍ୱାସ୍ଥ୍ୟ ଓ ଦୁଃଖରେ ଅଗ୍ନି ଜଳୁଛି । ଆଧ୍ୟାତ୍ମିକ ଜ୍ଞାନବର୍ଜନ, ଅର୍ଥକାମ ପ୍ରଧାନ ଭୌତିକବିଜ୍ଞାନ ଚର୍ଚ୍ଚା ଆଜି ସବୁ କ୍ଷେତ୍ରରେ ଆତ୍ମବିକ୍ଷୋଭ ସୃଷ୍ଟି କରିଛି । ସେଥିଲାଗି ଆଜି ସବୁଆଡେ ପ୍ରଜାସାଧାରଣର ଇନ୍ଦ୍ରିୟାର୍ଥର ଅଯୋଗ, ଅତି ଯୋଗ, ମିଥ୍ୟା ଯୋଗ, ବୁଦ୍ଧିର ଅଯୋଗ, ଅତିଯୋଗ, ମିଥ୍ୟା ଯୋଗ ଏବଂ ଏତଦ୍ଜନ୍ୟକାଳ ପରିଣାମର ଅଯୋଗ, ଅତିଯୋଗ, ମିଥ୍ୟା ଯୋଗ, ସବୁ କ୍ଷେତ୍ରରେ ଶାରୀରିକ ଓ ମାନସିକ ଅସ୍ୱାସ୍ଥ୍ୟର କାରଣ ହୋଇ ଉଠିଛି ।

## ( ୧ ) ଭୌତିକ ବିଜ୍ଞାନ ଓ ସ୍ୱାସ୍ଥ୍ୟ

ଭୌତିକ ବିଜ୍ଞାନର ଚରମ ଲକ୍ଷ୍ୟ ହେଉଛି- କାମିନୀ କାଞ୍ଚନାଦି ବସ୍ତୁମାନଙ୍କର ଅତ୍ୟଧିକ ସମ୍ଭୋଗ । ଏହାର ଉପକରଣ ସାମଗ୍ରୀ- ମତ୍ସ୍ୟ, ମାଂସ, ମଦ୍ୟ, ମୈଥୁନ ଓ ମୁଦ୍ରା । ଏହିସବୁ ବସ୍ତୁମାନଙ୍କର

ଅବାଧ ସମ୍ଭୋଗପାଇଁ ଏବଂ ଏହି ସମସ୍ତ ବସ୍ତୁ ସହଜାତ ବେଗରେ ପ୍ରସ୍ତୁତ କରିବା ପାଇଁ ନାନାପ୍ରକାରର ଖଣିଜ ପଦାର୍ଥର ଉତ୍ତୋଳନ, ବୈଜ୍ଞାନିକ ଯନ୍ତ୍ର ପ୍ରତିଷ୍ଠା ଓ ଶିଳ୍ପକଳାର ଉନ୍ନତି ଆବଶ୍ୟକ । ଏହିସବୁ ଉନ୍ନତି ସାଧନ ପ୍ରଚୁର ଅର୍ଥ ସାପେକ୍ଷ । ସେହିପରି ଅର୍ଥ ସଞ୍ଚୟ କରିବାକୁ ହେଲେ ବାଣିଜ୍ୟ ବ୍ୟାପାର ଆବଶ୍ୟକ । ସେହି ବ୍ୟାପାର କୌଶଳରେ ଅନ୍ୟର ରକ୍ତ ଶୋଷଣ କରିବାକୁ ହେଲେ କଳ କାରଖାନାର ପ୍ରତିଷ୍ଠା ଆବଶ୍ୟକ । ସେଥିରେ ସେହି କଳକାରଖାନା ଜନିତ ପାପକୁ * ଘୋଡ଼ାଇବା ପାଇଁ ସେନାବଳ, ଯୁଦ୍ଧୋପକରଣ ଓ ଶସ୍ତ୍ରାସ୍ତ୍ର ବିଜ୍ଞାନ ଆବଶ୍ୟକ । ଏବଂ ସେମିତି ସବୁ ପାପକର୍ମକୁ ଘୋଡ଼ାଇ ରଖି ପୁଣି କୌଶଳରେ ପ୍ରଜାମାନଙ୍କର ରକ୍ତ ଶୋଷଣ କରିବାକୁ ହେଲେ ବୁଦ୍ଧ, ଅଶୋକ, ଗାନ୍ଧି ଓ ଟଲଷ୍ଟୟ ପ୍ରଭୃତି ମହାତ୍ମାମାନଙ୍କ ନାମ ଧରି ଆପାତ ରମଣୀୟ ବକ୍ତୃତା କୌଶଳରେ ଓ ବେଶ୍ୟା ବୁଦ୍ଧିର ପ୍ରୟୋଗରେ ସମାଜତନ୍ତ୍ର, ଗଣତନ୍ତ୍ର, ପ୍ରଜାତନ୍ତ୍ର ଓ ସାମ୍ୟବାଦ ପ୍ରଭୃତିର ପ୍ରଚାର ଆବଶ୍ୟକ । ଅନ୍ୟଥା ଏହି କଳ କାଳି ଝଞ୍ଜା ବ୍ୟତିରେକେ ସ୍ୱାର୍ଥସିଦ୍ଧି ହୋଇପାରେ ନା । ତଥାପି ଏହିସବୁ ଭୌତିକ ଉନ୍ନତିର ପରିଣାମ ଫଳ କେବଳ ବେଦନାର ବନ୍ୟା । ଏଥିଲାଗି ହିଁ ଆଜି ସଂସାରରେ ଅଶାନ୍ତି, କଳହ, ଯୁଦ୍ଧ, ରୋଗ ଓ ଦୁର୍ଭିକ୍ଷର ବିଭୀଷିକା ପଡ଼ୁଅଛି ବଢ଼ିଛି ।

ଏହି ଆଧୁନିକ ବୈଜ୍ଞାନିକ ଭୋଗବାଦର ଜନ୍ମଭୂମି ପାଶ୍ଚାତ୍ୟ ଭୂଖଣ୍ଡ । ଏବେ ସେହି ଦେଶରୁ ହିଁ ଏହାକୁ ଘୃଣା କରିବା ପାଇଁ, ଏହାର ଅନିଷ୍ଟକର ପରିଣାମ ଜନସାଧାରଣଙ୍କୁ ବୁଝାଇବା ପାଇଁ ସେଠାରେ ଅନେକ ବିଦ୍ୱାନ୍ ଜନ୍ମ ହୋଇ ଅନେକ ଗ୍ରନ୍ଥ ଲେଖିଛନ୍ତି ।

<u>ଜର୍ମାନ ନିବାସୀ ଏଡ୍‌ଲଫ୍ ଜଷ୍ଟ ନାମକ ଜଣେ ବିଦ୍ୱାନ୍ "ରିଟର୍ଣ୍ଣ ଟୁ ନେଚର"</u>

---

* କଳ କାରଖାନା ପ୍ରଭୃତି ବଡ଼ ବଡ଼ ଯନ୍ତ୍ର ପ୍ରତିଷ୍ଠା କରିବା ଏବଂ ମୃତ୍ତିକାର ଧାରକ ଖନିଜ ପଦାର୍ଥମାନଙ୍କୁ ଅଧିକ ପରିମାଣରେ ବାହାର କରି ନେବା ଏବଂ ଅଧିକ ଶସ୍ୟୋତ୍ପାଦନ ପାଇଁ ବନବୃକ୍ଷମାନଙ୍କୁ ଉଚ୍ଛେଦନ କରିବା ଏହି ସବୁ ପାପକର୍ମ ବୋଲି ମନୁ ଲେଖିଛନ୍ତି । ( ୧୦୪ ପୃଷ୍ଠାର ଟିପ୍ପଣୀ ଦେଖ ) ଏବଂ ଏହି କଳକାରଖାନାର ପରିଣତି ସମ୍ବନ୍ଧେ ୟୁରୋପୀୟ ବିଦ୍ୱାନ୍‌ମାନଙ୍କର ଅଭିପ୍ରାୟ ୭୭ ପୃଷ୍ଠାରେ ଦେଖ ।

ଏପରି କୌଣସି ବେପାର ନାହିଁ ଯେ କି ରୋଗୀ ବା ଦୁର୍ବଳ ନୁହେଁ । ସ୍ୱାସ୍ଥ୍ୟପୀଡ଼ା ପୃଥିବୀରେ ନର୍କର ସ୍ଥାନ ସୃଷ୍ଟି କରୁଛି ।

(୭) ଆଜି ଅନେକ ଟ୍ରମ୍‌ଗାଡ଼ି କୋଇଲା ପ୍ରଭୃତି ଖଣିମାନଙ୍କର ବିଷାକ୍ତ ବାଷ୍ପ, କଳକାରଖାନାର ଧୂଆଁ, ଏବଂ ମାନବନିର୍ମିତ ଯନ୍ତ୍ରମାନଙ୍କର ସଂସର୍ଗରୁ ଆମ ଶରୀରର ସ୍ୱାସ୍ଥ୍ୟ ଓ ସ୍ୱାଧୀନତାକୁ ବଳିଦେଇ ବସିଛନ୍ତି । ବିଜୁଳିର ଆଲୋକ ଦୃଷ୍ଟି ଶକ୍ତିକୁ ଦୁର୍ବଳ କରିଦେଉଛି ।

ଏହିଭଳି ଅନ୍ୟାନ୍ୟ ପାଶ୍ଚାତ୍ୟ ବିଦ୍ୱାନ୍‌ମାନଙ୍କର ଭୌତିକ ବିଜ୍ଞାନ ପ୍ରତି ଭାବପରିବର୍ତ୍ତନ ଦେଖି ମହାତ୍ମାଗାନ୍ଧୀ ତାଙ୍କର ଗୁଜୁରାଟୀ "ନବଜୀବନ" ପତ୍ରିକାରେ ତା ୨୧।୧୦।୧୯୨୮ ରେ ଲେଖିଥିଲେ ଯେ- "ପଶ୍ଚିମ ଦେଶର ଭୌତିକ ଉନ୍ନତି ଦାବି ଯାହାକୁ ଆଶ୍ଚର୍ଯ୍ୟ ଦେଖାଇଅଛନ୍ତି, ସେହି ସମସ୍ତ ଏବେ ତ୍ୟାଜ୍ୟ ବୋଲି ସେ ଦେଶର ଲୋକେ ବୁଝିଲେଣି । ସେମାନେ ଏବେ ଭାରତର ପ୍ରାଚୀନ ରୀତି ନୀତିକୁ ହିଁ ପସନ୍ଦ କରିବାରେ ଲାଗିଛନ୍ତି । ସେମାନଙ୍କର ନାସ୍ତିକତା ଏବେ ଧୀରେ ଧୀରେ ଦୂର ହେଉଛି । ସେ ଦେଶର ବଡ଼ ବଡ଼ ବୈଜ୍ଞାନିକମାନେ ଏବେ ଈଶ୍ୱର, ଜୀବ, ଧର୍ମ ସମ୍ବନ୍ଧରେ ( ସାଇନସ ଆଣ୍ଡ ରିଲିଜନ ) ବିଷୟ ପୂର୍ଣ୍ଣ ଗ୍ରନ୍ଥ ପ୍ରକାଶନ କରି ଜଡ଼ବାଦ କଳୁଷିତ ବୈଜ୍ଞାନିକ ଜଗତରେ ନୂତନ ଆଲୋକ ବିସ୍ତାର କରିବାରେ ଲାଗିଛନ୍ତି । କିନ୍ତୁ ଆମର ଧର୍ମ ନିରପେକ୍ଷ ଭାରତ ରାଷ୍ଟ୍ର ଏବେ ବୁଦ୍ଧି ଦୋଷରୁ ସେହି ପାପଗର୍ତ୍ତ ଆଡ଼କୁ ଧାଉଁଛି ।

## (୨) ଭାରତର ଜନସଂଖ୍ୟା ଓ ସ୍ୱାସ୍ଥ୍ୟ

ଜନଗଣନା ହିସାବରୁ ଜଣାଯାଏ ଯେ- ବର୍ତ୍ତମାନ ଆମର ଖଣ୍ଡିତ ଭାରତର ଜନସଂଖ୍ୟା ୩୭ କୋଟି ଏବଂ ଗ୍ରାମ ସଂଖ୍ୟା ୭ ଲକ୍ଷ । ଭାରତବର୍ଷରେ ଶତକଡ଼ା ୯୨ ନାଗରିକ ଘୋର ଦରିଦ୍ର ଅଭାବଗ୍ରସ୍ତ । ଏଥିରେ ୩୦ କୋଟି ଲୋକ ନିରକ୍ଷର ମୂର୍ଖ । ସରକାରୀ ରିପୋର୍ଟରୁ ଜଣାଯାଏ ଯେ- ଏଦେଶରେ ପ୍ରତିବର୍ଷ ୨୫ ଲକ୍ଷ ଲୋକ କ୍ଷୟରୋଗରେ ପୀଡ଼ିତ ହୁଅନ୍ତି, ସେଥିରୁ ୫ ଲକ୍ଷ ଲୋକ ମରନ୍ତି । ଏହିପରି ମ୍ୟାଲେରିଆ ଜ୍ୱରରେ ପ୍ରତିବର୍ଷ ୧୦ କୋଟି ଲୋକ ପୀଡ଼ିତ ହୁଅନ୍ତି, ସେଥିରୁ ୧୦ ଲକ୍ଷରୁ ଅଧିକ ଲୋକ ମରନ୍ତି । ବର୍ତ୍ତମାନ ଭାରତରେ କୁଷ୍ଠରୋଗିମାନଙ୍କର ସଂଖ୍ୟା ୧୦ ଲକ୍ଷ, ଏ ବାଦେ କ୍ୟାନସର ପ୍ରଭୃତି ଘାତକ ରୋଗମାନଙ୍କର

ସଂଖ୍ୟା ଲକ୍ଷ ଲକ୍ଷ । ଏହାର ପରେ ବିସୂଚୀ ବସନ୍ତାଦି ରୋଗରେ, ଏବଂ ଇନ୍‌ଫ୍ଲୁଏଞ୍ଜା ନିଉମୋନିଆ ରୋଗରେ ଭାରତବର୍ଷ ଏ ଦେଶରେ ଲକ୍ଷ ଲକ୍ଷ ଲୋକ ମରୁଅଛନ୍ତି । ଶିଶୁ ମୃତ୍ୟୁ, ଦୁର୍ଘଟଣା ଜନିତ ଅପମୃତ୍ୟୁର ସଂଖ୍ୟା ନାହିଁ । ଅଧିକାଂଶ ଲୋକ ବଳ ବୀର୍ଯ୍ୟହୀନ ହତଶ୍ରୀ ଓ ନିସ୍ତେଜ । ଆମ ଦେଶର ଶତକଡ଼ା ୮୫ ଲୋକ ଗ୍ରାମରେ ବାସ କରନ୍ତି ।

## ଗ୍ରାମବାସୀଙ୍କ ଅସ୍ୱାସ୍ଥ୍ୟର କାରଣ

(୧) ଦରିଦ୍ରତା, ଅପରିମିତାହାର, ଧୂମପାନ ଓ ନିଶା ସେବନ ।

(୨) ଅନିର୍ମଳ ଗୃହ, ଅନିର୍ମଳ ବାୟୁ ଓ ଆଲୋକାଭାବ ।

(୩) ସ୍ନାନ ଓ ପାନ ନିମନ୍ତେ ନିର୍ମଳ ଜଳର ଅଭାବ ।

(୪) ଯେ କୌଣସି ସ୍ଥାନରେ ମଳମୂତ୍ର ତ୍ୟାଗ କରିବାର କୁଅଭ୍ୟାସ ।

(୫) ସଡ଼କ ଓ ଜଳନିଷ୍କାସନର ଅଭାବ ।

(୬) ସ୍ୱାସ୍ଥ୍ୟରକ୍ଷା ସମ୍ବନ୍ଧୀୟ ନିୟମ ଜ୍ଞାନର ଅଭାବ ।

(୭) ଉପଯୁକ୍ତ ଚିକିତ୍ସା ସୁବିଧାର ଅଭାବ ।

## ସର୍ବସାଧାରଣର ସ୍ୱାସ୍ଥ୍ୟହାନିର କାରଣ

### (କ) ହୋଟେଲ ଭୋଜନ ଓ ସ୍ୱାସ୍ଥ୍ୟ

ଜଣେ ଶ୍ରୀ ଅନୁଭବୀ ବୈଦ୍ୟ ଆମଦେଶର ହୋଟେଲ ଭୋଜନର ମନ୍ଦ ଫଳ ପ୍ରତ୍ୟକ୍ଷ କରି ଠିକ୍ କହିଛନ୍ତି —

"ସର୍ବେଷାମେବ ରୋଗାଣାଂ ନିଦାନଂ ହୋଟେଲ ପ୍ରଥା
ତତ୍ ପ୍ରକୋପମାତ୍ରେ ଯୋକ୍ତୁଂ ସର୍ବଥାହିତ ସେବନମ୍ ॥

ସମସ୍ତେ ଏହା ଜାଣନ୍ତି ଯେ- ହୋଟେଲ ପ୍ରଥା ଆମଦେଶର ନୁହେ । ଯେଉଁ ଦେଶରେ ଜାତିଭେଦ ନାହିଁ, ଖାଦ୍ୟାଖାଦ୍ୟ ବିଚାର ନାହିଁ, ଏହି ପ୍ରଥା ସେ ଦେଶର । ଇଂରେଜମାନେ ଏଠାକୁ ଆସିବା ପୂର୍ବେ ଏଦେଶରେ ଭାତ ବିକିବାର ପ୍ରଥା ନଥିଲା, ଗ୍ରାମେ ଗ୍ରାମେ ମଠ ମନ୍ଦିରମାନଙ୍କରେ ସର୍ବଦା ଅନ୍ନଦାନ କରିବାର ବ୍ୟବସ୍ଥା ଥିଲା । ଏବେ କାଳର ପ୍ରଭାବରୁ ଆମଦେଶର ପ୍ରକୃତି ବିରୁଦ୍ଧ ଏହି ସ୍ୱାସ୍ଥ୍ୟ ହାନିକର ଭୋଜନ ପ୍ରଥା ପ୍ରବର୍ତ୍ତିତ ହେଲା । ଏଥିଲାଗି ମାଛ, ମାଂସ ପ୍ରଭୃତି ଅସାତ୍ତ୍ୱିକ ଖାଦ୍ୟ ଖାଇବାର ପ୍ରବୃତ୍ତି ବଢିଲା । ଏବେ ଆମଦେଶର ଅଧିକାଂଶ ଧନୀ ଓ ଦରିଦ୍ରମାନଙ୍କର

କାରଣ ହୋଇଥିବ, ସେଇପରି ଏବେ ଆମଦେଶରେ ଚାହା ସେବନାଭ୍ୟାସର କାରଣ ହୋଇଅଛି । ଆମଦେଶରେ ସାଧାରଣ ଲୋକ ଆଜିକାଲି ଚାହା ପିଇବାରେ ଏତେ ଅଭ୍ୟସ୍ତ ହୋଇଗଲେଣି ଯେ- ଚାହା ଅଭ୍ୟାସ ଭଲ କି ମନ୍ଦ ଏହି ବିବେକ ମଧ୍ୟ କାହାରି ଏବେ ନାହିଁ । ଚାହା ଦ୍ୱାରା ଦେଶରେ କିପରି ରୋଗ ପ୍ରସାରିତ ହୁଏ ଏବଂ ଦରିଦ୍ରତା ଓ ଦୁର୍ବଳତା କିପରି ବଢେ, ତା'ର ହିସାବ କେହି ଦେଖନ୍ତି ନାହିଁ। ଏହି ଚାହା ପିଇବାର ଶୌକିନ କେବଳ ସେଇମାନଙ୍କୁ ଖରାପ କରେନାହିଁ, ସେଇମାନଙ୍କ ଯୋଗୁଁ କି ଏହି ଦେଶରେ ସହସ୍ର ସହସ୍ର ଶିଶୁ ଅକାଳରେ ମୃତ୍ୟୁ ମୁଖରେ ପଡ଼ୁଥାନ୍ତି ।

ଟିକିଏ ଭାବିଲେ ଏହିକଥା ସମସ୍ତେ ବୁଝିପାରିବେ ଯେ- ଏହି ଚାହା ଦ୍ୱାରା ରୋଗ କେତେ ସବୁଆଡ଼େ ହୁଏ, ଦରିଦ୍ରତା ଓ ଦୁର୍ବଳତା କେତେ ବଢେ, ଏବଂ ଲୋକ କିପରି ଏହି ଦୁରଭ୍ୟାସର ଅଧୀନହୋଇ ପଡ଼େ। ଦେଖନ୍ତୁ ଯେ- ଯଦି ଜଣେ ପଡ଼ୋଶୀ ଘରେ କେହି ଚାହା ପିଉଥାଏ, ଏବଂ ଥରେ ଅନ୍ୟ ତା'ର ସ୍ୱାଦ ବନ୍ଧୁଭାବରେ କାହାକୁ ଚାଖିବାକୁ ମିଳେଯାଏ, ତାହେଲେ ଶେଷରେ ସେ ଆପଣା ଘରେ ଚାହା ପ୍ରସ୍ତୁତ କରିବାରେ ଲାଗେ । ତା'ର ପରେ ଚାହାର ମଜା ତାକୁ ଏପରି ଧରିନିଏ ଯେ- ସେ ଚାହା ନ ପିଇଲେ ଆଉ ରହିପାରେ ନାହିଁ, ଅତିଥି ସତ୍କାରରେ ମଧ୍ୟ ଚାହା ପିଇବା ଓ ପିଆଇବା ତା'ର ଅନିବାର୍ଯ୍ୟ ହୋଇଥାଏ । ଏଥିରେ ସାଧାରଣ ଗୃହସ୍ଥର ପ୍ରତି ମାସରେ ଟ ୧୫ ଙ୍କାରୁ କମ ଖର୍ଚ୍ଚ ହୁଏ ନାହିଁ । ବଡ଼ ବଡ଼ ବାବୁମାନଙ୍କର ତ ଏଥିପାଇଁ ପ୍ରତି ମାସରେ ଶହେ ଶହ ଟଙ୍କା ଉଡ଼ିଯାଏ । ଯା'ର ମାସରେ ଚାହା ଖର୍ଚ୍ଚ ଶହେ ଟଙ୍କା ନ ହେଲା- ସେ କି ବାବୁ ? ଏହି ଚାହା ପାଇଁ ସହରର ଆଖପାଖ ୧୦ । ୧୨ ମାଇଲର ଦୁଧ ହୋଟେଲକୁ ଚାଲିଯାଏ । ତେବେ ଆଉ ଶିଶୁମାନଙ୍କୁ ବଞ୍ଚାଇବା ପାଇଁ ଏବଂ ଦେବପୂଜା, ପିତୃପୂଜା, ଅତିଥି ସତ୍କାର ଓ ରୋଗୀର ପଥ୍ୟପାଇଁ ଦୁଧ ମିଳିବ କେଉଁଠାରୁ ? ଏବଂ ଦୁଧ ଅଭାବରେ ଦହି, ଲହୁଣୀ, ଛେନା ଓ ଘିଅ ବାହାରିବ କାହାଠାରୁ ? ଏହିସବୁ କାରଣରୁ ସବୁଆଡ଼େ ଚାହା ଦୋକାନ ଯେତିକି ଯେତିକି ବଢୁଛି,

ସେତିକି ସେତିକି ଘୃତାଦିର ଅଭାବ ଯୋଗୁଁ * ହିଂସାମୂଳକ ମାଂସ ଓ ଡିମ୍ବପ୍ରଭୃତି ରାଜସ ଓ ତାମସ ଖାଦ୍ୟ ଖାଇବାର ପ୍ରବୃତ୍ତି ଲୋକଙ୍କ ମଧ୍ୟରେ ବଢ଼ିଛି । ବିଶୁଦ୍ଧ ଖାଦ୍ୟର ଅଭାବ ଓ ଔଷଧର ଅଭାବରୁ ଜନସାଧାରଣର ବୁଦ୍ଧି ମଧ୍ୟ ହିତାହିତ ବିଚାରଶୂନ୍ୟ ହୋଇପଡ଼ିଛି । ରୋଗୀମାନଙ୍କୁ ପୁଷ୍ଟିକର ଔଷଧ ଓ ଖାଦ୍ୟ ମିଳପାରୁ ନାହିଁ । ଅବଶ୍ୟ ଭୋଟ ପ୍ରାର୍ଥୀ ବାବୁମାନେ ସମୟ ସମୟରେ ସ୍ୱାର୍ଥସିଦ୍ଧି ପାଇଁ ଦୁଧ ଦହିରେ ଏମିତି ଦେଶକୁ ଭସାଇଦେବୁ ବୋଲି ବକ୍ତୃତାଦେଇ ଲୋକଙ୍କ ଆଖିରେ ଧୂଳିଦେଇ ଯାଉଛନ୍ତି- କିନ୍ତୁ ବାସ୍ତବରେ ଦେଖିଲେ ଏବେ ହେଉଛି କ'ଣ ? ଚାହା ହୋଟେଲ ଯୋଗୁଁ ଏବେ ମନୁଆନ୍ତି—

"ଘୃତଂ ନ ଶ୍ରୂୟତେ କର୍ଣ୍ଣେ ଦଧି ସ୍ୱପ୍ନେ ନ ଦୃଶ୍ୟତେ
ମୁଗ୍ଧସ୍ୟ ଦୁଗ୍ଧସ୍ୟ କା ବାର୍ତ୍ତା ତକ୍ରଂ ଶକ୍ରସ୍ୟ ଦୁର୍ଲଭମ୍

## ଚାହା ପାନ ଓ ହୋଟେଲ ଭୋଜନ ରୋଗବ୍ୟାଧିର କାରଣ

ଚାହା ହୋଟେଲକୁ ଗଲେ ଜଣାଯାଏ ଯେ- ଚାହା ଯେପରି ପ୍ରସ୍ତୁତ କରିବାର ନିୟମ, ତାକୁ ସେଇପରି ଭାବରେ ହୋଟେଲବାଲା ପ୍ରସ୍ତୁତ କରନ୍ତି ନାହିଁ । ଅଧିକ ସମୟ ସିଝାଇ ଦିଏ । ଅନେକ ସ୍ଥଳରେ ଚାହା ଓ ପାଣି ଏକାଠି ଗୋଟିଏ ହାଣ୍ଡିରେ ସିଝୁଥାଏ, ଆବଶ୍ୟକ ହେଲେ ସେଥିରୁ ଅଳ୍ପ ଅଳ୍ପ ଗ୍ଲାସିନେଇ ତହିଁରେ ଟିକିଏ ଦୁଧ ଚିନି ମିଶାଇ ଲୋକଙ୍କୁ ପିଇବାକୁ ଦିଆଯାଏ । ଏହିଭଳି ଭାବରେ ପ୍ରସ୍ତୁତ ଚାହା ବିଶେଷ ଅନିଷ୍ଟ କରେ । ଏହିଭଳି ଚାହା ଦିନମଧ୍ୟରେ ଅଧିକ ଥର କିମ୍ବା ଦୀର୍ଘକାଳ ପିଇଲେ ଆମାଶୟ ସଙ୍କୁଚିତ ହୋଇ ଅଗ୍ନିମାନ୍ଦ୍ୟ, ଅମ୍ଳପିତ୍ତ ଓ ଅନିଦ୍ରା ଆଦି ରୋଗ ଜନ୍ମେ, କିଛିଦିନ ପରେ ହାତ ପାଦ ଥରେ ଏବଂ ମୁଖ ବିବର୍ଣ୍ଣ ଦେଖାଯାଏ । ଏହାଦେ

---

* ରାଷ୍ଟ୍ରନୀତି ବିଦ୍ୟାର ଉପଦେଷ୍ଟା ଚାଣକ୍ୟ ମଧ୍ୟ ତାଙ୍କର ଅର୍ଥଶାସ୍ତ୍ରରେ ରାଷ୍ଟ୍ରର ସୁରକ୍ଷା ନିମନ୍ତେ ଉପଦେଶ ଦେଇଛନ୍ତି ଯେ- "ଅହିଂସା ଲକ୍ଷଣୋ ଧର୍ମଃ । ୫୬୧ । ପରଶରୀରମପି ସ୍ୱଶରୀରଂ ମନ୍ୟତେ ସାଧୁଃ । ୫୬୨ । ମାଂସ ଭକ୍ଷଣମ୍ ଅଯୁକ୍ତଂ ସର୍ବେଷାମ୍ । ୫୬୩ କୃମିଶକୃତ୍ ମୂତ୍ରଭାଜନଂ ଶରୀରଂ ପୁଣ୍ୟପାପଜନ୍ମ ହେତୁଃ । ୫୬୭ । ଜନ୍ମଜରା ମରଣେଷୁ ଦୁଃଖମେବ । ୫୬୮ । ତପସା ସ୍ୱର୍ଗମାପ୍ନୋତି । ୫୬୯ । କ୍ଷମାଯୁକ୍ତସ୍ୟ ତପୋ ବିବର୍ଦ୍ଧତେ ।୫୭୦ । ତସ୍ମାତ୍ କାର୍ଯ୍ୟସିଦ୍ଧିର୍ଭବତି । ୫୭୧ ।

ହୋଟେଲବାଲା ଚାହା ପିଆ ସରିବାପରେ ସେହିସବୁ ଅଇଁଠା ଗ୍ଲାସଗୁଡ଼ିକୁ ନେଇ ଗୋଟିଏ ବାଲ୍ଟିରେ ରଖାଯାଇଥିବା ପାଣିରେ ଥରେ ବୁଡ଼ାଇଦେଇ ପୁଣି ଏ ଟେବୁଲ କନାରେ ତାକୁ ପୋଛିଦେଇ ସେଥିରେ ଅନ୍ୟମାନଙ୍କୁ ଚାହା ଦିଏ । ଚାହାପିଆ ସରିବା ପରେ ପୁଣି ସେଇ ବାଲ୍ଟିରେ ଥରେ ବୁଡ଼ାଇ ସେଇ କନାରେ ପୋଛି ଅନ୍ୟମାନଙ୍କୁ ସେଥିରେ ଚାହା ପରିବେଷଣ କରେ । ଏମିତିକା ସାରାଦିନ ରାତି ଏହି କାମ ଚାଲିଥାଏ । ଚାହା ହୋଟେଲ ତ ସମସ୍ତଙ୍କ ପାଇଁ ଅବାରିତ ଦ୍ୱାର, ଏଥିରେ ଜାତି ବିଚାର ନାହିଁ, ଛୁଆଁ ଅଛୁଆଁ ବିଚାର ନାହିଁ, ରୋଗୀ ନିରୋଗ ବିଚାର ନାହିଁ । ଏଥିରେ ସମସ୍ତଙ୍କର ଆସନ ଓ ପାନ ପାତ୍ର ସମାନ । ଏହିପରି ବ୍ୟବସ୍ଥାରେ ସଂକ୍ରାମକ ରୋଗମାନଙ୍କର ସଂସର୍ଗ ଯେ ହେଉପର ସ୍ଥଳରେ ହୁଏଉଛି, ତାହା ଏଠାରେ କହିବା ବାହୁଲ୍ୟ ମାତ୍ର ।

ଆୟୁର୍ବେଦ ସୁଶ୍ରୁତ ରୋଗ ସଂକ୍ରମଣରେ ପ୍ରକାର ଏହିପରି ବର୍ଣ୍ଣନା କରିଛନ୍ତି ଯଥା—

"ପ୍ରସଙ୍ଗାତ୍ ଗାତ୍ରସଂସ୍ପର୍ଶାତ୍ ନିଃଶ୍ୱାସାତ୍ ସହଭୋଜନାତ୍
ସହଶଯ୍ୟାସନାଚ୍ଚୈବ ବସ୍ତ୍ରମାଲ୍ୟାନୁଲେପନାତ୍ ॥
କୁଷ୍ଠଂ ଜ୍ୱରଶ୍ଚ ଶୋଷଶ୍ଚ ନେତ୍ରାଭିଷ୍ୟନ୍ଦ ଏବ ଚ
ଔପସର୍ଗିକ ରୋଗାଶ୍ଚ ସଂକ୍ରାମନ୍ତି ନରାନ୍ନରମ୍ ॥ [ସୁ. ନି. ୫ ଅ.]

ଆଜିକାଲି ଭାରତର ମହାଆଡ଼ମ୍ବ ମସୃଣଘାଟ ବ୍ୟାପିବାର ଗୋଟିଏ କାରଣ ହେଉଛି— ଏହି ଚାହା ହୋଟେଲ । ଆଉ ଚାହାର ମହିମା ଦେଖନ୍ତୁ ଯେ— ଅନେକ ଲୋକ ସକାଳୁ ଥରେ ଚାହା ନପିଇଲେ ଶୌଚକୁ ଉଠନ୍ତି ନାହିଁ । କାହାରି କାହାରି ଚାହା ନପିଇଲେ ଆଦୌ ଝାଡ଼ା ସଫା ହୁଏନାହିଁ । କାହାରି କାହାରି କାମ କରିବା ପାଇଁ ସ୍ଫୁର୍ତ୍ତି ଆସେ ନାହିଁ । ଅନେକ ଲୋକ ଚାହା ନପିଇଲେ ମଡ଼ାପରି ପଡ଼ି ରହନ୍ତି । ଚାହା ହୋଟେଲ ଆମଦେଶରେ ଖୋଲିଲା ଦିନଠାରୁ ଚାଷୀ ମୂଲିଆ ଆଦି ସେମାନଙ୍କର ବାସିପଖାଳ ମାଣ୍ଡିଆଜାଉ ଓ ମୁଢ଼ି ପ୍ରଭୃତି ଜଳଖିଆ ଖାଇବାର ଅଭ୍ୟାସ ଛାଡ଼ିଦେଲେଣି, ଅନେକ ମୂଲିଆ ସକାଳୁ ଚାହା ଥରେ ଖାଇ କାମରେ ଲାଗନ୍ତି ଭୋକହେଲେ ପୁଣିଥରେ ହୋଟେଲକୁ ଯାଇ ଆଉ ଥରେ ଚାହା ପିଇ ଭୋକିଲା ପେଟରେ କାମରେ ଲାଗନ୍ତି । ଏଥିଦ୍ୱାରା ସେମାନଙ୍କର ଅଗ୍ନି ମରିଯାଏ । ଶରୀର ଦିନକୁ ଦିନ ଦୁର୍ବଳ ଓ କ୍ଷୀଣ ହୋଇ ଯକ୍ଷ୍ମାରୋଗର

କ୍ଷୀଣ ହୋଇପଡ଼େ । ଲୋକଙ୍କର ତାହା ଅଭ୍ୟାସ ବଢ଼ିବା ଯୋଗୁଁ କୌଣସିଠାରେ ଏବେ ଭଲ ଦୁଧ ଟିକିଏ ମିଳୁନାହିଁ । ସବୁଆଡେ ପାଣିରେ ଟିକିଏ ଦୁଧ ମିଶାଇ ବିକାହେଉଛି । ପୁଷ୍ଟିକର ଖାଦ୍ୟର ଅଭାବ ଓ ଅର୍ଥକ୍ଷୟ ହେତୁରୁ ଦିନକୁ ଦିନ କ୍ଷୟରୋଗ ବଢ଼ିବାରେ ଲାଗିଛି । ଅବଶ୍ୟ ଆମର ସରକାର କ୍ଷୟରୋଗର ପ୍ରତିକାର ନିମନ୍ତେ ପ୍ରତିବର୍ଷ ଅର୍ବୁଦ ଅର୍ବୁଦ ଟଙ୍କା ଖର୍ଚ୍ଚ କରୁଛନ୍ତି । ଏବଂ ଟି. ବି. ହାସ୍ପିଟାଲ୍ ଖୋଲୁଛନ୍ତି । କିନ୍ତୁ କ୍ଷୟରୋଗର କାରଣ କ'ଣ ? ଏବଂ ତା'ର ପ୍ରତିକାରର ପ୍ରକୃତ ଉପାୟ କଣ ? ତାହା ଆୟୁର୍ବେଦ ଜ୍ଞାନର ଅଭାବରୁ କିମ୍ବା ବିଦେଶୀ ସଭ୍ୟତାର ମୋହରୁ ବୁଝିପାରୁନାହାନ୍ତି । ସରକାର ଯଦି ଏହା ଭଲରୂପେ ବୁଝନ୍ତା'ନ୍ତେ, ତାହେଲେ ମଦ, ଅଫିମ, ଗଞ୍ଜେଇ ଓ ଭାଙ୍ଗ ଅଭ୍ୟାସ ଛଡ଼ାଇବା ପାଇଁ ଯେପରି ଚେଷ୍ଟା କରାଯାଉଛି ସେହିପରି ଏହି ମିଠାବିଷର ଅଭ୍ୟାସ ଛଡ଼ାଇବା ପାଇଁ ମଧ୍ୟ ଯତ୍ନ କରାଯାଇଥାନ୍ତା ।

ନବଭାରତ ଟାଇମ୍ସ୍ ତା ୨୧ । ୧୨ । ୫୬ ରେ ପ୍ରକାଶିତ ରିପୋର୍ଟରୁ ଜଣାଯାଏ ଯେ- ଭାରତରେ ଗୁଡ଼ ଉତ୍ପାଦନର କ୍ଷେତ୍ରଫଳ ୭ ଲକ୍ଷ ୭୪ ହଜାର ୭୨୧ ଏକର ଭୂମି, ଉତ୍ପାଦନ ଆୟ- ୫୮ କୋଟି ୮୭ ଲକ୍ଷ ୭୪ ହଜାର ପାଉଣ୍ଡ । ଏହାର ପରେ ଦେଖନ୍ତୁ—

## (୪) ତମାଖୁ ସେବନ, ଧୂମ୍ରପାନ ଓ ସ୍ୱାସ୍ଥ୍ୟ

ବଟେଭୀକାଃ ପୁରା ପୃଷ୍ଟବାନ୍ ପଦ୍ମଯୋନିମ୍
ଧରଣୀତଳେ ସାରଭୂତଂ କିମସ୍ତି ॥
ଚତୁର୍ଭିର୍ମୁଖୈରିତ୍ୟବୋଚତ୍ ବିରିଞ୍ଚିଃ
ତମାଖୁସ୍ତମାଖୁସ୍ତମାଖୁସ୍ତମାଖୁଃ ॥ ( ସୁ· ର· ଭା· )

ପ୍ରଚଳିତ ଭାଷାରେ ତମାଖୁକୁ ଧୂଆଁପତ୍ର ଓ ନାସପତ୍ର ବୋଲନ୍ତି । ଏହାକୁ ସଂସ୍କୃତ ଭାଷାରେ କଳଞ୍ଜ ବୋଲାଯାଏ । ଏହା ଏକପ୍ରକାର ସ୍ୱାସ୍ଥ୍ୟହାନିକର ବିଷ । ଏହାର ସମସ୍ତ ଦୁର୍ଗୁଣ ଉପଲବ୍ଧି କରି ପ୍ରାଚୀନ ଧର୍ମଶାସ୍ତ୍ରକାର-ମାନେ ଲେଖିଛନ୍ତି ଯେ- " ନ କଳଞ୍ଜଂ ଭକ୍ଷୟେତ୍ " ଅର୍ଥାତ୍ ତମାଖୁ ସେବନ ନିଷିଦ୍ଧ । କିନ୍ତୁ ଆଜି କାଳର ପ୍ରଭାବରୁ ଆବ୍ରାହ୍ମଣ ଚଣ୍ଡାଳ ପର୍ଯ୍ୟନ୍ତ ଏହା ସମସ୍ତଙ୍କର ଅତି ଆଦରଣୀୟ ବସ୍ତୁ ରୂପରେ ବଳୁହୋଇ

ନାନାରୂପରେ ପ୍ରାୟ ସମସ୍ତଙ୍କୁ ସ୍ୱାଧୀନ କରିପାରିଛି । କେହି ଜଣେ ତମାଖୁ ରସିକ ଗାଇଛନ୍ତି ଯେ-

"କ୍ୱଚିତ୍ ଚୁଙ୍କା କ୍ୱଚିତ୍ ଝିଙ୍କା କ୍ୱଚିତ୍ ହୁଙ୍କାଦିରୂପତଃ
ତମାଖୁ ଦେବ୍ୟାସ୍ତି ବ୍ୟାପ୍ତଃ କଲୌ ନ ପୃଥଗା ଯଥା ॥

ଆଉଜଣେ ତମାଖୁ ଭକ୍ତ ଏହାର ମହିମା ସମ୍ବନ୍ଧେ ଗୋଟିଏ ବ୍ୟଙ୍ଗୋକ୍ତି ଗର୍ଭିତ ସ୍ତୋତ୍ର ଲେଖି ତାକୁ ତମାଖୁ ସ୍ତବରାଜ ବୋଲି ନାମ ଦେଇ ପ୍ରକାଶ କରିଛନ୍ତି । ପାଠକମାନଙ୍କର ଚିତ୍ତ ବିନୋଦାର୍ଥରେ ତାହା ଏଠାରେ ଉଦ୍ଧୃତ ହେଲା ।

## ତମାଖୁ ସ୍ତବରାଜ

ଓଁ ଅସ୍ୟ ଶ୍ରୀତମାଖୁସ୍ତବରାଜସ୍ୟ, କପୋଳ ଋଷିଃ

ଅଲର୍ବଲଲ୍ ଛନ୍ଦଃ, ସନ୍ତୁସନ୍ତୁ ବୀଜଂ, ମୁଖବୁଲ୍ଲଶକ୍ତିଃ ଧଳାଧଳ [illegible] ବିନିଯୋଗଃ ।

ଧ୍ୟାନମ୍- କଣ୍ଠେ ଦିକ୍ଷ୍ଣାଗ୍ରଗନ୍ଧାଢ୍ୟାଂ ଶ୍ୟାମାରୁଣ କଳେବରମ୍
ପଞ୍ଚଭୂମି ସମୁତ୍ଥଂ ଚ ନାଗପତ୍ରଂ ସଦା ଭଜେ ॥
ସାମ୍ପ୍ରତଂ- ଯା ଦେବୀ ସର୍ବଲୋକେଷୁ ନସ୍ୟରୂପେଣ ବର୍ତ୍ତିତେ
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ।
ସାମାନ୍ୟ ଜନ କୁତ୍ରାପି ଚିକ୍କଣାରୁଣଂ ଦଦାତି ଯଃ
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥
ଜାଡ଼୍ୟ ମୌଦ୍ଭଟ ଚୂର୍ଣ୍ଣ ବ୍ୟାପ୍ତ୍ୟା ଯଃ ସନ୍ତୋଷକାରକମ୍
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥
ଦନ୍ତାନ୍ତେ ମୁଖାମୋଦେ ହୁକ୍କାରୂପଂ ବନ୍ଧନୀୟଃ
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥
ଯୋ ଖାଦକ ନିଷ୍ଠାତ୍ମ୍ୟାଂ ବିଜୟ୍ୟା ଯୋଗମାତ୍ରକେ
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥
ମୁଖେ ଦ୍ୱିକୁଣ୍ଡ ଧ୍ୟାନ କରଣେ ଯଃ ଜଡ଼ାତ୍ମସ୍ୟ ଧାରକଃ
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥
ତାମ୍ବୂଳ ଚୂର୍ଣ୍ଣୀ ରୂପେଣ ଯଃ ସଦାଚରତେ ନୃଣାମ୍
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥

ଗୁଣ୍ଡାଖୁରୂପେଣ ଯୋ ଦେବଃ ସର୍ବଦନ୍ତ ବର୍ଦ୍ଧିତଃ
ନମସ୍ତସ୍ମୈ ନମସ୍ତସ୍ମୈ ନମସ୍ତସ୍ମୈ ନମୋନମଃ ॥
ଯଃ ପ୍ରଭାତେ ଚୂର୍ଣ୍ଣଯୋଗାତ୍ ମଳଭାଣ୍ଡସ୍ୟ ଚାଳକଃ
ନମସ୍ତସ୍ମୈ ନମସ୍ତସ୍ମୈ ନମସ୍ତସ୍ମୈ ନମୋନମଃ ॥
[ଫଳଶ୍ରୁତି] ସାଧୁପ୍ରୋକ୍ତମିଦଂ ସ୍ତୋତ୍ରଂ ପ୍ରାତରୁତ୍ଥାୟ ଯଃ ପଠେତ୍
ସ୍ୱଳ୍ପାୟୁଶ୍ଚ ଭବେନ୍ନିତ୍ୟଂ ଅନ୍ତେ ନରକମାପ୍ନୁୟାତ୍ ॥
ଇତିଶ୍ରୀ ଅସାର ପୁରାଣ ଭସ୍ମର ଖଣ୍ଡେ ତମାଖୁସ୍ତବରାଜଃ
ସମ୍ପୂର୍ଣ୍ଣଃ ॥

ଏଣୁ ଭାରତ ସ୍ୱାଧୀନ ହେବା ପୂର୍ବରୁ ତମାଖୁର ମହିମାର ପ୍ରଚାର ହୋଇଥିଲା । ଏବେ ସ୍ୱାଧୀନ ଭାରତରେ ତାହା ଆଉରି ଅନେକ ଗୁଣ ବଢ଼ିଯାଇଛି । ଏମନ୍ତକି- ଏବେ ତାହା ଭାରତର ବିଭୂତି ରୂପରେ (୧) ଭାରତମାତା ଗୁଣ୍ଡାଖୁ (୨) ଗାନ୍ଧୀ ବିଡ଼ି (୩) ନେହେରୁପତ୍ରୀ (୪) ଧୂମ୍ରଷ ହୋକ୍କାନାମରେ ସମସ୍ତଙ୍କର ମସ୍ତିଷ୍କକୁ ବିକୃତ କରି ଧନ ଜୀବନ ବିପନ୍ନ କରିବା ଦିଗରେ ଲାଗିଛି । ଭାରତର ଲକ୍ଷ ଲକ୍ଷ ଏକର ଭୂମି ଏହା ନାଶପତ୍ରର ଉତ୍ପନ୍ନ ବୃଦ୍ଧି ପାଇଁ ପ୍ରସ୍ତୁତକରି ରଖାଯାଇଛି । ଦରିଦ୍ର ଭାରତର କୋଟି କୋଟି ଟଙ୍କା ଏହି ନାଶପତ୍ରର ବିଡ଼ି, ସିଗ୍ରେଟର ଧୂଆଁରେ ଉଡ଼ାଇ ଦିଆଯାଉଛି । ସେଦିନର ଜଣେ ବଙ୍ଗୀୟ ପଣ୍ଡିତଙ୍କର ଲେଖା ମନେପଡ଼ୁଛି ଯେ—

"ସର୍ବଂସହା ବସୁନ୍ଧରା ଇଦଂ ନ ସହତେ ଦ୍ୱୟମ୍
ସିଗରେଟ୍ ସେବନଞ୍ଚୈବ ଅଲବାର୍ଟ ପେ ସନଂତଥା ॥

ବାସ୍ତବରେ ଏହା ଅଭ୍ୟାସର ଏହା ବହୁତ ଦୂରକୁ ଯାଇଛି ଏହି ତମାଖୁର ବିଷ ଭାରତର ପ୍ରାଣକୁ ଜର୍ଜରିତ କରିଦେଉଛି । ଏହି ତମାଖୁର ସକଳପ୍ରକାରେ ବ୍ୟବହାର ସ୍ୱାସ୍ଥ୍ୟ ପକ୍ଷରେ ବିଶେଷ ହାନିକାରକ । ଏହିଠାରେ ପ୍ରସିଦ୍ଧ ଡାକ୍ତରମାନଙ୍କର ଅଭିପ୍ରାୟ ନିମ୍ନରେ ଦେଖନ୍ତୁ ।

## ହୃଦ୍‌ରୋଗ ଓ କ୍ୟାନସର ରୋଗର କାରଣ ଧୂମ୍ରପାନ

(୧) ଅତ୍ୟଧିକ ବିଡ଼ି ଓ ସିଗରେଟର ଧୂମପାନ କଲେ ହୃଦ୍‌ରୋଗ ଓ କ୍ୟାନସର ରୋଗ ଜାତ ହୁଏ ବୋଲି ବ୍ରିଟିଶ ମେଡ଼ିକେଲ ଜର୍ନାଲରେ ପ୍ରକାଶିତ ଏକ ରିପୋର୍ଟରୁ ଏବଂ ଆମେରିକାନ କ୍ୟାନସର ସୋସାଇଟିର

ରିପୋର୍ଟରୁ ଜଣାଯାଏ । [ ସଂ ଅ ]

(୨) ନାମର ଫ୍ରାନ୍ସ- ଡାକ୍ତର ରସ ସାହେବ ଘୋଷଣାକରି ଲେଖିଛନ୍ତି ଯେ- ନାସ ଶୁଙ୍ଘିବା ଲୋକର ଘ୍ରାଣ ପ୍ରଣାଳୀ ବାଧାରୁଦ୍ଧ ହୋଇଯାଏ, ଏବଂ ତାଙ୍କର କଣ୍ଠ ସ୍ୱର ବିକୃତ ନ ହୋଇ ରହେନାହିଁ ।

(୩) ଜର୍ନାଲ ଅଫ୍ ହେଲ୍‌ଥ ନାମକ ପତ୍ରିକାରେ ଜଣେ ଡାକ୍ତର ଲେଖିଛନ୍ତି ଯେ- ନାସ ଶୁଙ୍ଘିବା ଦ୍ୱାରା ଗନ୍ଧ ଆଘ୍ରାଣ କରିବାର ଶକ୍ତି ବିଲକୁଲ ନଷ୍ଟ ହୋଇଯାଏ, ଦୃଷ୍ଟିଶକ୍ତି ଦୁର୍ବଳ ହୋଇପଡ଼େ, ସ୍ୱର ବିକୃତ ହୋଇଯାଏ ଏବଂ ନାକରେ ଅର୍ଶରୋଗ ଜାତହୁଏ । ଧୂଆଁପତ୍ର ଖାଇଲେ ମଧ୍ୟ ଜିହ୍ୱାର ରସାସ୍ୱାଦନଶକ୍ତି କମିଯାଏ ।

(୪) ଡାକ୍ତର ଷ୍ଟିଫେନସନ କହନ୍ତି ଯେ- ତମାଖୁ ସେବନ କଲେ ତୁଣ୍ଡରୁ ବହୁତ ଲାଳ ନିର୍ଗତ ହୋଇ ବାହାରିଯାଏ । ସେଥିଲାଗି ପାଚନକ୍ରିୟା ଭଲହୁଏ ନାହିଁ, ସୁତରାଂ ପେଟରେ ବାୟୁ ଜନ୍ମେ ।

(୫) ଡାକ୍ତର ଏବରକ୍ରମ୍ବୀ କହନ୍ତି ଯେ- ସକଳପ୍ରକାର ମଦ୍ୟ, ଗୁହା, ଓ କାର୍ଯ୍ୟଂ ଜନ୍ତୁର ପରିତ୍ୟାଗ କରିବା ଉଚିତ୍ । ତା' ସହିତ ଦୁଃସ୍ୱପ୍ନବର୍ଦ୍ଧକ ବିଷମୟ ତମାଖୁ ସେବନ ମଧ୍ୟ ବର୍ଜନ କରିବା ଉଚିତ ।

(୬) ଆଞ୍ଜଲେସ ଆମେରିକାର ଡାକ୍ତର ଲେଖିଛନ୍ତି ଯେ- ଅତ୍ୟଧିକ ତମାଖୁ ସେବନ କଲେ, ଦୃଷ୍ଟିମାନ୍ଦ୍ୟ, ସ୍ୱପ୍ନଦୋଷ, ହୃଦ୍‌ରୋଗ, ମସ୍ତିଷ୍କ ବିକାର ଓ ସ୍ମରଣ ଶକ୍ତିର ଦୁର୍ବଳତା ଜାତ ହୋଇଥାଏ ।

[ ତମାଖୁ ମେ ହାନିୟାଁ ]

## (୭) ସିନେମା ଓ ସ୍ୱାସ୍ଥ୍ୟ

ସିନେମାକୁ ଆମର ଦେଶଭାଷାରେ ସବାକ୍ ଚଳଚ୍ଚିତ୍ର ବୋଲାଯାଏ । ଏହା ଆମଦେଶର ପ୍ରାଚୀନ ଇନ୍ଦ୍ରଜାଲ ବିଦ୍ୟାଠାରୁ ଅଦ୍ଭୁତ ଏକପ୍ରକାର ବୈଜ୍ଞାନିକ ନାଟ୍ୟକଳା । ଏହା ଯଦି ସୁପ୍ରଯୁକ୍ତ ହୁଏ, ତାହେଲେ ଏହାଦ୍ୱାରା ପ୍ରଜାମାନଙ୍କର ଧର୍ମ, ଅର୍ଥ ଓ କାମ ଏହି ତ୍ରିବର୍ଗ ସାଧନର ମାର୍ଗ ପ୍ରଶସ୍ତ ହୋଇପାରେ । ଆମଦେଶର ନାଟ୍ୟକଳାର ଗୁରୁ ମହାକବି କାଳିଦାସ ଲେଖିଛନ୍ତି ଯେ-

"ନାଟ୍ୟଂ ଭିନ୍ନରୁଚେର୍ଜନସ୍ୟ ବହୁଧାପ୍ୟେକଂ ସମାରାଧନମ୍"

ଅର୍ଥାତ୍ ବିଭିନ୍ନ ରୁଚିବିଶିଷ୍ଟ ମାନବ ସମାଜକୁ ସମାରାଧନ ବା ସେବା

କରିବାପାଇଁ ନାଟ୍ୟ କଳାହିଁ ଏକମାତ୍ର ସାଧନ । ଆଉରି ମଧ୍ୟ କୁହାଯାଇଛି ଯେ- "ତ୍ରିବର୍ଗ ସାଧନଂ ନାଟ୍ୟମ୍" । ଅର୍ଥାତ୍ ନାଟ୍ୟକଳା ତ୍ରିବର୍ଗ ସାଧକ ଅଟେ । କିନ୍ତୁ ଏବେ ସିନେମା ନାମରେ ଯେଉଁ ବିଦେଶୀ ବୈଜ୍ଞାନିକ ନାଟ୍ୟକଳା ଆମଦେଶକୁ ଆସିଛି, ଏହା ଆମଦେଶରେ ଧର୍ମ, ଅର୍ଥ, ଓ ସ୍ୱାସ୍ଥ୍ୟଶୋଷିଣୀ ଏକ ପ୍ରକାର ଆସୁରୀ ମାୟାବୋଲି ପ୍ରତୀତ ହୁଏ । ଏହା ଏବେ ଗଞ୍ଜା, ବିଡ଼ି, ସିଗାରେଟ୍ ଓ ମାଦକଦ୍ରବ୍ୟ ଭଳି ଆମଦେଶର ବହୁବିଧ ଅନିଷ୍ଟ ସାଧନ କରୁଛି । ଏହାର ମୋହରେ ପଡ଼ି ବିଦ୍ୟାର୍ଥୀମାନେ ପଥଭ୍ରଷ୍ଟ ହୋଇଛନ୍ତି । ବିନୟ, ଲଜ୍ଜା, ଶିଷ୍ଟତା ଓ ସଦାଚାର ସେମାନେ ଛାଡ଼ିଦେଇଛନ୍ତି । ଏଥିଦ୍ୱାରା ସ୍ତ୍ରୀ ଓ ପୁରୁଷରେ ଅବାଧ ମିଳନ ପ୍ରବୃତ୍ତି, ଚୋରି, ବ୍ୟଭିଚାର, ବିଳାସିତା, ବିଶ୍ୱାସଘାତକତା, ପୂଜ୍ୟପୂଜା ବ୍ୟତିକ୍ରମ ଦୁଷ୍ଟ ବ୍ୟବହାର ବଢ଼ିଛି । ସାମାଜିକ ଶୃଙ୍ଖଳା ଛିନ୍ନ ହୋଇଯାଉଛି । କୁଳଟାର ମନୋଭାବ କୁଳବଧୂମାନଙ୍କ ଭିତରେ ପ୍ରବେଶ କରୁଛି । ବୈଦ୍ୟୁତିକ ଆଲୋକ ଚିତ୍ର-ଦେଖିବାର ପ୍ରବୃତ୍ତି ବଢ଼ିବାରୁ ହୀନ ଅତିଯୋଗ ଓ ମିଥ୍ୟା ଯୋଗ ଅଳ୍ପବୟସ୍କ ବାଳକ ବାଳିକାମାନଙ୍କର ଦୃଷ୍ଟିଶକ୍ତିକୁ ଦୁର୍ବଳ କରିଦେଉଛି । ସେଥିଲାଗି ଅଳ୍ପ ବୟସରେ ଚଷମା ବ୍ୟବହାର କରିବାର ଲୋକ ସଂଖ୍ୟା ବଢ଼ିଛି, ଏବଂ ଏଥିଲାଗି ଟୀ. ବି. ପ୍ରଭୃତି ସଂକ୍ରାମକ ରୋଗ ସବୁଆଡ଼େ ଉଠିଛି । ଅଧିକନ୍ତୁ, ଏଥିଦ୍ୱାରା ସମସ୍ତେ ଏବେ ଅର୍ଥକାମ କଳୁଷିତ ବିଳାସ ପାଶ୍ଚାତ୍ୟତାର ସ୍ରୋତରେ ପଡ଼ି ଧର୍ମଭ୍ରଷ୍ଟ ଓ ବୁଦ୍ଧିଭ୍ରଷ୍ଟ ହୋଇ ନରକ ଆଡ଼କୁ ଗତିକରିବାର ଦେଖାଯାଉଛି । ଏଣୁ ସିନେମା ଆମର ସ୍ୱାଧୀନ ଭାରତର ଆଦର୍ଶରକ୍ଷା କରିବାରେ, ଧର୍ମ ରକ୍ଷାକରିବାରେ ଯେପରି ଅନୁକୂଳ ହୁଏ, ସେଥିରେ ସତ୍ୱର ଏହାର ସ୍ୱରୂପ ପରିବର୍ତ୍ତନ ହେବା ଉଚିତ । ଅନ୍ୟଥା ଭବିଷ୍ୟତ୍ ଦେଶର ଯେଉଁ ଦଶା ହୁଏ, ତାହାହିଁ ସମସ୍ତେ ଭୋଗକରିବାକୁ ହେବ । ଏଥିସମ୍ବନ୍ଧରେ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କର ନିମ୍ନଲିଖିତ ଉକ୍ତିଟି ସମସ୍ତେ ମନେରଖିବାକୁ ହେବ ଯେ—

"ଶବ୍ଦାଦିଭିଃ ପଞ୍ଚଭିରେବ ପଞ୍ଚ
ପଞ୍ଚତ୍ୱମାପୁଃ ସ୍ୱଗୁଣେନ ବଦ୍ଧାଃ ॥
କୁରଙ୍ଗମାତଙ୍ଗ ପତଙ୍ଗ ମୀନ-

ଭୃଙ୍ଗାଃ ନରଃ ପଞ୍ଚଭିରଞ୍ଚିତଃ କିମ୍ ।
ଦୋଷେଣ ତୀବ୍ରୋ ବିଷୟଃ କୃଷ୍ଣସର୍ପବିଷାଦପି
ବିଷଂ ନିହନ୍ତି ଭୋକ୍ତାରଂ ଦ୍ରଷ୍ଟାରଂ ଚକ୍ଷୁଷାପ୍ୟୟମ୍ ॥
( ବିବେକ ଚୂଡ଼ାମଣି )

ଜୟତୁ ଜୟତୁ ମେଧ୍ୟାଭାରତଭୂମିରେଷା ।
ଜୟତୁ ଜୟତୁ ନେତା ଧର୍ମରକ୍ଷାଧୁରୀଣଃ ॥
ଜୟତୁ ଜୟତୁ ବନ୍ଧୁଃ ଭାରତେ ସବଭକ୍ତଃ ।
ଜୟତୁ ଚ ଚଳଚିତ୍ତ ଦର୍ଶୟନ୍ଧର୍ମମାର୍ଗମ୍ ॥
( ପଂ ବୈଦ୍ୟନାଥଶାସ୍ତ୍ରୀ ଡ.ଲି. )

## ( ୭ ) ଏଲୁମୋନିୟମ ପାତ୍ରର ବ୍ୟବହାର ଓ ସ୍ୱାସ୍ଥ୍ୟ

ପୂର୍ବକାଳର ରୁଚି, ଚଳଣି, ଖିଆ, ପିଆ, ଆଦିର ବ୍ୟବହାର ଆଦି ଯେପରି ବର୍ତ୍ତମାନ ସମୟରେ ବହୁତ ଅନ୍ତର ହୋଇ ଯାଇଛି, ସେହିପରି ଖାଇବାର ପାତ୍ର ବ୍ୟବହାର ମଧ୍ୟ ବଦଳି ଯାଇଛି । ପୂର୍ବକାଳରେ ସାଧାରଣ ଲୋକେ କଂସା, ପିତ୍ତଳ, ତମ୍ବା, ରଙ୍ଗ ଓ ଖପରର ପାତ୍ର ବ୍ୟବହାର କରୁଥିଲେ । ଏବେ ଯେଉଁ ଆଡ଼େ ଦୃଷ୍ଟି ଦିଅ ଦେଖିବ ଯେ, ସେହିସବୁ ପାତ୍ରର ବ୍ୟବହାରରେ ଆଉ ପ୍ରାଧାନ୍ୟ ନାହିଁ । ଏବେ ସବୁ ଆଡ଼େ ଏଲୁମୋନିୟମ ପାତ୍ରର ବ୍ୟବହାର ଦେଖାଯାଉଛି । ଏହାର ପ୍ରଧାନ କାରଣ ଏହି ଯେ-ଏହା ଦେଖିବାକୁ ସ୍ୱଚ୍ଛ, ସଫେଦ, ହାଲୁକା ଓ ଶସ୍ତା । ଯେତିକି ଆମର ସମାଜ ଦରିଦ୍ର ଅବସ୍ଥାକୁ ଯାଉଛି, ସେତିକି, ଆମକୁ ଆହୁରି ଦରିଦ୍ର କରିବା ପାଇଁ ଆମର ସ୍ୱାସ୍ଥ୍ୟ ବିଘାତକ ପଦାର୍ଥମାନଙ୍କର ସୃଷ୍ଟି ହୋଇଯାଉଛି । ଆମର ଅନେକ ବର୍ଷର ଏହା ଅନୁଭବ ସିଦ୍ଧ କଥା ଯେ ଏଲୁମୋନିୟମ ପାତ୍ର ଶସ୍ତା ହେଲେ ମଧ୍ୟ କଂସା, ପିତ୍ତଳ ଓ ତମ୍ବା ପାତ୍ରଠାରୁ ଅତ୍ୟନ୍ତ ମହଙ୍ଗ ଏବଂ ତାହା ଶୀଘ୍ର ଭାଙ୍ଗି ଯାଏ । ପିତଳ ଆଦି ପାତ୍ର ବର୍ଷ ବର୍ଷ ଧରି ବ୍ୟବହାର କରିବା ପରେ ଯଦି ଭାଙ୍ଗି ଯାଏ, ତାହା ଯୋଡ଼ା ଯାଇପାରେ । କିନ୍ତୁ ଏଲୁମୋନିୟମ ପାତ୍ର ଯୋଡ଼ା ଯାଇପାରେ ନାହିଁ କି ବିକା ଯାଇପାରେ ନାହିଁ । ବିଶେଷ କଥା ଏହି ଯେ ଲବଣ ଓ ଅମ୍ଳଦ୍ରବ୍ୟର ସଂଯୋଗରେ ଏହି ପାତ୍ରରେ ଅଳ୍ପଦିନ ମଧ୍ୟରେ ଚାଲୁଣୀ ପରି ଶହ୨ ଛିଦ୍ର ହୋଇଯାଏ । ତାକୁ ଝାଳିବାର

ସମ୍ଭବ ହୁଏ ନାହିଁ । ଖିଙ୍କି ଭୁଙ୍ଗଲେ ଟଙ୍କାକର ଜିନିଷ ଏକ ଟାଙ୍କାଲ ମୂଲ୍ୟରେ ବ୍ୟୟ କରିବାକୁ ହୁଏ । ଗ୍ରେଟ ଗ୍ରେଟ ଗାଁ ମାନଙ୍କରେ ତ ପ୍ରାୟ ଏହା ଝଳା ହୋଇପାରେ ନାହିଁ । ଏହି ପାତ୍ରରେ କୌଣସି ପଦାର୍ଥ ପାକ କଲେ ମଧ୍ୟ ଟିକିଏ ଅସାବଧାନତାରେ ତାହା ପୋଡ଼ିଯିବାର ଭୟ ରହେ । ଏହାର ପରେ ଏହି ପାତ୍ରରେ ପାକକରାଯାଇଥିବା ଅନ୍ନବ୍ୟଞ୍ଜନ ସ୍ୱାସ୍ଥ୍ୟ ହାନି କରିଥାଏ । ଏଥିସମ୍ବନ୍ଧେ ଲାହୋରରୁ ପ୍ରକାଶିତ ଟ୍ରିବ୍ୟୁନ ପତ୍ରିକାର ଗୋଟିଏ ଅଙ୍କରେ ଡାକ୍ତର ବର୍ଣ୍ଣଟନ ନିଜର ଅଭିପ୍ରାୟ ପ୍ରକାଶକରି ଲେଖିଛନ୍ତି ଯେ-

( ୧ )ଏଲମୋନିୟମ ପାତ୍ରର ବ୍ୟବହାର ଧିରେ ୨ ସ୍ୱାସ୍ଥ୍ୟ ହାନିକରିପାରେ ।

( ୨ ) ଏଲମୋନିୟମ ପାତ୍ରରେ ୧୫ । ୨୦ ମିନିଟ ପାଣିକୁ ଫୁଟାଇ ସେହିପାଣି ନିର୍ମଳ କାଚ ପାତ୍ରରେ ରଖିଲେ ତାର ବର୍ଣ୍ଣ କଳା ଦେଖାଯାଏ । କିନ୍ତୁ ତମ୍ବା ଆଦି ଧାତୁ ପାତ୍ରରେ ଫୁଟାଯାଇ ଥିବା ପାଣି ସେହିଭଳି ଶିଶିରେ ଭର୍ତ୍ତିକରି ରଖିଲେ ତାହା ସ୍ୱଚ୍ଛ ରହେ ।

( ୩ )ଏଥିରୁ ଜଣାଯାଏ ଯେ- ଏଲମୋନିୟମ ପାତ୍ରର ପରମାଣୁ ଜଳରେ ମିଶିଯାଏ ।

( ୪ ) ଏଲମୋନିୟମ ପାତ୍ରରେ ଲବଣ ଓ ଅମ୍ଳରସଯୁକ୍ତ ତର୍କାରୀ ରାନ୍ଧିଲେ ଏହାର ପରମାଣୁ ସେଥିରେ ମିଶି ସ୍ୱାସ୍ଥ୍ୟ ଖରାପ କରେ । ଏହି ପାତ୍ରରେ ଏହାରନ୍ଧା ଅଧିକଦିନ ଖାଇଲେ ଉଦରରୋଗ ହୁଏ, ବାନ୍ତିମାତନ୍ତ୍ର, ଅନ୍ତରେ ଘା, ହୋଇ ସଙ୍ଗ୍ରହଣୀ ରୋଗ ଜନ୍ମେ ପାରେ । ଏଥିଦ୍ୱାରା ଅନେକ ପ୍ରକାର ରକ୍ତ ବିକାର ଓ ଅନ୍ୟ ବିକାର ଉତ୍ପନ୍ନ ହୋଇପାରେ । ଏଥିଦ୍ୱାରା କ୍ଷୁଧା ମନ୍ଦହୋଇଯିବା ତ ସାଧାରଣ କଥା । କାହାର ରକ୍ତ ଝାଡ଼ା ହେବାର ମଧ୍ୟ ଦେଖା ଯାଏ । ଏହା ଫୁସ୍‌ଫୁସ୍‌କୁ ଦୂଷିତ କରେ ।

ଏ ବିଷୟରେ ଡାକ୍ତର ନେର୍ ଏ.ମ୍.ଗନସ୍ ଏବଂ ଆମେରିକାର ସ୍ୱାସ୍ଥ୍ୟ ସଂଘର ସଭାପତି ଡାକ୍ତର ଡବ୍ଲି ସ୍ମ ଏସ ବେଲିଜ୍ ର ପ୍ରଭୃତି ଆପାତରେ ଅଭିପ୍ରାୟ ପ୍ରକଟନ କରିଛନ୍ତି । * ( ବିଶ୍ୱମିତ୍ର )

ଏବେ ଏହାହିଁ ଆଶ୍ଚର୍ଯ୍ୟର ବିଷୟଯେ-ଏହିସବୁ ରୋଗବୃଦ୍ଧିର କାରଣ କଳାପକୁ ଆମର ସରକାର ଆଗେ ବନ୍ଦ ନକରି ରୋଗଶାନ୍ତି ନିମନ୍ତେ-ହିଁ ଟଙ୍କା ବ୍ୟୟ କରିବାରେ ଲାଗିଛନ୍ତି ।

* ପଞ୍ଜିକ ପାଡ଼ାଶର ସଭାକୁ ଏଲମୋନିୟମ ବୋଲନ୍ତି ।

## ( ୮ ) ବୈଦ୍ୟ ଡାକ୍ତର ଓ ସ୍ୱାସ୍ଥ୍ୟ

ପୂର୍ବ କାଳରେ ଆମର ଦେଶ ବା ସମାଜ ଏହି ଚାରି ପ୍ରକାର ବ୍ୟକ୍ତିଙ୍କ ନେତୃତ୍ୱରେ ସୁରକ୍ଷିତ ହୋଇ ସୁସ୍ଥ ଓ ସବଳ ଥିଲା, ଯଥା ( ୧ ) ଧନୀ ବା ସାହୁକାର ( ୨ ) ଜ୍ଞାନୀ ବା ବେଦବିତ୍ ବ୍ରାହ୍ମଣ ( ୩ ) ଦଣ୍ଡଧର ରାଜା [ ୪ ] ପ୍ରଜା ସେବା ନିପୁଣ ବୈଦ୍ୟ, ଏହି ଚାରି ପ୍ରକାର ବ୍ୟକ୍ତିଙ୍କୁ ହିଁ ଲକ୍ଷ୍ୟ କରି ଚାଣକ୍ୟ ଲେଖିଛନ୍ତି—

" ଧନିକଃ ଶ୍ରୋତ୍ରିୟୋ ରାଜା ନଦୀ ବୈଦ୍ୟସ୍ତୁ ପଞ୍ଚମଃ,
ପଞ୍ଚ ଯତ୍ର ନ ବିଦ୍ୟନ୍ତେ ତତ୍ର ବାସୋ ନ ଭାବୟେତ୍ "

ସେ ସମୟରେ ସତ୍ କୁଳ ସମ୍ଭୂତ ଛାତ୍ରମାନଙ୍କୁ ହିଁ ଉପନୟନ ପୂର୍ବକ ଶପଥ କରାଇ ବୈଦ୍ୟ ବିଦ୍ୟା ଶିକ୍ଷା ଦେବାର ବ୍ୟବସ୍ଥା ଥିଲା, * କିନ୍ତୁ ଆଜି କାଳର ପରିବର୍ତ୍ତନରେ ତାହା ସବୁ ବଦଳି ଯାଇଛି, ଆଜି ଦେଶ ବା ଗ୍ରାମଟିର ନେତା ହେବାପାଇଁ ଯେପରି କୌଣସି ପ୍ରକାର କୁଳ ଶୀଳ ଯୋଗ୍ୟତାର ନିଦର୍ଶନ ଆବଶ୍ୟକ ହୁଏ ନାହିଁ, ସେହିପରି ମଧ୍ୟ ବୈଦ୍ୟ ହେବା ପାଇଁ କୌଣସି ପ୍ରକାର ବିଦ୍ୟା ବା କୁଳ ଶୀଳର ପ୍ରୟୋଜନ ହୁଏନାହିଁ ସାଧାରଣତଃ ବଞ୍ଚିବାର କୌଣସି ଉପାୟ ନମିଳିଲେ ଯେପରି ସ୍ତ୍ରୀ ମାନେ ବେଶ୍ୟା ହୁଅନ୍ତି, ସେହିପରି ଅନେକ ସ୍ଥଳରେ ନିରୁପାୟ ପୁରୁଷ ମାନେ ବୈଦ୍ୟ, କବିରାଜ, ଓ ଡାକ୍ତର ବେଶ ଧରି ବେଶ୍ୟା ଭଳି ଲୋକ ଶିକାର କରିବା ପାଇଁ ବାହାରି ଥାନ୍ତି, ଏହି ଉଭୟଙ୍କରହିଁ ଅଗ୍ରଗୁରୁ ବୋଧେ ଆମର ବର୍ତ୍ତମାନ ସଭ୍ୟ ଭାଷାରେ ଏହି ଶ୍ରେଣୀୟ ବୈଦ୍ୟମାନଙ୍କୁ " ଢୋଙ୍ଗୀ " ବେଶ । ଟି ବୋଲି ଯାଇପାରେ, କିନ୍ତୁ ବିଡମ୍ବନା ଏହିଯେ ଅନେକ ସ୍ଥଳରେ ଆଜି କୁଳାଙ୍ଗନା ମାନଙ୍କର ଖାନା ବନାର ଅଭାବ, କିନ୍ତୁ ଏହି କୁଳଟା ମାନଙ୍କର ସୌଭାଗ୍ୟ ଭୋଗର ସୀମା ନାହିଁ । ସମ୍ପାଦକ ଗଣେଶ ଭଟ୍ଟ ଏହି ଶ୍ରେଣୀୟ ବୈଦ୍ୟ ମାନଙ୍କ ଆଡ଼କୁ ଦୃଷ୍ଟି ଦେଇ କଥା ପ୍ରସଙ୍ଗରେ କହିଥିଲେ ଯେ-"ଯେଉଁ ଦେଶର ପ୍ରଜା ମାନେ ପ୍ରାଣର ମୂଲ୍ୟ ବୁଝନ୍ତି ନାହିଁ, ସେ ଦେଶର ବୈଦ୍ୟ, ବେଶ୍ୟା, ବେଦଜ୍ଞ ପୁତ୍ର ( ଡାକ୍ତର ) ଫୋର୍କିଲ୍ ( ଉକିଲ ) ଓ ନେହର ( ଦେଶ ସମାଜର ନେତା ) ଏହି ବର୍ଗଙ୍କ ମାନଙ୍କର ସାମ୍ରାଜ୍ୟ ହୋଇଥାଏ କଳି ଯୁଗର ବଳୁଆ ବିସ୍ତାର । ଯଦି ଏହି ସବୁ

---

* ସୁଶ୍ରୁତ, ଚରକ, ଓ କାଶ୍ୟପ ସଂହିତାର ଶିଷ୍ୟୋପନୟ ଅଧ୍ୟାୟ ଦେଖ

ପଦାର୍ଥ ସେଠାରେ ମିଳୁଥିଲେ, ତା ହେଲେ ତ ଆଉ ପାତାଳ କେତେ ଦୂରରେ ଅଛି, ଏହି ପ୍ରଶ୍ନ ଉଠାଇବାର ଆବଶ୍ୟକତା ନାହିଁ ।

ବଡ ଦୁଃଖର କଥା ଯେ ଆଜି ରାଜନୀତି କ୍ଷେତ୍ରରେ ଯେପରି ବିଭିନ୍ନ ପ୍ରକାର ଦଳସୃଷ୍ଟି, ଧାର୍ମିକ କ୍ଷେତ୍ରରେ ଯେପରି ବିଭିନ୍ନ ପ୍ରକାର କଳ୍ପିତ ଦେବ ସୃଷ୍ଟି ବିଷମ ଅନର୍ଥର କାରଣ ହୋଇ ଉଠିଛି, ସେହିପରି ମଧ୍ୟ ଚିକିତ୍ସା କ୍ଷେତ୍ରରେ ପରସ୍ପର ବିରୋଧୀ ବିଭିନ୍ନ ପ୍ରକାରର ବୈଦ୍ୟ ସୃଷ୍ଟି ସାଧାରଣର ମନରେ ଭ୍ରମ ଉତ୍ପାଦନ କରି ଚିକିତ୍ସା ସଙ୍କରତା ଦ୍ୱାରା ଦେଶରେ ଅସ୍ୱାସ୍ଥ୍ୟ ବଢାଇବାରେ ଲାଗିଛି, ଏବାବେ ଗ୍ରାମଯାଜକ ପୁରୋହିତ ଠାରୁ ଆରମ୍ଭ କରି ଗୁଣିଆ, ପାଣି, ବାଦାଳି ଗୁଣିଆଁ, ସାଧୁ, ଫକିର, ଜାନିଗୁଣୀ, ଖଡାଳୁଣୀ, ପାନ ଦୋକାନି, ଅନୁକୂଳ ଉକ୍ତି କହିଲେ ନେପାଳୀ ବାବା ଏମନ୍ତକି ଭୁଷୁଣ୍ଡୁ ଗ୍ରାମର ପୁନା ଆଳସ୍ୟୁଣୀ ପର୍ଯ୍ୟନ୍ତ ଏ ସମସ୍ତ ଏବେ ଆମଦେଶର ବୈଦ୍ୟ । ଏହି ମଧ୍ୟରେ ଏବେ ଗ୍ରାମ ପୁରୋହିତଙ୍କ ଠାରୁ ଆରମ୍ଭ କରି ଅମୃତହର ଲକ୍ଷ୍ମଣ ଦାସ ବାବାଙ୍କର ଚେଲା ପର୍ଯ୍ୟନ୍ତ ଏ ସବୁ ଲଗୁଆ ବୈଦ୍ୟ । ଏମାନେ ଦେଶ ୨, ଗ୍ରାମେ ୨, ଗୃହେ ୨, ବୁଲି କଏ କୁମାର ପୂର୍ଣ୍ଣିମାକୁ ଗୃହିଁ, କଏ ବସ୍ତ୍ର ଦେଖାଇଦେଇ ଲଗୁଆ ଔଷଧ ଦେଇ ଥାନ୍ତି, ଏହି ଭଳି ବୈଦ୍ୟମାନଙ୍କର ବୃଦ୍ଧି ଅପେକ୍ଷା ଦେଶରେ ବୈଦ୍ୟର ଅଭାବହିଁ ଶ୍ରେୟସ୍କର ।

ଏ ସମୟରେ ଜଣେ ପ୍ରସିଦ୍ଧ ବୈଜ୍ଞାନିକ ଉତ୍ତର ଧ୍ରୁବର ଆଖ ପାଖ ପ୍ରଦେଶରୁ ଫେରି ଆସୁଥିଲେ, ବାଟରେ ତାଙ୍କର ବନ୍ଧୁଙ୍କ ସହିତ ଭେଟ ହେବାରୁ ସେଠାରେ କେତେକ କଥା କହିଲେ, ବନ୍ଧୁ ତାଙ୍କୁ ପଚାରିଲେ ଯେ—ବଡ ଆଶ୍ଚର୍ଯ୍ୟର କଥା ଆପଣ କହୁଛନ୍ତି, କ'ଣ ସେ ପ୍ରଦେଶରେ ଜଣେ ହେଲେ ବୈଦ୍ୟ ବା ଡାକ୍ତର ନାହାନ୍ତି ! ଅଥଚ ସେଠାରେ ବହୁତ ଲୋକ ଶହେବର୍ଷ ପର୍ଯ୍ୟନ୍ତ ବଞ୍ଚି ରହିଛନ୍ତି ? ବୈଜ୍ଞାନିକ ଉତ୍ତର ଦେଲେ ଯେ—ଏହା କିଛି ଆଶ୍ଚର୍ଯ୍ୟର କଥା ନୁହେ । ଆଶ୍ଚର୍ଯ୍ୟର କଥା ଏହି ଯେ- ଏ ଦେଶରେ ଏତେ ବୈଦ୍ୟ ଏତେ ଡାକ୍ତର ଥିଲେ ସୁଦ୍ଧା କେତେ ଲୋକ ଶହେ ବର୍ଷ ପର୍ଯ୍ୟନ୍ତ ବଞ୍ଚି ପାରୁଛନ୍ତି, ଏହାର ତାତ୍ପର୍ଯ୍ୟ ଏହି ଯେ ଯେଉଁ

ଦେଶରେ ଯେତେ ବେଶି ବୈଦ୍ୟ ଓ ଡାକ୍ତରମାନଙ୍କର ସଂଖ୍ୟା ବେଶୀ, ସେ ଦେଶର ଲୋକେ ସେମାନଙ୍କର ଚେଲ୍‌କି ଏବଂ ଔଷଧ ବିଜ୍ଞାପନର ମୋହରେ ପଡ଼ି ନିର୍ଧନ, ରୋଗୀ ଓ ଅଳ୍ପାୟୁଷ ହୁଅନ୍ତି । ଆମ ଦେଶରେ ରୋଗ ବୃଦ୍ଧି ବ୍ୟାଧିଗ୍ରସ୍ତର ବୃଦ୍ଧି ଓ ଦାରିଦ୍ର୍ୟ ବୃଦ୍ଧିର ଅନ୍ୟତମ କାରଣ- ଏହି ଶ୍ରେଣୀର ବୈଦ୍ୟ ବୃଦ୍ଧି ଓ ଏମାନଙ୍କର ଔଷଧ ବିଜ୍ଞାପନ ବୃଦ୍ଧି । କୋଡ଼ିଏ ଶୁଣିଛି ଲମ୍ବଦାନୀ ଅଷ୍ଟ ପେ-ଖ୍ରୀଷ୍ଟୀୟ ୮ ଶତାବ୍ଦୀରେ ଆରବ ଦେଶର ରାଜା ହାରୁନ୍-ଅଲ୍-ରସିଦ ତାଙ୍କର ନିଜର ଚିକିତ୍ସା ପାଇଁ ମାଣ୍ଡ ନାମକ ଜଣେ ଭାରତୀୟ ବୈଦ୍ୟଙ୍କୁ ନିମନ୍ତ୍ରଣ କରି ତାଙ୍କର ରାଜଧାନୀ ବାଗ୍‌ଦାଦକୁ ଡକାଇ ନେଇଥିଲେ । ମାଣ୍ଡ ରାଜାଙ୍କୁ ଦାରୁଣ ରୋଗରୁ ମୁକ୍ତ କରି ତାଙ୍କର ସଭାରେ ମହାନ ପ୍ରତିଷ୍ଠା ଲାଭ କଲେ । ଦିନେ ମାଣ୍ଡ ବୁଲିବା ପାଇଁ ବଜାରକୁ ଯାଇ ଥିଲେ । ମାର୍ଗରେ ସେ ଦେଖିଲେ ଯେ, ଜଣେ ବୁଢ଼ା ବଣା ଔଷଧ ବେପାରୀ ନିଜର ଦେଉଛି ଚୋର ଦେଇ ଗର୍ଭରେ ଏଣୁ ତେଣୁ କେତେ ଖଣ୍ଡିଏ ମୂଳ ମୂଳିକା ଥୋଇ ଔଷଧ ବିକୁଛି । ସେ ସମସ୍ତଙ୍କୁ ସେ କୋଡ଼ିଏ ଔଷଧ ଦ୍ୱାରା ଆରବରେ ନାନା ରୋଗର ଗୁଣ ବର୍ଣ୍ଣନା କରି କହୁଥିଲେ ଯେ- ଏହି ଔଷଧ, ନିତ୍ୟଜ୍ୱର, ଦିନେ ବା ଦୁଇଦିନ ଛଡ଼ା ଜ୍ୱର, କମ୍ପଜ୍ୱର, ପାଳିଜ୍ୱର, ନିମୋନିଆଁ, ଇନ୍‌ଫ୍ଲୁଏଞ୍ଜା, ଟାଇଫଏଡ୍ ଆଦି ଜ୍ୱର, ଅଜୀର୍ଣ୍ଣ ଆଦି ମୁଣ୍ଡ ବ୍ୟଥା, ଶୂଳ, କଟିଶୂଳ, ମେହ, ଅର୍ଶ, ବହୁମୂତ୍ର, ଭଗନ୍ଦର; ଏମିତିକି ମଣିଷର ସକଳ ପ୍ରକାର ରୋଗର ଆଶ୍ଚର୍ଯ୍ୟ ଜନକ ଲାଭକାରୀ ଅଟେ । ମାଣ୍ଡ ତ ସେ ଦେଶର ଭାଷା ବୁଝିପାରୁ ନଥିଲେ । ସାଙ୍ଗରେ ଥିବା ଲୋକଙ୍କୁ ପଚାରି ତାର ମତଲବ ବୁଝି ସ୍ତବ୍ଧ ହୋଇଗଲେ । ସେ କହିଲେ- ଏହି ଲୋକଟା ଅତି ବିଲକ୍ଷଣ ରହସ୍ୟ ଫୁଟାଇ ଦେଲା ଯେ- ଏହି ଆରବ ଦେଶର ରାଜା ବଡ଼ ମୂର୍ଖ । ସାଙ୍ଗରେ ଥିବା ଲୋକେ ପଚାରିଲେ କିପରି ? ମାଣ୍ଡ କହିଲେ ଯେ- ଏହିପରି ସର୍ବବିଦ୍ୟା ବିଶାରଦ ବୈଦ୍ୟ ନିଜ ଦେଶରେ ଥାଉ ୨ ଥାଉ ସେ ଏତେ ସହସ୍ର ଟଙ୍କା ଖର୍ଚ୍ଚ କରି ଦୂରଦେଶରୁ ଆପଣାର ଚିକିତ୍ସା ପାଇଁ ମୋତେ ଡକାଇଲେ କାହିଁକି ? ଏହିଭଳି ଯୋଗ୍ୟ ହାକିମଙ୍କ ଚିକିତ୍ସା କରାଇଲେ ନାହିଁ; ଯେଉଁ କୋଟିଏ ଔଷଧରେ ଦୁନିଆଁର ସମସ୍ତ ରୋଗ ଉଡ଼ାଇ ଦେବ ବୋଲି କହୁଛି, ଯଦି ଏହା ମିଥ୍ୟା, ତା'ହାଲେ ଏହିଭଳି ଠକମାନଙ୍କୁ ପ୍ରାଣଦଣ୍ଡ ନଦେଇ

ପ୍ରଜାମାନଙ୍କର ଧନଜୀବନ ବିପନ୍ନ କରୁ ନାହାନ୍ତି କାହିଁକି ? ଏହା କ'ଣ ରାଜାର ମୂର୍ଖତା ଓ ଅବିବେକତାର ପ୍ରମାଣ ନୁହେଁ ?

( ଡବକାଚୁଲ ଇଣ୍ଡବ୍ବା )

ଆମର ସରକାରଙ୍କର ରିପୋର୍ଟରୁ ଜଣାଯାଏ ଯେ- ଏବେ ୭ ଲକ୍ଷ ଗ୍ରାମ ଓ ୩୭ କୋଟି ଜନତା ପୂର୍ଣ୍ଣ ଆମର ଭାରତରେ ଏଲୋପାଥିକ ଡାକ୍ତର ମାତ୍ର ଅଠାବନ ହଜାର, ରେଜିଷ୍ଟାର୍ଡ ବୈଦ୍ୟ ଓ ହାକିମ୍ ୫୦ ପଚାଶ ହଜାର ଏବଂ ଆନ୍‌ରେଜିଷ୍ଟାର୍ଡ ୭୦ ସତୁରି ହଜାର ଅଛନ୍ତି, ଏହିପରି ସର୍ବମୋଟ- ୧୧୦ ହଜାର ( ସ ଆ ଜନ୍‌—୧୯୫୭ ) । ଅଷ୍ଟ୍ରିଆରେ ୭୧୨ ଜଣରେ ଜଣେ ଲେଖାଏଁ ଡାକ୍ତର ଅଛନ୍ତି ।

ଏହିପରି ଚେକୋସ୍ଲୋଭାକିଆ, ହଙ୍ଗେରୀ, ନିଉଜିଲାଣ୍ଡ, ସ୍ୱିଜରଲାଣ୍ଡ ଓ ପଶ୍ଚିମ ଜର୍ମାନୀରେ ପ୍ରତି ସାତ ଶହ ଜଣରେ ଏବଂ ଆମେରିକାରେ ପ୍ରାୟ ପ୍ରତି ଆଠଶହ ଜଣରେ ଜଣେ ଲେଖାଏଁ ଡାକ୍ତର ଅଛନ୍ତି ।

ଇଣ୍ଡୋନେସିଆରେ ପ୍ରତି ୭୧ ହଜାର ଲୋକରେ ଜଣେ ଡାକ୍ତର, ପାକିସ୍ତାନରେ ପ୍ରତି ୫୮ ହଜାରରେ ଜଣେ, ବେଲଜିଆନ କଙ୍ଗୋ ଓ ନାଇଜେରିଆରେ ପ୍ରତି ୬୫ ହଜାରରେ ଜଣେ ଲେଖାଏଁ ଡାକ୍ତର ଅଛନ୍ତି । ଏ ଦୃଷ୍ଟିରୁ ସଂସାର ମଧ୍ୟରେ ଭାରତର ସ୍ଥାନ ସବୁଠାରୁ ତଳର ସ୍ଥାନ । ଭାରତ, ଆଲ୍‌ଜେରିଆ, ସିଂହଳ, ଚୀନ, କୋରିଆ ପ୍ରଭୃତି ଦେଶରେ ପ୍ରତି ୭ ହଜାର ଜଣରେ ଜଣେ ଲେଖାଏ ଡାକ୍ତର ଅଛନ୍ତି । ( ସମାଜ )

[ ୨୫-୪-୫୮ ]

ଏଥି ମଧ୍ୟରେ ଯେଉଁମାନେ ଡାକ୍ତର ସେମାନେ ପଢ଼ିଲେଖି ଭାରତରେ ଡାକ୍ତରୀ ଶିକ୍ଷା କରନ୍ତି ନାହିଁ । ସେମାନେ ବିଦେଶୀ ଶିକ୍ଷା ନ ପାଇଲେ ଦଲାଲ୍ ବା ଏଜେଣ୍ଟ ମାତ୍ର । ଏଙ୍କୁ ବ୍ରିଟେନର ଉଦ୍ଦେଶ୍ୟରେ ହିଁ ସେମାନେ ନଗଦ ଟଙ୍କା ଦେଇ ଡାକ୍ତରୀ ଶିକ୍ଷା ପାଉଥାନ୍ତି ।

---

* ଭାରତରେ ବର୍ତ୍ତମାନ ହିସାବରେ ଜଣେ ଅଧିକ ମାଣହଜାର ଦେଖା ଯାଉଛି । ଶରଣାର୍ଥୀ ଆସିବାରୁ ଏହି ସଂଖ୍ୟା ଆହୁରି ବଢ଼ିଯାଇଛି ।

( ଅଖଣ୍ଡଜ୍ୟୋତି ଜାନୁୟାରୀ ୧୯୫୮ )

ଏବେ ଦେଶରେ ଦରିଦ୍ରତା ଓ କଳକାରଖାନାର ବାହୁଲ୍ୟ ଯୋଗୁଁ ମୃତ୍ୟୁଆଡ଼େ ଏହି ଦଶା ହୋଇଛି । ( ଏହା ୧୩୯ ପୃଷ୍ଠା ଶେଷ ଧାଡ଼ିର ଟିପ୍ପଣୀ )

ଆଜି ଯଦି ଛାତ୍ର ବେଶି ଦେଇ-ଥାଇ M.B.B.S. ପରୀକ୍ଷାରେ ପାସ କରିବା ପାଇଁ ୧୦ ହଜାର ଟଙ୍କା ଖର୍ଚ୍ଚ ଏବଂ ମାସିକ ବେତନ ନ'ଶହ ଟଙ୍କା, ସେ ନିଜର ସ୍ୱାର୍ଥକୁ ଛାଡ଼ି ଦେଇ ଲୋକଙ୍କର କି ଉପକାର କରିବ ? କଥା କଥାକେ ନୂଆ ନୂଆ ଇଞ୍ଜେକ୍ସନ୍, କଥା କଥାକେ ଥାର୍ମୋମିଟର, ଷ୍ଟେଥୋସ୍କୋପ ଏବଂ ଏକ୍ସରେ ପ୍ରଭୃତି ଯନ୍ତ୍ରର ଝଲକ ନ ଦେଖାଇ ସେ ଅବା କିପରି ରହିବ ? ସାର କଥା ଏହିପରି-ପ୍ରକାର ମୂଳକ ସ୍ୱେଚ୍ଛାକୃତ ବୈଦ୍ୟର ଲୋକ ସେବା ପ୍ରବୃତ୍ତି ଦେଖାଯିବ, ଡାକ୍ତରର ମଧ୍ୟ ମନୋବୃତ୍ତି ହୋଇ ବସିବାକୁ ହେବ । ରୋଗୀ ମରୁ ବା ବଞ୍ଚୁ, ସମାଜ ରହୁ ବା ଧ୍ୱଂସ ପାଇଯାଉ, ଯେକୌଣସି ପ୍ରକାରରେ ଟଙ୍କା ଜମା କରିବା ହିଁ ଏହି ଡାକ୍ତରଙ୍କର ବିକଳ୍ପ ପ୍ରବୃତ୍ତିର ମୂଳ ଉଦ୍ଦେଶ୍ୟ । ଉଦାହରଣ ବ୍ଲାକ୍ ମାର୍କେଟିଙ୍ଗ୍ ପ୍ରଧାନ ଚିକିତ୍ସା ବ୍ୟବସାୟ-ଆଧାରିତ । ଏହା ଜନତାର ସ୍ୱାସ୍ଥ୍ୟରକ୍ଷା ବା ଲୋକୋପକାର ଭାବନା ମୂଳକ ନୁହେଁ । * ସେଥିପାଇଁ ଜଣେ ଋଷି ଆୟୁର୍ବେଦର ଶାସ୍ତ୍ର ଏହି ଶାସ୍ତ୍ରୀୟ ସୂତ୍ରକୁ ବୈଦ୍ୟମାନଙ୍କୁ ଲକ୍ଷ୍ୟ କରି ଲେଖିଛନ୍ତି ଯେ-

"ନ ଧାତେ। ବିଜ୍ଞାନଂ ଧ ତ ମନୁଷ୍ୟୋ ବୈଦ୍ୟକନ୍ୟ ।

---

* ମହାତ୍ମା ଗାନ୍ଧୀ ଆରୋଗ୍ୟ ବିଷୟରେ ଖାଦ୍ୟ ଦ୍ୱାରା ଖାସ ପୁସ୍ତକ ଲେଖିଛନ୍ତି । ସେଥିରେ ସେ କହନ୍ତି ସେ-ସାମାନ୍ୟ ରୋଗରେ ଔଷଧ ପ୍ରୟୋଗ କରି ବୈଦ୍ୟ ଓ ଡାକ୍ତରମାନେ ସମାଜର ଅହିତ କରିଥାନ୍ତି । ଦେଖନ୍ତୁ ଯେ-ଜଣେ ମନୁଷ୍ୟ ଅଧିକ ଭୋଜନ କରି ଅଥବା ଗରିଷ୍ଠ ଦ୍ରବ୍ୟ ଭୋଜନ କରି ଅସୁସ୍ଥ ହୋଇଗଲା, ତାକୁ ବୈଦ୍ୟ ବା ଡାକ୍ତର ଔଷଧ ଦେଇ ତା'ର କଷ୍ଟ ଦୂର କଲା । ଏପରିସ୍ଥଳରେ ଠିକ ପଥ୍ୟ ଏହିକି-ତାକୁ ଉପବାସ କରାଇବା ଉଚିତ ବା ଭବିଷ୍ୟତରେ ଏହି ଭଳି ପଦାର୍ଥ ସେବନ ପାଇଁ ମନା କରିବା ଉଚିତ ।

ଡାକ୍ତର ମାନଙ୍କର ନୈତିକ ପତନ ବିଷୟରେ ଯେଉଁମାନେ ଅଧିକ ଜାଣିବାକୁ, ସେମାନେ ଟାଇମସ୍ ଆଫ୍ ଇଣ୍ଡିଆ ପତ୍ରିକାରେ ପ୍ରକାଶିତ ଗୁଜୁରାଟ ପ୍ରଦେଶର ଦେଶଭକ୍ତ ଲବ୍ଧପ୍ରତିଷ୍ଠ ଡାକ୍ତର ସୁମନ୍ତ ମେହେଟାଙ୍କର ଏବଂ ଭାରତୀୟ ମେଡ଼ିକାଲ କାଉନ୍‌ସିଲ୍‌ର ସଭାପତି ଡାକ୍ତର ସି. ଏସ୍ ପଟେଲଙ୍କର ଅଭିପ୍ରାୟ ଦେଖନ୍ତୁ । (ଧ. ଆ. ୧୯୫୮ ମାର୍ଚ୍ଚ ସଂଖ୍ୟା

ନ ସ୍ୱେଗାଣାଂ ଚିକିତ୍ସାବଶତ ରସୀ ନେନା ଚତୁର୍ଗୁଣାଭିଃ ॥
ତଥାପ୍ୟେତା ନତେ ବୈଦ୍ୟା ଇତି ଚରଲଂଘୟିତ୍ୱା ଜଗଜ୍ଜନାନ୍ ॥
ଅପନ୍ ମୂତ୍ରାଣ୍ୟାଚ୍ଛାନିବ ବସ୍ତ୍ର ହରନ୍ତେ ଗନ୍ଧେଜ୍ୟାମ୍ ॥ (ଶୁ. ର. ଗ)

## ( ୯ ) ସ୍ୱଦେଶୀ ଔଷଧ ଓ ସ୍ୱାସ୍ଥ୍ୟ

ଦେଶୀୟ ରୋଗ ନିବାରଣାର୍ଥେ ହିତକର ଔଷଧ କ'ଣ ? ଏହିପ୍ରଶ୍ନର ଉତ୍ତରରେ ଚରକ ଲେଖିଛନ୍ତି ଯେ—

ଯସ୍ୟ ଦେଶସ୍ୟ ଯୋ ଜନ୍ତୁସ୍ତଜ୍ଜଂ ତସ୍ୟୌଷଧଂ ହିତମ୍ ।

ଅର୍ଥାତ୍- ଯେଉଁ ଦେଶରେ ଯେଉଁ ପ୍ରାଣୀ ଜନ୍ମ ଗ୍ରହଣ କରିଥାଏ, ସେ ଦେଶର ଜଳ ବାୟୁରେ ଉତ୍ପନ୍ନ ଔଷଧ ତା'ର ପକ୍ଷରେ ହିତକର ଅଟେ ।

ଯୋଗ୍ୟତ୍ୱ, ଏହି କାରଣରୁ ହିଁ ଫ୍ରାନସ୍‌ରେ ଉତ୍ପନ୍ନ ଔଷଧ ଇଂଲଣ୍ଡରେ ଏବଂ ଇଂଲଣ୍ଡର ଉତ୍ପନ୍ନ ଔଷଧ ଫ୍ରାନସ୍‌ରେ ବ୍ୟବହାର କରିବା ପାଇଁ ସେଠାର ବଡ ୨ ଡାକ୍ତର ପସନ୍ଦ କରନ୍ତି ନାହିଁ । ଫ୍ରାନସ୍‌ରୁ ଇଂଲଣ୍ଡର ଦୂରତା ୨୫ । ୩୦ ମାଇଲ ମାତ୍ର । ତଥାପି ଫ୍ରାନସ୍‌ର ପ୍ରାକୃତିକ ( ଜଳ-ବାୟୁ ) ଇଂଲଣ୍ଡ ପକ୍ଷରେ ଏବଂ ଇଂଲଣ୍ଡର ଜଳ-ବାୟୁ ଫ୍ରାନସ୍ ପକ୍ଷରେ ଅନୁକୂଳ ନୁହେଁ ବୋଲି ସେଠାର ପ୍ରସିଦ୍ଧ ଡାକ୍ତର ମାନଙ୍କର ମତ । କିନ୍ତୁ ଆମର ଭାରତୀୟ ବୈଦ୍ୟମାନଙ୍କର ଶାସ୍ତ୍ରରେ ହଜାର ୨ ମାଇଲ ଦୂରରେ ଥିବା ଇଂଲଣ୍ଡ, ଆମେରିକା, ଜର୍ମାନୀ ଆଦି ଦେଶର ଔଷଧ ମଧ୍ୟ ଅନୁକୂଳ ବୋଲି ସେଠାର ଭାରତ ହିତୈଷୀ ବୈଦ୍ୟମାନେ ଅନୁମାନ ପ୍ରମାଣ କରୁଛନ୍ତି ଏବଂ ଏହାର ପରିଣାମରୁ ଦେଶ ବୃଦ୍ଧି ତାଙ୍କର ଶକ୍ତିମାନେ ମଧ୍ୟ ଆସିବାକୁ ନାନା ଦାନ ଦେଉଛନ୍ତି । ଶାସ୍ତ୍ରରେ ଅଛି- " ବିନାଶ କାଳେ ବିପରୀତ ବୁଦ୍ଧିଃ " । ଅର୍ଥାତ୍ ଯା'ର ବିନାଶକାଳ ଉପସ୍ଥିତ ହୁଏ, ତା'ର ଭଲ ମନ୍ଦ ବିଚାର ରହେନାହିଁ । ସେ ଅନୁକୂଳ ନେପାଳୀବାବାଙ୍କର ଦଶା ହୋଇପଡ଼େ ।

ଏକ ସମୟରେ ଯେଉଁ ହିନ୍ଦୁସମାଜ ନିଜର ଜାତି ଧର୍ମ, ସ୍ୱାସ୍ଥ୍ୟ ଓ ସ୍ୱାଧୀନତା ରକ୍ଷା ନିମନ୍ତେ ସ୍ୱଦେଶୀଭାଷା, ସ୍ୱଦେଶୀଭୂଷା, ସ୍ୱଦେଶୀ ଆଚାର ବ୍ୟବହାର, ସ୍ୱଦେଶୀ ଅନ୍ନ ବସ୍ତ୍ର ଆଦି ଦ୍ରବ୍ୟ ଏବଂ ବିଧର୍ମୀ ସଂସର୍ଗ ବର୍ଜନୀୟ ବୋଲି ଧର୍ମ ଶାସ୍ତ୍ରମାନଙ୍କରେ ଘୋଷଣା କରିଥିଲେ ଏବଂ ମ୍ଲେଚ୍ଛଦେଶରୁ

ପ୍ରତ୍ୟାଗତବ୍ୟକ୍ତିଙ୍କୁ ବିନାସଂସ୍କାରରେ ବିନା ପ୍ରାୟଶ୍ଚିତ୍ତରେ ସମାଜ ମଧ୍ୟରେ ସ୍ଥାନଦେବାକୁ ହେବନାହିଁ ବୋଲି ନିର୍ଦ୍ଦେଶ ପ୍ରଦାନ କରିଥିଲେ; ଆଜି ସେହି ହିନ୍ଦୁ ସମାଜ ପ୍ରଜ୍ଞାଦୋଷରୁ ଆତ୍ମବିସ୍ମୃତ ଓ ବିବେକ ଭ୍ରଷ୍ଟ ହୋଇ ସ୍ୱାଧୀନତାର ନାମରେ ସର୍ବତୋମୁଖୀ ପରାଧୀନତାର ଘୋର ଗର୍ତ୍ତରେ ପଶି ଯାଉଛି ! କିମ୍ବା କୁ ସଂସର୍ଗ ଦୋଷରୁ ଧର୍ମକୁ ଅଧର୍ମ, ଅଧର୍ମକୁ ଧର୍ମବୋଲି ବିପରୀତ ଭାବରେ ହିନ୍ଦୁ ଏବେ ଗ୍ରହଣ କରୁଛି । ଅପବିତ୍ର-ରସପୂର୍ଣ୍ଣ କଲ୍କ ଦେଶୀୟ ଉଦ୍ଧାବଦ୍ଧ ଏବଂ ଅଧିକାଂଶରେ ମଦ୍ୟ ମାଂସ ଯୋଗରେ ଘଟିତ ଓ ଅପବିତ୍ର ବିଦେଶୀ ( ଏଲୋପାଥି ) ଔଷଧକୁ ଗଳାଧଃକରଣ କରି ଏବଂ ସେହି ବିଦେଶୀମାନଙ୍କର ଆବିଷ୍କୃତ ବହୁରୋଗ ଜନକ ଇଞ୍ଜେକ୍‌ସନ୍ ( ଯାହାକି କୁଷ୍ଠ, ଯକ୍ଷ୍ମା, ବସନ୍ତ, କଲେରା ଆଦି ସଂକ୍ରାମକ ରୋଗୀମାନଙ୍କର ପୂଜ, ମଳ ଓ ରୋଗରେ ଘଟା ଜୀବାଣୁରେ ପ୍ରସ୍ତୁତ ) ତାଙ୍କୁ ଅନ୍ଧପରମ୍ପରା ନ୍ୟାୟରେ ସେହି ୨ ଦେହରେ ପ୍ରତିରୋଧକ ରୂପେ ଦୃଢ଼ ଦେହରେ ପ୍ରବେଶ କରାଇ ନିଜର ଶରୀରକୁ ଓ ମନକୁ ବିଷାକ୍ତ ଦୁର୍ଗନ୍ଧ ରୋଗରେ କ୍ଷେତ୍ରଭୂମି ପ୍ରସ୍ତୁତ କରିନେଉଛି । ଅହିତକୁ ହିତବୋଲି, ମନେକରୁଛି । ବିଶୁଦ୍ଧ ସ୍ୱଦେଶୀ ସ୍ୱାସ୍ଥ୍ୟପ୍ରଦ ଔଷଧକୁ ଗୋଡ଼ରେ ଆଡ଼େଇଦେଇ ଅବିଶୁଦ୍ଧ ବିଦେଶୀ ବିଷକୁ ମୃତସଞ୍ଜୀବନୀ ଦିବ୍ୟୌଷଧ ବୋଲି ବିଶ୍ୱାସ କରୁଛି । ବିଶୁଦ୍ଧ ଓ ଅବିଶୁଦ୍ଧ ଔଷଧର ପରୀକ୍ଷା ସମ୍ବନ୍ଧେ ବାଗ୍‌ଭଟ୍ଟ ଲେଖିଛନ୍ତି ଯେ—

"ପ୍ରୟୋଗଃ ଶମୟେଦ୍‌ବ୍ୟାଧିଂ ଯୋଽନ୍ୟମନ୍ୟମୁଦୀରୟେତ୍ ।
ନାସୌ ବିଶୁଦ୍ଧଃ ଶୁଦ୍ଧସ୍ତୁ ଶମୟେଦ୍ୟୋ ନ କୋପୟେତ୍ ॥

ଅର୍ଥାତ୍ ଯେଉଁ ଔଷଧ ଦ୍ୱାରା ପ୍ରୟୋଗ ଉପସ୍ଥିତ ବ୍ୟାଧିକୁ ଶାନ୍ତକରି ଅନ୍ୟାନ୍ୟ ବ୍ୟାଧି ଉତ୍ପାଦନ କରେ, ତାହା ବିଶୁଦ୍ଧ ଔଷଧ ନୁହେ । ସେହି ହେଉଛି- ବିଶୁଦ୍ଧ ଔଷଧ ଯାହା ରୋଗ ଶାନ୍ତ କରେ ଅଥଚ ଅନ୍ୟାନ୍ୟ ରୋଗ ପ୍ରସବ କରେନାହିଁ । ଆମ୍ଭେମାନେ ଏହି କଷଟି ଧରି ପରୀକ୍ଷାକଲେ ବୁଝିପାରିବା ଯେ- ବିଦେଶୀ ଔଷଧ ଗୁଡ଼ିକ ବିଶୁଦ୍ଧ ଔଷଧ ନୁହେ ।

## ବିଦେଶୀ ଡାକ୍ତରୀ ଔଷଧର ଅବିଶୁଦ୍ଧତା ସମ୍ବନ୍ଧେ ସେଠାର ବୈଜ୍ଞାନିକ ମତ ।

(୧) ଆମେରିକାର ପ୍ରସିଦ୍ଧ ଡାକ୍ତର ପ୍ରୋ: କ୍ଲାର୍କ କହନ୍ତି ଯେ-

ଡାକ୍ତରମାନେ ରୋଗୀମାନଙ୍କର ଲାଭକରିବାକୁ ଯାଇ ଯେତିକି ବହୁତ ହାନି କରି ଥାଆନ୍ତି । ସେମାନେ ଏପରିକି ହଜାର ହଜାର ରୋଗୀର ପ୍ରାଣ ନିଅନ୍ତି, ଯେଉଁମାନଙ୍କୁ କି କିଛି ଔଷଧ ନ ଦେଇ ପ୍ରକୃତି ଉପରେ ଛାଡ଼ି ଦେଇଥିଲେ ଆରୋଗ୍ୟ ମିଳିଥାଆନ୍ତା । ବାସ୍ତବରେ ଆମେ ଯାହାକୁ ଔଷଧ ବୋଲି ବୁଝୁ, ତାହା ପ୍ରାଣଘାତକ ବିଷ । ଔଷଧର ପ୍ରତ୍ୟେକ ମାତ୍ରା ରୋଗୀର ପ୍ରାଣକୁ ଦୁର୍ବଳ କରିଥାଏ ।

(୨) ଡାକ୍ତର ଷ୍ଟିଭେନ୍‌ସ କହନ୍ତି ଯେ- ନୂଆଁ ଡାକ୍ତର ବୁଝନ୍ତି ଯେ- ମୋର ପାଖରେ ପ୍ରତ୍ୟେକ ରୋଗର ୨୦ କୋଡ଼ିଏ ପ୍ରକାର ଔଷଧ ଅଛି, କିନ୍ତୁ ୩୦ ତିରିଶି ବର୍ଷ ଚିକିତ୍ସା କରିବା ପରେ ସେ ବୁଝନ୍ତି ଯେ- ପ୍ରତ୍ୟେକ ଔଷଧରେ ୨୦ କୋଡ଼ିଏ ପ୍ରକାର ରୋଗ ଜାତହୁଏ ।

(୩) ପ୍ରୋ: ଟେଟନ କହନ୍ତି ଯେ- "ଶରୀର ମଧ୍ୟରେ ଡାକ୍ତରୀ ଔଷଧ ଯେଉଁ କାର୍ଯ୍ୟକରେ, ଯାହାକି ଦ୍ୱିତୀୟ ରୋଗରେ କାରଣ କରିଥାଏ । ଔଷଧ ପ୍ରୟୋଗ କେବଳ ରୋଗ ଉତ୍ପନ୍ନ କରିଥାଏ । ଆମେ ଏକ ନୂଆଁ ରୋଗ ସୃଷ୍ଟି କରି ଆଗରେ ଥିବା ରୋଗକୁ ଭଲ କରିଥାଉଁ ।

(୪) ଡାକ୍ତର ଏମ୍‌ସ ଟାଙ୍କର ଚିକିତ୍ସାରେ ବହୁତ ରୋଗୀ ମରିଯିବା ପରେ ସେମାନଙ୍କର ମୃତଦେହକୁ ଚିରି ସେ ଦେଖିଲେ ଯେ- ତା'ର ଭିତର ଭାଗରେ ଏପରିକି, ଅନେକ ରୋଗର ଉପାଦାନ ତାଙ୍କୁ ମିଳିଲା, ଯାହା କି ଔଷଧ ସେବନ ବ୍ୟତିରେକେ ଅନ୍ୟ କୌଣସି କାରଣରୁ ହୋଇପାରେ ନାଁ । ଏହି କାରଣରୁ ସେ ଔଷଧ ବ୍ୟବହାର ଛାଡ଼ିଦେଇ ପ୍ରାକୃତିକ ଚିକିତ୍ସା କଲେ । ସେଇଦିନ ଠାରୁ ପରୀକ୍ଷା କରିବାପାଇଁ ତାଙ୍କୁ ଆଉ ଶବ ମିଳିଲା ନାହିଁ ।

(୫) ଡାକ୍ତର ଟୋମସ୍ କହନ୍ତି ଯେ- ଡାକ୍ତରୀ ଔଷଧ ଆଦି ତିଆରି କରିବା ପାଇଁ ଦୁନିଆରେ ଜୀବମାନଙ୍କୁ ଖାଲି କରାଯାଉଛି ଏବଂ ଦୁନିଆରେ ବନସ୍ପତିମାନଙ୍କର ସର୍ବନାଶ କରା ଯାଉଛି । ଯଦି ଏହି ସବୁ ଔଷଧ ସମୁଦ୍ରକୁ ଫିଙ୍ଗି ଦିଆଯାଏ, ତା' ହେଲେ ମନୁଷ୍ୟମାନଙ୍କର ବହୁତ ଉପକାର ହୋଇପାରେ ।

(୬) ଡାକ୍ତର ଫେଡ଼ିକ ଲେଖିଛନ୍ତି ଯେ- ଅନୁଭବ କରିବା ଉପରେ କହିଲେ ଔଷଧମାନଙ୍କର ବ୍ୟର୍ଥତା ସିଦ୍ଧ ହୋଇଥାଏ ।

(୭) ଡାକ୍ତର ବୋଷ୍ଟାକ ଏମ ଡି, ଔଷଧମାନଙ୍କର ଇତିହାସ ନାମକ ଏକ ପ୍ରକାଣ୍ଡ ଗ୍ରନ୍ଥ ଲେଖିଛନ୍ତି । ସେ କହନ୍ତି ଯେ- ଔଷଧର ପ୍ରତ୍ୟେକ ମାତ୍ରା ରୋଗୀର ପ୍ରାଣଶକ୍ତି ଉପରେ ଏକ ଅନ୍ଧପ୍ରୟୋଗ ଏବଂ ଅନୁଭବମାନ ।

(୮) ଡାକ୍ତର ସର ଜାନଗୁଡ୍-ଏମ ଡି ପ୍ରକୃତ ଏବଂ ଔଷଧ ଆବିଷ୍କାରରେ ଉଚ୍ଚକୋଟିର କେତେଗୁଡ଼ିଏ ଗ୍ରନ୍ଥ ଲେଖିଛନ୍ତି- ସେ କହନ୍ତି ଯେ- ଯୁଦ୍ଧ, ମହାମାରୀ, ଦୁର୍ଭିକ୍ଷ, ଆଦି କାରଣରୁ ଏପର୍ଯ୍ୟନ୍ତ ଯେତେଲୋକ ମରିଛନ୍ତି, ତାହାଠାରୁ କେତେଗୁଣ ଅଧିକ ଲୋକ ଡାକ୍ତରୀ ଔଷଧ ପ୍ରୟୋଗଦ୍ୱାରା ମୃତ୍ୟୁମୁଖରେ ପଡ଼ିଥାନ୍ତି ।

(୯) ପ୍ରୋଫେସର ବାର୍ଟର ଦାଉନ୍ କହନ୍ତି ଯେ- ଶିକ୍ଷିତ ଡାକ୍ତରମାନଙ୍କ ଅପେକ୍ଷା ଏହି ଅଶିକ୍ଷିତ ଚିକିତ୍ସକମାନଙ୍କ ଉପରେ ମୋର ବଡ଼ ବିଶ୍ୱାସ, ଯେଉଁମାନଙ୍କର କି ଚିକିତ୍ସା କେବଳ ଅନୁଭବ ଉପରେ ନିର୍ଭର କରୁଛି । ସବୁ ଦେଶରେ ସବୁକାଳରେ ଏହି ଶ୍ରେଣୀର ଲୋକମାନେହିଁ ସମସ୍ତ ବିଶ୍ୱ ବିଦ୍ୟାଳୟ- ଅପେକ୍ଷା ଅନେକଗୁଣ ଅଧିକ ଭଲକାମ କରିଛନ୍ତି ।

(୧୦) ଡାକ୍ତର ଜନମେସନ ଏମ ଡି, ଚିକିତ୍ସା ସମ୍ବନ୍ଧୀ ଏକ ବିଖ୍ୟାତ ପତ୍ରର ସମ୍ପାଦକ- ସେ କହନ୍ତି ଯେ- ଆପଣାର ବହୁତ ଦିନର ଅନୁଭବ ଉପରେ ନିର୍ଭର କରି ମୁଁ ଏହି କଥା କହୁଛି ଯେ- ଯଦି ସଂସାରରେ ଡାକ୍ତର ଏବଂ ଡାକ୍ତରୀ ଔଷଧ ଆଦି ବିକ୍ରେତା କେହି ନ ଥାଆନ୍ତା, ତା ହେଲେ ଆଜିକାଲି ଅପେକ୍ଷା ବହୁତ ରୋଗ ଊଣାହୋଇ ଥାଆନ୍ତା ଏବଂ ମୃତ୍ୟୁ ସଂଖ୍ୟା ମଧ୍ୟ ବହୁତ କମି ଯାଇ ଥାଆନ୍ତା ।

(୧୧) ଫେରସର ଡାକ୍ତର କେରୋଲ୍ କହନ୍ତି ଯେ- ଏସମୟରେ ଆମେ ବଡ଼ ଭୁଲକରୁଛେ । ଯଦି ଆମେ ସାଫଲ୍ୟ ପ୍ରାପ୍ତ ହେବାର କଥା, ତା’ ହେଲେ ଆମର ମାର୍ଗ ବଦଳାଇ ଦେବା ଉଚିତ ।

(୧୨) ପ୍ରୋଫେସର ମାନ୍ ସାହେବଙ୍କର ମତ ଯେ- ସମସ୍ତ ବିଜ୍ଞାନ ମଧ୍ୟରେ ଡାକ୍ତରୀ ଔଷଧି ବିଜ୍ଞାନ ଅଧିକ ଅନିଶ୍ଚିତ ।

(୧୩) ଏଡ଼ିନ ବୋରୋ ମେଡ଼ିକେଲ୍ କଲେଜର ପ୍ରୋଫେସର ଗ୍ରେଗରୀ କହନ୍ତି ଯେ- ଡାକ୍ତରୀ ଚିକିତ୍ସା ଶାସ୍ତ୍ରରେ ଯେଉଁ ସବୁ କଥାକୁ ସତ୍ୟ ବୋଲି ସ୍ୱୀକାର କରି ଯାଇଛି, ସେଥିରୁ ଶତକଡ଼ା ୯୯ ମିଥ୍ୟା ଏବଂ ଏହାର ସିଦ୍ଧାନ୍ତ ସାଫ ଝୁଟ ।

(୧୪) ସର ରିଚାର୍ଡସନ କହୁଛନ୍ତି-ଡାକ୍ତରୀ ଔଷଧ ବ୍ୟବହାରରେ ସଭ୍ୟ ଲୋକଙ୍କର ଆୟୁ ବହୁତ କମ ହୋଇଗଲାଣି ।

(୧୫) ଫ୍ରାନ୍ସର ପ୍ରସିଦ୍ଧ ଶରୀର ଶାସ୍ତ୍ରବେତ୍ତା ମେଜେଣ୍ଡିଙ୍କ କହନ୍ତି ଯେ-ଡାକ୍ତରୀ ଔଷଧ ବିଷୟରେ ସଂସାରରେ କାହାକୁ କିଛି ଜଣାନାହିଁ । ରୋଗ ଦୂର କରିବାରେ ବହୁତ କିଛି ସାଧାରଣ ପ୍ରକୃତିଠାରୁ ମିଳିଥାଏ ।

(୧୬) ଡାକ୍ତର ଓସଲର୍, ଯେ କି, କେତୋଟି ବିଶ୍ୱବିଦ୍ୟାଳୟର ଚିକିତ୍ସା ଶାସ୍ତ୍ରର ଅଧ୍ୟାପକ, ସେ ତାଙ୍କର ଏନ ସାଇକ୍ଲୋପିଡ଼ିଆ ଆମେରିକନ ଗ୍ରନ୍ଥରେ ଲେଖିଛନ୍ତି ଯେ- "ସେ ହେଉଛି- ସବୁଠାରୁ ଉତ୍ତମ ଚିକିତ୍ସକ, ଯେ କି, ଔଷଧମାନଙ୍କୁ ଅନର୍ଥକ ବୋଲି ବୁଝେ ।

(୧୭) ଡାକ୍ତର ଟାଇଟ୍‌ସଙ୍କର ମତ ଯେ- ସଂସାରରେ ତିନି ଚତୁର୍ଥାଂଶ ମନୁଷ୍ୟ ଡାକ୍ତର ଔଷଧ ପ୍ରୟୋଗରେ ମରନ୍ତି ।

(୧୮) ନ୍ୟୁୟର୍କର ଏକ ବିରାଟ୍ ଡାକ୍ତରୀ କଲେଜର ଅଧ୍ୟାପକ ଡାକ୍ତର ଆଷ୍ଟିନଫ୍ଲିଣ୍ଟ, ଏମ୍. ଡି. ଏଲ୍. ଏଲ୍. ଡି. ମହାଶୟ ତାଙ୍କର ଏକ ଗ୍ରନ୍ଥରେ କହନ୍ତି ଯେ- ରୋଗ ଓ ଆରୋଗ୍ୟର ବ୍ୟାଖ୍ୟା କରିବା ବଡ଼ କଠିନ ।

(୧୯) ସେଠାରୁ ଆଉ ଏକ ବିଖ୍ୟାତ ଡାକ୍ତରଙ୍କ ମତ ଏହି ଯେ-ରୋଗ ଓ ଚିକିତ୍ସା ଆଦି ସମ୍ବନ୍ଧେ ଆମମାନଙ୍କର କୌଣସି ନିଶ୍ଚିତ ସିଦ୍ଧାନ୍ତ ନାହିଁ । ଶରୀର ଉପରେ ଔଷଧର ପ୍ରଭାବ କ'ଣ ଓ କିପରି ? ଏଥି ସମ୍ବନ୍ଧେ ଆମମାନଙ୍କର କିଛି ହେଲେ ଜ୍ଞାନ ନାହିଁ । [ ଉପବାସ ଚିକିତ୍ସା ]

ଉପରେ ଯେଉଁ ସବୁ ପ୍ରମାଣ ପ୍ରଦର୍ଶିତ ହେଲା, ଏସବୁ ଆମେରିକାର ଦେଶର ପ୍ରସିଦ୍ଧ ଡାକ୍ତରମାନଙ୍କର ମତ । ଏଥି ସମ୍ବନ୍ଧେ ଇଂରେଜ ସାମ୍ରାଜ୍ୟରେ ଥିବା ଡାକ୍ତରମାନଙ୍କର ଅଭିପ୍ରାୟ ନିମ୍ନରେ ଦେଖନ୍ତୁ ।

(୨୦) ଲଣ୍ଡନର ପ୍ରସିଦ୍ଧ ଡାକ୍ତର ବିବନସ କହନ୍ତି ଯେ- ଆଜିକାଲିର ଔଷଧ ଗୁଣବର୍ଜ୍ଜନ ପ୍ରାକ୍‌ବିଧ ଓ ଭ୍ରାନ୍ତିର ଏକ ବିଲକ୍ଷଣ ସମିଶ୍ରଣ ଉପରେ ଅବଲମ୍ବିତ ।

(୨୧) ଡାକ୍ତର କୂପର କହନ୍ତି ଯେ- ଡାକ୍ତରୀ ଔଷଧ ଉପରେ ଯାହାର ଯେତିକି ବିଶ୍ୱାସ, ତାକୁ ସେତିକି ଅଜ୍ଞାନ ବୋଲି ବୁଝିବାକୁ ହେବ ।

(୨୨) ଡାକ୍ତର ଅବରନ କହନ୍ତି ଯେ- ଡାକ୍ତର ସଂଖ୍ୟାର ବୃଦ୍ଧି

ଅନୁପାତରେ ରୋଗ ସଂଖ୍ୟା ମଧ୍ୟ ବଢ଼ି ଯାଉଛି ।

(୨୩) ଲଣ୍ଡନ ରୟାଲ କଲେଜର ଫେଲୋଡାକ୍ତର ଚୈମରେ କହନ୍ତି ଯେ- ଆଜି କାଲିର ଡାକ୍ତରୀ ଔଷଧ ଚିକିତ୍ସା ବଡ ବଡ ପ୍ରୋଫେସରଙ୍କ ମତରେ ବଡ଼ ଲଜ୍ଜାସ୍ପଦ ବିଷୟ ହେବା ଉଚିତ । ମୁଁ ନିର୍ଭୟରେ କହିପାରେ ଯେ- ବିନା ଚିକିତ୍ସାରେ ରୋଗୀର ଅବସ୍ଥା ଅପେକ୍ଷାକୃତ ଭଲ ହୋଇଥାଏ ।

(୨୪) ମେ ବ୍ଲେସର ଓ୍ୱେନ୍ସ କହନ୍ତି ଯେ- ବିଜ୍ଞାନର ନାମ ଧରି, ଆଜିକାଲି ଚିକିତ୍ସା କରିବା ଲୋକେ ପ୍ରକୃତିର ଓ ରୋଗୀର ବାସ୍ତବ ଚିକିତ୍ସା ସମ୍ବନ୍ଧ ଏକଦମ ଅନଭିଜ୍ଞ । ଦଶରୁ ନ'ଟି ଡାକ୍ତରୀ ଔଷଧ ରୋଗୀମାନଙ୍କ ପକ୍ଷରେ ହାନିକାରକ ।

(୨୫) ଡକ୍ଟର ମେଡ଼ିକାଲ ରିକଲରେ ଥରେ ପ୍ରକାଶ ପାଇଥିଲା ଯେ- ଆଜିକାଲି ଯାହା ଚିକିତ୍ସା ବିଜ୍ଞାନ କୁହାଯାଉଛି, ତାହା ନାମ ମାତ୍ରରେ ମଧ୍ୟ ବିଜ୍ଞାନ ନୁହେଁ । ତାହା ଏକ ଭ୍ରମପୂର୍ଣ୍ଣ କଳ୍ପନା ଏବଂ ଅସ୍ଥିର ଅନୁମାନର ଭଣ୍ଡାର ଅଟେ ।

(୨୬) ଡାକ୍ତରୀ ଚିକିତ୍ସାରେ ଏତେ ରୋଗୀ ମରିବାର ଦେଖି ଡାକ୍ତର ମ୍ୟାକ୍ କହିଥିଲେ ଯେ- ଡାକ୍ତର ମାନଙ୍କୁ ସରକାର ଜେଲରେ ଦିଅନ୍ତୁ ଏବଂ ସେମାନଙ୍କର ଭ୍ରଷ୍ଟ ଚିକିତ୍ସା ପ୍ରଣାଳୀକୁ ବନ୍ଦ କରନ୍ତୁ । ଅଥବା ଲୋକମାନଙ୍କର ପ୍ରାଣ ରକ୍ଷା ପାଇଁ କୌଣସି ନୂଆଁ ଉପାୟ ବାହାର କରନ୍ତୁ । ( ଉପବାସ ଚିକିତ୍ସା )

## ଡାକ୍ତରୀ ଟୀକା ଓ ଇଞ୍ଜେକ୍ସନ ବହୁରୋଗ ଜନକ

(୨୭) ଡାକ୍ତର ଜୁଟରବଲ କହନ୍ତି ଯେ- ପ୍ରତ୍ୟେକ ଗୋପନ ଟୀକାର ଅର୍ଥ ହେଉଛି ଉପଦଂଶ ରୋଗର ପ୍ରଚାର । ଅନେକ ବାଳକଙ୍କୁ ଟୀକା ଦେବାପରେ ସେମାନଙ୍କ ଦେହରେ ଉପଦଂଶର ଲକ୍ଷଣ ସବୁ ପ୍ରକାଶ ପାଇଥାଏ । ଅନେକ ସୁସ୍ଥ ଓ ନୀରୋଗ ମନୁଷ୍ୟ ଟୀକା ନେବା ପରେ ଅପସ୍ମାର, କ୍ଷୟରୋଗ, ଶ୍ୱାସରୋଗ, ପକ୍ଷାଘାତ ଓ ମୋଷାତମ୍ଭ ରୋଗରେ ଆକ୍ରାନ୍ତ ହେବାର ଦେଖାଯାଏ । ଏହାଛଡ଼ା ମଧ୍ୟ ଡାକ୍ତରୀ ସମସ୍ତ ଇଞ୍ଜେକ୍ସନ ଚିକିତ୍ସାର ପରିଣାମ ଶରୀରର ରକ୍ତକୁ ବିଷାକ୍ତ କରି ବହୁବିଧ ରୋଗ ଉତ୍ପାଦନ କରିଥାଏ । ( ବିଜ୍ଞାନ-ପ୍ରସଙ୍ଗ )

(୨୮) ପ୍ରୟାଗ-ବିଜ୍ଞାନ ପତ୍ରର ସମ୍ପାଦକ ରାମଦାସ ଗୌଡ଼ ଏମ୍. ଏ. ମହାଶୟ ତାଙ୍କର "ଏଲୋପ୍ୟାଥିକ ଚିକିତ୍ସାର ଅବୈଜ୍ଞାନିକତା" ଶୀର୍ଷକ ପ୍ରବନ୍ଧରେ ଲେଖିଛନ୍ତି ଯେ- ଭାରତ ବର୍ଷରେ ଆଇନ ବଳରେ ସବୁଠାରୁ ଭ୍ରଷ୍ଟ ଏବଂ ସବୁଠାରୁ ଅଧିକ ହାନିକର ଯେଉଁ ଉପଚାର ପ୍ରଚଳିତ ହୋଇଅଛି, ସେ ହେଉଛି ବସନ୍ତ ରୋଗର ଟୀକା। ଏହା ହିନ୍ଦୁମାନଙ୍କ ପକ୍ଷରେ ନିତାନ୍ତ ଅପବିତ୍ର ଓ ଗର୍ହଣୀୟ।

ଯେଉଁ ପ୍ରାଣୀର ପୂଯ ନେଇ ଦେହରେ ଟୀକା ଦିଆଯାଏ, ସେହି ପୂଯ ସହିତ ଅନେକ ପ୍ରକାର ବିଷ ଦେହରେ ପ୍ରବେଶ କରେ। ଏହା ବହୁରୋଗଜନକ, ନିଷ୍ଫଳ, ଅତ୍ୟନ୍ତ ଘୃଣିତ ଓ ଅତ୍ୟନ୍ତ ହାନିକର। ତା'ପରେ ସେ ଟୀକାର ନିରର୍ଥକତା ପ୍ରମାଣିତ କରିବାକୁ ଯାଇ ଲେଖିଛନ୍ତି ଯେ—୧୯୨୭ ସମ୍ବତ୍ସରରେ ଜାର୍ମାନୀରେ ବସନ୍ତ ରୋଗ ବଡ଼ ଜୋରରେ ବ୍ୟାପିଥିଲା। ଏକଲକ୍ଷ କୋଡ଼ିଏ ହଜାର ବ୍ୟକ୍ତି ଏହି ରୋଗରେ ପଡ଼ିଥିଲେ ସେଥିରୁ ଏକଲକ୍ଷ ମଲେ। ଏମାନଙ୍କ ମଧ୍ୟରୁ ପ୍ରାୟ ୯୬ (ଛୟାନବେ ହଜାର) ଲୋକଙ୍କୁ ଟୀକା ଦିଆଯାଇ ଥିଲା, କେବଳ ୪ ଚାରି ହଜାର ଲୋକ ବିନା ଟୀକାରେ ଥିଲେ। ଜାର୍ମାନୀ ସାମ୍ରାଜ୍ୟର ପ୍ରଧାନ ମନ୍ତ୍ରୀ ପ୍ରିନସ୍ ବିସ୍ମାର୍କ ୧୮ ଅଠର ବର୍ଷ ପର୍ଯ୍ୟନ୍ତ ନିରନ୍ତର ଅନୁସନ୍ଧାନ କରି ଆପଣାର ଅଧୀନସ୍ଥ ସମସ୍ତ ରାଜ୍ୟକୁ ଲେଖିଥିଲେ ଯେ--"ଦେଶରେ ବ୍ୟାପିଥିବା ଅସଂଖ୍ୟ ଚର୍ମରୋଗର ପ୍ରତ୍ୟକ୍ଷ କାରଣ-ଟୀକା। ଏପର୍ଯ୍ୟନ୍ତ ବସନ୍ତ ରୋଗର କାରଣ ଓ ଚିକିତ୍ସା ବିଧି କିଛି ଜଣାଯାଇ ନାହିଁ। ଗାଈର ସ୍ତନରେ ଜନ୍ମିବା ଫୋଟକାର ପୂଯଦ୍ୱାରା ଯେଉଁ ସୁଫଳପ୍ରାପ୍ତିର ଆଶାଥିଲା, ତାହା ସମ୍ପୂର୍ଣ୍ଣ ପ୍ରତାରଣା ବୋଲି ଜଣାଗଲା"। ଏହି ସତ୍ୟାନୁସନ୍ଧାନର ଆଧାର ଉପରେ ଦୃଷ୍ଟି ରଖି ପ୍ରାୟ ସମଗ୍ର ଜାର୍ମାନୀରୁ ଟୀକା ଉଠାଇ ଦିଆଗଲା। ତା'ପରେ ସେ ଲେଖିଛନ୍ତି—

ବସନ୍ତ ଫୋଟକା ସମ୍ବନ୍ଧୀ ପୂଯର ବିଷ ଗଣ୍ଡମାଳା ଓ ଉପଦଂଶ ରୋଗ ଜାତ କରେ। ଯେଉଁମାନଙ୍କର ଶରୀରରେ ଏହି ବିଷ ନଥାଏ, ଟୀକାଦ୍ୱାରା ତହିଁରେ ତାକୁ ପ୍ରବେଶ କରା ଯାଇଥାଏ।

ତା'ର ପରେ ସେ କହିଛନ୍ତି—ଏହିସବୁ କାରଣରୁ ସକଳ ପ୍ରକାର ଟୀକା କେବଳ ପ୍ରତାରଣା ଓ ମିଥ୍ୟାପ୍ରବୃତ୍ତି ମାତ୍ର। ପାଶ୍ଚାତ୍ୟ ଦେଶବାସିଙ୍କର

ଏହି ଦୂଷିତ ପୂଯ, ରକ୍ତ ଓ ବିଷ [illegible] ଅତ୍ୟନ୍ତ ଅପବିତ୍ର ଚିକିତ୍ସା ପ୍ରତ୍ୟେକ ଶୌଚଶୁଦ୍ଧି ବ୍ୟକ୍ତିର ଘୃଣାର ବିଷୟ। ଏହା ପାଶ୍ଚାତ୍ୟ [illegible] ଓ ଅସଭ୍ୟତାର ଏକ ନମୁନା"

ଏହି ପରି ଟୀକାର ନିଷ୍ଫଳତା ଓ ବୈଜ୍ଞାନିକ [illegible] ସମ୍ବନ୍ଧି ପ୍ରତ୍ୟକ୍ଷ ପ୍ରମାଣ ବହୁବର୍ଷର ଥିଲେ ମଧ୍ୟ ସେଥିପ୍ରତି ଭ୍ରୂକ୍ଷେପ ନ କରି ବୈଜ୍ଞାନିକ ଚିକିତ୍ସାର ନାମରେ ଜବରଦସ୍ତି ସବୁଠି ଟୀକା ଦିଆ ପ୍ରଥା ଜାରି ରହିଥାଏ। ପ୍ରଥମ ଥର ଟୀକା ଗ୍ରହଣ ନକରିବା ପାଇଁ ନମାନିବା ବ୍ୟକ୍ତିକୁ ୫୦ ଟଙ୍କା ପର୍ଯ୍ୟନ୍ତ ଜରିମାନା ଏବଂ ଦ୍ୱିତୀୟ ଥର ନମାନିବା ବ୍ୟକ୍ତିଙ୍କୁ ଛ ମାସ ଜେଲ୍ ଏବଂ ଏକ ହଜାର ଟଙ୍କା ପର୍ଯ୍ୟନ୍ତ ଜରିମାନା ଅଥବା ଜେଲ୍ ଓ ଜରିମାନା ଉଭୟ ପ୍ରକାର ଦଣ୍ଡ ଦିଆଯାଇ ପାରେ। ଏହା ୧୮୮୦ ସମ୍ବତ୍ସର ଏକ୍ଟ—୧୩ । ଏହାକୁ ଭେକ୍ସିନେସନ ଏକ୍ଟ ବୋଲି ଯାଏ। ( ସ୍ୱାସ୍ଥ୍ୟ—ବିଜ୍ଞାନ )

(୨୯) ସ୍ୱର୍ଗୀୟ ବାବୁ ଡାକ୍ତର ବାଳକୃଷ୍ଣ ଅମରଜୀ ପାଠକ ଏମ୍. ବି. ବି. ଏସ୍. ମହାଶୟ ତାଙ୍କର ଆୟୁର୍ବେଦୀୟ ତଥା ଆଧୁନିକ ପାଶ୍ଚାତ୍ୟ ବିଜ୍ଞାନର ତୁଳନାତ୍ମକ ବର୍ଣ୍ଣନା ଶୀର୍ଷକ ପ୍ରବନ୍ଧର ଏକ ସ୍ଥାନରେ ଲେଖିଛନ୍ତି ଯେ— "ଆଜିକାଲିର ଏଲୋପାଥି ଚିକିତ୍ସକଙ୍କର ପ୍ରକୃତ ଅଷ୍ଟାଦଶ ଶତାବ୍ଦୀଠାରୁ ପ୍ରଚଳିତ ହେଲା। ଏଲୋପାଥି ଚିକିତ୍ସାର ପ୍ରଧାନ ଉଦ୍ଦେଶ୍ୟ— ରୋଗୀମାନଙ୍କର ଜୀବନ ଶକ୍ତିକୁ ଦୁର୍ବଳ କରିବା ଅର୍ଥାତ୍ ଜ୍ୱର ରୋଗରେ ରକ୍ତ ବାହାର କରିବା, ଅତିସାର ରୋଗରେ ଝାଡ଼ା ବନ୍ଦ କରିବା ଇତ୍ୟାଦି। ଏହି ଲକ୍ଷ୍ୟକୁ ପୂର୍ତ୍ତି କରିବା ପାଇଁ ସେମାନେ ପ୍ରାଣୀଜ ଓ ବିଷମଜ୍ୱର ଚିକିତ୍ସାରେ କାଲୋମେଲ ୨୦ (କୋଡ଼ିଏ) ଗ୍ରେନ ମାତ୍ରାରେ ଦେଉଥିଲେ। ଏହାଦ୍ୱାରା ରୋଗୀ ଦୁର୍ବଳ ଓ କଷ୍ଟଗ୍ରସ୍ତ ହୋଇ ପରମ ଧାମକୁ ଚାଲିଯାଉଥିଲେ— ଡାକ୍ତର ମାନେ ଏହି ନୂତନ ଚିକିତ୍ସା ଦ୍ୱାରା ରୋଗ ରୋଗୀକୁ ମାରିବା ପୂର୍ବରୁ ତାକୁ ଯମାଳୟକୁ ସେମାନେ ପଠାଇ ଦେଉଥିଲେ। (ସ୍ୱ. ସୁ. ବି ପତ୍ରିକା)

(୩୦) ଜର୍ମାନ୍ ଦେଶର ବିଶ୍ୱବିଖ୍ୟାତ ବୈଜ୍ଞାନିକ ହାନେମାନ ତାଙ୍କର ଅର୍ଗାନନ୍ ଅଫ୍ ମେଡ଼ିସିନ୍ ପୁସ୍ତକରେ ଲେଖିଛନ୍ତି ଯେ- "ଏଲୋପ୍ୟାଥିକ ଔଷଧ ପ୍ରୟୋଗରେ କୌଣସି କଷ୍ଟ ରୋଗ ଆରୋଗ୍ୟ ପ୍ରାପ୍ତ ହୁଏନାହିଁ। ସେ ସବୁ ପ୍ରବଳ ଔଷଧ ଦ୍ୱାରା କାର୍ଯ୍ୟକାଳରେ ରୋଗକୁ ନିରୁଦ୍ଧ କରିଦିଏ

ଯାଏ । ତା'ର ପରେ ସେଇ ଜୀର୍ଣ୍ଣ ରୋଗ ପୂର୍ବଠାରୁ ଅତି ପ୍ରଚଣ୍ଡ ବେଗରେ ପ୍ରକଟିତ ହୁଏ [ ସ୍ୱା. ୨୯ ] ।

(୩୧) ଡାକ୍ତରି ଔଷଧ କୁଇନାଇନର ଘାତକ ପରିଣାମ ସମ୍ବନ୍ଧେ- ଶ୍ରୀ ଆର. ବି. ଜୟସ୍ୱାଲ ବି. ଆଇ. ଏମ. ଏସ୍. ଆୟୁର୍ବେଦାଚାର୍ଯ୍ୟ ଲେଖିଛନ୍ତି ଯେ- କୁଇନାଇନ ସେବନ କରିବା ବାଦେ ପ୍ରତ୍ୟେକ ରୋଗୀର ଏହି ସବୁ ଲକ୍ଷଣ ଦେଖାଯାଏ । ଯଥା— ହୃଲ୍ଲାସ [ ଓକାଳିଉଠିବା ] ବାନ୍ତି, କର୍ଣ୍ଣନାଦ [ କାନରେ ଶବ୍ଦ ] ଶିରଃ ଶୂଳ, ଚାଞ୍ଚଲ୍ୟ, ମୂର୍ଚ୍ଛାଜ୍ୱର, ନାସା ତଥା ଗର୍ଭାଶୟରୁ ରକ୍ତସ୍ରାବ, ଦୃଷ୍ଟି ଦୌର୍ବଲ୍ୟ, ଶୀତପିତ୍ତ, ଚର୍ମରେ କଣ୍ଡୁ, ଅନିଦ୍ରା ଓ ଅରୁଚି । ଯଦି ମାତ୍ରାଧିକ୍ୟ ହୁଏ, ତାହେଲେ ଉପରୋକ୍ତ ଲକ୍ଷଣ ସହିତ ମୂର୍ଚ୍ଛା ପ୍ରଳାପ, ମୁଖାନ୍ଧତା, ସର୍ବାଙ୍ଗବାତ, ଜଡ଼ତା, ପାଣ୍ଡୁ, ତନ୍ଦ୍ରା, ନାଡ଼ୀ ଏବଂ ହୃଦୟର କ୍ଷୀଣତା ଓଜଃକ୍ଷୟ ଅବସନ୍ନତା ଏପରିକି ମୃତ୍ୟୁ ମଧ୍ୟ ହୋଇପାରେ ।

କୁଇନାଇନର ଇଞ୍ଜେକ୍ସନ୍ ଶୀଘ୍ର ନେଲେ ବା ବିଳମ୍ବରେ ଦେହର ଶୋଥ, ବିଦ୍ରଧି, ସ୍ଫୋଟ [ ଫଟନ ] ଓ ଧନୁର୍ବାତ ଉତ୍ପାଦନ କରିପାରେ, ।

[ ସ. ଆ. ମଇ ୧୯୫୫ ]

(୩୨) ବିଦ୍ୟାବାଚସ୍ପତି ଶାଳଗ୍ରାମ ଶାସ୍ତ୍ରୀ ଲେଖିଛନ୍ତି ଯେ- ଭାରତବର୍ଷରେ ଏବେ ବଢ଼ିବାର ବଢ଼ିଥିବା ଯକ୍ଷ୍ମା ରୋଗର ଅନ୍ୟତମ କାରଣ କୁଇନାଇନ ପ୍ରୟୋଗର ଦୁଷ୍ପରିଣାମ ଅଟେ । [ ଆ. ମ. ]

(୩୩) ଯକ୍ଷ୍ମାରୋଗ ପ୍ରତିଷେଧାର୍ଥେ ଆଜିକାଲି ଦିଆଯାଉଥିବା ବି. ସି. ଜି. ଟୀକା ସମ୍ବନ୍ଧେ ଶ୍ରୀ ଚକ୍ରବର୍ତ୍ତୀ ରାଜଗୋପାଳାଚାର୍ଯ୍ୟ ମହୋଦୟ- ନ୍ୟୁୟର୍କର କର୍ଣ୍ଣେଲ ୟୁନିଭର୍ସିଟି ମେଡ଼ିକାଲ କଲେଜ ଡାକ୍ତର ଡବ୍ଲ୍ୟୁ. ଜି. ମାଇଲଙ୍କର ମତ ଉଦ୍ଧାର କରି ଲେଖିଛନ୍ତି ଯେ- ଯକ୍ଷ୍ମା ରୋଗୀର ଜୀବାଣୁ ଦ୍ୱାରା ପ୍ରସ୍ତୁତ ବି. ସି. ଜି. ଟୀକା କୌଣସି ପ୍ରକାରେ ଆଶ୍ଚର୍ଯ୍ୟ-ଜନକ ସଫଳତା ଦେଖାଇ ପାରି ନାହିଁ । ଏ ବିଷୟରେ ଆହୁରି ଫଳପ୍ରଦ ଅନୁସନ୍ଧାନ ଆବଶ୍ୟକ । [ ସ. ଆ. ଜୁନ ୧୯୫୫ ]

୩୪) ବ୍ରିଟିଶ ମେଡ଼ିକାଲ ଜର୍ଣ୍ଣାଲ୍‌ରେ ପ୍ରକାଶିତ "ଏଣ୍ଟିବାୟୋଟିକ ଔଷଧମାନଙ୍କ ସମ୍ବନ୍ଧେ ସାବଧାନ" ଏହି ଶୀର୍ଷକ ଲେଖାର ଅନୁବାଦ ଏହିପରି- ଆମର ଶରୀରରେ ଯେଉଁ ପ୍ରାକୃତିକ ରୋଗ ପ୍ରତିକାର ଶକ୍ତି ଅଛି,

ତାହା ଆମମାନଙ୍କୁ ରୋଗମାନଙ୍କର ଆକ୍ରମଣରୁ ବଞ୍ଚାଇବା ପାଇଁ ସାହାଯ୍ୟ କରିଥାଏ । ଆଧୁନିକ ବିଜ୍ଞାନ ରୋଗର ପ୍ରତିକାର ଏବଂ ଉନ୍ମୂଳନ ନିମନ୍ତେ ଏଣ୍ଟିସେପ୍ଟିକ୍ ଏବଂ ଏଣ୍ଟିବାୟୋଟିକ ଔଷଧମାନଙ୍କର ଆବିଷ୍କାର କରିଛି । କିନ୍ତୁ ତୁଳନାତ୍ମକ ଦୃଷ୍ଟିରେ ବିଚାର କଲେ ଜଣାଯାଉଛି ଯେ, ଏଣ୍ଟିସେପ୍ଟିକ ଔଷଧମାନଙ୍କ ଅପେକ୍ଷା ପ୍ରାୟ ସମସ୍ତ ଏଣ୍ଟିବାୟୋଟିକ ଔଷଧ ଅନିଷ୍ଟକାରୀ ଅଟେ । ଏଥି ମଧ୍ୟରେ ପେନିସିଲିନ" ଅପେକ୍ଷାକୃତ କମ୍ ଅନିଷ୍ଟକର ଏବଂ "କ୍ଲୋରମ ଫେନିକୋଲ" ସବାପେକ୍ଷା ଅନିଷ୍ଟକର ଔଷଧ । ଉକ୍ତ ଏଣ୍ଟିବାୟୋଟିକ ଔଷଧ ଯେତେବେଳେ ରୋଗ- ଜୀବାଣୁ ଉପରେ ଆକ୍ରମଣ କରେ, ସେତେବେ ତା'ର ଉପଦ୍ରବ- ଫଳେ ମାନବ- ଶରୀରର ପ୍ରାକୃତିକ ରୋଗ ପ୍ରତିକାର ଶକ୍ତିକୁ ମଧ୍ୟ କୌଣସି ପ୍ରକାରେ ସ୍ୱୟଂକ୍ରିୟା ବ୍ୟତିରେକେ ତାଳୁରେ ନଷ୍ଟ କରିଦିଏ ଏବଂ ରୋଗୀ ଶରୀରରେ ଏପରି ଖରାପ ଫଳ ହୁଏ ଯେ- ତା'ର ପୂରଣ ପ୍ରାୟ ସମ୍ଭବ ହୁଏ ନାହିଁ । ଏହି ସବୁ ଔଷଧମାନଙ୍କର ସବୁଠାରୁ ଅଧିକ ଅନିଷ୍ଟକର ପ୍ରତିକ୍ରିୟା ଏହା ହୁଏ ଯେ- ଶରୀରର ରୋଗ ପ୍ରତିରୋଧକ ଶକ୍ତି ଏହାର ପ୍ରଭାବରେ ଚିରଦିନ ପାଇଁ ସମ୍ପୂର୍ଣ୍ଣଭାବରେ ନଷ୍ଟ ହୋଇଯାଏ ।

[ ସଂ ଆଂ ଏପ୍ରିଲ ୧୯୬୭ ]

ସାରକଥା ଏହି ଯେ- ଏଲୋପାଥି ଔଷଧ ସଦ୍ୟ ତାତ୍କାଳିକ ଫଳପ୍ରଦ ହେଲେ ମଧ୍ୟ ବହୁରୋଗ ଜନକ ବିଶେଷତଃ ଭାରତୀୟ ପ୍ରକୃତି ବିରୁଦ୍ଧ । ଭାରତର ଧନ ସମ୍ପଦ ଲୁଣ୍ଠି କରି ନେବାପାଇଁ ପର ଦେଶର ଔଷଧ- କମ୍ପାନୀମାନେ ପ୍ରଚାର ଯୋଗେ ନୂଆଁ ୨ ବେଶରେ ଔଷଧର ବିଜ୍ଞାପନ ପ୍ରଚାର କରି ସବୁ ପୂର୍ବ ଔଷଧର ଦୁର୍ଣ୍ଣାମ ହୋଇଯାଇଥିଲେ ନବାବିଷ୍କୃତ ଔଷଧର ଅବ୍ୟର୍ଥତା ବୁଝାଇ ସାଧାରଣ ଚକ୍ଷୁରେ-ଧୂଳି ପ୍ରକ୍ଷେପ କରୁଥାନ୍ତି । ଦେଖନ୍ତୁ ଯେ- ଏଥି ସମ୍ବନ୍ଧେ ଏମ୍. ବି. ୬୯୩, ଏମ୍. ବି. ୭୬୦ ସିବାଜୋଲ, ସଲଫାନୋଲାମାଇଡ୍, ସେମେଣ୍ଟେନଲମ୍, ସଲ୍ଫାଗୋନେଡ଼ୀନ, ସଲ୍ଫାଥିଓଜୋଲ, ପେନିସିଲିନ, ଷ୍ଟ୍ରେପ୍ଟୋମାଇସିନ୍, ଟେରାମାଇସିନ୍ ଅରିଓମାଇସିନ୍, କ୍ଲୋରୋମାଇସେଟିନ୍, ପି. ଏ. ଏସ୍. ଏବଂ ଆଇ. ପି. ଏନ୍. ଇତ୍ୟାଦିକୁ ଉଦାହରଣ ରୂପରେ ଏଠାରେ ରଖାଯାଇପାରେ ।

ସଲ୍ଫା ଔଷଧ ସେବନ ମଧ୍ୟରେ ସାଧାରଣ ସର୍ଦ୍ଦି ରୋଗରେ

ଆଚ୍ଛା ଉପକାର କରେ । କିନ୍ତୁ ରୋଗୀ ଉପରେ ଏହାର ବିଷାକ୍ତ ପ୍ରତିକ୍ରିୟା ହେବା ପରେ ଯେଉଁ ରୋଗ ଉତ୍ପନ୍ନ ହୁଏ, ତାହା ତିନ ବର୍ଷରେ ମଧ୍ୟ ଉପଶମ ହୁଏ ନାହିଁ । ପେନିସିଲିନ୍ ଥାୟୋୟୁରେସିଲ, ଏଣ୍ଡ୍ରୋଜଂଜ, ଏବଂ ଇଷ୍ଟ୍ରୋଜଂଜ ଏହି ସବୁ ଔଷଧମାନଙ୍କର ପ୍ରତିକ୍ରିୟାର ନିଃଶେଷ ରହସ୍ୟ ଏବେ ମଧ୍ୟ ଗୁପ୍ତ । ରୋଗରୁ ସେତେ ଭୟ ନାହିଁ, କିନ୍ତୁ ଶରୀର ମଧ୍ୟରେ ଏହିସବୁ ବିଷାକ୍ତ ଔଷଧ ପ୍ରୟୋଗ କଲେ ଯେଉଁ ପ୍ରତିକ୍ରିୟା ହୁଏ, ତାହା ହିଁ ଅତି ଭୟଙ୍କର ।

ତିନିବର୍ଷ ତଳେ କୋର୍ଟିସୋନ ନାମକ ଔଷଧର ଆବିଷ୍କାର ଦ୍ୱାରା ଚିକିତ୍ସା ବିଜ୍ଞାନ ଜଗତରେ ଏକ ଚମକ ପ୍ରଦ ନୂତନ ଯୁଗର ପ୍ରାଦୁର୍ଭାବ ହୋଇଥିଲା । ସେହି ଯୁଗର ତାହା ଉତ୍କୃଷ୍ଟ ଔଷଧ ବୋଲି ଲୋକେ ମାନୁଥିଲେ । ସେଥିଦ୍ୱାରା ହଜାର ହଜାର ଲୋକେ ଅକର୍ମା ହୋଇ ମୃତ୍ୟୁମୁଖରେ ପଡ଼ିଲେ । କାହାରି କିଛି ଲାଭ ହେଲାନାହିଁ, ବାସ୍ତବରେ ଭୟଙ୍କର ହାନି ହେଲା । ଶେଷରେ କୋର୍ଟିସୋନର ଭିତର ରହସ୍ୟ ଫିଟିଗଲା ଏବଂ ତା'ର ନିର୍ମାତାମାନଙ୍କର ଏବଂ ବୈଜ୍ଞାନିକ ମାନଙ୍କର କ୍ଷମାପ୍ରାର୍ଥନା ପତ୍ର ପ୍ରକାଶିତ ହେଲା । ହଜାର ଲୋକଙ୍କର ପ୍ରାଣହାନିକୁ କ୍ଷମାପ୍ରାର୍ଥନା ଦ୍ୱାରା ସେମାନେ ପରିଶୋଧ କରି ନେଇଗଲେ । ଏବେ ସେହି କୋର୍ଟିସନ ଔଷଧର ଆଉ ଦେଖାନାହିଁ । ଏହାର ପରେ ଷ୍ଟ୍ରେପ୍ଟୋମାଇସିନର ବିଜ୍ଞାପନ ବାହାରିଲା । ଏହାର ପ୍ରୟୋଗ ଦ୍ୱାରା ଶତକଡ଼ା ୯୦ ଲୋକ ଷଚ୍ୟୁରୋଗରେ ପଡ଼ିଲେ । ତା'ର ପରେ ବ୍ରିଟେନ ଚିକିତ୍ସା ଅନୁସନ୍ଧାନ ପରିଷଦ୍ ଦ୍ୱାରା ତା'ର ଅନିଷ୍ଟକାରିତା ଓ ବ୍ୟର୍ଥତା ପ୍ରମାଣିତ ହେଲା ।

ତା'ର ପରେ ଆସିଲା କ୍ଲୋରୋମାଇସେଟିନ । ଏହା ଔଷଧ ବିଜ୍ଞାନର ଆଶ୍ଚର୍ଯ୍ୟମୟ ଏକ ନୂତନ ଯୁଗକୁ ନେଇ ଆସିଲା । ଏହି ଔଷଧ ଟାଇଫାଇଡ଼ ଜ୍ୱରକୁ ୨୪ ଘଣ୍ଟା ମଧ୍ୟରେ ଛଡ଼ାଇଦିଏ । ଏହାର ପ୍ରୟୋଗ ଆନିବ୍ରଜା ବୃଲିଲା । ଅନେକ ରୋଗୀଉପରେ ଏହାର ଭୟଙ୍କର ପ୍ରତିକ୍ରିୟା ଦେଖାଗଲା । ଏହାର ପ୍ରୟୋଗ ଶରୀରର ଶ୍ୱେତାଣୁକୁ ନଷ୍ଟ କରିଦିଏ । ଏହାର ଏହି ସାମାନ୍ୟ ପ୍ରଭାବ ସମସ୍ତଙ୍କ ଉପରେ ହୋଇଥାଏ । ଜ୍ୱର ଛାଡ଼ିଯିବା ପରେ ଏହାର ପ୍ରତିକ୍ରିୟା ଅନ୍ୟରୋଗ ଉତ୍ପାଦନ କରିଥାଏ ।

ଏହିଭଳି ଶତ ଶତ ରୋଗୀର ପ୍ରାଣ ଏ ମଧ୍ୟ ନେଇଯାଇଛି ।

ଏହିଭଳି ବୈଜ୍ଞାନିକ ଇନ୍ଦ୍ରଜାଲର ମୋହରେ ପକାଇ ବିଦେଶୀ କମ୍ପାନୀମାନେ ଭାରତର ପ୍ରାଣ ଓ ଧନ ଲୁଣ୍ଠନ କରିବାରେ ଲାଗିଛନ୍ତି । (ସ. ଆ.)

ଏଲୋପ୍ୟାଥି ଔଷଧ ମାନଙ୍କର ଅବଶୁଦ୍ଧତାର କାରଣ ପ୍ରଥମେ ଦେଖନ୍ତୁ ଯେ— ଆଧୁନିକ ଏଲୋପ୍ୟାଥିକ ଔଷଧ ବିଜ୍ଞାନ ଜୀବାଣୁ ବାଦ ଉପରେ ପ୍ରତିଷ୍ଠିତ । ପ୍ରାୟ ସମସ୍ତ ରୋଗ ଜୀବାଣୁସଂକ୍ରମଣରୁ ଉତ୍ପନ୍ନ ହୁଏ ବୋଲି ସେଠାର ବୈଜ୍ଞାନିକ ମାନଙ୍କର ସିଦ୍ଧାନ୍ତ । କିନ୍ତୁ ଶରୀରରେ ଜୀବାଣୁ ସଂକ୍ରମଣର କାରଣ କ'ଣ ? ତାହା ସେମାନେ ଏପର୍ଯ୍ୟନ୍ତ ଆଲୋଚନା କରିନାହାନ୍ତି । ଏହି ଜୀବାଣୁ ବାଦ କେବଳ ସେମାନଙ୍କର ଆବିଷ୍କୃତ ନୂତନ ତଥ୍ୟନୁହେ । ଏହା ପୃଥିବୀର ଆଦିଗ୍ରନ୍ଥ ବେଦରେ ପୁରାଣ ମାନଙ୍କରେ ଏବଂ ଆୟୁର୍ବେଦରେ ବିଶଦଭାବରେ ନିରୂପିତ ହୋଇଅଛି ।

ଏହି ଜୀବାଣୁ ବାଦର ପ୍ରଥମ ଆବିଷ୍କର୍ତ୍ତା ହେଉଛନ୍ତି- ମହର୍ଷି କଣ୍ୱ' ଶୁକ୍ଳ ଯଜୁର୍ବେଦ କାଣ୍ୱସଂହିତାର ପ୍ରସ୍ତାବନାରେ ଲେଖା ଅଛିଯେ "କଣ୍ୱାଃ ରୋଗୋତ୍ପାଦକାଃ କ୍ରିମୟଃ————————ଅସ୍ୟ ରୋଗ ଜାତସ୍ୟ ସଂଶୋଧନମ୍ ଆବିଷ୍କାରେ ବା କଣ୍ୱେନ ମହର୍ଷିଣା କୃତୋ ଭବେତ୍ । ଇତ୍ୟେତଦର୍ଥଂ ତସ୍ୟ ଋଷେଃ ପୂଜାର୍ଥଂ କଣ୍ୱେତି ନାମ ତସ୍ମୈ ଯୋଗନୀଜାୟ ରୋଗକୃମିଭ୍ୟୋ ବା ଦତ୍ତମିତି ତର୍କୟିତୁଂ ଶକ୍ୟତେ "

ଅର୍ଥାତ୍ କଣ୍ୱଶବ୍ଦର ଅର୍ଥ-ରୋଗ ଉତ୍ପାଦକ ଜୀବାଣୁ । ଏହି ଜୀବାଣୁ ମାନଙ୍କର ଆବିଷ୍କର୍ତ୍ତା ଅଟନ୍ତି-ମହର୍ଷିକଣ୍ୱ । ଅତଏବ ସେଇ ଋଷିଙ୍କର ସତ୍କାର ବା ସ୍ମୃତିରକ୍ଷାପାଇଁ କଣ୍ୱ ନାମରେ ତାଙ୍କୁ ଅଭିହିତ କରାଯାଇଛି । କଣ୍ୱଙ୍କ ଦ୍ୱାରା ସଙ୍କଳିତ ସଂହିତାକୁ କାଣ୍ୱସଂହିତା ବୋଲାଯାଏ । ଅଥର୍ବ ବେଦରେ ମଧ୍ୟ " ଗର୍ଭଦଂ କଣ୍ୱଂ ନାଶୟ ପୃଶ୍ନିପର୍ଣ୍ଣି ସହସ୍ୱ ଚ " ଏହିମନ୍ତ୍ରରେ କଣ୍ୱଶବ୍ଦର ଅର୍ଥ ଜୀବାଣୁ ବୋଲି ଲେଖାଅଛି । (ଅଥର୍ବବେଦ ୨।୭।୨୫।୫।୩ ) ମହର୍ଷିକଣ୍ୱ ଯାଜ୍ଞବଲକ୍ୟଙ୍କର ଶିଷ୍ୟଅଟନ୍ତି । ଯାଜ୍ଞବଲକ୍ୟଋଷି ତ୍ରେତାଯୁଗରେ ଥିଲେ ବୋଲି ଜନକ ଯାଜ୍ଞବଲକ୍ୟ ସମ୍ବାଦରୁ ଜଣାଯାଏ । ଆଦିତ୍ୟ ପୁରାଣରେ ଲେଖା ଅଛି ଯେ—

ବୋଧାୟନ ପିତୃଭ୍ରାତ ପ୍ରଶିଷ୍ୟତ୍ୱାଦ୍ ବୃହସ୍ପତେଃ
ଶିଷ୍ୟତ୍ୱାତ୍ ଯାଜ୍ଞବଲକ୍ୟସ୍ୟ କଣ୍ୱୋଽଭୁତ୍ ମହତୋମହାନ୍ ।

ଅର୍ଥାତ୍ ବୋଧାୟନଙ୍କର ପୁତ୍ର, ବୃହସ୍ପତିଙ୍କର ପ୍ରଶିଷ୍ୟ, ଯାଜ୍ଞବଲ୍କ୍ୟଙ୍କର ଶିଷ୍ୟ ହେତୁରୁ କଣ୍ୱମହର୍ଷି ସର୍ବାଧିକ ଅନନ୍ତ । କଣ୍ୱହିଁ ଜୀବାଣୁ ବାଦର ପ୍ରଥମ ଆବିଷ୍କର୍ତ୍ତା ।

ବେଦରେ ତନ୍ତ୍ରରେ ଓ ଆୟୁର୍ବେଦରେ ଜୀବାଣୁମାନଙ୍କୁ ଭୂତ, ପ୍ରେତ, ପିଶାଚ, ରକ୍ଷଃ, ଗ୍ରହ, ଓ ଜ୍ୱର ଆଦି ନାମରେ ଅଭିହିତ କରାଯାଇଛି । ଜ୍ୱରସ୍ତ୍ରିପାଦଃ ତ୍ରିଶିରାଃ ଷଡ୍ଭୁଜଃ ନବଲୋଚନଃ ବୋଲି ଜ୍ୱରର ମୂର୍ତ୍ତି ବର୍ଣ୍ଣନା କରାଯାଇଛି । ଆଧୁନିକ ବୈଜ୍ଞାନିକମାନେ ମଧ୍ୟ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ବଡ଼ିଶ ଧରଣର ବିଭିନ୍ନ ପ୍ରକାର ପାଦଶାଖାଯୁକ୍ତ ରୋଗ ଜୀବାଣୁ କୀଟମାନଙ୍କୁ ପ୍ରତ୍ୟକ୍ଷରେ ଉପଲବ୍ଧି କରିପାରୁଛନ୍ତି । ମହାଭାରତରେ ଲେଖାଅଛି ଯେ---

ଉଦକେ ବହବଃ ପ୍ରାଣାଃ ପୃଥିବ୍ୟାଂ ଚ ଫଳେଷୁ ଚ
ସୂକ୍ଷ୍ମଯୋନିନି ଭୂତାନି ତର୍କଗମ୍ୟାନି କାନିଚିତ୍
ପକ୍ଷ୍ମଣୋଽପି ନିପାତେନ ଯେଷାଂ ସ୍ୟାତ୍ ସ୍କନ୍ଧପର୍ଯ୍ୟୟଃ ।

( ମ. ଭା. ଶା. ୧୫ । ୬ )

ଅର୍ଥାତ୍ ଜଳରେ, ପୃଥିବୀରେ ଓ ଫଳମୂଳାଦିରେ ସୂକ୍ଷ୍ମାତିସୂକ୍ଷ୍ମ ଅସଂଖ୍ୟ ଜୀବାଣୁ ପରିବ୍ୟାପ୍ତ ହୋଇ ରହିଅଛି ।

ମାଲେରିଆ ଆଦି ବିଷମ ଜ୍ୱରମାନଙ୍କର କାରଣ ଜୀବାଣୁ ବୋଲି ଚରକ ସଂହିତାରେ ଲେଖାଅଛି । ଯଥା—

କାମ ଶୋକ ଭୟ କ୍ରୋଧୈ ରଭିଭୂତସ୍ୟ ଯୋ ଜ୍ୱରଃ
ସୋଽଭିଘାତଜୋ ଜ୍ୱରୋ ଜ୍ଞେୟଃ ମନ୍ତ୍ର ଭୂତାଭିଷଙ୍ଗଜଃ ॥

ଏହିପରି ଯକ୍ଷ୍ମାରୋଗର କାରଣ ଜୀବାଣୁ ବୋଲି ଚରକ କହିଛନ୍ତି । ଯଥା—

ବ୍ୟାୟାମୋଽନଶନଂ ଚିନ୍ତା ରୂକ୍ଷାଲ୍ପ ପ୍ରମିତାଶନମ୍
ବାତାତପୌ ଭୟଂ ଶୋକଃ ରୂକ୍ଷପାନଂ ପ୍ରଜାଗରଃ ॥
କଫ ଶୋଣିତ ଶୁକ୍ରାଣାଂ ମଳାନାଂ ଚାତିବର୍ତ୍ତନମ
କାଳଭୁକ୍ତୋପଘାତଶ୍ଚ ବିଜ୍ଞେୟାଃ ଯକ୍ଷ୍ମହେତବଃ ॥

( ଚ. ସୂ. ୧୭ ଅ )

ଏହିପରି କୁଷ୍ଠରୋଗ ବୃଦ୍ଧିର କାରଣ ଜୀବାଣୁ ବୋଲି ଚରକରେ ଲେଖାଅଛି ଯଥା—

"ସାଧ୍ୟାନାମପି ( କୁଷ୍ଠାନାମ୍ ) ହ୍ୟୁପେକ୍ଷମାଣାନାମ୍ ଏଷାଂ
ତ୍ୱଙ୍ମାଂସ ଶୋଣିତ ଲସୀକା କୋଥକ୍ଲେଦସଂସ୍ୱେଦଜାଃ
କ୍ରିମୟଃ ଅଭିମୂର୍ଚ୍ଛନ୍ତି । ତେ ଭକ୍ଷୟନ୍ତସ୍ତ୍ୱଗାଦୀନ୍ ଦୋଷାନ୍
ପୁନର୍ଦୂଷୟନ୍ତଃ ଇମାନ୍ ଉପଦ୍ରବାନ୍ ପୃଥକ୍ ୨ ଉତ୍ପାଦୟନ୍ତି
( ଚ. ନି. ୫ ଅ )

ଆଚାର୍ଯ୍ୟ ସୁଶ୍ରୁତ ମଧ୍ୟ ଏହି କଥା ହିଁ ଲେଖିଛନ୍ତି- ଯଥା—ସର୍ବାଣି କୁଷ୍ଠାନି ସବାତାନି, ସପିତ୍ତାନି, ସଶ୍ଳେଷ୍ମାଣି ସକ୍ରିମୀଣି ଭବନ୍ତି । (ସୁ. ନି. ୫ ଅ) ସୁଶ୍ରୁତ କୀଟାଣୁ ସଂକ୍ରମଣଜାତ ରୋଗମାନଙ୍କୁ ଔପସର୍ଗିକ ବୋଧ କହନ୍ତି ।

ଯଥା— ପ୍ରସଙ୍ଗାତ୍ ଗାତ୍ରସଂସ୍ପର୍ଶାତ୍ ନିଃଶ୍ୱାସାତ୍ ସହଭୋଜନାତ୍ ।
ସହଶଯ୍ୟାସନାଚ୍ଚୈବ ବସ୍ତ୍ରମାଲ୍ୟାନୁଲେପନାତ୍ ।
କୁଷ୍ଠଂ ଜ୍ୱରଶ୍ଚ ଶୋଷଶ୍ଚ ନେତ୍ରାଭିଷ୍ୟନ୍ଦ ଏବ ଚ ।
ଔପସର୍ଗିକ ରୋଗାଶ୍ଚ ସଂକ୍ରାମନ୍ତି ନରାନ୍ନରମ୍ । ( ସୁ. ନି. ୫ ଅ )

ଏହାପରେ ମଧ୍ୟ ବାଗ୍ଭଟ୍ଟ ଓ ସୁଶ୍ରୁତ ଲେଖିଛନ୍ତି ଯଥା—
ରକ୍ତବାହିଶିରାସ୍ଥାନା ରକ୍ତଜା ଜନ୍ତବୋଽଣବଃ ।
ରକ୍ତାଧିଷ୍ଠାନଜାନ୍ ପ୍ରାୟୋ ବିକାରାନ୍ ଜନୟନ୍ତି ତେ ॥
( ସୁ ଉ. ୫୪ )
ଯନ୍ ତେ କୁଷ୍ଠୈକକର୍ମାଣଃ ସୌକ୍ଷ୍ମ୍ୟାତ୍ କେଚିଦଦର୍ଶନାଃ ॥
( ବାଗ୍ଭଟ୍ଟ ଉ. ୧୪ )
ଅଶ୍ମାଙ୍ଗ ଉନ୍ମର୍ଯ୍ୟାଦଂ ଯାତଂ ବା ଯଦ ବା କ୍ଷତମ୍ ହଂସ୍ୟୁଃ ॥
( ସୁ. ଉ. ୭ ଅ ୫ )
ହଂସାବଦାରଣି ହି ମର୍ମାବର୍ତ୍ତୀନି ରକ୍ଷାଂସି ମାଂସ-
ଶୋଣିତ ପ୍ରିୟତ୍ୱାତ୍ ଯତଜଙ୍ଘମିତ୍ରଂ ବ୍ରଣିନମୁପସର୍ପନ୍ତି ।
( ସୁ. ସୂ. ୧୯ ଅ )

ମକ୍ଷିକୋପସର୍ପଣାଦ୍ ବ୍ରଣେ କ୍ରିମୟଃ ପତନ୍ତି ( ସୁ. ସୂ. ୫ ଅ )
ଏହାପରେ ଅନେକପ୍ରକାର କୀଟାଣୁ ସଂସର୍ଗ ବହୁବିଧ ଆଗନ୍ତୁକ ରୋଗରେ ନିମିତ୍ତ କାରଣ ବୋଲି ଆୟୁର୍ବେଦ ଶାସ୍ତ୍ରରେ ଉପଦିଷ୍ଟ ହୋଇଅଛି । କିନ୍ତୁ କୀଟାଣୁ ସଂକ୍ରମଣ ରୋଗମାନଙ୍କର ମୂଳ କାରଣ ବୋଲି କୌଣସିଠାରେ ଲେଖା ନାହିଁ । ଏହି କୀଟାଣୁ ସଂସର୍ଗଜାତ ରୋଗମାନଙ୍କର କାରଣ-ତ୍ରିଦୋଷ

ଏହା ଚରକ ଶାସ୍ତ୍ରର ସ୍ଥାନରେ ଲେଖାଅଛି ଯଥା—

ଯେ ଭୂତବିଷବାୟ୍ୱଗ୍ନି ସଂପ୍ରହାରାଦି ସମ୍ଭବାଃ
ନୃଣାମାଗନ୍ତବୋ ରୋଗାଃ ପ୍ରଜ୍ଞା ତେଷ୍ୱପରାଧ୍ୟତି । (ଚ୦ ଶା୦ ୧ ଅ)

ଅର୍ଥାତ୍ ଜୀବାଣୁ ସଂକ୍ରମଣ, ବିଷବାୟୁସ୍ପର୍ଶ, ଅଗ୍ନିସଂଯୋଗ, ଓ ପ୍ରହାରାଦି ସମ୍ଭୂତ ସମସ୍ତ ଆଗନ୍ତୁକ ରୋଗମାନଙ୍କର କାରଣ ପ୍ରଜ୍ଞାପରାଧ ।

ପ୍ରଜ୍ଞାପରାଧ ବା ବୁଦ୍ଧି ଦୋଷରୁ ଲୋକ ଅସତ୍ ଧର୍ମରେ ଲିପ୍ତ ହୁଏ, ଅଧର୍ମ ଅନ୍ୟାୟ ଅନର୍ଥ ଆଚରଣ କରେ । ସେଥି ଯୋଗୁଁ ତା'ର ସ୍ଥୂଳ ସୂକ୍ଷ୍ମ, କାରଣ ଶରୀରସ୍ଥ ଧାତୁମାନେ ଦୂଷିତ ହୋଇଯାନ୍ତି । ସୁତରାଂ ସେଭଳିଆ ଲୋକ ଦୈହିକ ତ୍ରାସ ଦୂଷିତ ହେଲେ ହିଁ ଜୀବାଣୁ ସଂକ୍ରମଣର ସୋମ ରୂପରେ ପଡ଼ିଲେ ଜଣେ । ଏହାପରେ ଅନ୍ୟତ୍ର ଚରକ ଲେଖିଛନ୍ତି ।

ନୈବ ଦେବା ନ ଗନ୍ଧର୍ବା ନ ପିଶାଚା ନ ରାକ୍ଷସାଃ ।
ନ ଚାନ୍ୟେ ସ୍ୱୟମକ୍ଲିଷ୍ଟମୁପକ୍ଲିଶ୍ନନ୍ତି ମାନବମ୍ ॥
ଯେ ତ୍ୱେନମନୁବର୍ତ୍ତନ୍ତେ କ୍ଲିଶ୍ୟମାନଂ ସ୍ୱକର୍ମଣା ।
ନ ସ ତଦ୍ଧେତୁକଃ କ୍ଲେଶୋ ନାସ୍ତି ହ୍ୟସ୍ୟ କୃତକୃତ୍ୟତା ॥
ପ୍ରଜ୍ଞାପରାଧାତ୍ ସମ୍ଭୂତେ ବ୍ୟାଧୌ କର୍ମଜ ଆତ୍ମନଃ ।
ନାଭିଶଂସେତ୍ ବୁଧୋ ଦେବାନ୍ ନ ପିତୃନ୍ ନ ଚ ରାକ୍ଷସାନ୍ ॥
ଆତ୍ମାନମେବ ମନ୍ୟେତ କର୍ତ୍ତାରଂ ସୁଖଦୁଃଖୟୋଃ ।
ତସ୍ମାତ୍ ଶ୍ରେୟସ୍କରଂ ମାର୍ଗଂ ପ୍ରତିପଦ୍ୟେତ ନୋ ତ୍ରସେତ୍ ॥
ଦେବାଦୀନାମପଚିତିର୍ହିତାନାଂ ଚୋପସେବନମ୍ ।
ତେ ଚ ତେଭ୍ୟୋ ବିରୋଧଶ୍ଚ ସର୍ବମାୟତ୍ତମାତ୍ମନି ॥

( ଚ୦ ନି୦ ୭ ଅ )

ଏହି ସନ୍ଦର୍ଭର ତାତ୍ପର୍ଯ୍ୟ ଏହି ଯେ- ଅନ୍ତର ପ୍ରକୃତିର ସୂକ୍ଷ୍ମ ଉପାଦାନ ନିଜର ସ୍ୱୟଂ ସଂଯୋଗ ସମାବେଶରେ ଯେଉଁ ବୃକ୍ଷଲତା, ଜୀବାଣୁ ପକ୍ଷୀ ନଦୀ, ଏବଂ ମନୁଷ୍ୟର ନିରତିଶୟ ଅସଂଖ୍ୟ ପ୍ରାଣୀ ସୃଷ୍ଟି କରନ୍ତି, ସେହି ସୃଷ୍ଟ ପ୍ରାଣୀମାନେହିଁ ନୈସର୍ଗିକ ନିୟମରେ ଭୂତ ପ୍ରେତ ପିଶାଚାଦି ରୂପରେ, ରୋଗଜନକ ଜୀବାଣୁ ରୂପରେ ଉତ୍ପନ୍ନ ହୋଇ ସେମାନଙ୍କର ରକ୍ଷକ ବା ଘାତକ ହୁଅନ୍ତି । ଭଗବାନ୍ ଗୀତାରେ ମଧ୍ୟ ଏହି କଥା

ସାକ୍ଷାତ୍ ରୋଗର କାରଣ ବୋଲିଯାଇ ନପାରେ । କିନ୍ତୁ ଅଧର୍ମାଚରଣ, ବା ଅନୁଚିତ ଆହାର ବିହାରଦ୍ୱାରା ବିଷମତା ପ୍ରାପ୍ତ ଶରୀରସ୍ଥ ବାତାଦି ଧାତୁମାନେ ହିଁ ରୋଗମାନଙ୍କର ସାକ୍ଷାତ୍ ମୂଳକାରଣ । ଜୀବାଣୁମାନଙ୍କୁ ପରମ୍ପରାରେ ରୋଗର କାରଣ ବୋଲିଯାଇପାରେ । ଏହା ହିଁ ରୋଗର କାରଣ ସମ୍ବନ୍ଧରେ ଆୟୁର୍ବେଦ ସମ୍ମତ ସତ୍ୟ ସିଦ୍ଧାନ୍ତ ।

ଏହାର ସପକ୍ଷରେ ଆମେରିକାର ସୁପ୍ରସିଦ୍ଧ ପ୍ରାକୃତିକ ଚିକିତ୍ସକ (୧) ବର୍ଣ୍ଣର ମେକ ଫେଡେନ୍ (୨) ଜ. ହେଚ. କେଲଗ (୩) ଲେସନେଲି ଡାଇନେଟ୍ରୋପ୍ୟାଥିର ଲେଖକ ଏମାନଙ୍କର ଗ୍ରନ୍ଥ ଦ୍ରଷ୍ଟବ୍ୟ । ଏମାନେ ଜୀବାଣୁରୁ ରୋଗର ଉତ୍ପତ୍ତି ମାନନ୍ତି ନାହିଁ ।

ଏହିପରି ଇଂଲଣ୍ଡର ଡାକ୍ତର ଟେଷ୍ଟିନଲୀଙ୍ଗ, ହେନ୍ସିବେନ ଜାମିନ ଆଦି ପ୍ରାକୃତିକ ଚିକିତ୍ସକ ବର୍ଗ ମଧ୍ୟ ଜୀବାଣୁବାଦର ବିରୋଧୀ । ଏମାନଙ୍କ ମତରେ ରୋଗର କାରଣ ଜୀବାଣୁ ନୁହେ । କିନ୍ତୁ ନାନାବିଧ ଅନୁଚିତ ସେବନ ହେତୁରୁ ଶରୀରରେ ଏକତ୍ରିତ ହୋଇଥିବା ଦୂଷିତ ପଦାର୍ଥ ହିଁ ରୋଗର କାରଣ ଅଟେ ।

ଶୁଣାଯାଏ ଯେ- ଜଣେ ସୁପ୍ରସିଦ୍ଧ ପ୍ରୋଫେସର ବିଦ୍ୟାର୍ଥୀମାନଙ୍କ ଆଗରେ ଜୀବାଣୁ ବାଦର ବିରୁଦ୍ଧରେ ଜନତା ସମ୍ମୁଖରେ ନିଜ ଉକ୍ତିର ଯଥାର୍ଥତା ପ୍ରମାଣିତ କରିବାପାଇଁ, ଏବଂ ତୁମମାନଙ୍କର ବିଶ୍ୱାସ ଜନ୍ମାଇବା ପାଇଁ କଲେରାର ଜୀବାଣୁକୁ ପାଣିରେ ମିଶାଇ ନିଜେ ପିଇ ଦେଇଥିଲେ । ତଦ୍ୱାରା ତାଙ୍କର କଲେରା ହେଲା ନାହିଁ । କିନ୍ତୁ ଥରେ ମାତ୍ର ଝାଡ଼ା ହୋଇ ଆସିଲା ।

ଅନ୍ୟାନ୍ୟ ରୋଗର ଜୀବାଣୁ ସମ୍ବନ୍ଧେ ମଧ୍ୟ ଏହି କଥା ବୁଝିବାକୁ ହେବ । ଅତଏବ ଏଠାରେ ସଂକ୍ଷେପତଃ ଏଲୋପ୍ୟାଥିକ ଔଷଧ ବିଜ୍ଞାନ ସମ୍ବନ୍ଧରେ ଏତିକି ବୋଲିଯାଇପାରେ ଯେ- ଦେହ, ଇନ୍ଦ୍ରିୟ, ମନ ଓ ଆତ୍ମାର ଉପରେ ଯେଉଁ ସବୁ ରୋଗ ଓ ଆରୋଗ୍ୟର ମୂଳ ତତ୍ତ୍ୱ ରହିଛି, ତାହା ଏପର୍ଯ୍ୟନ୍ତ ଏଲୋପ୍ୟାଥିକ ଜଡ ବିଜ୍ଞାନ ବୁଝିପାରି ନାହିଁ । ସେ କେବଳ ରୋଗର ନିମିତ୍ତ କାରଣ ପ୍ରତ୍ୟକ୍ଷ ଦୃଷ୍ଟ ଜୀବାଣୁମାନଙ୍କୁ ମାରି ସେମାନଙ୍କର ସଂକ୍ରମଣ ଶକ୍ତି ଚୂଡ଼କୁ ଦବେଇଦେବା ହିଁ ଚିକିତ୍ସା ବୋଲି ବୁଝିଛି । ସେହି ଉଦ୍ଦେଶ୍ୟରେ ହିଁ ସେ ସମସ୍ତ ଔଷଧ ଓ ଇଞ୍ଜେକ୍ସନ ଆବିଷ୍କାର କରିଛି ।

ଏଠାରେ କେହି କେହି ପଚାରି ପାରନ୍ତି ଯେ- ଯେତେବେଳେ ରୋଗସହିତ ଜୀବାଣୁମାନଙ୍କର ଅବିଚ୍ଛେଦ୍ୟ କାର୍ଯ୍ୟକାରଣ ସମ୍ବନ୍ଧ ବରାବର ରହିବାର ପ୍ରତ୍ୟକ୍ଷ କରାଯାଉଛି, ସେତେବେଳେ ସେଇ ନିମିତ୍ତ କାରଣ ଜୀବାଣୁମାନଙ୍କୁ ମାରି ତଜ୍ଜନିତ ରୋଗମାନଙ୍କୁ ଦୂରେଇବା ପାଇଁ ଏବେ ଯେଉଁ ସବୁ ଔଷଧ ଆବିଷ୍କୃତ ହୋଇଅଛି, ସେଇଗୁଡିକୁ ଅବିଶୁଦ୍ଧ ବୋଲି କହିବ କାହିଁକି ?

ଏହାର ଉତ୍ତର ଏହି ଯେ- ନିମିତ୍ତ କାରଣ ନଷ୍ଟ ହେଲେ ଯେ ତା'ର କାର୍ଯ୍ୟ ନଷ୍ଟ ହେବ, ଏହିପରି କିଛି ନିୟମ ନାହିଁ । କୁମ୍ଭକାରର ମୃତ୍ୟୁରେ କୁମ୍ଭ ନଷ୍ଟ ହୁଏନାହିଁ । ତନ୍ତୁବାୟକୁ ମାରିଦେଲେ ତା'ର କାର୍ଯ୍ୟ ବସ୍ତ୍ର ନଷ୍ଟ ହୁଏନାହିଁ । ସୁତରାଂ ଉପାଦାନ କାରଣ ଓ ଅସମବାୟି କାରଣ ସହିତ କାର୍ଯ୍ୟର ସମ୍ବନ୍ଧ ନିତ୍ୟ ଥିବା, ନିମିତ୍ତ କାରଣ ସହିତ ନୁହେ ।

ଯଦି ବୋଲ, ବର୍ତ୍ତି ଓ ତେଲ ନଥିଲେ ଯେପରି ଦୀପ ନଷ୍ଟ ହୁଏ, ସେଇପରି ମ୍ୟାଲେରିଆ ଜ୍ୱରର ନିମିତ୍ତ କାରଣ ଜୀବାଣୁ କ୍ୱିନାଇନ ଔଷଧ ପ୍ରୟୋଗରେ ନଷ୍ଟ ହେଲେ ମ୍ୟାଲେରିଆ ଜ୍ୱର ବି ନଷ୍ଟ ହେବାର ଶତ ଶତ ସ୍ଥାନରେ ପ୍ରତ୍ୟକ୍ଷ ଦେଖାଯାଇଥାଏ, ତା'ହେଲେ ସେପରି ସ୍ଥଳରେ କ୍ୱିନାଇନ ଔଷଧର ପ୍ରୟୋଗ ଅବିଶୁଦ୍ଧ ହେବ କାହିଁକି ?

ଏହାର ଉତ୍ତରରେ ବକ୍ତବ୍ୟ ଏହି ଯେ- କ୍ୱିନାଇନ ବ୍ୟାଧି ବିପରୀତ ଔଷଧ । ଏହିପରି ଔଷଧର ପ୍ରୟୋଗ ଦୋଷ ଦୂଷ୍ୟ ବିଚାର ମୂଳକ ନୁହେ । ଆଶୁ ପ୍ରାଣନାଶକ ରୋଗମାନଙ୍କରେ ହିଁ ଏହିପରି ଶୀଘ୍ର ଫଳପ୍ରଦ ଔଷଧ ପ୍ରୟୋଗ କରାଯାଇ ଥାଏ । ଶାସ୍ତ୍ରରେ ଲେଖାଅଛି ଯେ—

ଆତ୍ୟୟିକେଷୁ ରୋଗେଷୁ ନୋପେକ୍ଷେତ୍ ବିଧିମିମଂ ଭିଷକ୍ ।
ପ୍ରଦୀପ୍ତାଗାରବତ୍ତସ୍ୟ ଶୀଘ୍ରଂ କୁର୍ଯ୍ୟାତ୍ ପ୍ରତିକ୍ରିୟାମ୍ ॥

ଅର୍ଥାତ୍ ଗୃହଦାହ ସମୟରେ ଯେପରି ତୁରନ୍ତ ତା'ର ପ୍ରତିକାର କରିବାକୁ ହୁଏ, ସେଇପରି ପ୍ରାଣ ସଙ୍କଟଜନକ ରୋଗ ଉପସ୍ଥିତ ସମୟରେ ଶରୀରସ୍ଥ ଦୋଷ ଦୂଷ୍ୟମାନଙ୍କର ବିକୃତିର ମୂଳ କାରଣ ଅନୁସନ୍ଧାନ ନ କରି ସେପରି ସ୍ଥଳରେ ବ୍ୟାଧି ବିପରୀତ ଔଷଧ ହିଁ ପ୍ରୟୋଗ କରିବ । କିନ୍ତୁ ଆଜିକାଲି ସାଧାରଣ କ୍ଷେତ୍ରରେ ରୋଗର ମୂଳକାରଣ, ରୋଗୀର ପ୍ରକୃତି ଓ ଦେଶ କାଳର ଅବସ୍ଥା ପରୀକ୍ଷା ନ କରି ମ୍ୟାଲେରିଆ ଜ୍ୱର ବୋଲିବା

ମାନେ ତା'ର କୀଟାଣୁଙ୍କୁ ମାରିବା ପାଇଁ ଯେଉଁ ଆଣ୍ଟିବୁଜା କ୍ୟାନାଇନ ଔଷଧ ପ୍ରୟୋଗ କରନ୍ତି, ତାହାଦ୍ୱାରା ସେହି ଜ୍ୱରଟା ତତ୍କାଳରେ ଦବିଗଲେ ମଧ୍ୟ ତା'ର ପରେ ପରେ ଗୋଟାଏ ପ୍ରତିକ୍ରିୟା ବାହାରିବାର ଦେଖାଯାଉଛି । କ୍ୟାନାଇନର ଅତି ଉତ୍କଟ ତିକ୍ତଗୁଣ ବାତପ୍ରକୃତି ଶରୀରରେ ଭ୍ରମ, କର୍ଣ୍ଣନାଦ, ଅନିଦ୍ରା ଆଦି ଉପଦ୍ରବ ଜାତ କରୁଛି ଏବଂ ତା'ର ଉଷ୍ଣତା ଓ ତୀକ୍ଷ୍ଣତା ପିତ୍ତ ପ୍ରକୃତି ଲୋକଙ୍କର ଦାହ, ତୃଷା, ଓ ଗାତ୍ରଜ୍ୱାଳା ଇତ୍ୟାଦି ଉପସର୍ଗ ଜନ୍ମାଇବାର ଦେଖାଯାଉଛି । ପୁଣି ସେହି ଔଷଧର ପ୍ରୟୋଗରେ ମଳଦ୍ୱାର କୀଟାଣୁମାନଙ୍କର ସହ ସଂସର୍ଗରେ ଅନ୍ୟାନ୍ୟ ରୋଗ ଉତ୍ପନ୍ନ ହେବାର ଦୃଷ୍ଟିଗୋଚର ହେଉଛି ଏବଂ ଉପର୍ଯ୍ୟୁପରି ଅଳ୍ପମାତ୍ରାରେ କ୍ୟାନାଇନ ସେବନ କରିବାଦ୍ୱାରା ଅନେକ ସ୍ଥଳରେ ଶରୀର ପୋଷକ ଅଗ୍ନିମାନ୍ଦ୍ୟ ( ଯକୃତ୍ପିଲ ) ନଷ୍ଟହୋଇ ଦୀର୍ଘକାଳ ପର୍ଯ୍ୟନ୍ତ ଶରୀରର ସ୍ୱାସ୍ଥ୍ୟ ଉପରେ ବାଧା ପଡୁଛି । ସୁତରାଂ ଏହିପରି ବ୍ୟାଧିକ୍ଷତଗ୍ରସ୍ତ ଉକ୍ତ ଔଷଧକୁ ପ୍ରକୃତି ପରୀକ୍ଷା ନ କରି ତତ୍କାଳରେ ଫଳଲାଭ ଆଶାରେ ସର୍ବତ୍ର ପ୍ରୟୋଗ କରିବାଟା ହେଉଛି- ଅବୈଜ୍ଞାନିକ, ଅନ ଚିକିତ୍ସା । ଏହାକୁ ଆୟୁର୍ବେଦୀୟ ଭାଷାରେ ଦୋଷାବସର ପ୍ରଶମନାତ୍ମକ ଚିକିତ୍ସା ବୋଲାଯାଏ ।

ଏହି କାରଣରୁ ହିଁ ପାଶ୍ଚାତ୍ୟ ଦେଶର ପ୍ରସିଦ୍ଧ ବୈଜ୍ଞାନିକମାନେ କେବଳ ଏଲୋପ୍ୟାଥିକ ଔଷଧକୁ ପ୍ରାଣଘାତକ ବୋଲି ବର୍ଜନ କରୁଥାନ୍ତି ।

କିନ୍ତୁ ଆମର ଆୟୁର୍ବେଦୀୟ ଔଷଧ ସବୁ କୀଟାଣୁ ନାଶକ ହେବାମଧ୍ୟ ସହ ନୂତନ, ତାହା ସବୁ ସୌମ୍ୟ, ରସାୟନ, ସୁସ୍ଥଦେହରେ ମଧ୍ୟ ଦୀର୍ଘକାଳ ପର୍ଯ୍ୟନ୍ତ ସେବନୀୟ ଅଟେ । ଏହା ଫଳମ୍ୱରେ ଫଳପ୍ରଦ ହେବାକାରଣ ନିର୍ଦ୍ଦୋଷ, ବିଶୁଦ୍ଧ, ବଳବୀର୍ଯ୍ୟ ବର୍ଦ୍ଧକ ଓ ପ୍ରତିକ୍ରିୟାର ରହିତ ଅଟେ । ଏତଦ୍ଭିନ୍ନ କୀଟାଣୁ ସଂକ୍ରମଣ ଓ ତଜ୍ଜନିତ ରୋଗନାଶାର୍ଥ ଆୟୁର୍ବେଦୋକ୍ତ ଧୂପ, ହୋମ, ଭୈଷଜ୍ୟଯଜ୍ଞ, ସଦାଚାର ପାଳନ, ଦେବପୂଜନାଦି କର୍ମ ମୁଖ୍ୟ ହିଁ ଦିବ୍ୟ ଔଷଧ ଅଟେ । ଏହିସବୁ ବିଷୟ ବିଶଦଭାବରେ ପରେ ଆମେ କହିବୁ ।

ଏହି ପରିସ୍ଥିତିରେ ଆମମାନଙ୍କର ଦୁର୍ଭାଗ୍ୟର ବିଷୟ ଏହି ଯେ— ଏବେ ଏହି ଆପାତରମଣୀୟ ବିଦେଶୀ ଚିକିତ୍ସା ପ୍ରଣାଳୀର ପ୍ରସାର ନିମନ୍ତେ ଆମର ଭାରତ ସରକାର ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନାରେ ୨୦ ଅର୍ବୁଦ

୫ କୋଟି ଟଙ୍କା ବ୍ୟୟ କରିବା ପାଇଁ ପ୍ରସ୍ତାବ ଗ୍ରହଣ କରିଛନ୍ତି । ବରଂ ସରକାର ଏତଦ୍ୱାରା ଅନୁଷ୍ଠାନଗୁ ବିଦେଶୀ ଔଷଧ ଗ୍ରାମେ ଗ୍ରାମେ ବାଣ୍ଟି ଗାଉଁଲିଆ ବୈଦ୍ୟଙ୍କର ଦାନା ମାରିବା ପାଇଁ ମାସିକିଆ ଟ୍ରେନିଙ୍ଗ ପ୍ରାପ୍ତ କେତେଗୁଡ଼ିଏ କମ୍ପାଉଣ୍ଡର ସୃଷ୍ଟି କରିବାରେ ଲାଗିଛନ୍ତି । ଆହୁରି ଏକ ସରସ କଥା ଯେ- କେନ୍ଦ୍ରୀୟ ସ୍ୱାସ୍ଥ୍ୟ ମନ୍ତ୍ରୀଣୀ ରାଜକୁମାରୀ ଅମୃତକୌର ୧୯୫୪- ଅଗଷ୍ଟ ୭ ତାରିଖ ରେ ମାନ୍ଦ୍ରାଜର ଧନ୍ୱନ୍ତରି ସାଲୁକାର ନେପଶୁରେ ଗୋଟିଏ ପୁସ୍ତକାଗାର ଉଦ୍‌ଘାଟନ କରିବାକୁ ଯାଇ ତାଙ୍କର ଭାଷଣରେ କହିଛନ୍ତି ଯେ- "ଗଲା ନ'ବର୍ଷ ମଧ୍ୟରେ ଯେଉଁଦିନ ଠାରୁ ଆମେ ଆମର ଭାଗ୍ୟର ସ୍ୱୟଂବିଧାତା ହେଲୁ , ସେଇ ଦିନଠାରୁ ହିଁ ସାଧାରଣ ବ୍ୟକ୍ତିର ହାରାହାରି ପରମାୟୁ ୨୭ ବର୍ଷରୁ ବଢ଼ି ୩୨ ବର୍ଷ ହୋଇଯାଇଛି । ଏହାର କାରଣ- କେନ୍ଦ୍ରୀୟ ସ୍ୱାସ୍ଥ୍ୟମନ୍ତ୍ରାଳୟର ସୁବ୍ୟବସ୍ଥିତ ସ୍ୱାସ୍ଥ୍ୟ ଯୋଜନା"। ଏହାର ଉପରେ ଏହି ମନ୍ତ୍ରୀମହୋଦୟା ମୁଖରେ ଆମର ଆଉ ଟୀକା ଟିପ୍ପଣୀ ଅନାବଶ୍ୟକ । ସେଥିରେ ଆଉ ଏକ ଅଦ୍ଭୁତ ବ୍ୟାପାର ଯେ— ୩୭ କୋଟି ଜନତା ଓ ୭ ଲକ୍ଷ ଗ୍ରାମ ବିଶିଷ୍ଟ ଏହି ଦେଶରେ ଆମେରିକାର ଆର୍ଥିକ ସାହାଯ୍ୟ ନେଇ କେତେଶହ ଗ୍ରାମରେ ମାତ୍ର ଡି. ଡି. ଟି. ଛିଞ୍ଚିବା ଦ୍ୱାରା ୭ ଲକ୍ଷ ଗ୍ରାମବାସୀଙ୍କର ସ୍ୱାସ୍ଥ୍ୟ ଏବେ ସ୍ୱାସ୍ଥ୍ୟମନ୍ତ୍ରାଳୟ ବଢ଼ାଇ ପାରିଛନ୍ତି । ଅତଏବ ଏହି ବହୁମୂଲ୍ୟ ଆବିଷ୍କାର ନିମନ୍ତେ, ଏହି ଅସାଧ୍ୟ ସାଧନା ନିମନ୍ତେ ସ୍ୱାସ୍ଥ୍ୟମନ୍ତ୍ରାଳୟ କେବଳ ଧନ୍ୟବାଦର କାହିଁକି ନୋବେଲପ୍ରାଇଜର ମଧ୍ୟ ଅଧିକାରୀ ବୋଲି ବିଶିଷ୍ଟ ବ୍ୟକ୍ତିମାନେ ବୁଝିଲେଣି । ଶୁଣାଯାଉଛି ଯେ- ବିଦେଶୀମାନଙ୍କର ଉପରୋକ୍ତ ଗ୍ରାସାବଶେଷ କେବଳ ତିନିକୋଟି ଟଙ୍କା ଏହି ପାଞ୍ଚ ବର୍ଷ ମଧ୍ୟରେ ଅନ୍ୟାନ୍ୟ ଚିକିତ୍ସା ବିଭାଗରେ ବ୍ୟୟ କରିବାପାଇଁ ଆମର ସରକାର ନିଶ୍ଚୟ କରିଛନ୍ତି । ଏଥିରୁ ଏକ କୋଟି ଟଙ୍କା ମାତ୍ର ସ୍ୱଦେଶୀ ଆୟୁର୍ବେଦ ଚିକିତ୍ସାର ଉନ୍ନତି କଳ୍ପେ ରଖାଯାଇଛି ।

ଧନ୍ୟ ! ଆୟୁର୍ବେଦ । ଧନ୍ୟ ! ଆମର ସ୍ୱାଧୀନତା ।

## ଆୟୁର୍ବେଦ ଔଷଧ ଓ ସ୍ୱାସ୍ଥ୍ୟ

ଆୟୁର୍ବେଦ ଅଥର୍ବ ବେଦର ଉପବେଦ ବୋଲି ଚରକ ସୁଶ୍ରୁତ ଆଦି ଗ୍ରନ୍ଥରେ ଲେଖାଅଛି । ପରନ୍ତୁ ଅନୁସନ୍ଧାନ କଲେ ଜଣାଯାଏ ଯେ— ଏହା ସମସ୍ତ ବେଦର ହିଁ ଅନ୍ତରଙ୍ଗ ସ୍ୱରୂପ । କାରଣ କି, ଅତି ପ୍ରାଚୀନ

ଶାସ୍ତ୍ରରେ ଯାହା ଲେଖାଯାଇଛି, ତାହାହିଁ ପୃଥିବୀର ଅନ୍ୟାନ୍ୟ ଚିକିତ୍ସା ଶାସ୍ତ୍ରମାନଙ୍କରେ ଲେଖାଅଛି । ଯାହା ଏଥିରେ ନାହିଁ, ତାହା ପୃଥିବୀର କୌଣସି ଚିକିତ୍ସା ଶାସ୍ତ୍ରରେ ନାହିଁ ।

ଏହି କଥାମଧ୍ୟ ଏବେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦେଶର ଐତିହାସିକମାନେ ନାନାବିଧ ଯୁକ୍ତି ଓ ପ୍ରମାଣଦ୍ୱାରା ସିଦ୍ଧାନ୍ତ କରି ସାରିଛନ୍ତି । ସେମାନେ ଲେଖିଛନ୍ତି ଯେ-ବର୍ତ୍ତମାନ ପୃଥିବୀରେ ପ୍ରଚଳିତ ସକଳ ପ୍ରକାର ଚିକିତ୍ସା ବିଜ୍ଞାନର ଜନକ ଅଟେ—ଆୟୁର୍ବେଦ । *

* ଲୋକମାନ୍ୟ ଚକ୍ରବର୍ତ୍ତୀ ଶ୍ରୀରାଜଗୋପାଳାଚାର୍ଯ୍ୟ ମହାଶୟ ଲେଖିଛନ୍ତି ଯେ—"ଆୟୁର୍ବେଦ ହିଁ ସମସ୍ତ ଚିକିତ୍ସା ପ୍ରଣାଳୀର ଜନକ ଅଟେ । ଆଧୁନିକ ଏଲୋପାଥି ଚିକିତ୍ସା ପଦ୍ଧତିର ଜନ୍ମ ଆୟୁର୍ବେଦରୁ ହିଁ ହୋଇଅଛି । ଏଲୋପାଥି ଚିକିତ୍ସାରେ ନୂତନତ୍ୱ ଦେଖି ଏହା ବୁଝିବା ନିତାନ୍ତ ଭ୍ରମ ଯେ- ଏହାର ଉତ୍ପତ୍ତି ଓ ନିର୍ମାଣ ଆୟୁର୍ବେଦରୁ ହୋଇନାହିଁ ବୋଲି ।

ଆଜି ସବୁଆଡ଼େ ଏହା ଦେଖାଯାଉଛି ଯେ—ଆୟୁର୍ବେଦ ସହିତ ବିମାତା ପ୍ରତି କରାଯିବାର ଦୁର୍ବ୍ୟବହାର ଚାଲିଛି । ଆୟୁର୍ବେଦର ଜନ୍ମଭୂମି ଭାରତ ବର୍ଷରେ ଏପରି ବ୍ୟବହାର ଅତ୍ୟନ୍ତ ଦୁଃଖ ଓ ଅପମାନର କଥା । ଆମେମାନେ ଏହି ଐତିହାସିକ ସତ୍ୟକୁ ଭୁଲିଯିବା ଉଚିତ ନୁହେଁ ଯେ- ଆୟୁର୍ବେଦର ଚିକିତ୍ସା ପଦ୍ଧତି ଭାରତରୁ ୟୁନାନ, ମୁସଲମାନ ଦେଶ, ଓ ୟୁରୋପ ଆଦି ଦ୍ୱାରା ଆତ୍ମୀୟ ସମ୍ମାନ ପାଇ ବହି-ଯାଇଥିଲା ଏବଂ କାଳ ପରିବର୍ତ୍ତନର ଚକ୍ର ତା'ର ପରେ ଆମର ସେହି ଆୟୁର୍ବେଦ ଉପରେ ବିଜ୍ଞାନର ମୁଦ୍ରା ଲଗାଇ ଆଧୁନିକ ଚିକିତ୍ସାର ରୂପ ଦେଇଗଲା । ଆମେ ଆମର ଯଥାର୍ଥ ରୂପକୁ ଚିହ୍ନି ପାରିବା ଭଳି ସମର୍ଥ ହେଲୁ ନାହିଁ । ଏବଂ ବ୍ରିଟିଶ ଶାସନ କାଳରେ ଆୟୁର୍ବେଦକୁ ଦମନ-କରିବା ପାଇଁ ମଧ୍ୟ ଖୁବ୍ ପ୍ରଯତ୍ନ କରାଯାଇଥିଲା । କିନ୍ତୁ ସୌଭାଗ୍ୟର କଥା ଆୟୁର୍ବେଦ ଭଳି ଲବ୍ଧ ଧାର୍ମିକ ଚିକିତ୍ସା ପଦ୍ଧତି ଆଜିସୁଦ୍ଧା ନିଜ ଦେଶରେ ଆଦର ଏବଂ ଶ୍ରଦ୍ଧାର ଦୃଷ୍ଟିରେ ଆତ୍ମୀୟ ରୂପରେ ସ୍ୱୀକୃତ ହେଉଅଛି । ( ଜୟ ଆୟୁର୍ବେଦ-ସେପ୍ଟେମ୍ବର ୧୯୫୪ )

ବେଦ ପୁରାଣାଦି ଶାସ୍ତ୍ର ଅନୁସନ୍ଧାନ କଲେ ଜଣାଯାଏ ଯେ- ଆୟୁର୍ବେଦ ମହାସାଗର ପାଞ୍ଚଭାଗରେ ବିଭକ୍ତ, ଯଥା—
[୧] ବୃକ୍ଷାୟୁର୍ବେଦ [୨] ଗବାୟୁର୍ବେଦ [୩] ଗଜାୟୁର୍ବେଦ [୪] ଅଶ୍ୱାୟୁର୍ବେଦ ଓ [୫] ନରାୟୁର୍ବେଦ, ଏହି ମଧ୍ୟରେ ନରାୟୁର୍ବେଦର ଅଙ୍ଗ ଆଠଟି ।
[୧] କୌମାରଭୃତ୍ୟ ( Treatment of Childrens diseases, * (୨) କାୟ ଚିକିତ୍ସା ( Medicine ) (୩) ଶଲ୍ୟତନ୍ତ୍ର ( Surgery ) (୪) ଶାଲାକ୍ୟତନ୍ତ୍ର ( Minor operations ) (୫) ଭୂତବିଦ୍ୟା ( Spells and incantation ) (୬) ବିଷତନ୍ତ୍ର ( Toxicology ) (୭) ଅଗଦତନ୍ତ୍ର ( Preventive Medicine ) ଏବଂ (୮) ରସାୟନ ତନ୍ତ୍ର ( Rejuvenation )" କେହି କେହି ଅଗଦତନ୍ତ୍ର ମଧ୍ୟରେ ବିଷତନ୍ତ୍ରର ଅନ୍ତର୍ଭାବ ସ୍ୱୀକାର କରି ବାଜୀକରଣ ତନ୍ତ୍ରକୁ ସପ୍ତମ ତନ୍ତ୍ର ରୂପେ ମୋଟରେ ଗଣନା କରନ୍ତି । ବୃଦ୍ଧବାଗ୍ଭଟ୍ଟ ଆଠ ଅଙ୍ଗରେ ପ୍ରତିପାଦିତ ବିଷୟମାନଙ୍କର ସଂକ୍ଷେପରେ ପରିଚୟ ଏହି ଯେ—
(୧) କୌମାରଭୃତ୍ୟ ତନ୍ତ୍ର- ଏଥିରେ ଗର୍ଭ ସ୍ଥାପନ ଦିନଠାରୁ ଆରମ୍ଭକରି ଗର୍ଭକୁ ରକ୍ଷାକରିବା, ଗର୍ଭର ଉପଦ୍ରବ ଏବଂ ତା'ର ବିକାରକୁ ଚିହ୍ନିବା, ଗର୍ଭିଣୀର କେଉଁ କେଉଁ ମାସରେ କି କି ବିକାର ହୁଏ ଏବଂ ତା'ର ଚିକିତ୍ସା କି କି ପ୍ରକାରରେ କରାଯାଏ, ସାଧାରଣତଃ କେଉଁ କେଉଁ ଅବସ୍ଥାରେ ଗର୍ଭିଣୀକୁ କି କି ବିଷୟକୁ ବିବର୍ଜ୍ଜନ କରିବା ଉଚିତ ଏବଂ ତା'ର କି କି ଆହାର ଗ୍ରହଣ କରିବା ଉଚିତ, ସୂତିକା ଗୃହ [ ସନ୍ତାନ ଜନ୍ମାଇବା ସ୍ଥାନ ] ଶିଶୁ ଜନ୍ମହେବା ପରେ ପ୍ରସୂତା ଓ ଶିଶୁର ପରୀକ୍ଷା ଓ ରକ୍ଷାବିଧାନ ମାତା ବା ଧାତ୍ରୀର କ୍ଷୀର ପରୀକ୍ଷା, କ୍ଷୀର ଦୋଷ, କ୍ଷୀର ଶୁଦ୍ଧିର ଉପାୟ, ଦୂଷିତ ଧାତ୍ରୀପାନ ଜନିତ ଶିଶୁରୋଗର ଚିକିତ୍ସା ଓ ଗ୍ରହାବେଶ ପ୍ରଶମନ, ଇତ୍ୟାଦି ବିଷୟ ବର୍ଣ୍ଣିତ ହୋଇଅଛି ।
(୨) କାୟ ଚିକିତ୍ସା- ଏଥିରେ ସମ୍ପୂର୍ଣ୍ଣ ଦେହସମ୍ବନ୍ଧୀ ବିକାର ଜ୍ୱର, ଅତିସାର, ରକ୍ତପିତ୍ତ, ରାଜଯକ୍ଷ୍ମା, ଉନ୍ମାଦ, ଅପସ୍ମାର, କୁଷ୍ଠ, ପ୍ରମେହ, ଆଦିର ନିଦାନ, ଲକ୍ଷଣ, ଉପଦ୍ରବ, ସାଧ୍ୟାସାଧ୍ୟ ବିଚାର ଓ ଚିକିତ୍ସା ବର୍ଣ୍ଣିତ ହୋଇଅଛି ।

---

* କୌମାର ଭୃତ୍ୟମଷ୍ଟାନାଂ ତନ୍ତ୍ରାଣାମାଦ୍ୟମୁଚ୍ୟତେ
ଆୟୁର୍ବେଦସ୍ୟ ମହତୋ ଦେବାନାମିବ ହବ୍ୟପଃ ॥ [କା. ସ. ବି. ୩ ଅ]

(୩) ଶଲ୍ୟତନ୍ତ୍ର- ଏଥିରେ ବହୁବିଧ ଯନ୍ତ୍ର, ଶସ୍ତ୍ର, ନାନାପ୍ରକାର କ୍ଷାର (ଏସିଡ୍) ପ୍ରଭୃତି । ଅଗ୍ନି ( କାଷ୍ଟିକ ଆଦି ) ଦ୍ୱାରା ବ୍ରଣକୁ ଚିକିତ୍ସା କରିବା ଶରୀର ମଧ୍ୟରେ ନିଗୂଢ଼ ଭାବରେ ଥିବା ଶଲ୍ୟକୁ ବାହାର କରିବା, କୌଣସି କାରଣରୁ ଶରୀରମଧ୍ୟରେ ପ୍ରବେଶ କରିଥିବା ଅନାବଶ୍ୟକୀୟ ବାହ୍ୟବସ୍ତୁ ଅର୍ଥାତ୍ କଣ୍ଟା, କାଠି, ଲୁହା, ଲୋମ, ଧୂଳି, ହାଡ଼ ଓ, ପଥର, ସୀସା ଆଦିକୁ ତଥା ଭିତରେ ରହିଥିବା ପୂଯକୁ ନିକାଳି ବାହାରକରିବା ମୃତ ଗର୍ଭକୁ ଉଦ୍ଧାରକରିବା, ଏବଂ କ୍ଷତ ବିକ୍ଷତ ଅଙ୍ଗର ସଂଯୋଜନ ଓ ଭଗ୍ନାସ୍ଥିର ସନ୍ଧାନ କରିବା ଇତ୍ୟାଦି ବିଷୟ ପ୍ରତିପାଦିତ ହୋଇଅଛି । *

(୪) ଶାଲାକ୍ୟତନ୍ତ୍ର- ଏଥିରେ ଦେହର ଉପର ଭାଗରେ ଥିବା ଆଖି, କାନ, ନାକ, ଦାନ୍ତ, ମସ୍ତକ ଆଦିର ବିକାର, ଏବଂ ସେଇ ସମସ୍ତର ଚିକିତ୍ସାର୍ଥରେ ବ୍ୟବହୃତ ନାନାବିଧ ଧାତୁ ନିର୍ମିତ ଶଲାକା, ଅଞ୍ଜନ, ଅଭ୍ୟଙ୍ଗ, ଗଣ୍ଡୂଷ, ଓ ଶଲାକାଦ୍ୱାରା ଦାହବିଧି ବର୍ଣ୍ଣିତ ହୋଇଅଛି ।

(୫) ଭୂତବିଦ୍ୟା- ଏଥିରେ ଦେବତା, ଅସୁର, ଗନ୍ଧର୍ବ, ଯକ୍ଷ, ରକ୍ଷ, ପିଶାଚ, ଭୂତ, ପ୍ରେତ, ବେତାଳ, ଡାକିନୀ ଆଦି ଅନେକ ପ୍ରକାର

---

* "ଅଧ୍ୟାପକ ଉଇଲ୍‌ସନ୍ କହିଛନ୍ତି ଯେ—ପ୍ରାଚୀନ ହିନ୍ଦୁଜାତି ରୋଗ-ନିଦାନ, ସାଧାରଣ ଚିକିତ୍ସା ଏବଂ ଶସ୍ତ୍ର ଚିକିତ୍ସାରେ ବହୁତ ଉନ୍ନତି କରିଥିଲେ । ହିନ୍ଦୁମାନଙ୍କର ନିଦାନ ଶାସ୍ତ୍ର ବହୁତ ବୈଜ୍ଞାନିକ ଅଟେ" । ୱିଲିୟମ୍ ହଣ୍ଟର ସାହେବ କହନ୍ତି ଯେ- ଚିକିତ୍ସା ଶାସ୍ତ୍ରର ସକଳ ବିଭାଗର ଔଷଧି ପ୍ରାଚୀନ ହିନ୍ଦୁମାନେ ଜାଣିଥିଲେ । ଶରୀରର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗ ତଥା ନାଡ଼ୀ, ପେଶୀ, ସ୍ନାୟୁ ଆଦିର ଉତ୍ତମ ଜ୍ଞାନ ସେମାନଙ୍କର ଥିଲା । ସେମାନଙ୍କ ଚିକିତ୍ସା ଶାସ୍ତ୍ରରେ ଧାତୁ, ଉଦ୍‌ଭିଦ ତଥା ଜୀବଜଗତର ଅନେକ ଔଷଧି ସଂଗ୍ରହର ବିବରଣ ମିଳେ । ଏହିଁରୁ କି ପାଶ୍ଚାତ୍ୟ ଚିକିତ୍ସା ଶାସ୍ତ୍ର ବେତ୍ତାମାନେ ବହୁତ ଶିକ୍ଷା ପାଇଛନ୍ତି । ମାନ୍ଦ୍ରାଜର ଗବର୍ଣ୍ଣର ଲର୍ଡ ଏମ୍ପ୍‌ଥିଲ ସାହେବ ୧୯୦୫ ସାଲ-ଫିବ୍ରୁୟାରି ମାସରେ ଲେକ୍‌ଚରରେ କହିଥିଲେଯେ—ଭାରତରୁ ହିଁ ଚିକିତ୍ସା ବିଦ୍ୟା ଆରବ ଦେଶକୁ ଏବଂ ଆରବରୁ ୟୁରୋପକୁ ଯାଇଥିଲା । ଏମନ୍ତ କି ବସନ୍ତ ରୋଗଦୂର କରିବାପାଇଁ ଏବଂ ପ୍ଲେଗ ବିଷ ନାଶପାଇଁ ଯେଉଁ ଟୀକାଆଦି ଦିଆଯାଏ, ସେଶିକ୍ଷା ହିନ୍ଦୁଜାତିଠାରୁ ହିଁ ୟୁରୋପୀୟ ଲୋକେ ପାଇଥିଲେ । ଅଧ୍ୟାପକ ବେବର କହିଛନ୍ତି ଯେ--ବୈଦିକ ଯୁଗରେ ପଶୁଚିକିତ୍ସାର ବିଶେଷଜ୍ଞାନ

ଦେବଯୋନି ଏବଂ ବାୟୁବିଷୟ ଶରୀରଧାରୀ ପ୍ରାଣୀମାନଙ୍କର ପରିଚୟ ଏବଂ ସେମାନଙ୍କ ଦ୍ୱାରା ଆକ୍ରାନ୍ତ ରୋଗୀର ଲକ୍ଷଣ, ତାକୁ ଦୂରକରିବାର ଉପାୟ-ଜପ, ହୋମ, ଦାନ, ବଳି ପ୍ରଭୃତି ବିଷୟ ଉପଦିଷ୍ଟ ହୋଇଅଛି ।

(୬) ଅଗଦତନ୍ତ୍ର- ଏଥିରେ ସର୍ପ, ବୃଶ୍ଚିକ, କୁକ୍କୁର, ଶୃଗାଳ ଆଦି ଜନ୍ତୁର ଦଂଶନ ଆଦି ଜନିତ ବିଷବିକାରର ଲକ୍ଷଣ, ଚିକିତ୍ସା, ସ୍ଥାବର, ଜଙ୍ଗମ ବିଷଭେଦ ନିରୂପଣ, ସଂଯୋଗ ବିଷର ପରିଚୟ, ଦେଶକାଳ ବିଶେଷରେ ବିଷର ପ୍ରକୋପ, ତିଥି ନକ୍ଷତ୍ର ବିଶେଷରେ ସର୍ପ ଦଷ୍ଟବ୍ୟକ୍ତିର ନିର୍ଜୀବୀପ୍ରତି ମନ୍ତ୍ରପ୍ରୟୋଗ ଇତ୍ୟାଦି ବିଷୟ ବର୍ଣ୍ଣିତ ହୋଇଅଛି ।

(୭) ବାଜୀକରଣ ତନ୍ତ୍ର- ଏଥିରେ କ୍ଷୀଣବୀର୍ଯ୍ୟ, ଦୂଷିତବୀର୍ଯ୍ୟ, ନପୁଂସକ, ଉତ୍ତେଜକ ହୀନ ପୁରୁଷର ଚିକିତ୍ସା ଏବଂ ସ୍ତ୍ରୀମାନଙ୍କର ରଜୋଦୋଷ ଓ ବନ୍ଧ୍ୟାଦୋଷର ଚିକିତ୍ସା ନିରୂପିତ ହୋଇଅଛି ।

(୮) ରସାୟନ ତନ୍ତ୍ର- ଏଥିରେ ଆୟୁ, ବଳ ଓ ମେଧାବର୍ଦ୍ଧକ ଅକାଳମୃତ୍ୟୁ ବାରକ ନାନାବିଧ ରସାୟନ ଉପଦିଷ୍ଟ ହୋଇଅଛି ।

---

ହିନ୍ଦୁମାନଙ୍କରଥିଲା । କାରଣକି-ପଶୁମାନଙ୍କର ଅନ୍ତରଙ୍ଗ ପ୍ରତ୍ୟଙ୍ଗର ନାମ- ସେମାନଙ୍କର ଚିକିତ୍ସା ଶାସ୍ତ୍ରରେ ଦେଖିବାକୁ ମିଳେ । ଡାକ୍ତର ରେଲୀ ସାହେବ ମୁକ୍ତ କଣ୍ଠ ହୋଇ ବହୁପ୍ରଶଂସା ସହିତ କହିଛନ୍ତି ଯେ-ପ୍ରାଚୀନଭାରତ ବାସିଙ୍କର ଗ୍ରନ୍ଥ ଦେଖିଲେ ଜଣାଯାଏ ସେମାନେ ଶସ୍ତ୍ର-ଚିକିତ୍ସାରେ ବିଶେଷ ନିପୁଣଥିଲେ । ପ୍ରାୟ ୧୨୭ ପ୍ରକାର ଶସ୍ତ୍ର ସେମାନେ ଶରୀର ଉପରେ ପ୍ରୟୋଗ କରୁଥିଲେ ଏବଂ ଶସ୍ତ୍ର ବ୍ୟବହାର ସହିତ ନାନାପ୍ରକାର ଔଷଧି ମଧ୍ୟ ସେମାନେ ପ୍ରୟୋଗ କରୁଥିଲେ । ବେବର ସାହେବ କହନ୍ତିଯେ-ଶସ୍ତ୍ର ଚିକିତ୍ସାରେ ପ୍ରାଚୀନ ହିନ୍ଦୁମାନେ ପୂର୍ଣ୍ଣତା ଲାଭ-କରିପାରିଥିଲେ । ଏବଂ ଏବିଷୟରେ ପାଶ୍ଚାତ୍ତ୍ୟ ଲୋକେ ଏବେ ମଧ୍ୟ ସେମାନଙ୍କଠାରୁ ବହୁତ ବିଷୟ ଶିଖିପାରିବେ । ଯେପରିକି ବିକୃତ କାନ ବା ନାକକୁ ସୁବ୍ୟବସ୍ଥିତ ଭାବରେ ନୂତନରେ ଗଢ଼ିବାର ଚିକିତ୍ସା ପାଶ୍ଚାତ୍ତ୍ୟ ଚିକିତ୍ସକମାନେ ପ୍ରାଚୀନ ହିନ୍ଦୁମାନଙ୍କଠାରୁ ପାଇଥିଲେ । ମିସ୍ ମ୍ୟାନିଙ୍ଗ କହିଛନ୍ତି ଯେ- ପ୍ରାଚୀନ ହିନ୍ଦୁମାନଙ୍କର ଶସ୍ତ୍ର ଚିକିତ୍ସାର ଯନ୍ତ୍ର ଆଦି ଏତେପରି ଉତ୍ତମ ଓ ସୂକ୍ଷ୍ମଥିଲା ଯେ-ଯାହା ଦ୍ୱାରା କି ଗୋଟାଏ ବାଳକୁ ମଧ୍ୟ ସିଧା ଲମ୍ବାରେ ଚିରଯାଇପାରିବ । ( ଆର୍ଯ୍ୟ. ଗୌରବ )

## ଆୟୁର୍ବେଦୀୟ ପଦାର୍ଥ ବିଜ୍ଞାନ

ଆୟୁର୍ବେଦୀୟ ପଦାର୍ଥ ବିଜ୍ଞାନ ଯେ, ବୃହତ୍‌ବିଜ୍ଞାନ ଜଗତରେ ପୂଜନୀୟ ତ, ଏଥିପାଇଁ ଏହା ନାନାବିଧ ଯୁକ୍ତି ଓ ପ୍ରମାଣସାହାଯ୍ୟରେ ପ୍ରତିପାଦନ କରାଯାଇଛି । ଏହି ପ୍ରମାଣମାନ ବ୍ରହ୍ମାଣ୍ଡ ଓ ପିଣ୍ଡ ସମୁଦାୟର ମୂଳ ପଦାର୍ଥ ଯେଉଁ ଶକ୍ତି, ସେହି ଶକ୍ତି ହିଁ ଶକ୍ତିରୂପ ବ୍ରହ୍ମ । ପାର୍ଥିବ ଶକ୍ତି ଯେପରି ଉତ୍ତାପ (Heat) ଆଲୋକ (Light) ଓ ଗତି (Motion) ଏହି ତ୍ରିବିଧ ଭଙ୍ଗିରେ ଆତ୍ମପ୍ରକାଶ କରେ, ସେପ୍ରକାରେ ଆମମାନଙ୍କର ଶରୀରସ୍ଥ ଅନ୍ତରଶକ୍ତିର ପ୍ରକାଶ ମଧ୍ୟ ତ୍ରିଭଙ୍ଗିମ ଅଟେ । ସୁତରାଂ ଶରୀର ଓ ତାହାର ଅବଲମ୍ବନ ସମସ୍ତ ସ୍ଥୂଳ ସୂକ୍ଷ୍ମ ପଦାର୍ଥମାନଙ୍କର ଗୁଣକ୍ରିୟା ମଧ୍ୟ ତିନି ତିନି ଭାଗରେ ବିଭକ୍ତ ହୋଇଥିବାର ଦେଖାଯାଏ ।

ପ୍ରଥମେ ଦେଖନ୍ତୁ ଯେ—

(୧) ଶରୀରର ଉପାଦାନ- ତିନି ଭାଗରେ ବିଭକ୍ତ ଦେହ, ମନ ଓ ଆତ୍ମା *
(୨) ଶରୀରର ଅବସ୍ଥାନ " " ସ୍ଥୂଳ, ସୂକ୍ଷ୍ମ ଓ କାରଣ
(୩) ଶରୀରର ପ୍ରକୃତି " " ସ୍ତ୍ରୀ, ପୁଁ ଓ ନପୁଂସକ
" ଅଥବା " " ସତ୍ତ୍ୱ, ରଜ, ଓ ତମ,
" ଅଥବା " " ବାତ ନ୍ୟୁଟ୍ରନ Neutron
" ପିତ୍ତ-ଇଲେକ୍ଟ୍ରନ Electron
କଫ-ପ୍ରୋଟନ Proton
" ଅଥବା " " ଦେବତା, ଅସୁର ଓ ମନୁଷ୍ୟ
(୪) ଶରୀରର-ଧାରକ ପଦାର୍ଥ " " ଦୋଷ, ଧାତୁ ଓ ମଳ
(୫) ଶରୀରର-ସ୍ୱଭାବ- " " ଜନ୍ମ, ସ୍ଥିତି ଓ ମୃତ୍ୟୁ
(୬) ଶରୀରର-ଅବସ୍ଥା- " " ଜାଗରଣ, ସ୍ୱପ୍ନ ଓ ନିଦ୍ରା,
(୭) ଶରୀରର ମୂଳ ନାଡ଼ୀ " " ଇଡ଼ା, ପିଙ୍ଗଳା ଓ ସୁଷୁମ୍ନା

* ସତ୍ତ୍ୱଂ ଆତ୍ମା ଶରୀରଞ୍ଚ ତ୍ରୟମେତତ୍ତ୍ରିଦଣ୍ଡବତ୍
ଲୋକସ୍ତିଷ୍ଠତି ସଂଯୋଗାତ୍ତତ୍ର ସର୍ବଂ ପ୍ରତିଷ୍ଠିତମ୍ ॥
ସ ପୁମାନ୍ ଚେତନଂ ତଚ୍ଚ ତଚ୍ଚାଧିକରଣଂ ସ୍ମୃତମ୍
ବେଦସ୍ୟାସ୍ୟ ତଦର୍ଥଂ ହି ବେଦୋଽୟଂ ସମ୍ପ୍ରକାଶିତଃ ॥
[ ଚ. ସୂ. ୧ ଅ ]

(୭) ଶରୀରର ବୟସ- ତିନିଭାଗରେ ବିଭକ୍ତ-ବାଲ୍ୟ, ଯୌବନ, ବାର୍ଦ୍ଧକ୍ୟ
(୮) ଶରୀରର ସଂସ୍ଥାନ- „ „ ଊର୍ଦ୍ଧ୍ୱ, ମଧ୍ୟ ଓ ଅଧୋଭାଗ,
(୯) ଶରୀରର ଗୁହା- „ „ ଶିରୋ ଗୁହା, ଉରୋଗୁହା, ଉଦରଗୁହା
(୧୦) ଶରୀରର ସନ୍ଧିଭାଗ „ „ ତିନି ତିନି ଖଣ୍ଡ
(୧୧) ଶରୀରର ଗୁପ୍ତ ଅଙ୍ଗ „ „ ତ୍ର୍ୟମ୍ବକ ବା ତ୍ରିକୋଣାକାର
(୧୨) ଶରୀରର ସମ୍ପୃକ୍ତ ଦେବତା „ „ ବାୟୁ, ସୂର୍ଯ୍ୟ ଓ ସୋମ
(୧୩) ଶରୀରର କ୍ରିୟା- „ „ ବିସର୍ଗ, ଆଦାନ, ଓ ବିକ୍ଷେପ
ଅଥବା- „ „ ଆକର୍ଷଣ, ବିକର୍ଷଣ, ଓ ଚଳନ-

ତାରପରେ ଦେଖନ୍ତୁ-ଶରୀରର ରୋଗ—

(୧୪) ଶରୀରର ରୋଗ-ତିନିଭାଗରେ ବିଭକ୍ତ-ଶାରୀରିକ, ମାନସିକ ଓ ସ୍ୱାଭାବିକ
ଅଥବା- „ „ ବାତଜ, ପିତ୍ତଜ, ଓ କଫଜ,
ଅଥବା „ „ ଆଭ୍ୟନ୍ତରିକ, ଆଗନ୍ତୁକ, ଓ ମାନସିକ
୧୫ ରୋଗର କାରଣ „ „ (୧) କାଳ [୨] ବୁଦ୍ଧି ଓ [୩] ବିଷୟ
ଏମାନଙ୍କର ଅଯୋଗ, ଅତିଯୋଗ
କିମ୍ବା ମିଥ୍ୟା ଯୋଗ ।
[୧୬] ରୋଗର ମାର୍ଗ- „ „ ଶାଖା- ମର୍ମାସ୍ଥିସନ୍ଧି, ଓ କୋଷ୍ଠ
[୧୭] ରୋଗନିଦାନଶାସ୍ତ୍ର „ „ ହେତୁ, ଲକ୍ଷଣ, ଓ ଚିକିତ୍ସାସ୍କନ୍ଧ
[୧୮] ରୋଗ ଚିକିତ୍ସକ- „ „ ଛଦ୍ମବେଶୀ, ସିଦ୍ଧସାଧିତ, ପ୍ରାଣା-
ଭିସର ।
[୧୯] ରୋଗର କ୍ଷୟ ବୃଦ୍ଧିର କାରଣ ଦେଶ „ „ ଆନୂପ, ମଧ୍ୟ, ଓ ଜାଙ୍ଗଲ.
[୨୦] ରୋଗର କ୍ଷୟ ବୃଦ୍ଧିର କାରଣ କାଳ- „ „ ବର୍ଷା ଶରତ, ଓ ବସନ୍ତ
„ ଅଥବା ପୂର୍ବ, ମଧ୍ୟ ଓ ମାଧ୍ୟାହ୍ନ
„ „ ପୂର୍ବରାତ୍ରି, ମଧ୍ୟରାତ୍ରି, ଓ ଶେଷରାତ୍ରି
„ „ ବାଲ୍ୟ, ଯୌବନ, ଓ ବାର୍ଦ୍ଧକ୍ୟ
[୨୧] ରୋଗଜନକ ବାତାଦି ଦୋଷର ଗତି- „ „ କ୍ଷୟ, ବୃଦ୍ଧି ଓ ସମ-

ଏହାପରେ ଦେଖନ୍ତୁ ଯେ—

[୨୨] ରୋଗର ଚିକିତ୍ସା-ତିନିଭାଗରେ ବିଭକ୍ତ-ବୃଂହଣ, କର୍ଷଣ, ଓ ଆସ୍ଥାପନ
[୨୩] ରୋଗର ଔଷଧ- „ „ ଦିବ୍ୟ, ପାର୍ଥିବ, ଓ ଜଳୀୟ

" ଅଥବା- " " ଜାଙ୍ଗମ, ପାର୍ଥିବ, ଓ ଔଦ୍ଭିଦ

" ଅଥବା- " " ନୈର୍ଭ୍ରବପଗାତ, ଵ୍ୟାଧିବିପରୀତ ଓ ଉଭୟ ବିପରୀତ

" କିମ୍ବା " " ହେତୁ ବିପରୀତାର୍ଥକାରୀ, ବ୍ୟାଧି ବିପରୀତାର୍ଥକାରୀ, ଓ ଉଭୟ ବିପରୀତାର୍ଥକାରୀ

ଅଥବା- " "
ଦୈବବ୍ୟପାଶ୍ରୟ, ଯୁକ୍ତିବ୍ୟପାଶ୍ରୟ ଓ ସତ୍ତ୍ୱାବଜୟ

ଏହାର ପରେ ଦେଖନ୍ତୁ- ସ୍ୱାସ୍ଥ୍ୟ ତିନି ପ୍ରକାରର ହୋଇଥାଏ । [କ] ବାତପିତ୍ତାଦି ତ୍ରିଧାତୁର ସମତା- ସ୍ଥୂଳଶରୀର [ ବୈଶ୍ୱାନର ] ପୁରୁଷର ସ୍ୱାସ୍ଥ୍ୟ [ଖ] ସତ୍ତ୍ୱ-ରଜ-ତମ ତ୍ରିଗୁଣର ସମତା- ସୂକ୍ଷ୍ମଶରୀର [ତୈଜସ] ପୁରୁଷର ସ୍ୱାସ୍ଥ୍ୟ [ଗ] ଏବଂ ଜ୍ଞାନକର୍ମ ଇଚ୍ଛା ତ୍ରିଧାତୁର ସମତା- କାରଣ ଶରୀର [ ପ୍ରାଜ୍ଞ ] ପୁରୁଷର ସ୍ୱାସ୍ଥ୍ୟ ଅଟେ ।

ଏହି ସମୁଦାୟର ବିଶେଷ ବିବରଣ ମୂଳ ଗ୍ରନ୍ଥମାନଙ୍କରେ ଦ୍ରଷ୍ଟବ୍ୟ ।

ଏହିସବୁ ବିଷୟ ଏଠାରେ କହିବାର ତାତ୍ପର୍ଯ୍ୟ ଏହି ଯେ- ଆୟୁର୍ବେଦର ସ୍ୱାସ୍ଥ୍ୟ ବିଜ୍ଞାନ ତ୍ରିଗୁଣାତ୍ମକ ବ୍ରହ୍ମବିଜ୍ଞାନରୁ ହିଁ ସମୁଦ୍ଭୂତ ଅଟେ । ସୁତରାଂ ଏହାର ଔଷଧ ବିଜ୍ଞାନ ମଧ୍ୟ ସାର୍ବଦେଶିକ, ସାର୍ବକାଳିକ, ସର୍ବବ୍ୟାପକ, ବ୍ରହ୍ମ ବିଜ୍ଞାନ ତୁଲ୍ୟ ଅତି ଗମ୍ଭୀର ଓ ବିସ୍ତୃତ ଭାବ ଯୁକ୍ତ ଅଟେ । ଏହା ଶିବୋପାସକ ବିଜ୍ଞାନ ସିନା, ପାଶ୍ଚାତ୍ତ୍ୟ ଜଡ଼ ବିଜ୍ଞାନ ପରି ଏହା ଏକ ଦେଶୀ, ଶବୋପାସକ ବିଜ୍ଞାନ ନୁହେଁ ।

## ଆୟୁର୍ବେଦୀୟ ଚିକିତ୍ସା ବିଜ୍ଞାନ

ଚରକ ସଂହିତାରେ ଚିକିତ୍ସା ଶବ୍ଦର ଏହି ଅର୍ଥ ଲେଖାଅଛି ଯେ—

ଯାଭିଃ କ୍ରିୟାଭିର୍ଜାୟନ୍ତେ ଶରୀରେ ଧାତବଃ ସମାଃ
ସା ଚିକିତ୍ସା ବିକାରାଣାଂ କର୍ମତଦ୍ଭିଷଜାଂ ମତମ୍ ॥

ଅର୍ଥାତ୍ ଯେଉଁ କ୍ରିୟାଦ୍ୱାରା ସ୍ଥୂଳଶରୀରର ଧାତୁ- ବାତ- ପିତ୍ତ ଓ କଫ, ସୂକ୍ଷ୍ମଶରୀର ବା ମନର ଧାତୁ ସତ୍ତ୍ୱ- ରଜ ଓ ତମ ଏବଂ କାରଣ ଶରୀର ବା ଆତ୍ମାର ଧାତୁ, ଜ୍ଞାନ, ଇଚ୍ଛା ଓ କ୍ରିୟା ଏମାନଙ୍କର ସମତା ରକ୍ଷିତ

ହୁଏ, ସେଇ ନିର୍ଯ୍ୟାସ ନାମ- ଜଳଶ୍ରୀ ..ଏବଂ ତାହା ହିଁ ଦୂରକରିବାର କର୍ତ୍ତବ୍ୟ ।

ଏଠାରେ ପ୍ରଶ୍ନ ଏହି ଯେ- ଏହିସବୁ ଶରୀରସ୍ଥ ଧାତୁମାନଙ୍କର ସାମ୍ୟ ଓ ବୈଷମ୍ୟର କାରଣ କ'ଣ ? ଏହାର ଉତ୍ତରରେ ଚରକ କହିଛନ୍ତି—

"ଯେଷାମେବ ହି ଭାବାନାଂ ସମ୍ପତ୍ ସଞ୍ଜନୟେନ୍ନରମ୍ ।
ତେଷାମେବ ବିପଦ୍ ବ୍ୟାଧୀନ୍ ବିବିଧାନ୍ ସମୁଦୀରୟେତ୍ ॥
[ ଚ. ସୂ. ୨୫ ଅ ]

ଅର୍ଥାତ୍ ଯେଉଁ ସବୁ ପଦାର୍ଥମାନଙ୍କର ସମ୍ୟକ୍ ଯୋଗ ବ୍ୟାଧିରହିତ ସୁସ୍ଥ ପୁରୁଷକୁ ଉତ୍ପାଦନ କରେ, ସେହିସବୁ ପଦାର୍ଥମାନଙ୍କର ଅସମ୍ୟକ୍ ଯୋଗ ହିଁ ବିବିଧ ବ୍ୟାଧିମାନଙ୍କୁ ଜନ୍ମାଇଥାଏ ।

ଆୟୁର୍ବେଦର ସାରସିଦ୍ଧାନ୍ତ ଏହି ଯେ- ସ୍ୱର୍ଗ, ନରକ ଓ ଜୀବନ ଏସବୁ ଏକ ଜ୍ଞାନାଧାରରେ ଗଠିତ । ଏହି ସ୍ଥାବର ଜଙ୍ଗମାତ୍ମକ ସମସ୍ତ ଚରାଚରଜଗତ, ସମସ୍ତ ପିଣ୍ଡ ବ୍ରହ୍ମାଣ୍ଡ ଏକମାତ୍ର ନିର୍ଗୁଣାତ୍ମକ ବ୍ରହ୍ମଶକ୍ତି ବା ପ୍ରାଣଶକ୍ତିର ପ୍ରକାଶ ମାତ୍ର । ଏହି ଯେ- ବହିର୍ଜଗତସ୍ଥିତ ସୂର୍ଯ୍ୟ, ଚନ୍ଦ୍ର, ପବନ.- ଏହାହିଁ ଆମମାନଙ୍କର ଅନ୍ତର୍ଜଗତ ସ୍ଥିତ- ପିତ୍ତ, କଫ ଓ ବାତ । ଏହି ତିନି ପଦାର୍ଥର ହିଁ ସୂକ୍ଷ୍ମାତିସୂକ୍ଷ୍ମ ଅବସ୍ଥା ସତ୍ତ୍ୱରଜସ୍ତମୋଗୁଣ ଏବଂ ଜ୍ଞାନ ଇଚ୍ଛା ଓ କ୍ରିୟାଶକ୍ତି ଅଟେ । ଆମମାନଙ୍କର ଚକ୍ଷୁ, କର୍ଣ୍ଣ, ଜିହ୍ୱା, ଘ୍ରାଣ, ଓ ତ୍ୱକ୍ ବା ଚର୍ମେନ୍ଦ୍ରିୟ ସହିତ ସମ୍ପୃକ୍ତ ଏହି ଯେ- ରୂପ, ଶବ୍ଦ, ରସ, ଗନ୍ଧ ଓ ସ୍ପର୍ଶ ଗୁଣ ଏବଂ ଏହିସବୁ ଗୁଣମାନଙ୍କର ଆଧାର ଏହି ଯେ- ପଞ୍ଚମହାଭୂତ ବା ଭୌତିକ ପଦାର୍ଥ ବର୍ଗ, ଏହି ସମୁଦାୟକୁ ଯେ ମନ, ବୁଦ୍ଧି, ଅହଂକାର ଓ ଚିତ୍ତ ରୂପ ଅନ୍ତଃକରଣର ସାହାଯ୍ୟରେ ଦେଖୁଛି, ଜାଣୁଛି ଓ ଭୋଗ କରୁଛି, ସେଇ ସଗୁଣ ଜୀବାତ୍ମା, ଏହି ସମସ୍ତ ହିଁ ସର୍ବବ୍ୟାପ୍ତ ପ୍ରାଣସମୁଦ୍ରର ବିଭିନ୍ନପ୍ରକାର ତରଙ୍ଗାବଳି ମାତ୍ର । ଅତଏବ ଆୟୁର୍ବେଦ ପ୍ରାଣର ସ୍ୱରୂପ ବୋଇବାକୁ ଯାଇ ଏହା ଲେଖିଛନ୍ତି ଯେ—

"ଅଗ୍ନିଃ ସୋମୋ ବାୟୁଃ ସତ୍ତ୍ୱଂ ରଜସ୍ତମଃ ପଞ୍ଚେନ୍ଦ୍ରିୟାଣି
ଭୂତାତ୍ମା ଇତି ପ୍ରାଣାଃ ॥ [ ଚ. ଶା. ୭ ଅ ]

ଆଗକୁ ମଧ୍ୟ ସେ ଲେଖିଛନ୍ତି—

ପ୍ରାଣାଃ ପ୍ରାଣଭୃତାଂ ଯତ୍ର ତଥା ସର୍ବେନ୍ଦ୍ରିୟାଣି ଚ ।
ଯଦୁତ୍ତମାଙ୍ଗମଙ୍ଗାନାଂ ଶିରସ୍ତଦଭିଧୀୟତେ ॥

ଅର୍ଥାତ୍ ପ୍ରାଣୀମାନଙ୍କର ପାଞ୍ଚଭୌତିକ ସ୍ଥୂଳ ଶରୀରର ମୂଳ ପଦାର୍ଥ ବାତ ପିତ୍ତ ଓ କଫାତ୍ମକ ତିନି ଦୋଷ, ଏବଂ ରସ, ରକ୍ତ, ମାଂସ ମେଦ, ଅସ୍ଥି ମଜ୍ଜା, ଓ ଶୁକ୍ରାତ୍ମକ ସାତଧାତୁ ଏବଂ ବିଷ୍ଠା, ମୂତ୍ର ସ୍ୱେଦଆଦି ମଳକୁ ଆତ୍ମସ୍ଥ କରିଥିବା ଅନ୍ତଃ ପ୍ରାଣଶକ୍ତି ଅନୁକୂଳ ଆହାରବିହାର ରୂପ ପାଞ୍ଚଭୌତିକ ବାହ୍ୟପ୍ରାଣ ଶକ୍ତିର ହିଁ ସାହାଯ୍ୟରେ ନିଜର ପାଞ୍ଚଭୌତିକ ଶରୀରକୁ ଧାରଣ କରିଥାଏ ।

ସୁତରାଂ ବୁଝିବାକୁ ହେବ ଯେ- ପିଣ୍ଡ ଓ ବ୍ରହ୍ମାଣ୍ଡର ପ୍ରାଣଶକ୍ତି ଅଭିନ୍ନ ପଦାର୍ଥ । ଏହି ଉଭୟ ଶକ୍ତିର ସମ୍ୟକ୍ ଯୋଗ ଆରୋଗ୍ୟ ବା ସ୍ୱାସ୍ଥ୍ୟର ଏବଂ ଅସମ୍ୟକ୍ ଯୋଗ ବିକାର ବା ରୋଗର କାରଣ ହୋଇଥାଏ ।

ଏହା ହିଁ ପ୍ରାଣ ବିଜ୍ଞାନ । ଏହାର ପ୍ରକାଶର ଉଦ୍ଦେଶ୍ୟ ସମ୍ବନ୍ଧେ ଚରକ ସଂହିତାରେ ଲେଖାଅଛି ଯେ—

ଧର୍ମାର୍ଥଂ ନାର୍ଥକାମାର୍ଥମ୍ ଆୟୁର୍ବେଦୋ ମହର୍ଷିଭିଃ ।
ପ୍ରକାଶିତୋ ଧର୍ମପରୈ ରିଚ୍ଛଦ୍ଭିଃ ସ୍ଥାନମକ୍ଷରମ୍ ॥
( ଚ. ଚି. ୧ ଅ-୪୬ )

ଅର୍ଥାତ୍ ଧର୍ମପରାୟଣ ମହର୍ଷିମାନେ ଅକ୍ଷର ବ୍ରହ୍ମପଦ ପ୍ରାପ୍ତି ଇଚ୍ଛାରେ ଏହି ଧର୍ମ ପ୍ରଧାନ ଆୟୁର୍ବେଦ ବିଦ୍ୟା ପ୍ରକାଶ କଲେ । ଏହା ଧନ କିମ୍ବା କାମୋପଭୋଗ ଉଦ୍ଦେଶ୍ୟରେ ପ୍ରଣୀତ ହୋଇନାହିଁ । ତାପରେ ସେ କହନ୍ତି—

ନାର୍ଥାର୍ଥଂ ନାପିକାମାର୍ଥମ୍ ଅଥ ଭୂତଦୟାଂ ପ୍ରତି
ବର୍ତ୍ତତେ ଯଶ୍ଚିକିତ୍ସାୟାଂ ସ ସର୍ବମତିବର୍ତ୍ତତେ ॥ [ଚ ଚି. ୧ ଅ]

ଅର୍ଥାତ୍ ଧନାର୍ଜନ ଓ କାମୋପଭୋଗ ଇଚ୍ଛା ପରିହାର କରି ପ୍ରାଣୀମାନଙ୍କ ପ୍ରତି ଦୟାରକ୍ଷି ଯେ ଚିକିତ୍ସା କର୍ମରେ ପ୍ରବୃତ୍ତ ହୁଏ, ସେ ସର୍ବାତିଶାୟୀ ପୁରୁଷ ଅଟେ । ଆଉରି ମଧ୍ୟ ସେ ଲେଖିଛନ୍ତି—

କୁର୍ବତେ ଯେ ତୁ ବୃତ୍ତ୍ୟର୍ଥଂ ଚିକିତ୍ସା ପଣ୍ୟବିକ୍ରୟମ୍ ।
ତେ ହିତ୍ୱା କାଞ୍ଚନଂ ରାଶିଂ ପାଂଶୁରାଶିମୁପାସତେ ॥

ଅର୍ଥାତ୍ ଆରୋଗ୍ୟ ଦାନଛଳରେ ନିଜର ଜୀବିକା ନିର୍ବାହ କରିବାପାଇଁ ଏହି ଚିକିତ୍ସାକୁ ଯେ ବଜାରରେ ବିକେ, ସେ ଧର୍ମରୂପୀ କାଞ୍ଚନରାଶିକୁ ପରିତ୍ୟାଗ କରି ଧୂଳି ସମୂହକୁ ସଂଗ୍ରହ କରେ ।

ଏସବୁ ଉକ୍ତିରୁ ଜଣାଯାଏ ଯେ- ଚିକିତ୍ସା ବିଜ୍ଞାନର ଉଦ୍ଦେଶ୍ୟ ଧର୍ମସିଦ୍ଧି, ଧନ ଉପାର୍ଜନ ନୁହେଁ ।

ପୂର୍ବକାଳରେ ଏହି ଆଦର୍ଶ ଧାର୍ମିକ ଚିକିତ୍ସାର ପ୍ରଚାରନିମନ୍ତେ ହିଁ ମନୁ ପ୍ରଭୃତି ଧର୍ମ ଶାସ୍ତ୍ରକାରମାନେ ମଧ୍ୟ ଚିକିତ୍ସାବୃତ୍ତିଜୀବୀ ବ୍ରାହ୍ମଣ ମାନଙ୍କୁ ଅବ୍ରାହ୍ମଣ ବୋଲି ଘୋଷଣା କରିଯାଇଛନ୍ତି । ମନୁସଂହିତାରେ ଲେଖା ଅଛି ଯେ—

" ଚିକିତ୍ସକାନ୍ ଦେବଲକାନ୍ ମାଂସ ବିକ୍ରୟିଣସ୍ତଥା
ବିପଣେନ ଚ ଜୀବନ୍ତଃ ବର୍ଜ୍ୟାଃସ୍ୟୁର୍ହବ୍ୟକବ୍ୟୟୋଃ ,

ଅର୍ଥାତ୍ ଚିକିତ୍ସାବୃତ୍ତିଜୀବୀ, ପୂଜାରିବୃତ୍ତିଜୀବୀ, ମତ୍ସ୍ୟମାଂସ ବିକ୍ରୟୀ ଓ ବେପାରୀ ବ୍ରାହ୍ମଣ ମାନଙ୍କୁ ଦେବଯଜ୍ଞ ଓ ପିତୃ ଯଜ୍ଞରେ ବର୍ଜନ କରିବ । ଅର୍ଥାତ୍ ଏହିଭଳି ବ୍ରାହ୍ମଣମାନଙ୍କୁ ଦେବତା ଉଦ୍ଦେଶ୍ୟରେ ପ୍ରଦତ୍ତ ଘୃତ ଦୁଗ୍ଧ ଫଳମୂଳାଦି ହବ୍ୟ ଦ୍ରବ୍ୟ ଏବଂ ପିତୃ ମାନଙ୍କ ଉଦ୍ଦେଶ୍ୟରେ ପ୍ରଦତ୍ତ ଅନ୍ନ ବ୍ୟଞ୍ଜନାଦି କବ୍ୟଦ୍ରବ୍ୟର ଭୋଜନ ନିମନ୍ତେ ବରଣ କରିବାକୁ ହେବ ନାହିଁ ।

ମିଥ୍ୟା ଚିକିତ୍ସକ ମାନଙ୍କ ପ୍ରତି ଦଣ୍ଡ ବ୍ୟବସ୍ଥା- ଯଥା—

" ଚିକିତ୍ସକାନାଂ ସର୍ବେଷାଂ ମିଥ୍ୟାପ୍ରଚରତାଂ ଦମଃ
ଅମାନୁଷେଷୁ ପ୍ରଥମୋ ମାନୁଷେଷୁ ତୁ ମଧ୍ୟମଃ । ( ମନୁ ୯ ଅ-୨୮୪
ଭିଷଙ୍ ମିଥ୍ୟାଚରନ୍ ଦଣ୍ଡ୍ୟ ସ୍ତିର୍ଯ୍ୟକ୍ଷୁ ପ୍ରଥମଂ ଦମମ୍
ମାନୁଷେ ମଧ୍ୟମଂ ରାଜନ୍ ପୁରୁଷେଷୂତ୍ତମଂ ଦମମ୍ ॥
( ଯାଜ୍ଞବଲ୍କ୍ୟ ୨ ଅ ୨୪୨ )

ଏବାଦେ ଆୟୁର୍ବେଦ ଶିକ୍ଷାର ଅଧିକାରୀ ନିରୂପଣ ପ୍ରସଙ୍ଗରେ କାଶ୍ୟପ ଲେଖିଛନ୍ତି ଯେ—

"ବ୍ରାହ୍ମଣ କ୍ଷତ୍ରିୟ-ବୈଶ୍ୟଶୂଦ୍ରୈଃ ଆୟୁର୍ବେଦୋଽଧ୍ୟେତବ୍ୟଃ । ତତ୍ର ଅର୍ଥ ଷଡଙ୍ଗାନାର୍ଥଂ ପୁଣ୍ୟାର୍ଥଂ ଚ ଆତ୍ମନଃ ପ୍ରଜାନୁଗ୍ରହାର୍ଥଂ ବ୍ରାହ୍ମଣୈଃ, ପ୍ରଜାସଂରକ୍ଷଣାର୍ଥଂ କ୍ଷତ୍ରିୟୈଃ, ବୃତ୍ତ୍ୟର୍ଥଂ ବୈଶ୍ୟୈଃ, ଶୁଶ୍ରୂଷାର୍ଥମିତରୈଃ, ଧର୍ମାର୍ଥଂ ଚ ସର୍ବୈଃ ॥ [ କା. ସ. ବି. ସ୍ଥା. ]

ଅର୍ଥାତ୍ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏସମସ୍ତେ ଆୟୁର୍ବେଦ ଅଧ୍ୟୟନ କରିବାକୁ ହେବ । ଏଥି ମଧ୍ୟରେ ପରମାର୍ଥ ତତ୍ତ୍ୱପରି ଜ୍ଞାନ ନିମନ୍ତେ,

ଧର୍ମସଂରକ୍ଷ ଓ ପ୍ରଜାନୁଗ୍ରହ ନିମନ୍ତେ ବ୍ରାହ୍ମଣମାନେ ଆୟୁର୍ବେଦ ଅଧ୍ୟୟନ କରିବେ। ପ୍ରଜାସଂରକ୍ଷଣ ନିମନ୍ତେ କ୍ଷତ୍ରିୟମାନେ, ବୃତ୍ତି ନିମନ୍ତେ ବୈଶ୍ୟମାନେ, ଲୋକସେବାର୍ଥ ଶୂଦ୍ରମାନେ ଏବଂ ଧର୍ମାର୍ଥରେ ସମସ୍ତେ ଆୟୁର୍ବେଦ ଶିକ୍ଷାକରିବାକୁ ହେବ।

ଏହାପରେ କିପରି ଧାର୍ମିକ ଗୁରୁଙ୍କଠାରୁ କିପରି ଧର୍ମପରାୟଣ ଶିଷ୍ୟ କି କି ଧର୍ମାନୁଶାସନକୁ ମାନି କିପରି ଭାବରେ ଆୟୁର୍ବେଦ ଶିକ୍ଷାକରିବାକୁ ହେବ, ତାହା ମଧ୍ୟ ଶିକ୍ଷୋପନୟନାଧ୍ୟାୟରେ ମହର୍ଷି କାଶ୍ୟପ, ଚରକ ଓ ସୁଶ୍ରୁତ ଲେଖିଛନ୍ତି। ଆୟୁର୍ବେଦ ଶିକ୍ଷାର୍ଥୀର କି କି ଗୁଣ ଥିବା ଆବଶ୍ୟକ, ସେଥି ସମ୍ବନ୍ଧେ କାଶ୍ୟପଙ୍କର ଅନୁଶାସନ ଏହି ଯେ—

"କ୍ଷାନ୍ତିଃ- ଦାକ୍ଷ୍ୟମ୍- ଦାକ୍ଷିଣ୍ୟମ୍- ଆନୁକୂଲ୍ୟମ୍- ଶୌଚମ୍ କୁଲେ ଜନ୍ମ, ଧର୍ମ- ସତ୍ୟ- ଅହିଂସା-ସାମ୍ୟ- କଲ୍ୟାଣ- ଜ୍ଞାନବିଜ୍ଞାନସ୍ଥିତି ବିନୀତବେଶଃ- ପାଟବମ୍, ଯଥୋକ୍ତକାରିତ୍ୱମ୍, ବ୍ରହ୍ମଚର୍ଯ୍ୟମ୍, ଋଜୁ ନିଗ୍ରହଃ, ଲୋଭନିନ୍ଦର୍ଷ୍ୟା- ବିବର୍ଜନମ୍, ଇତି। ଅତୋଽନ୍ୟଥା ଦୋଷୈଃ ସ ବର୍ଜ୍ୟଃ।

## ଆୟୁର୍ବେଦର ଉପଦେଷ୍ଟା ଗୁରୁର ଲକ୍ଷଣ

"ଧର୍ମ- ଜ୍ଞାନ- ବିଜ୍ଞାନ- ଉଦାରତାଦି ପ୍ରତିପତ୍ତି- କୁଶଲଃ, ଗୁଣସମ୍ପନ୍ନଃ, ସୌମ୍ୟଦର୍ଶନଃ, ଶୁଚିଃ, ଶିଷ୍ୟାନୁବର୍ତ୍ତୀ, ଚ ଉପଦେଷ୍ଟା, ଉତ୍ତନ୍ତ୍ରଶାସ୍ତ୍ର ବ୍ୟାଖ୍ୟାନକୁଶଲଃ, ଶାସ୍ତ୍ରାର୍ଥଗତଜ୍ଞାନବିଜ୍ଞାନଃ, କଲ୍ୟଃ, ଅନନ୍ୟକର୍ମା, ଅବ୍ୟାବୃତ୍ତଃ, ଶିଷ୍ୟଗୁଣାନ୍ୱିତଃ। ଅତୋଽନ୍ୟଥା ବର୍ଜ୍ୟଃ।

## ଆୟୁର୍ବେଦ ଶିକ୍ଷାର୍ଥୀ ପ୍ରତି ଗୁରୁଙ୍କ ଉପଦେଶ

"ସୌମ୍ୟେନ ଅନୁକୂଲେନ, ଧାର୍ମିକେଣ, କୃତଜ୍ଞେନ, ଆତ୍ମଗତାଧ୍ୟାୟିନା ଚ ଭବିତବ୍ୟମ୍। ସର୍ବଜନବେଦନା, ସମାନଦୁଃଖେନ, ଦେଶକାଲଜ୍ଞେନ, ଧୃତିମତା, ଚ ଭବିତବ୍ୟମ୍। ଲୋଭ, କ୍ରୋଧ- ମୋହ- ଈର୍ଷ୍ୟା- ପ୍ରହାସ- ବୈର- ମଦ୍ୟ- ମାଂସ- ସ୍ତ୍ରୀଲୋଭ୍ୟା ନିବର୍ତ୍ତିତବ୍ୟମ୍ ଇତ୍ୟାଦି।

( କା. ସଂ. ବି. ସ୍ଥାନ )

ଏହା ଗଲା ଧାର୍ମିକ ଶିକ୍ଷାଦାନ ବିଧି। ଏହାର ପରେ ଦେଖନ୍ତୁ ଧାର୍ମିକ ଚିକିତ୍ସା। ଚରକ ସଂହିତାରେ ତିନି ପ୍ରକାର ଚିକିତ୍ସା ଲେଖାଯାଇଛି— ଯଥା-- (୧) ଦୈବବ୍ୟପାଶ୍ରୟ (୨) ସତ୍ତ୍ୱାବଜୟ ଓ (୩) ଯୁକ୍ତିବ୍ୟପାଶ୍ରୟ,

ମୃତ୍ତିକାଚିକିତ୍ସା, ସୂର୍ଯ୍ୟରଶ୍ମି ଚିକିତ୍ସା, ବର୍ଣ୍ଣଚିକିତ୍ସା, ଷଟ୍‌ଚକ୍ରଚିକିତ୍ସା, ମେସ୍ମେରିଜିମଚିକିତ୍ସା, ହିପନୋଟିଜିମ୍ ଚିକିତ୍ସା, ଶ୍ୱାସବ୍ୟାୟାମ ଚିକିତ୍ସା, ଦହନଚିକିତ୍ସା ଏ ସବୁ ଦୈବବ୍ୟପାଶ୍ରୟ ଚିକିତ୍ସା ବା ସତ୍ତ୍ୱାବଜୟ ଚିକିତ୍ସାର ପ୍ରକାର ଭେଦ ବୋଲି ବୁଝିବାକୁ ହେବ । ଏହି ଉଭୟ ପ୍ରକାର ଚିକିତ୍ସାର ବିଶଦ ଦର୍ଶନ ନିମନ୍ତେ ମହାନ ଦ୍ରବ୍ୟଗୁଣକଳ୍ପଦ୍ରୁମ ଗ୍ରନ୍ଥର ସୀମାରେ ପରିଶିଷ୍ଟ ଭାଗରୁ କେତେକ ଅଂଶ ଉଦ୍ଧାର କରି ନିମ୍ନରେ ଦିଆଗଲା ।

## (୧) ସନ୍ଧ୍ୟୋପାସନା ବା ସୂର୍ଯ୍ୟରଶ୍ମି ଚିକିତ୍ସା

ଆଦିକାଳେ ଜଗତ୍‌ସୃଷ୍ଟି ମାଦିତ୍ୟାତ୍ ସମ୍ପ୍ରସୂୟତେ,
ପ୍ରଳୟେ ଚ ତମେବୈତି ତ୍ୟାଦିତ୍ୟଂ ସାପ୍ତ ତେଜସମ୍ । (ବ୍ରହ୍ମପୁରାଣ)

ଅର୍ଥାତ୍ ସୃଷ୍ଟିର ଆରମ୍ଭରେ ସମଗ୍ର ଜଗତ ସୂର୍ଯ୍ୟଙ୍କଠାରୁ ଉତ୍ପନ୍ନ ହୁଏ ଏବଂ ପ୍ରଳୟ କାଳରେ ସେହି ସମସ୍ତ ସୂର୍ଯ୍ୟ ତେଜରେ ହିଁ ବିଲୀନ ହୋଇଯାଏ । ଆମମାନଙ୍କର ଉତ୍ପତ୍ତି, ସ୍ଥିତି ଓ ବିନାଶର କାରଣ ସୂର୍ଯ୍ୟ । ସେ ହେତୁରୁ ଚତୁର୍ବର୍ଗ ସାଧନ ଏବଂ ଶରୀରର ସୁରକ୍ଷା ପାଇଁ ପୂର୍ବକାଳରେ ଆମଦେଶର ଋଷିମାନେ ପ୍ରତିଦିନ ତ୍ରିସନ୍ଧ୍ୟାରେ ସୂର୍ଯ୍ୟୋପାସନା କରି ଅବ୍ୟାହତ ସ୍ୱାସ୍ଥ୍ୟ ଓ ଦୀର୍ଘ ଜୀବନ ଲାଭ କରିପାରୁଥିଲେ । ଶାସ୍ତ୍ରରେ ଲେଖାଅଛି ଯେ- "ଋଷୟୋ ଦୀର୍ଘସନ୍ଧ୍ୟତ୍ୱାତ୍ ଦୀର୍ଘ ମାୟୁରବାପ୍ନୁବନ୍ ଅର୍ଥାତ୍ ଋଷିମାନେ ତ୍ରିକାଳରେ ସୂର୍ଯ୍ୟୋପାସନା କରି ଦୀର୍ଘଆୟୁ ଲାଭକରିଥିଲେ ।

ସୂର୍ଯ୍ୟଙ୍କର କିରଣକୁ ମରୀଚି ବୋଲାଯାଏ । ମରୀଚି ଶବ୍ଦର ଅର୍ଥ ହେଉଛି "ମ୍ରିୟନ୍ତେ କ୍ଷୁଦ୍ର କ୍ରିମୟଃ ଅସ୍ମିନ୍ନିତି ମରୀଚିଃ" ଅର୍ଥାତ୍ ଯେଉଁ କିରଣର ସମ୍ପର୍କରେ ସଂକ୍ରାମକ ରୋଗର କାରଣ ସୂକ୍ଷ୍ମ ଜୀବାଣୁ ସମୂହ ବିନଷ୍ଟ ହୁଅନ୍ତି । ଅଥର୍ବ ବେଦରେ ମଧ୍ୟ ଏହି କଥା ଲେଖାଅଛି ଯେ—

"ଉଦ୍ୟନ୍ନାଦିତ୍ୟଃ କ୍ରିମୀନ୍ହନ୍ତୁ ନିମ୍ରୋଚନ ହନ୍ତୁ ରଶ୍ମିଭିଃ
[ ଅଥର୍ବ° କା° ୨।୨୨।୧ ]

ଅର୍ଥାତ୍ ଉଦୀୟମାନ ସୂର୍ଯ୍ୟ ନିଜ ରଶ୍ମି ଦ୍ୱାରା ରୋଗ ଜନକ କ୍ରିମିମାନଙ୍କୁ ବିନାଶ କରନ୍ତି । ପାଶ୍ଚାତ୍ୟ ବୈଜ୍ଞାନିକମାନେ ମଧ୍ୟ ସୂର୍ଯ୍ୟରଶ୍ମିର ରୋଗ ନାଶିନୀ ଶକ୍ତି ପରୀକ୍ଷା କରି ଏହାର ମହିମା ଘୋଷଣା କରୁଛନ୍ତି ।

ତାହା ସାର୍ଥିକ ସଂଯୋଗ ବୋଲି ବୁଝିବାକୁ ହେବ । ଇନ୍ଦ୍ରିୟମାନଙ୍କର ନିଜ ନିଜ ବିଷୟ ସହିତ ଏହି ସଂଯୋଗ ଯଦି ସମ୍ୟକ୍ ହୋଇ ଏ, ତା'ହେଲେ ତାହା ଆରୋଗ୍ୟର କାରଣ ହୋଇଥାଏ । କିନ୍ତୁ ତାହା ଯଦି ଅତିଯୋଗ, ଅଯୋଗ କିମ୍ବା ମିଥ୍ୟାଯୋଗ ହୁଏ, ତେବେ ତାହା ରୋଗଜନକ ହୋଇଥାଏ । ଏହିପରି ମନର ମଧ୍ୟ ନିଜ ବିଷୟ ସହିତ ସମ୍ୟକ୍‌ଯୋଗ ଆରୋଗ୍ୟର ଏବଂ ଅତିଯୋଗ, ଅଯୋଗ ଓ ମିଥ୍ୟାଯୋଗ ରୋଗର କାରଣ ହୋଇଥାଏ । ଦେହରେ କିମ୍ବା ମନରେ ଦୁଃଖ ସ୍ପର୍ଶର ନାମ ରୋଗ ଏବଂ ସୁଖସ୍ପର୍ଶର ନାମ ଆରୋଗ୍ୟ । ସମସ୍ତ ଇନ୍ଦ୍ରିୟ ମଧ୍ୟରେ ସ୍ପର୍ଶ ଇନ୍ଦ୍ରିୟ ପ୍ରଧାନ । ଏହିକାରଣରୁ ଭଗବାନ୍ ଗୀତାରେ ଅନେକ ସ୍ଥଳରେ ସୁଖ ଦୁଃଖର କାରଣ ବିଷୟ ସ୍ପର୍ଶ ବୋଲି କହିଛନ୍ତି । ଯଥା— "ମାତ୍ରାସ୍ପର୍ଶାସ୍ତୁ କୌନ୍ତେୟ ଶୀତୋଷ୍ଣ ସୁଖଦୁଃଖଦାଃ" "ଯେହି ସଂସ୍ପର୍ଶଜା ଭୋଗା ଦୁଃଖ ଯୋନୟ ଏବ ତେ" । ବାହ୍ୟ ସ୍ପର୍ଶେଷ୍ୱସକ୍ତାତ୍ମା ବିନ୍ଦତ୍ୟାତ୍ମନି ଯତ୍ସୁଖମ୍" ଇତ୍ୟାଦି ସ୍ଥଳରେ ସୁଖ ଦୁଃଖର କାରଣ ବିଷୟ ସ୍ପର୍ଶକୁ ତ୍ୟାଗ କରି ଆତ୍ମସ୍ଥ ହେବାପାଇଁ ସେ ଅର୍ଜୁନଙ୍କୁ ଉପଦେଶ ଦେଇଛନ୍ତି । ସ୍ପର୍ଶ ସାହାଯ୍ୟରେ ଶରୀରସ୍ଥ ଦୂଷିତ ବିଷୟରୁ ଅନ୍ୟ ଦେହରେ ସଂକ୍ରମିତ ହୋଇ ରୋଗ ଉତ୍ପାଦନ କରିଥାଏ । ଅତଏବ ସୁଶ୍ରୁତ ଲେଖିଛନ୍ତି---

ପ୍ରସଙ୍ଗାତ୍ ଗାତ୍ର ସଂସ୍ପର୍ଶାତ୍ ନିଃଶ୍ୱାସାତ୍ ସହ ଭୋଜନାତ୍
ସହଶଯ୍ୟାସନାଚ୍ଚୈବ ବସ୍ତ୍ରମାଲ୍ୟାନୁଲେପନାତ୍
କୁଷ୍ଠଂ ଜ୍ୱରଶ୍ଚ ଶୋଷଶ୍ଚ ନେତ୍ରାଭିଷ୍ୟନ୍ଦ ଏବ ଚ
ଔପସର୍ଗିକ ରୋଗାଶ୍ଚ ସଂକ୍ରାମନ୍ତି ନରାନ୍ନରମ୍ । (ସୁ· ସୂ· ୨୦ ଅ)

ଅର୍ଥାତ୍ ସହବାସ, ଦେହସ୍ପର୍ଶ, ନିଃଶ୍ୱାସ, ସହଭୋଜନ, ଏକଶଯ୍ୟାରେ ଶୟନ, ରୋଗୀର ବସ୍ତ୍ର, ମାଲ୍ୟ ଓ ଅନୁଲେପନର ବ୍ୟବହାର ଏହିସବୁ କାରଣରୁ କୁଷ୍ଠ, ଟାଇଫାଏଡ୍‌ଜ୍ୱର, ନ୍ୟୁମୋନିଆଁ, ଆନ୍ତ୍ରଜ୍ୱର, ଯକ୍ଷ୍ମା, ନେତ୍ରରୋଗ, ଓ ବସନ୍ତ ଆଦି ରୋଗ ଏକ ବ୍ୟକ୍ତିଠାରୁ ଅନ୍ୟବ୍ୟକ୍ତି ଠାରେ ସଂକ୍ରମିତ ହୋଇଥାଏ । ଏହି କାରଣରୁ ମନୁ ଲେଖିଛନ୍ତି—

ଉପାନହୌ ଚ ବାସଶ୍ଚ ଧୃତମନ୍ୟୈର୍ନ ଧାରୟେତ୍
ଉପବୀତ ମଲଂକାରଂ ସ୍ରଜଂ କରକମେବ ଚ । [ ମନୁ ୪ ଅ ]

ଅର୍ଥାତ୍ ଅନ୍ୟଲୋକର ବ୍ୟବହୃତ, ଜୋତାଯୋଡ଼ି, ଲୁଗା, ପୈତା,

ଅଳଙ୍କାର ମାଳା ଓ କମଣ୍ଡଳୁ ବ୍ୟବହାର କରିବ ନାହିଁ ।

ଏହିପରି ଦୃଷ୍ଟି ସ୍ପର୍ଶ ସମ୍ବନ୍ଧ ମଧ୍ୟ ଭାବମିଶ୍ର ଲେଖିଛନ୍ତି—

ହୀନଦୀନ କ୍ଷୁଧାର୍ତ୍ତାନାଂ ପାପିପାଷଣ୍ଡି ରୋଗିଣାମ୍
କୁକ୍କୁଟାଦ ଶୁନୋ ଦୃଷ୍ଟିର୍ଭୋଜନେ ନୈବ ଶୋଭନା (ଭାବପ୍ରକାଶ)

ମନୁ ମଧ୍ୟ ଲେଖିଛନ୍ତି-

ଚଣ୍ଡାଲଶ୍ଚ ବରାହଶ୍ଚ କୁକ୍କୁଟଶ୍ଚା ତଥୈବ ଚ
ରଜଃସ୍ୱଳା ଚ ଷଣ୍ଢଶ୍ଚ ନେକ୍ଷେରନ୍ନଶ୍ନତୋ ଦ୍ୱିଜାନ୍

ଅର୍ଥାତ୍ ଦୀନ, ହୀନ, କ୍ଷୁଧାତୁର, ପାପୀ, ପାଷଣ୍ଡୀ, ରୋଗୀ କୁକ୍କୁଟ, କୁକ୍କୁର, ଚଣ୍ଡାଳ ଓ ରଜସ୍ୱଳା ଏମାନଙ୍କର ଦୃଷ୍ଟି ସମ୍ମୁଖ ଅନ୍ନଭୋଜନ କରିବା ଦ୍ୱିଜାତି ମାନଙ୍କର ନିଷିଦ୍ଧ ।

ଏହିପରି ଶୁଭଦୃଷ୍ଟି ସ୍ପର୍ଶର ଉତ୍ତମତା ମଧ୍ୟ ସୁଶ୍ରୁତ ଲେଖିଛନ୍ତି-ଯଥା-

ପିତୃମାତୃ ସୁହୃଦ୍ ବୈଦ୍ୟ ପାଚକକ୍ରୁଞ୍ଚ ବର୍ହିଣାମ୍
ସାରସସ୍ୟ ଚକୋରସ୍ୟ ନରାଣାଂ ଦୃଷ୍ଟିରୁତ୍ତମା

ଅର୍ଥାତ୍ ପିତା, ମାତା, ମିତ୍ର, ବୈଦ୍ୟ, ପାଚକ, ହଂସ, ମୟୂର, ସାରସ ଓ ଚକୋର ଏହି ନଅଟିର ଦୃଷ୍ଟି ଭୋଜନ କାଳରେ ପ୍ରଶସ୍ତ ।

ଏହିପରି ଭାବସ୍ପର୍ଶ, ଅଙ୍ଗସ୍ପର୍ଶ, ଦୃଷ୍ଟିସ୍ପର୍ଶ, ଆହାରୀୟ ରସସ୍ପର୍ଶ ଓ ବାଣୀସ୍ପର୍ଶର ଶୁଭାଶୁଭ ପରିଣାମ ମନ୍ତ୍ରଶାସ୍ତ୍ର, ଧର୍ମଶାସ୍ତ୍ର ଓ ଆୟୁର୍ବେଦ ଶାସ୍ତ୍ରମାନଙ୍କରେ ବର୍ଣ୍ଣିତ ହୋଇଅଛି ।

ଆଜକାଲି ଆମ୍ଭଦେଶରେ ଯେଉଁସବୁ ବ୍ୟଭିଚାର, ଅତ୍ୟାଚାର, ବିକଟ ସଂକ୍ରାମକ ରୋଗସବୁ ସହସ୍ର ବୃଦ୍ଧି ପାଉଛି- ଏହାର କାରଣ ସ୍ପର୍ଶଦୋଷ- କୁତ୍ସିତ ଉପନ୍ୟାସ ପାଠ, ଅସାର ଅନାବଶ୍ୟକ ସମ୍ବାଦ ପତ୍ର ପାଠ, କଦର୍ଯ୍ୟ ଚଳଚ୍ଚିତ୍ର ଦର୍ଶନ, ହୋଟେଲମାନଙ୍କରେ, ମୋଟରରେ, ବସରେ, ଟ୍ରେନ ଆଦିରେ ବିକୃତ ପୁରୁଷମାନଙ୍କ ସହିତ ଉପବେଶନ, ମିଳନ, ଭୋଜନ ଏବଂ ସେମାନଙ୍କର ବିକୃତଭାବ ଗ୍ରହଣ, ନଗରମାନଙ୍କର ଦୁର୍ଗନ୍ଧ ବାୟୁ ଓ ଦୁଷ୍ଟଭାବସ୍ପର୍ଶ ଆଜି ଦେଶରେ ବହୁବିଧ ଅଦ୍ଭୁତପୂର୍ବ ଶାରୀରିକ ଓ ମାନସିକ ରୋଗ ସୃଷ୍ଟି କରୁଛି ଏବଂ ବାହ୍ୟ ଓ ଆନ୍ତର ବିଦ୍ୟୁତ୍ କେନ୍ଦ୍ରକୁ ବିକୃତ କରୁଛି । ସତ୍ତ୍ୱାଦି ଗୁଣ ଭେଦରେ ବା ପ୍ରକୃତି ଭେଦରେ ବିଭିନ୍ନ ଶାରୀରିକ ବିଦ୍ୟୁତ୍ ପ୍ରବାହର ସ୍ପର୍ଶ ଭିନ୍ନ ୨ ପ୍ରକାର

ହୋଇଥାଏ । ଶକ୍ତାସନ ବନ୍ଧ୍ୟା ମର୍ଦ୍ଦ ଯୋଗରେ ସଫଳ ଆୟୁ ଓ ଆରୋଗ୍ୟ ବଢ଼େ ଏବଂ ଝଡ଼ାସନ ସହିତ ଯୋଗରେ ତାହା ସ୍ଥାୟୀ ହୋଇଥାଏ ।

ବେଦରେ ଉଦ୍ଗୀଥ ଚିକିତ୍ସାକୁ ଆଙ୍ଗିରସୀ ଚିକିତ୍ସା ବୋଲାଯାଏ । *
ବୃହଦାରଣ୍ୟକୋପନିଷଦରେ ଲେଖାଅଛି ଯେ—

ଆଙ୍ଗିରସୋଽଙ୍ଗାନାଂ ହି ରସଃ ପ୍ରାଣୋ ବା ଅଙ୍ଗାନାଂ ରସଃ
ତସ୍ମାଦ୍ ଯସ୍ମାତ୍ କସ୍ମାଚ୍ଚାଙ୍ଗାତ୍ ପ୍ରାଣ ଉତ୍କ୍ରାମତି ତଦେବ ତଚ୍ଛୁଷ୍ୟତି । [ବୃ. ୧।୩।୧୯]

ଅର୍ଥାତ୍ ପ୍ରାଣହିଁ ଅଙ୍ଗମାନଙ୍କର ରସ । ସେଥିଲାଗି ଯେଉଁ ଅଙ୍ଗରୁ ପ୍ରାଣ ଚାଲିଯାଏ, ସେହି ଅଙ୍ଗ ଶୁଖିଯାଏ । ଶରୀରର ମୂଳଧାତୁ ରସ ପ୍ରାଣମୟ ଅଟେ । କାରଣ କି ଆମ୍ଭମାନଙ୍କର ପାଚନଯନ୍ତ୍ରରେ ନିଃଶ୍ୱାସ ପ୍ରଶ୍ୱାସ ରୂପରେ ପ୍ରବେଶ କରୁଥିବା ଅଗ୍ନିସୋମାତ୍ମକ ଭୁକ୍ତ ଦ୍ରବ୍ୟମାନଙ୍କୁ ପରିପାକ କରି ପ୍ରଥମେ ରସ ଆଦି ରୂପରେ ପରିପୋଷିତ କରେ । ରସରୁ ରକ୍ତ, ରକ୍ତରୁ ମାଂସ, ମାଂସରୁ ମେଦ, ମେଦରୁ ଅସ୍ଥି, ଅସ୍ଥିରୁ ମଜ୍ଜା ଏବଂ ମଜ୍ଜାରୁ ସ୍ତ୍ରୀ ଓ ପୁରୁଷର ଅଗ୍ନିସୋମୀୟ ରଜଃ ଶୁକ୍ର ଯଥାକ୍ରମେ ଉତ୍ପନ୍ନ ହୋଇଥାଏ । ସୁତରାଂ ଆମ୍ଭମାନଙ୍କର ଅନ୍ତରଙ୍ଗ ଓ ବହିରଙ୍ଗକୁ ନିର୍ମାଣ କରେ ସେଥିପାଇଁ ରୂପରେ ପ୍ରବେଶମାନ ପ୍ରାଣଶକ୍ତି । ବହିର୍ଗତ ପ୍ରାଣଶକ୍ତିକୁ ନିଃଶ୍ୱାସ ଏବଂ ଅନ୍ତର୍ଗତ ପ୍ରାଣଶକ୍ତିକୁ ପ୍ରଶ୍ୱାସ ବୋଲାଯାଏ । ନିଃଶ୍ୱାସ କିମ୍ବା ରେଚକ ଏବଂ ପ୍ରଶ୍ୱାସ କିମ୍ବା ପୂରକ ନାମରେ ଅଭିହିତ ହୁଏ । ଏହି ରେଚକ ପୂରଣ କିମ୍ବା ବାହ୍ୟ ବାୟୁପ୍ରାଣ ସହିତ ଅନ୍ତଃପ୍ରାଣର ସମ୍ବନ୍ଧ ସ୍ଥାପିତ ହୋଇଥାଏ । ଯଦି ଏହି ଦୁଇଟି ପ୍ରକ୍ରିୟାକୁ ବାହାରେ ଓ ଭିତରେ ସ୍ତମ୍ଭନ କରାଯାଏ, ତାକୁ ଯଥାକ୍ରମେ ବାହ୍ୟକୁମ୍ଭକ ଓ ଅନ୍ତଃକୁମ୍ଭକ ବୋଲନ୍ତି । ଯଥାବିଧି ଅନୁଷ୍ଠିତ ଏହି ଚାରି ପ୍ରକାର ପ୍ରାଣକ୍ରିୟାର ସମାନ ଅଭ୍ୟାସକୁ ପ୍ରାଣାୟାମ ବୋଲାଯାଏ । ହଠଯୋଗ ପ୍ରଦୀପିକାରେ ଅନେକପ୍ରକାର ପ୍ରାଣାୟାମ ବିଧି ଉପଦିଷ୍ଟ ହୋଇଅଛି । ସେଥିମଧ୍ୟରୁ ଭସ୍ତ୍ରା ପ୍ରାଣାୟାମ ଓ ଅନୁଲୋମ ବିଲୋମ ପ୍ରାଣାୟାମର ଅଭ୍ୟାସ ଆରୋଗ୍ୟାର୍ଥୀ ପକ୍ଷରେ ପ୍ରଶସ୍ତ । ପ୍ରାଣାୟାମର ଫଳ ସମ୍ବନ୍ଧରେ ଏହିପରି

* ବେଦରେ ୪ ପ୍ରକାର ଚିକିତ୍ସା ବର୍ଣ୍ଣିତ ହୋଇଅଛି । ଯଥା—
(୧) ଦୈବୀ (୨) ଆଙ୍ଗିରସୀ (୩) ଆଥର୍ବଣୀ (୪) ମାନୁଷୀ ।

ଲେଖାଅଛି ଯେ—

ପ୍ରାଣାୟାମାଦି ଯୁକ୍ତେନ ସର୍ବରୋଗକ୍ଷୟୋ ଭବେତ୍
ଅଯୁକ୍ତାଭ୍ୟାସ ଯୋଗେନ ସର୍ବରୋଗସମୁଦ୍ଭବଃ ॥

ଅର୍ଥାତ୍ ପ୍ରାଣାୟାମ ଯୋଗ ଅଭ୍ୟାସ କଲେ ସମସ୍ତ ରୋଗ ନଷ୍ଟହୁଏ, କିନ୍ତୁ ଏହା ଅବଧିରେ କଲେ ବହୁତ ରୋଗ ଜାତହୋଇଥାଏ । ଅତଏବ ସଦ୍‌ଗୁରୁର ଉପଦେଶ ଅନୁସାରେ ପ୍ରାଣାୟାମ ଅଭ୍ୟାସ କର୍ତ୍ତବ୍ୟ । ପ୍ରାଣାୟାମ ଚିକିତ୍ସା ଆଙ୍ଗିରସୀ ଚିକିତ୍ସାର ଅନ୍ତର୍ଗତ ଅଟେ । ଏହାକୁ ସତ୍ତ୍ୱାବଜୟ ଚିକିତ୍ସା ବୋଲିଯାଇ ପାରେ ।

ଯଥାବିଧି ଯୋଗାସନ ଓ ପ୍ରାଣାୟାମ ଅଭ୍ୟାସ ଦ୍ୱାରା ଯେ କେବଳ ବୈୟକ୍ତିକ ଆରୋଗ୍ୟ ଲାଭହୁଏ, ତାହା ନୁହେଁ । ଏହିସବୁ କ୍ରିୟାଭ୍ୟାସ ଦ୍ୱାରା ପ୍ରାଣସଂଯମୀ ପୁରୁଷ ଆପଣାର ଜ୍ଞାନଶକ୍ତି, ଇଚ୍ଛାଶକ୍ତି, ମନଃଶକ୍ତି ଓ ଇନ୍ଦ୍ରିୟମାନଙ୍କର ଶକ୍ତିକୁ ସଂଯତ ଭାବରେ ରଖି ଏକ ଅଗ୍ନିମୟ ବିଦ୍ୟୁନ୍ମୟ ଦେହ ଲାଭକରିଥାଏ । ସେ ଆପଣାର ଅକ୍ଷୟ ପ୍ରାଣଶକ୍ତିକୁ ଦୃଷ୍ଟିଦ୍ୱାରା, ବାଣୀଦ୍ୱାରା, ଅଙ୍ଗୁଳିଦ୍ୱାରା ଏବଂ ଫୁତ୍କାର ଦ୍ୱାରା ଅନ୍ୟ ଶରୀରରେ ସଞ୍ଚାଳନ କରି ରୁଗ୍‌ଣଶରୀରକୁ ଆରୋଗ୍ୟ ପ୍ରଦାନ କରିବାର ସାମର୍ଥ୍ୟ ସମ୍ପନ୍ନ କରିଥାଏ । ଏହାକୁ ସ୍ପାର୍ଶିକ ବିଦ୍ୟୁତ୍ ଚିକିତ୍ସା ବୋଲିଯାଏ । ଅଥର୍ବ ବେଦରେ ଲେଖାଅଛି ଯେ—

ଅୟଂ ମେ ହସ୍ତୋ ଭଗବାନ୍ ଅୟଂମେ ଭଗବତ୍ତରଃ
ଅୟଂ ମେ ବିଶ୍ୱ ଭେଷଜୋଽୟଂ ଶିବାଭିମର୍ଶନଃ । ୬ ।
ହସ୍ତାଭ୍ୟାଂ ଦଶଶାଖାଭ୍ୟାଂ ଜିହ୍ୱା ବାଚଃ ପୁରୋଗବୀ
ଅନାମୟିତ୍ନୁଭ୍ୟାଂ ହସ୍ତାଭ୍ୟାଂ ତାଭ୍ୟାଂ ତ୍ୱାଭି ମୃଶାମସି ।
( ଅଥର୍ବ ୪।୧୩।୬।୭ )

ଅର୍ଥାତ୍ ଏହି ମୋର ଶକ୍ତିଶାଳୀ ହସ୍ତ ଅଧିକ ଗୁଣକାରୀ ଅଟେ । ଏହି ମୋର ହାତ ସକଳ ରୋଗର ଔଷଧ ଅଟେ । ଏହି ହାତର ସ୍ପର୍ଶ ଆରୋଗ୍ୟପ୍ରଦ । ମୁଁ ପ୍ରେରଣାମୂଳିକାବାଣୀ ଓ ଦଶ ଅଙ୍ଗୁଳି ବିଶିଷ୍ଟ ଆରୋଗ୍ୟପ୍ରଦ ଦୁଇ ହାତରେ ତୁମକୁ ସ୍ପର୍ଶ କରୁଛି ।

ଏହିପରି ଋଗ୍‌ବେଦରେ ଲେଖାଅଛି ଯେ—

ଅଙ୍ଗାଦଙ୍ଗା ଲ୍ଲୋମ୍ନୋ ଲ୍ଲୋମ୍ନୋ ଜାତଂପର୍ବଣି ପର୍ବଣି ।
ଯକ୍ଷ୍ମଂ ସର୍ବସ୍ମାଦାତ୍ମନସ୍ତମିଦଂ ବିବୃହାମି ତେ ॥

( ଋଗ୍‌ବେଦ ୧୦।୧୬୩।୬ )

ଅର୍ଥାତ୍ ମୁଁ ଆତ୍ମବଳରେ ଶରୀରସ୍ଥ ପ୍ରାଣଶକ୍ତି ଦ୍ୱାରା ପ୍ରତିଅଙ୍ଗ ପ୍ରତିଲୋମ ଏବଂ ପ୍ରତ୍ୟେକ ସନ୍ଧିରେ ଥିବା ଯକ୍ଷ୍ମାର ବିଷକୁ ବହିଷ୍କାର କରୁଛି । ଏହିପରି ପ୍ରଶ୍ନୋପନିଷଦ୍‌ରେ ମଧ୍ୟ ଲେଖାଅଛି—

ଯା ତେ ତନୂର୍ବାଚି ପ୍ରତିଷ୍ଠିତା ଯା ଶ୍ରୋତ୍ରେ ଯା ଚ ଚକ୍ଷୁଷି
ଯା ଚ ମନସି ସନ୍ତତା ଶିବାଂ ତାଂ କୁରୁ ମୋତ୍କ୍ରମୀଃ

( ପ୍ରଶ୍ନଉପନିଷଦ୍ ୨ )

ଅର୍ଥାତ୍ ହେ ପ୍ରାଣ ! ବଚନ, କର୍ଣ୍ଣ, ଚକ୍ଷୁ ଓ ମନ ଏସବୁ ତୁମର ଶରୀର ଅଟେ । ଏ ସମୁଦାୟକୁ ତୁମେ ମଙ୍ଗଳମୟ କର ଏବଂ ମୋଠାରୁ ଅଲଗା ହୋଇ ବାହାରକୁ ଯାଅନାହିଁ ।

ଏହିସବୁ ବେଦ ମନ୍ତ୍ରର ତାତ୍ପର୍ଯ୍ୟ ଏହି ଯେ- ଦଶ ଅଙ୍ଗୁଳି ଦ୍ୱାରା ଏବଂ ବଚନ, କର୍ଣ୍ଣ, ଚକ୍ଷୁ ଓ ମନ ଦ୍ୱାରା ସ୍ୱଶରୀରସ୍ଥ ବିଦ୍ୟୁତ୍‌ଶକ୍ତିକୁ ଅନ୍ୟ ଶରୀରରେ ସଞ୍ଚାରିତ କରାଯାଇଥାଏ । ଅତଏବ ଏହି ସବୁ ପ୍ରମାଣରୁ ସ୍ପର୍ଶିକ ବିଦ୍ୟୁତ୍‌ଚିକିତ୍ସା ବେଦ ସମ୍ମତ ଓ ବିଜ୍ଞାନୁମୋଦନ ବୋଲି ବୁଝିବାକୁ ହେବ । ଏହି ଚିକିତ୍ସାର ବିସ୍ତୃତ ବିଧାନ ତନ୍ତ୍ର ଶାସ୍ତ୍ରୀଙ୍କ ଅପାମାର୍ଜନ-ପ୍ରୟୋଗ ଓ ଶୀତଳା ମନ୍ତ୍ରପ୍ରୟୋଗ ଆଦିରେ ବର୍ଣ୍ଣିତ ହୋଇଅଛି । ଆଧୁନିକ ମେସ୍‌ମେରିଜମ ଚିକିତ୍ସା ଓ ହିପନୋଟିଜମ ଚିକିତ୍ସା ମଧ୍ୟ ଏହି ଚିକିତ୍ସାର ଭେଦ ଅଟେ । ଆୟୁର୍ବେଦୋକ୍ତ ମଣି ରତ୍ନ ଔଷଧି ଧାରଣ ଏବଂ ତନ୍ତ୍ରୋକ୍ତ କବଚ ଧାରଣ ଏହି ସ୍ପର୍ଶିକ ବିଦ୍ୟୁତ୍ ଚିକିତ୍ସାର ଅନ୍ତର୍ଗତ ଅଟେ ।

## ଆଥର୍ବଣୀ ବା ସତ୍ତ୍ୱାବଜୟ ଚିକିତ୍ସା

ନ ତସ୍ୟ ରୋଗା ନ ଜରା ନ ମୃତ୍ୟୁଃ, ପ୍ରାପ୍ତସ୍ୟ ଯୋଗାଗ୍ନିମୟଂ ଶରୀରମ୍ ।

ଅଥର୍ବା ଶବ୍ଦର ଅର୍ଥ ହେଉଛି- ଅଚଞ୍ଚଳ, ସ୍ଥିତପ୍ରଜ୍ଞ, ସ୍ଥିରବୁଦ୍ଧି, ଯୋଗୀ ସୁତରାଂ ଆଥର୍ବଣୀ ଚିକିତ୍ସାର ଅର୍ଥ ଯୌଗିକ ଚିକିତ୍ସା ବୋଲି ଏଠାରେ ବୁଝିବାକୁ ହେବ । ଚରକ ସଂହିତାରେ ଯୋଗର ପରିଚୟ ଲେଖାଅଛିଯେ- ଯୋଗରେ ଓ ମୋକ୍ଷରେ ସକଳ ପ୍ରକାର କ୍ଲେଶର ନିବୃତ୍ତି ହୁଏ । କ୍ଲେଶର ନିଃଶେଷ ନିବୃତ୍ତିର ନାମ ମୋକ୍ଷ । ଏହି ମୋକ୍ଷର ପ୍ରଯୋଜକ ଅଟେ ଯୋଗ।

ଆତ୍ମା, ଇନ୍ଦ୍ରିୟ ଓ ମନର ସହିତ ଶବ୍ଦାଦି ବିଷୟମାନଙ୍କର ସମ୍ପର୍କ ବା ସଂଯୋଗରୁ ସୁଖ କିମ୍ବା ଦୁଃଖର ଅନୁଭୂତି ହୋଇଥାଏ । ମନ ଯଦି ତତ୍ତ୍ୱଜ୍ଞାନ ବଳରେ ଆତ୍ମସ୍ଥ ହୋଇ ସ୍ଥିରତା ପ୍ରାପ୍ତ ହୁଏ, ତା' ହେଲେ ମନ, ବଚନ ଓ ଶରୀର ଦ୍ୱାରା ପ୍ରବୃତ୍ତିର ଅଭାବରୁ ସୁଖ ଏବଂ ଦୁଃଖର ଅନୁଭୂତି ହୁଏନାହିଁ । ସେତେବେଳେ ସେଇ ସମାହିତଚିତ୍ତ ପୁରୁଷ ବଳିଷ୍ଠକୁ ଲାଭକରେ ଏବଂ ଆତ୍ମାରାମ ଓ ପୂର୍ଣ୍ଣକାମ ହୋଇ କର୍ମ ଫଳର ଭୋକ୍ତା ହୁଏନାହିଁ । ଶରୀରଧାରୀ ପୁରୁଷର ଏହିପରି ଭାବରେ ଅବସ୍ଥାନକୁ ଯୋଗ ବୋଲି ଯୋଗଜ୍ଞ ଋଷିମାନେ କହିଛନ୍ତି ଏହାହିଁ ସ୍ୱାସ୍ଥ୍ୟ ବା ଆରୋଗ୍ୟ ।

## ବ୍ରତ ଉପବାସ ଚିକିତ୍ସା

ଆମମାନଙ୍କର ସୁଖ ଦୁଃଖାନୁଭୂତିର କାରଣ ହେଉଛି ମନ । ଏହିମନ ଅପଥ୍ୟ ଆହାର ବିହାର ଜନିତ ରୋଗମାନଙ୍କର ଏବଂ ଜନ୍ମାନ୍ତରୀୟ ପାପକର୍ମ ଜାତ ରୋଗମାନଙ୍କର ମଧ୍ୟ କାରଣ ଅଟେ । ଚରକ ଲେଖିଛନ୍ତି ।

ରଜସ୍ତମୋଭ୍ୟାନ୍ତୁ ମନଃ ପରୀତଂ ସତ୍ତ୍ୱସଞ୍ଜ୍ଞକମ୍
ଶରୀରସ୍ୟ ସମୁତ୍ପତ୍ତୌ ବିକାରଣାଞ୍ଚ କାରଣମ୍ ॥

ଅର୍ଥାତ୍ ରଜୋଗୁଣ ଓ ତମୋଗୁଣ କଳୁଷିତ ସତ୍ତ୍ୱସଞ୍ଜ୍ଞକ ମନ ଶରୀରର ଉତ୍ପତ୍ତି ଓ ବିକାରମାନଙ୍କର ଉତ୍ପତ୍ତିର କାରଣ ଅଟେ । ମନ ଅନ୍ନରୁ ଉତ୍ପନ୍ନ ହୁଏ । ଛାନ୍ଦୋଗ୍ୟ ଉପନିଷଦ୍‌ରେ ବୋଲାଯାଇଛି ଯେ—

"ଅନ୍ନମଶିତଂ ତ୍ରେଧା ବିଧୀୟତେ ତସ୍ୟ ଯଃ ସ୍ଥବିଷ୍ଠୋ ଧାତୁଃ ।
ତତ୍ପୁରୀଷଂ ଭବତି ଯୋ ମଧ୍ୟମସ୍ତନ୍ମାଂସଂ ଯୋଽଣିଷ୍ଠଃ ତନ୍ମନଃ ॥
(ଛା. ୧ ଖ ୧ ମନ୍ତ୍ର)

ଅର୍ଥାତ୍ ଭୋଜନ କରାଯାଇଥିବା ଅନ୍ନ ତିନି ଭାଗରେ ବିଭକ୍ତ ହୁଏ । ତା'ର ସ୍ଥୂଳଭାଗ ଶରୀରର ଧାରକ ମଳରୂପରେ ପରିଣତ ହୁଏ । ମଧ୍ୟମ ଭାଗ ମାଂସ ରୂପରେ ଏବଂ ସୂକ୍ଷ୍ମଭାଗ ମନରୂପରେ ପରିଣତ ହୋଇଥାଏ । ଅତଏବ ସେଇ ଉପନିଷଦରେ ଆଗରେ ବୋଲାଯାଇଛି— "ଅନ୍ନମୟଂହି ସୌମ୍ୟମନଃ ଆପୋମୟଃ ପ୍ରାଣଃ ତେଜୋମୟୀ ବାକ୍ ।" (ଛା: ୧ ଖ ୩ ମନ୍ତ୍ର) ଅର୍ଥାତ୍ ମନ- ଅନ୍ନମୟ, ପ୍ରାଣ- ଜଳମୟ ଏବଂ ବାଣୀ ତେଜୋମୟୀ ଅଟେ ।

ଏଥିରୁ ଜଣାଯାଏ ଯେ- ମନ ଅନ୍ନରୁ ଉତ୍ପନ୍ନ ହୁଏ । ଯଦି ଅନ୍ନ ଆହାର ବନ୍ଦକରି କେବଳ ପ୍ରାଣରକ୍ଷାର୍ଥେ ଜଳପାନ ଏବଂ ଶାସ୍ତ୍ରୋକ୍ତ

ନିୟମାନୁସାରେ ବାୟୁ ଭକ୍ଷଣ ବା ପ୍ରାଣାୟାମ କରି ରୋଗ ନିବୃତ୍ତି ପର୍ଯ୍ୟନ୍ତ ଉପବାସ କରାଯାଏ, ତା’ ହେଲେ ତଦ୍ଦ୍ୱାରା ଅପଥ୍ୟ ଆହାର ସେବନରୁ ଜାତ ସମସ୍ତ ରୋଗ ଏବଂ ଜନ୍ମାନ୍ତରୀୟ ଦୁଷ୍କୃତ ଜାତ ସମସ୍ତ ଦୁର୍ଦ୍ଦୈବ ନିଚୟକୁ ଜୟ କରାଯାଇପାରେ । ଏହିହେତୁରୁ ସାନ୍ନିପାତିକ ରୋଗର ଚିକିତ୍ସାରେ କୁହାଯାଇଛି—

ସପ୍ତାହଂ ବା ଦଶାହଂ ବା ଦ୍ୱାଦଶାହମଥାପିବା ।
ଲଂଘନଂ ସନ୍ନିପାତେଷୁ କୁର୍ଯ୍ୟାଦା ରୋଗ୍ୟ ଦର୍ଶନାତ୍ ॥

ଅର୍ଥାତ୍ ସାନ୍ନିପାତିକ ରୋଗମାନଙ୍କରେ ସାତଦିନ, ଦଶଦିନ ବାରଦିନ ଏମନ୍ତକି ଆରୋଗ୍ୟ ଦର୍ଶନ ପର୍ଯ୍ୟନ୍ତ ଲଂଘନ କରିବାକୁ ହେବ । ଏହିପରି ମଧ୍ୟ ଆଧିବ୍ୟାଧି ନିବୃତ୍ତି ଉଦ୍ଦେଶ୍ୟରେ ହିନ୍ଦୁମାନଙ୍କର ଧର୍ମଶାସ୍ତ୍ରରେ ଏକାଦଶୀ, ଅମାବାସ୍ୟା, ପୂର୍ଣ୍ଣିମା, ଅଷ୍ଟମୀ, ସପ୍ତମୀ, ରବିବାର ଷଟ୍‌ତିଳାଦ୍ୱାଦଶୀ, ଶିବରାତ୍ରି ଆଦି ବ୍ରତୋପବାସ ଲଗା ୫୫୦ ପ୍ରକାର ବ୍ରତ ବିଧାନ ଲେଖାଯାଇଛି । ଏବାଦେ ପାପରେ ପ୍ରାୟଶ୍ଚିତ୍ତ ନିମନ୍ତେ ପରାକ, ସାନ୍ତପନ, କୃଚ୍ଛ୍ର, ଅତିକୃଚ୍ଛ୍ର, ବ୍ରହ୍ମକୂର୍ଚ୍ଚ ଓ ଚାନ୍ଦ୍ରାୟଣାଦି କଠୋର ଉପବାସ କର୍ତ୍ତବ୍ୟ ବୋଲି ଉପଦେଶ ଦିଆଯାଇଛି । ଏସବୁ ସମସ୍ତର ଉଦ୍ଦେଶ୍ୟ ମନୋନିଗ୍ରହ ପୂର୍ବକ ଆରୋଗ୍ୟ ଲାଭ ।

କେବଳ ହିନ୍ଦୁ ଧର୍ମ ଶାସ୍ତ୍ରରେ ନୁହେଁ, ପୃଥିବୀରେ ଯେତେ ପ୍ରକାର ଧର୍ମ, ସମ୍ପ୍ରଦାୟ ବା ମତ ଅଛି, ସେଥିରେ କୌଣସିନା କୌଣସି ପ୍ରକାର ବ୍ରତ ଉପବାସ ପାଳନର ଆଜ୍ଞା ଦିଆ ଯାଇଛି । ଶାସ୍ତ୍ରୋକ୍ତ ନିୟମରେ ବ୍ରତୋପବାସ କଲେ ମନ ବିଷୟରୁ ନିବୃତ୍ତ ହୋଇ ଆତ୍ମସ୍ଥ ହୁଏ । ଏହି ମନକୁ ଆତ୍ମସ୍ଥ କରିବାର ନାମ ହିଁ ଯୋଗ ଏବଂ ଏହାର ନାମ ହିଁ ବ୍ରାହ୍ମୀସ୍ଥିତି । ବ୍ରତୋପବାସାଦିର ଅଭ୍ୟାସ, ସତ୍ସଙ୍ଗ, ସଦ୍‌ଗୁରୁର ଅନୁକମ୍ପା, ସତ୍‌ଶାସ୍ତ୍ରର ଆଲୋଚନା ଓ ଅନୁଶୀଳନ ଏବଂ ସର୍ବଦା ବ୍ରହ୍ମଭାବନା ଦ୍ୱାରା ବ୍ରାହ୍ମୀସ୍ଥିତି ଲାଭ ହୋଇଥାଏ । ବ୍ରାହ୍ମୀସ୍ଥିତି ଲାଭକଲେ ଶାରୀରିକ, ମାନସିକ ଓ ସ୍ୱାଭାବିକ ସକଳ ପ୍ରକାର ରୋଗର ନିଃଶେଷରେ ନିବୃତ୍ତି ହୁଏ, ଜୀବପ୍ରାଣ ମହାପ୍ରାଣରେ ଲୀନ ହୁଏ । ଅତଏବ ସକଳ ପ୍ରକାର ଚିକିତ୍ସା ଠାରୁ ଏହି ଆଥର୍ବଣୀ ଚିକିତ୍ସା ଶ୍ରେଷ୍ଠ ଅଟେ । ଆୟୁର୍ବେଦରେ ଏହାକୁ ସତ୍ତ୍ୱାବଜୟ ଚିକିତ୍ସା ବୋଲାଯାଇପାରେ ।

ଏହି ଚିକିତ୍ସା ହେଉଛି- ସଂସାରର ରୋଗର ନିବର୍ତ୍ତକ । ଅତଏବ ବୋଲାଯାଇଛି-

ନ ତସ୍ୟ ରୋଗ ନ ଜରା ନମୃତ୍ୟୁଃ ।
ପ୍ରାପ୍ତସ୍ୟ ଯୋଗାଗ୍ନିମୟଂ ଶରୀରମ୍ ॥

ଜପ, ପୂଜା, ହୋମ ଆଦି ଅନୁଷ୍ଠାନ ଓ ବନ୍ଧବିଧାନ ଆଥର୍ବଣୀ ଚିକିତ୍ସାର ଅଙ୍ଗ ଅଟେ । ଏଥି ସମ୍ବନ୍ଧେ ଚରକଙ୍କର ଉକ୍ତି ଏହି ଯେ—

"ମତବଚଃ କର୍ମସୁଖାନୁବନ୍ଧ ସତ୍ତ୍ୱଂ ବଶ୍ୟଂ ବିଶଦାଚବୁଦ୍ଧିଃ,
ଜ୍ଞାନଂ ତପସ୍ତତ୍ପରତା ଚ ଯୋଗେ ଯସ୍ୟାସ୍ତି ତଂନାନୁପତନ୍ତି ରୋଗାଃ ॥

ଅର୍ଥାତ୍ ଯା'ର ମନ, ବଚନ ଓ କର୍ମ ଆରୋଗ୍ୟର ଅନୁକୂଳ, ଯା'ର ଇନ୍ଦ୍ରିଶକ୍ତି ସ୍ୱାଧୀନ ଏବଂ ବୁଦ୍ଧି ନିର୍ମଳ, ପୁଣି "ସର୍ବଭୂତେଷୁ ଚାତ୍ମାନଂ ସର୍ବଭୂତାନି ଚାତ୍ମନି" ଏହିଭାବ ଯା'ର ଉଦ୍‌ବୁଦ୍ଧ ହୋଇଅଛି ଏବଂ ଯେ ଯୋଗାରୂଢ଼ ପୁରୁଷ, ତାଙ୍କୁ କୌଣସି ପ୍ରକାରେ ରୋଗ ଆକ୍ରମଣ କରିନାହିଁ ।

## ମନ୍ତ୍ର ଚିକିତ୍ସା

ଶାସ୍ତ୍ରରେ ଲେଖାଅଛି ଯେ- ଏହି ଚରାଚର ଜଗତ ପରମାତ୍ମାଙ୍କର ବାଙ୍ମୟୀମୂର୍ତ୍ତି । ସେ ଏହାର ସୃଷ୍ଟି, ସ୍ଥିତି ଓ ପ୍ରଳୟ ବାକ୍ୟଦ୍ୱାରା ହିଁ କରିଥାଆନ୍ତି । ବାଣୀ ତେଜୋମୟୀ ମହାଶକ୍ତି ଅଟେ ଏବଂ ବାଣୀଦ୍ୱାରା ହିଁ ମନୁଷ୍ୟ ନିଜର କର୍ମ ସୃଷ୍ଟି କରେ, ରକ୍ଷାକରେ ଓ ନାଶକରେ । ଆତ୍ମାର ଜ୍ଞାନଶକ୍ତି ଓ ଇଚ୍ଛାଶକ୍ତି ବାଣୀ ଦ୍ୱାରାହିଁ ପ୍ରକାଶ ହୋଇଥାଏ । ଶ୍ରୁତିରେ ଲେଖାଅଛି ଯେ- ସୃଷ୍ଟିର ପୂର୍ବେ ଜ୍ଞାନମୟ ପରମେଶ୍ୱର ଇଚ୍ଛାକଲେ "ଏକୋଽହଂବହୁସ୍ୟାମ୍" ଅର୍ଥାତ୍ ମୁଁ ଏକ ଅନେକ ହେବି । ଏହି ଯେ ପରମେଶ୍ୱରଙ୍କର ଇଚ୍ଛା- ଏହା ଜ୍ଞାନଶକ୍ତିର ବାଣୀରୂପ ସ୍ପନ୍ଦନ ଛଡ଼ା ଅନ୍ୟ କିଛି ନୁହେ । ଅର୍ଥାତ୍ ଇଚ୍ଛା କରିବା ଓ ବାଣୀ ପ୍ରକାଶ କରିବା ଏକ କଥା । ପରମେଶ୍ୱର ଇଚ୍ଛାକଲେ- ଏହାର ଅର୍ଥ ହେଉଛି, ପରମେଶ୍ୱର ପୂର୍ବ କଥିତ କେତେ ଗୁଡ଼ିଏ ଶବ୍ଦ ଉଚ୍ଚାରଣ କଲେ । ଏହିଶବ୍ଦ ହେଉଛି- ଅକ୍ଷରାତ୍ମକ । ଅତଏବ ଏହି ଅକ୍ଷର ପ୍ରକାଶକ ପରମେଶ୍ୱରଙ୍କୁ ଅକ୍ଷର ବ୍ରହ୍ମ ବା ଶବ୍ଦବ୍ରହ୍ମ ବୋଲାଯାଏ । ଶ୍ରୁତିରେ ଲେଖାଅଛି ଯେ—

"ଯଥୋର୍ଣ୍ଣନାଭିଃ ସୃଜତେ ଗୃହ୍ଣତେ ଚ, ଯଥା ପୃଥିବ୍ୟାମୋଷଧୟଃ ସମ୍ଭବନ୍ତି
ଯଥା ସତଃ ପୁରୁଷାତ୍ କେଶଲୋମାନି, ତଥାକ୍ଷରାତ୍-ସମ୍ଭବତୀହ ବିଶ୍ୱମ୍ ॥

ଅର୍ଥାତ୍ ଯେପରି ବୁଣିଆଣି ତା'ର ନାଭିରୁ ସୂତା ବାହାର କରି ଜାଲ ନିର୍ମାଣ କରେ ଏବଂ ଇଚ୍ଛାମତେ ସେହି ଜାଲକୁ ଉଦରସ୍ଥ କରି ନିଏ । ଏହି ପ୍ରକାର ମହାକାଶରେ ପ୍ରଥମରେ ଓଁ ଶବ୍ଦ ଉତ୍ପନ୍ନ ହୁଅନ୍ତି ଏବଂ ଯେପରି ପ୍ରାଣବାନ୍ ଯୁକ୍ତିର ଦେହ ଓ ଜୀବ ମାନେ ଉତ୍ପନ୍ନ ହୁଏ, ସେହିପରି ଅକ୍ଷର ଶବ୍ଦରୁ ଏହି ସାରା ଜଗତର ସୃଷ୍ଟି ହୋଇଥାଏ । ଏହି କଥା ଯେସୁ ଖ୍ରୀଷ୍ଟାନମାନଙ୍କର ଧର୍ମଗ୍ରନ୍ଥ ବାଇବେଲରେ ଲେଖାଅଛି ଯେ- "ସୃଷ୍ଟିର ଆରମ୍ଭରେ ଶବ୍ଦ ଥିଲା "ଜନ" ଅର୍ଥାତ୍ "ଶବ୍ଦ" ଏହା ସେ ଶବ୍ଦରୁ ମାନବ ସମସ୍ତ ଜଗତ୍ ଉତ୍ପନ୍ନ ହେଲା । ଏହିପରି ଖ୍ରୀଷ୍ଟିୟାନ୍ ମାନଙ୍କର ଧର୍ମ ଗ୍ରନ୍ଥ ଓଲ୍ଡ ଟେଷ୍ଟାମେଣ୍ଟ ଆଦି ବାଇବେଲରେ ଲେଖାଅଛି ଯେ- ସୃଷ୍ଟିର ପ୍ରାରମ୍ଭରେ ପରମେଶ୍ୱର ପ୍ରଥମ ପ୍ରକାଶ ହେବାକୁ ଆଦେଶ ଦେଲେ, କେବଳ ତାଙ୍କର ଆଦେଶ ମାତ୍ର ସଙ୍ଗେ ସଙ୍ଗେ ସୃଷ୍ଟି ପ୍ରକାଶ ହେଲା । ଅତଏବ ସତ୍ୟ କହୁଛନ୍ତି ଯେ—

"ବାଗର୍ଥୌ ସମ୍ପୃକ୍ତୌ ସଦେ ବାଙ୍ମୟା ବାକ୍ବିଜୃମ୍ଭିତାଃ

ଅର୍ଥାତ୍ ଏହି ଜଗତର ସମସ୍ତ ବସ୍ତୁ ବାକ୍ୟ ମଧ୍ୟରେ ନିହିତ, ବାକ୍ୟରୁ ନିର୍ଗତ, ସୁତରାଂ ସମସ୍ତ ପଦାର୍ଥ ବାଙ୍ମୟ ଅଟେ । ଉଚ୍ଚାରିତ ଶବ୍ଦକୁ ନାମ ବା ପଦ ବୋଲଯାଏ । ଏହି ପଦ ଯାହାକୁ ପ୍ରକାଶ କରେ, ତାକୁ ପଦାର୍ଥ କହନ୍ତି । ପଦ ଓ ପଦାର୍ଥ ଅଭିନ୍ନ ଅଟେ ।

ପଦସମୂହକୁ ବାକ୍ୟ ବୋଲାଯାଏ ଏବଂ ବାକ୍ୟଦ୍ୱାରା ହିଁ ଜଗତର ସୃଷ୍ଟି ସ୍ଥିତି ପ୍ରଳୟ କ୍ରିୟା ସାଧିତ ହୋଇଥାଏ । ଏହି ଜଗତର ଜ୍ଞାନ ବିଜ୍ଞାନ ରାଜ୍ୟର ଉପାଦାନ ବାକ୍ୟ । ପୃଥିବୀରେ ବିଭିନ୍ନ ଧର୍ମ ଓ ବିଭିନ୍ନ ମତ-ବାଦ ପ୍ରଚାରର କାରଣ ହେଉଛି- ବାକ୍ୟ ଏବଂ ଜାତି ଜାତି ମଧ୍ୟରେ, ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ପ୍ରେମ ଓ ବିରୋଧର କାରଣ ହେଉଛି- ବାକ୍ୟ । ବାକ୍ୟଦ୍ୱାରା ଶତ୍ରୁ ମିତ୍ର ହୁଏ, ମିତ୍ର ଶତ୍ରୁପରି ଆଚରଣ କରେ । ବାକ୍ୟ ଦ୍ୱାରା କ୍ରୁଦ୍ଧ ଶାନ୍ତ ହୁଏ, ଶାନ୍ତ କ୍ରୁଦ୍ଧ ହୋଇ ଉଠେ । ଦୁର୍ବଳ ବ୍ୟକ୍ତି ବାକ୍ୟ ଦ୍ୱାରା ସବଳ ହୋଇଥାଏ, ସବଳ ବ୍ୟକ୍ତିର ଶକ୍ତି ସାମର୍ଥ୍ୟ ବାକ୍ୟଦ୍ୱାରା ବିନଷ୍ଟ ହୋଇଯାଏ । ସତ୍ୟ ବାକ୍ୟର ପ୍ରୟୋଗରେ ବ୍ୟକ୍ତିର ଜାତିର ଓ ରାଷ୍ଟ୍ରର ସକଳପ୍ରକାର ଅଭ୍ୟୁଦୟ ସାଧିତ ହୋଇଥାଏ ଏବଂ ମିଥ୍ୟା ବାକ୍ୟର କଟୁପ୍ରକାରେ ପଥଭ୍ରଷ୍ଟ ହୋଇ ବ୍ୟକ୍ତି, ଜାତି ଓ

ଦେଇ ରସାତଳଗାମୀ ହୁଏ । ଅକ୍ଷର ବ୍ରହ୍ମନିଷ୍ଠ ପ୍ରାଚୀନ ଋଷିମାନଙ୍କର ସତ୍ୟ ବାଗ୍‌ଜ୍ୟୋତିର ମହିମା ବଳେ ଓ ଅଭିଶାପ ରୂପରେ ତତ୍‌କ୍ଷଣାତ୍ ପ୍ରତିଫଳିତ ହେବାର ଭୂରି ଭୂରି ଦୃଷ୍ଟାନ୍ତ ପୁରାଣମାନଙ୍କରେ ଶୁଣିବାକୁ ମିଳେ । ସମସ୍ତ ବାକ୍ୟ ଅକ୍ଷର ବ୍ରହ୍ମର ପ୍ରକାଶ ଅକ୍ଷରାତ୍ମକ ଏବଂ ସମସ୍ତ ବୈଦିକ ଅକ୍ଷର ମନ୍ତ୍ର ସ୍ୱରୂପ ଅଟେ । ସେହେତୁରୁ କୁହାଯାଇଛି ଯେ--

ଅମନ୍ତ୍ର ମକ୍ଷରଂ ନାସ୍ତି ନାସ୍ତି ମୂଳମନୌଷଧମ୍,
ଅଯୋଗ୍ୟଃ ପୁରୁଷୋ ନାସ୍ତି ଯୋଜକସ୍ତତ୍ର ଦୁର୍ଲଭଃ ॥

ଅର୍ଥାତ୍ ଏହିପରି କୌଣସି ଅକ୍ଷର ନାହିଁ, ଯାହା କି ମନ୍ତ୍ର ନୁହେଁ । ଏହିପରି କୌଣସି ମୂଳିକା ନାହିଁ, ଯାହାକି ଔଷଧ ନୁହେଁ ଏବଂ ଏହିପରି କେହି ଅମନୁଷ୍ୟ ନାହିଁ, ଯେ କି କୌଣସି କାର୍ଯ୍ୟର ଯୋଗ୍ୟ ନୁହେଁ । କିନ୍ତୁ ଅକ୍ଷରକୁ ମନ୍ତ୍ର ରୂପରେ, ମୂଳିକାକୁ ଔଷଧ ରୂପରେ ଏବଂ ଅଯୋଗ୍ୟ ମନୁଷ୍ୟକୁ ଉପଯୁକ୍ତ କାର୍ଯ୍ୟରେ ଯୋଗ କରିବା ପୁରୁଷ ହିଁ ଦୁର୍ଲଭ ।

ଏଥିରୁ ଜଣାଯାଏ ଯେ---ପ୍ରତ୍ୟେକ ଅକ୍ଷର ମନ୍ତ୍ର ସ୍ୱରୂପ । ମନ୍ତ୍ର ଶବ୍ଦର ଅର୍ଥ ଏହି ଯେ---"ମନନାତ୍ ତ୍ରାୟତେ ଇତି ମନ୍ତ୍ରଃ" ଅର୍ଥାତ୍ ଯାହାର ଅର୍ଥକୁ ମନନ ବା ଚିନ୍ତନ କଲେ, ମନର ଅନ୍ୟାସକ୍ତି ଦୂର ହୁଏ, ମନ ଏକାଗ୍ର ହୁଏ, ତା'ର ନାମ ମନ୍ତ୍ର । ସାର କଥାଟି ଏହି ଯେ—ଯାହା ଯାହା ଶବ୍ଦାତ୍ମକ, ଭାବ ଉଦ୍‌ବୋଧକ ଅକ୍ଷର ତା'ର ନାମ ମନ୍ତ୍ର । ସମସ୍ତ ମନ୍ତ୍ର ମଧ୍ୟରେ ଏକାକ୍ଷର ବ୍ରହ୍ମବାଚକ ଅ-ଉ-ମ ଏହି ତ୍ରିମାତ୍ରକ ଓଁକାର ହେଉଛି ମୂଳମନ୍ତ୍ର । ଏହି ମୂଳ ମନ୍ତ୍ରରୁ ବିଭିନ୍ନ ଦେବତାର ବାଚକ ଅ-କ-ଚ-ଟ-ତ-ପ-ଯ ଆଦି ସାତ ପ୍ରକାର ବର୍ଣ୍ଣ ବର୍ଗର ଅନ୍ତର୍ଗତ ପଞ୍ଚାଶତ୍ ମାତୃକା ଅକ୍ଷର ରୂପ ପୃଥକ୍ ପୃଥକ୍ ମନ୍ତ୍ର ନିର୍ଗତ ହୋଇଛି । (*) ଏହି ସାର୍ଥକ ମୂଳ ଅକ୍ଷର ସ୍ୱରୂପ ମନ୍ତ୍ରମାନଙ୍କ ଯୋଗରେ ହିଁ ବହୁବିଧ ବୈଦିକ, ତାନ୍ତ୍ରିକ, ପୌରାଣିକ ଓ ଲୌକିକ ମନ୍ତ୍ର ସବୁ କଳ୍ପିତ ହୋଇଅଛି ।

---

(*) ଅକାରୋ ବାସୁଦେବଃ ସ୍ୟାଦାକାରସ୍ତୁ ପିତାମହଃ
ଇକାର ଉଚ୍ୟତେ କାମୋ ଲକ୍ଷ୍ମୀରୀକାର ଉଚ୍ୟତେ
ଉକାରଃ ଶଙ୍କରଃ ପ୍ରୋକ୍ତ ଊକାରସ୍ତ୍ୱପିରକ୍ଷଣେ
ଋକାରୋ ଦେବମାତା ସ୍ୟାତ୍ ୠକାରୋ ଦନୁଜପ୍ରସୂଃ ଇତ୍ୟାଦି
ପଞ୍ଚାଶତ୍ ମାତୃକା ଅକ୍ଷରର ଅର୍ଥ ଏକାକ୍ଷର କୋଷରେ ଦ୍ରଷ୍ଟବ୍ୟ

## ମନ୍ତ୍ର ଦ୍ୱାରା ରୋଗ ପ୍ରଶମନାଦି ଅଭୀଷ୍ଟ ସାଧନ

ମନ୍ତ୍ର ଶକ୍ତି ପ୍ରୟୋଗରେ ସମସ୍ତ ରୋଗ ପ୍ରଶମନ, ବଶୀକରଣ, ସମ୍ମୋହନ, ସ୍ତମ୍ଭନ, ଉଚ୍ଚାଟନ, ବିଦ୍ୱେଷଣ ଓ ଶତ୍ରୁମାରଣାଦି କର୍ମ ସମ୍ପନ୍ନ କରାଯାଇଥାଏ । ଏହା ଅନେକ ସ୍ଥଳରେ ପ୍ରତ୍ୟକ୍ଷ ସିଦ୍ଧ । କିନ୍ତୁ ଏଥିପାଇଁ ମନ୍ତ୍ରପ୍ରଦ ଆତୁର ସମ୍ପୂର୍ଣ୍ଣ ଆତ୍ମବିଶ୍ୱାସୀ, ସତ୍ୟବାକ୍, ଧାର୍ମିକ ଜିତେନ୍ଦ୍ରିୟ ପୁରୁଷ ଆବଶ୍ୟକ । ଅଶୁଚି ଲୋକ ଦ୍ୱାରା ପ୍ରଯୁକ୍ତ ମନ୍ତ୍ର ବିପରୀତ ଫଳପ୍ରଦ ହୋଇପାରେ ।

ରୋଗ ପ୍ରଶମନାର୍ଥେ— ଶତରୁଦ୍ର ପ୍ରୟୋଗ, ଅଥବା ବେଦୋକ୍ତ ସହସ୍ରାକ୍ଷର ନୃସିଂହ ମନ୍ତ୍ର ପ୍ରୟୋଗ, ଅପାମାର୍ଜନ ପ୍ରୟୋଗ ଓ ଅନ୍ୟ ପ୍ରୟୋଗାଦିର ଫଳ ଭାରତରେ ସର୍ବତ୍ର ପ୍ରତ୍ୟକ୍ଷ ଅନୁଭବ ସିଦ୍ଧ ଅଟେ । କିନ୍ତୁ ଏହି ମନ୍ତ୍ର ଶକ୍ତି ସଂସ୍କୃତ ଭାଷା ଓ ତଦ୍‌ଭବ ଭାଷା ଭିନ୍ନ ଅନ୍ୟ ପ୍ରାକୃତ ଭାଷାରେ ହୋଇପାରେ ନାହିଁ । କାରଣ କ– ସଂସ୍କୃତ ଭାଷାରେ ମୋଟରେ ପ୍ରତ୍ୟେକ ଅକ୍ଷରର ଅର୍ଥ ଅଛି. ଅର୍ଥାତ୍ ଅକାରର ଅର୍ଥ ବାସୁଦେବ, ଆକାରର ଅର୍ଥ-ବ୍ରହ୍ମା, ଇକାରର ଅର୍ଥ- କାମ, ଈକାରର- ଅର୍ଥ-ଲକ୍ଷ୍ମୀ ଇତ୍ୟାଦି, ଏହିପରି ଇଂରେଜୀ ଆଦି ପ୍ରାକୃତ ଭାଷାର ଅକ୍ଷର A, B, C, D, ଇତ୍ୟାଦିରେ ଏବଂ ଆଲିଫ୍, ବେ, ପେ, ତେ, ଟେ, ଇତ୍ୟାଦି ଆରବୀ ଅକ୍ଷର ମାନଙ୍କରେ କୌଣସି ଅର୍ଥ ନାହିଁ । ଏହିପରି ଅନ୍ୟ ସମସ୍ତ ପ୍ରାକୃତ ଭାଷାର ଅକ୍ଷର ଅପୂର୍ଣ୍ଣ ଏବଂ ତା'ର ନାଦ ବା ଧ୍ୱନି ମଧ୍ୟ ପୂର୍ଣ୍ଣ ନୁହେଁ । ଏହି ଅକ୍ଷରର ଅପୂର୍ଣ୍ଣତା ଓ ଧ୍ୱନିର ଅପୂର୍ଣ୍ଣତା ହେତୁରୁ ଆଜି ଇଂରେଜମାନେ ସକଳ ଦିଗରେ ଉନ୍ନତି ଲାଭ କରିଥିଲେ ମଧ୍ୟ ଅକ୍ଷର ଉଚ୍ଚାରଣରେ ଅନୁନ୍ନତ ହୋଇ ପଡ଼ିଛନ୍ତି । ଇଂରେଜମାନେ "ତୁମ୍ଭେ" ବୋଲିବା ସ୍ଥଳରେ ଟୁମ୍ଭେ, "ଦାଦା" ବୋଲିବା ସ୍ଥଳରେ ଡାଡା ବୋଲି ଉଚ୍ଚାରଣ କରନ୍ତି । ଆହୁରି ମଧ୍ୟ ସେମାନଙ୍କର ମନନ ସହିତ ଉଚ୍ଚାରଣର ଏବଂ ଉଚ୍ଚାରଣ ସହିତ ଲେଖନର ସାମଞ୍ଜସ୍ୟ ଦେଖାଯାଏ ନାହିଁ । ଇଂରେଜମାନେ ଉଚ୍ଚାରଣ କରନ୍ତି "କମ୍" ବୋଲି, କିନ୍ତୁ ସେହି "କମ" ଲେଖିବା ବେଳେ ସି. ଓ. ଏମ ବୋଲି ଲେଖନ୍ତି । ସେହିପରି ଓ୍ୱାଟର ବୋଲି ଉଚ୍ଚାରଣ କରି ଡବ୍ଲ୍ୟୁ, ଏ. ଟି. ଇ· ଆର ବୋଲି ଲେଖନ୍ତି ।

ଏହିସବୁ କାରଣରୁ ସଂସ୍କୃତ ଓ ତଦ୍‌ଭବ ଭାଷାନ୍ତର ଅନ୍ତର୍ଗତ ପ୍ରାକୃତ ଭାଷାମାନଙ୍କରେ ଏବଂ ତା'ର ମୂଳୀଭୂତ ଅକ୍ଷର ମାନଙ୍କରେ ମନ୍ତ୍ରଶକ୍ତି ପ୍ରତିଷ୍ଠା କରାଯାଇ ପାରେନାହିଁ । ତଥାପି ରୋଗପ୍ରଶମନାର୍ଥେ- ଯେ କୌଣସି ଭାଷାର ନିର୍ଦ୍ଦୋଷଶୋକ୍ତ ପ୍ରୟୋଗ କାର୍ଯ୍ୟସାଧକ ହୋଇପାରେ ଏବଂ ତାକୁହିଁ ମନ୍ତ୍ର ବୋଲାଯାଇ ପାରେ ।

ଏହି ମାନ୍ତ୍ରିକ ଚିକିତ୍ସାକୁ ଆଥର୍ବଣୀ ଚିକିତ୍ସା ବୋଲାଯାଏ । ଇଂରେଜି ଭାଷାରେ ଏହାକୁ ଆଂଶିକ ହିପନଟିଜମ୍ ଚିକିତ୍ସା ବୋଲାଯାଇ ପାରେ ।

## ଭୈଷଜ୍ୟ ଯଜ୍ଞ ଚିକିତ୍ସା

ଯଜ୍ଞଶବ୍ଦ ଯଜ ଧାତୁର ନିଷ୍ପନ୍ନ ଅଟେ । ଯଜ ଧାତୁର ଅର୍ଥ- ଦେବପୂଜା, ସଙ୍ଗତିକରଣ ଓ ଦାନ । ଅର୍ଥାତ୍ ଯେଉଁ ଅନୁଷ୍ଠାନରେ ଅଖିଳ ବ୍ରହ୍ମାଣ୍ଡର ପ୍ରାଣପତି ଦେବଦେବ ପରମେଶ୍ୱରଙ୍କୁ ଓ ତାଙ୍କର ପ୍ରାଣଶକ୍ତିର ପ୍ରକାଶ ରୂପ ଏହି ଦୃଶ୍ୟମାନ ଚରାଚର ଜଗତକୁ ନିଃସ୍ୱାର୍ଥବୁଦ୍ଧିରେ ପୂଜା ବା ସତ୍କାର କରାଯାଏ, ବିଶ୍ୱପ୍ରାଣ ସହିତ ଆପଣାର ପ୍ରାଣର ଅଭିନ୍ନତା ବୋଧ ପ୍ରତିଷ୍ଠା କରାଯାଏ, ଏବଂ ଯହିଁରେ ଜଗତ୍ ପ୍ରାଣର ତୃପ୍ତି ନିମନ୍ତେ କାମ୍ୟ ମନୋବାକ୍ୟରେ ଆପଣାର ସର୍ବସ୍ୱ ଉତ୍ସର୍ଗ କରାଯାଏ, ତାକୁ ଯଜ୍ଞ ବୋଲନ୍ତି । ଏହି ଜଗତର ସୃଷ୍ଟି ଓ ସ୍ଥିତିର ମୂଳ ହେଉଛି- ଯଜ୍ଞ ଏବଂ ଏହି ଯଜ୍ଞହିଁ ବୈଦିକ ଧର୍ମର ପ୍ରାଣ ଅଟେ । ଏହି ଅନାଦି ଅନନ୍ତ ବିଶ୍ୱବ୍ରହ୍ମାଣ୍ଡ ଏକ ବିରାଟ ଯଜ୍ଞାଗାର । ଆମମାନଙ୍କର ଅନ୍ତର୍ଜଗତ ଓ ବାହ୍ୟଜଗତ ଯଜ୍ଞମୟ । ସର୍ବତ୍ର ପ୍ରାଣରୂପୀ ଆତ୍ମଦେବତାର ପୂଜା, ଆନ୍ତର ପ୍ରାଣ ସହିତ ବାହ୍ୟ ପ୍ରାଣର ମିଳନ ଓ ପ୍ରାଣର ପରସ୍ପର ଆଦାନ ପ୍ରଦାନ ରୂପ କର୍ମାନୁଷ୍ଠାନ ହିଁ ଏହି ଜଗତ୍ ଯଜ୍ଞର ସ୍ୱରୂପ । ଏହି ବିଶ୍ୱଯଜ୍ଞର ସମସ୍ତ କାରଣ କରୁଣାମୟ ପରମ ପୁରୁଷ ପରଂବ୍ରହ୍ମ । ଭଗବାନ୍ ଗୀତାରେ କହିଛନ୍ତି ଯେ—

ଅହଂକ୍ରତୁରହଂଯଜ୍ଞଃ ସ୍ୱଧାହମହମୌଷଧମ୍ ।
ମନ୍ତ୍ରୋଽହମହମେବାଜ୍ୟମହମଗ୍ନିରହଂହୁତମ୍ ॥

ଅର୍ଥାତ୍ ହେ ଅର୍ଜ୍ଜୁନ ! ମୁଁ ଅନ୍ତର୍ଯଜ୍ଞ ଓ ବହିର୍ଯଜ୍ଞସ୍ୱରୂପ । ମୁଁ ସ୍ୱଧାରୂପ ପିତୃଯଜ୍ଞ, ମୁଁ ଯଜ୍ଞର ଆବଶ୍ୟକୀୟ ଔଷଧ, ମୁଁ ମନ୍ତ୍ର, ମୁଁ ହବି, ମୁଁ ଅଗ୍ନି ଏବଂ ମୁଁ କେବଳ ହବନକ୍ରିୟା ଅଟେ ।

ଭଗବାନଙ୍କର ଏହି ଉକ୍ତିରୁ ଜଣାଯାଏ ଯେ- ଆତ୍ମଜ୍ଞାନ ରୂପ ଅଗ୍ନିରେ କର୍ମମୟ ଜଗତକୁ ଆହୁତ ଦେଇ ଆପଣାର ଅନ୍ତର୍ବାହ୍ୟ ସର୍ବଶ ବ୍ରହ୍ମଭାବ ପ୍ରତିଷ୍ଠାକରି ଆତ୍ମାରାମ, ପୂର୍ଣ୍ଣକାମ ହେବା ହିଁ ଏହି ବ୍ରହ୍ମଯଜ୍ଞର ଚରମ ଉଦ୍ଦେଶ୍ୟ ।

ଯଜ୍ଞ ସର୍ବାର୍ଥ ସାଧକ ଏବଂ ଉଦ୍ଦେଶ୍ୟ ଓ ଉପକରଣାଦି ଭେଦରେ ଏହା ଅନେକ ପ୍ରକାର ଅଟେ । କିନ୍ତୁ ସମସ୍ତ ଯଜ୍ଞରେ ପିଣ୍ଡ ବ୍ରହ୍ମାଣ୍ଡର ପ୍ରାଣ ସ୍ୱରୂପ ବ୍ରହ୍ମ ପ୍ରତୀକ ଅଗ୍ନିଦେବତାଙ୍କୁ ହିଁ ଉପାସନା କରାଯାଏ । ଏତେହେତୁରୁ ଯଜ୍ଞକୁ ଅଗ୍ନିହୋତ୍ର ଓ ଅଗ୍ନିଷ୍ଟୋମ ବୋଲଯାଏ ।

ଅଥର୍ବ ବେଦରେ ଲେଖାଅଛି ଯେ—

ଅଗ୍ନିର୍ଭୂମ୍ୟା ମୋଷଧୀ ଷ୍ୱଗ୍ନିମାପୋ ଅଗ୍ନିର୍ବିଭର୍ତ୍ତ୍ୟଗ୍ନିରଶ୍ମସୁ
ଅଗ୍ନିରନ୍ତଃପୁରୁଷେଷୁ ଗୋଷ୍ୱଶ୍ୱେଷ୍ୱଗ୍ନୟଃ । ୧୯
ଅଗ୍ନିର୍ଦିବ ଆତପତ୍ୟଗ୍ନେର୍ଦେବସ୍ୟୋ ର୍ବନ୍ତରିକ୍ଷମ୍
ଅଗ୍ନିଂ ମର୍ତ୍ତାସ ଇନ୍ଧତେ ହବ୍ୟବାହଂ ଘୃତପ୍ରିୟମ୍ । ୨୦ (ଅଥର୍ବ ୧୨।୧।୧)

ଅର୍ଥାତ୍ ପୃଥିବୀ ମଧ୍ୟରେ ଅଗ୍ନି, ଔଷଧମାନଙ୍କ ମଧ୍ୟରେ ଅଗ୍ନି, ମେଘରୂପରେ ପରିଣତ ଜଳ ମଧ୍ୟରେ ଅଗ୍ନି, ପାଷାଣ (ଚକମକି ପଥର) ରେ ଅଗ୍ନି, ଗୋରୁ, ଘୋଡା ଆଦି ପଶୁମାନଙ୍କ ମଧ୍ୟରେ ଅଗ୍ନି ଏବଂ ଆକାଶରେ ସୂର୍ଯ୍ୟରୂପରେ ପ୍ରକାଶମାନ ଅଗ୍ନି—ଏହିପରି ଅନେକ ରୂପରେ ଅଗ୍ନି ଦେବତା ସର୍ବଶ ବିଦ୍ୟମାନ ଅଛନ୍ତି । ମନୁଷ୍ୟମାନେ ଏହି ହବ୍ୟବାହି, ଘୃତପ୍ରିୟ ଅଗ୍ନି ଦେବତାଙ୍କୁ ଆରୋଗ୍ୟ ପ୍ରାପ୍ତି ଓ ଦୁଃଖ ନିବୃତ୍ତି ନିମନ୍ତେ ହବନ କରନ୍ତି ।

ବୈଜୟନ୍ତୀ ତନ୍ତ୍ରରେ ମଧ୍ୟ ଏହି କଥା ଲେଖାଅଛି ଯେ—

ପୃଥିବ୍ୟାଂ ଦେବତା ବହ୍ନିରନ୍ତରୀକ୍ଷେ ଚ ମାରୁତଃ,
ଦିବେ ଦେବତା ସୂର୍ଯ୍ୟ ଇତି ବେଦବିଦୋ ଜଗୁଃ ।

ଅର୍ଥାତ୍ ଭୂଲୋକରେ ଦେବତା, ଅଗ୍ନି, ଅନ୍ତରୀକ୍ଷ ବା ବାୟୁଲୋକରେ ଦେବତା ବିଦ୍ୟୁତ୍ ଏବଂ ଦ୍ୟୁଲୋକରେ ଦେବତା ସୂର୍ଯ୍ୟ ଅଛନ୍ତି ।

ଏହି ଜଗତରେ ସମସ୍ତେ ଜ୍ଞାନରେ ବା ଅଜ୍ଞାନରେ ସର୍ବଦା ପ୍ରାଣରୂପୀ ଅଗ୍ନିଦେବତାଙ୍କୁ ହିଁ ଉପାସନା କରି ଥାଆନ୍ତି । ଆମର ଦେଶର ପୁରାଣ-ମାନଙ୍କରେ ମହର୍ଷିମାନଙ୍କର ଯେଉଁ ଅଲୌକିକ ଅଦ୍ଭୁତ ପ୍ରଭାବ ବର୍ଣ୍ଣିତ

ହୋଇଅଛନ୍ତି, ସେ ସମସ୍ତଙ୍କ ଅଗ୍ନିଦେବତାଙ୍କର ଉପାସନାର ଫଳ । ଆଧୁନିକ ବୈଜ୍ଞାନିକମାନେ ମଧ୍ୟ ଏହି ଅଗ୍ନିଦେବତାଙ୍କୁ ଉପାସନା କରି ସକଳ ପ୍ରକାର ସିଦ୍ଧି ଓ ଐଶ୍ୱର୍ଯ୍ୟର ଅଧିକାରୀ ହେବାର ଦେଖାଯାଏ ।

ଶାସ୍ତ୍ରରେ ଦେବତା ଶବ୍ଦର ଏହିପରି ଅର୍ଥ ଲେଖାଯାଇଛି ଯେ— "ମନ୍ତ୍ରାର୍ଥୋ ଦେବତା" ଅର୍ଥାତ୍ ମନ୍ତ୍ରର ଯାହା ଅର୍ଥାନୁଭୂତି, ତାର ନାମ ଦେବତା । ଅନୁଭୂତି ବିନା ମନ୍ତ୍ର ପ୍ରାଣହୀନ । ସୁତରାଂ ସେହି ଭଳି ମନ୍ତ୍ର କୋଟି କୋଟି ବାର ଆବୃତ୍ତି କଲେ ମଧ୍ୟ ଦେବତାର ଆବିର୍ଭାବ ହୁଏ ନାହିଁ । ଧରନ୍ତୁ ଯେ— ସମସ୍ତ ବେଦର ମୂଳମନ୍ତ୍ର-ବ୍ରହ୍ମବାଚକ ଓଁକାର, ଏହି ଓଁକାର ମନ୍ତ୍ରର ଦେବତା ଅଗ୍ନି-ଈଶ୍ୱର । * ଯଦି ଓଁକାର ଶବ୍ଦ ଉଚ୍ଚାରଣ କଲାମାତ୍ରେ ଅନ୍ତର୍ବାହ୍ୟ ସର୍ବତ୍ର ପରିବ୍ୟାପ୍ତ ଧୂମ୍ରହୀନ ଅଗ୍ନିର ଅନୁଭୂତି ପ୍ରକାଶ ହୁଏ, ତାହାହେଲେ ସେପରି ସ୍ଥଳରେ ଦେବତାର ଆବିର୍ଭାବ ହେଲା ବୋଲି ବୁଝିବାକୁ ହେବ ଏବଂ ନିଜେ ଦେବତା ଭାବିକରି ଦେବପୂଜା କରିବାକୁ ହେବ । "ଦେବୋଭୂତ୍ୱା ଦେବଂ ଯଜେତ୍ ।

ଭଗବାନ୍ ଗୀତାରେ କହିଛନ୍ତି ଯେ—ପ୍ରକୃତି ଭେଦରେ ଦେବପୂଜା ବିଭିନ୍ନ ପ୍ରକାର ହୋଇଥାଏ । ଯଥା—ଯଜନ୍ତେ ସାତ୍ତ୍ୱିକା ଦେବାନ୍ ଯକ୍ଷରକ୍ଷାଂସି ରାଜସାଃ, ପ୍ରେତାନ୍ ଭୂତଗଣାଂଶ୍ଚାନ୍ୟେ ଯଜନ୍ତେ ତାମସା ଜନାଃ

ଅର୍ଥାତ୍ ସାତ୍ତ୍ୱିକ ପୁରୁଷମାନେ ପ୍ରକାଶମୟ ଦେବଭାବକୁ ଆଶ୍ରୟ କରି ସମ୍ପୂର୍ଣ୍ଣ ଭାବରେ ଦେବଯଜନ କରନ୍ତି । ରାଜସିକ ପୁରୁଷମାନେ ସ୍ୱାର୍ଥପୋଷକ ରୂପ ଯକ୍ଷଭାବ ଏବଂ ସ୍ୱାର୍ଥପରତାସ୍ୱରୂପ ରକ୍ଷଭାବକୁ ଆଶ୍ରୟ କରି ନିକୃଷ୍ଟ ଦେବତା ମାନଙ୍କର ଉପାସନା କରନ୍ତି ଏବଂ ତାମସିକ ପୁରୁଷମାନେ ଭୌତିକ ଶରୀର ଓ ଭୌତିକ ଜଡ଼ ବସ୍ତୁକୁ ଆଶ୍ରୟ କରି ଭୂତୋପାସନା ଏବଂ ମୃତ ବ୍ୟକ୍ତିର ଉଦ୍ଦେଶ୍ୟରେ ଶୋକ ପ୍ରକାଶ ଓ ପିଣ୍ଡଦାନାଦି ରୂପ ପ୍ରେତୋପାସନା କରି ଥାଆନ୍ତି ।

ଏହି ରଜସ୍ତମୋକଳୁଷିତ, ଅଜିତେନ୍ଦ୍ରିୟ, ଅଧାର୍ମିକ, ଯୋଗଚର୍ଯ୍ୟାଶୂନ୍ୟ ପୁରୁଷମାନେହିଁ କାମକ୍ରୋଧାଦି ଦୁର୍ଗୁଣର ବଶବର୍ତ୍ତୀ ହୋଇ ବ୍ୟଷ୍ଟି, ସମଷ୍ଟି ପିଣ୍ଡ ବ୍ରହ୍ମାଣ୍ଡରେ ପରିବ୍ୟାପ୍ତ ପ୍ରାଣଶକ୍ତିକୁ ବିକ୍ଷୁବ୍ଧ କରି

* ଓଁକାରସ୍ୟ ବ୍ରହ୍ମାଋଷିଃ ଗାୟତ୍ରୀଛନ୍ଦଃ ଅଗ୍ନିର୍ଦେବତା ସର୍ବକର୍ମାରମ୍ଭେ ବିନିଯୋଗଃ । ( ବୈଦିକସନ୍ଧ୍ୟା )

ରକ୍ତବ୍ୟାପକ, ଭୂମିକମ୍ପ, ଅତିବୃଷ୍ଟି, ଅନାବୃଷ୍ଟି, ଗ୍ରହଦୋଷ ନାଶ, ଶତ୍ରୁଭୟ, ଦୁର୍ଭିକ୍ଷ, ମହାମାରୀ ଆଦି ସଂକ୍ରାମକ ରୋଗ ସମୂହକୁ ଧ୍ୱଂସ କରି ଥାଆନ୍ତି ।

ଏହି ଯଜ୍ଞମାନଙ୍କ ଦ୍ୱାରା ବୈଦ୍ୟୁତିକ ଶକ୍ତିର ସମତା ବିଧାନ ଦ୍ୱାରା ମାନବଜାତିର ରୋଗନିବାରଣ କରିବାହିଁ ବୈଦିକଯଜ୍ଞର ଉଦ୍ଦେଶ୍ୟ । ଶ୍ରୀମଦ୍ ଭାଗବତ ପୁରାଣରେ ଲେଖାଅଛି ଯେ—ଯଜ୍ଞ ତିନିପ୍ରକାର । ଯଥା—
ବୈଦିକସ୍ତାନ୍ତ୍ରିକୋ ମିଶ୍ର ଇତି ମେ ତ୍ରିବିଧୋ ମଖଃ । (ଭା° ୧୧ । ୨୭ । ୭)

ଅର୍ଥାତ୍ ବୈଦିକ, ତାନ୍ତ୍ରିକ ଓ ମିଶ୍ର ଭେଦରେ ତିନି ପ୍ରକାରର ଯଜ୍ଞ ହୁଏ । ବୈଦିକ ଯଜ୍ଞରେ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଏହି ତିନି ଜାତିର ଅଧିକାର ରହେ । କିନ୍ତୁ ତାନ୍ତ୍ରିକ ଓ ପୌରାଣିକ ଯଜ୍ଞ ସାର୍ବଜନୀନ ଅଟେ । ଏହି ଯଜ୍ଞରେ ଶୂଦ୍ରର ଓ ନିଷାଦର ମଧ୍ୟ ସହଯୋଗିତାରେ ଆପତ୍ତି ନାହିଁ । ଏଣୁ ଏବେ ବେଦ ଶାସ୍ତ୍ରରେ କାରଣ ଏହା ଯେ—ବୈଦିକ ସମସ୍ତ ମନ୍ତ୍ର ଅଗ୍ନିମୟ । କେବଳ ଆଜନ୍ମ ଶୁଦ୍ଧ ବ୍ରାହ୍ମଣ ମଧ୍ୟ ଅଗ୍ନିସ୍ୱରୂପ ଅଟନ୍ତି । ଏତଦ୍ବ୍ୟତୀତ ଯେଉଁମାନେ ବେଦାର୍ଥ ଜାଣନ୍ତି ଏବଂ ନିଃସ୍ୱାର୍ଥବୁଦ୍ଧିରେ ବେଦୋକ୍ତ କର୍ମାନୁଷ୍ଠାନ କରନ୍ତି, ଯେଉଁ ଯମନିୟମାଦି ସମ୍ପନ୍ନ ବିଶ୍ୱକଲ୍ୟାଣକାମୀ ବୃଦ୍ଧଙ୍କ ବ୍ରାହ୍ମଣମାନଙ୍କ ଦ୍ୱାରାହିଁ ବୈଦିକ ଯଜ୍ଞାନୁଷ୍ଠାନ କରାଯାଇ ଥାଏ କାରଣ କି, ଅଗ୍ନିଧୂମ ରୂପ ଯଜ୍ଞଙ୍କୁ ଯେପରି ଆତ୍ମଜ୍ଞାନ ସାପେକ୍ଷ, ସେହିପରି ବହ୍ନିକୀଳ ରୂପ ପ୍ରାଣ ଦ୍ରବ୍ୟ ମଧ୍ୟ ଗୁରୁଜ୍ଞାନ ସାପେକ୍ଷ ଅଟେ । ଏତଦ୍ଭିନ୍ନ ଚାରିବେଦ, ଚାରି ଉପବେଦ, ଛଅ ବେଦାଙ୍ଗ, ଉପନିଷଦ, ପୁରାଣ, ଧର୍ମଶାସ୍ତ୍ର, ନ୍ୟାୟ ଓ ମୀମାଂସା ଏହି ଚତୁର୍ଦ୍ଦଶ ବିଦ୍ୟାରେ ବ୍ରାହ୍ମଣମାନଙ୍କର ଉପସ୍ଥିତିରେ ଓ ସହଯୋଗରେ ବୈଦିକଯଜ୍ଞ ଅନୁଷ୍ଠିତ ହୋଇଥାଏ । ଅର୍ଥାତ୍ ଅଧ୍ୱର୍ଯ୍ୟୁ, ଉଦ୍ଗାତା, ହୋତା ଓ ବ୍ରହ୍ମା ଏହି ଋତ୍ୱିକ ନଥାଇ ବୈଦିକ ଯଜ୍ଞାନୁଷ୍ଠାନ ହୁଏ ନାହିଁ । ଏମାନଙ୍କ ମଧ୍ୟରେ ଯେ ଯଜୁର୍ବେଦାଧ୍ୟାୟୀ, ତାଙ୍କର ନାମ ଅଧ୍ୱର୍ଯ୍ୟୁ, ଯେ ସାମବେଦାଧ୍ୟାୟୀ ତାଙ୍କର ନାମ-ଉଦ୍ଗାତା, ଯେ ଋଗ୍ବେଦାଧ୍ୟାୟୀ ତାଙ୍କର ନାମ ହୋତା ଏବଂ ଯେ ଅଥର୍ବବେଦାଧ୍ୟାୟୀ ତାଙ୍କର ନାମ ବ୍ରହ୍ମା ଅଟେ । ଋଗ୍ବେଦ ହେଉ କିମ୍ବା ଚତୁର୍ଥବେଦ ହେଉ, ଏହା ଜାଣିବା ବ୍ୟକ୍ତି ହିଁ ବ୍ରହ୍ମାଙ୍କର ଆସନ ପାଇବାକୁ ଯୋଗ୍ୟ । ବ୍ରହ୍ମା ନଥାଇ କୌଣସି ଯଜ୍ଞକର୍ମ କରାଯାଏ ନାହିଁ ।

ଅର୍ଥାତ୍ ଋତୁ ସନ୍ଧିମାନଙ୍କରେ ବ୍ୟାଧିଜାତ ହୁଏ । ଏ ନିମନ୍ତେ ସେହି ସମୟରେ ଭୈଷଜ୍ୟ ଯଜ୍ଞସବୁ ଅନୁଷ୍ଠିତ ହୋଇଥାଏ । ଏହି ଭୈଷଜ୍ୟ ଯଜ୍ଞ ଯେଉଁମାନେ ଅନୁଷ୍ଠାନ କରନ୍ତି, ସେମାନଙ୍କୁ ଋତ୍ୱିକ୍ କୁହାଯାଏ । ଋତ୍ୱିକ ଶବ୍ଦର ଅର୍ଥ ଏହି ଯେ--"ଋତୌ ଯଜନ୍ତି ଋତ୍ୱିକ୍ । ଅର୍ଥାତ୍ ଋତୁବ୍ୟାପ୍ତ ସମୟରେ ଯେଉଁମାନେ ଯଜ୍ଞାନୁଷ୍ଠାନ କରନ୍ତି ସେମାନଙ୍କର ନାମ-- ଋତ୍ୱିକ୍ ।

ପ୍ରତ୍ୟେକ ଋତୁରେ ଆକାଶରେ ଭିନ୍ନ ୨ ପ୍ରକାର ବାୟୁମଣ୍ଡଳ ରହେ । ଋତୁ ଭେଦରେ ଆକାଶ ଧୂଳି ଧୂଆଁ ଓ ବରଫ ଯୁକ୍ତ ହୋଇ ରହେ । ଥଣ୍ଡା, ଗରମ, ଭାରି ଓ ହାଲୁକା, ବାୟୁ ଆକାଶରେ ବ୍ୟାପ୍ତ ହୋଇଥାଏ । ଋତୁ ପରିବର୍ତ୍ତନ ଅନୁସାରେ ଜୀବାଣୁମାନଙ୍କର ଉତ୍ପତ୍ତି, ବୃଦ୍ଧି ଓ ବିନାଶ ଘଟିଥାଏ । ଏହି କାରଣରୁ ହିଁ ଋତୁଭେଦ ଅନୁସାରେ ଆହାର ବିହାର ବଦଳାଇବାକୁ ହୁଏ । ଯଥା ବର୍ଷାରେ ଅଜୀର୍ଣ୍ଣ, କଲେରା, ଡାଇରିଆ, ଟାଇଫଏଡ଼୍ ଜ୍ୱର, ମ୍ୟାଲେରିଆ ନିମୋନିଆ, କାଶ, କଫ ଆଦି ରୋଗ, ଶରତ କାଳରେ ପିତ୍ତଜ୍ୱର, ଚର୍ମରୋଗ, ଓ ଶିରପୀଡ଼ାଦି ରୋଗ ହେମନ୍ତ ଋତୁରେ ସର୍ଦ୍ଦି, କାଶ ଓ ମୂତ୍ରକଷ୍ଟଆଦି ରୋଗ, ବସନ୍ତ ଋତୁରେ ମିଳିମିଳା ଓ ମସୁରିକାଦି ରୋଗ ଏବଂ ଗ୍ରୀଷ୍ମ ଋତୁରେ ଅଂଶୁଘାତାଦି ଜ୍ୱର, କୋଷ୍ଠବଦ୍ଧତା, ଦାହ, ତୃଷ୍ଣାରୋଗ ଆଦି ଜନ୍ମିଥାଏ । ଏଥିଲାଗି ଅନୁକୂଳ ବାୟୁ ମଣ୍ଡଳ ସୃଷ୍ଟି ଓ ସ୍ୱାସ୍ଥ୍ୟ ଶିକ୍ଷାଦାନ କରିବା ପାଇଁ ଋତୁସନ୍ଧିମାନଙ୍କରେ ବିଭିନ୍ନ ପ୍ରକାର ଔଷଧି ଯୋଗରେ ଭୈଷଜ୍ୟ ଯଜ୍ଞ କରାଯାଉଥିଲା । ଏହି ଭୈଷଜ୍ୟ ଯଜ୍ଞର ପ୍ରଥମ ଆବଶ୍ୟକତାର ମହତ୍ତ୍ୱ କଥା ।

## ଜୀବାଣୁ ବିନାଶ ନିମନ୍ତେ ଯଜ୍ଞଚିକିତ୍ସା

ଭୈଷଜ୍ୟ ରତ୍ନାବଳୀରେ ମଧ୍ୟ ଲେଖା ଅଛି ଯେ-

ଗ୍ରହେଷୁ ଚୂର୍ଣ୍ଣକେଷୁ ନାନ୍ଦୁକୁନ୍ଦୁହ ଲୋହଜମ୍
ତତ ଭୈଷଜାନାଂ ବର୍ମାଣି ଧାରୟନ୍ତୁ ଚଳବତ୍ରୟଂ
ପ୍ରକୁର୍ଯ୍ୟା ଗ୍ରନ୍ଥାନାଂ ତେଷୌ ହୋମାନ୍ କୁର୍ଯ୍ୟାତ୍ ଚିକିତ୍ସିତମ୍ ।

ଏହାପରେ ଦେଶବ୍ୟାପୀ ବିଷମ ଜ୍ୱର ମ୍ୟାଲେରିଆ ଆଦିର ଚିକିତ୍ସା ସମ୍ବନ୍ଧେ ମଧ୍ୟ ଚରକ ଲେଖିଛନ୍ତି--

ଭକ୍ତ୍ୟାମାତୁଃ ପିତୁଶ୍ଚୈବ ଗୁରୂଣାଂ ପୂଜନେନ ଚ
ଜପହୋମ ପ୍ରଦାନେନ ବେଦାନାଂ ଶ୍ରବଣେନ ଚ
ଜ୍ୱରାଦ୍ ବିମୁଚ୍ୟତେ ଶୀଘ୍ରଂ ସାଧୂନାଂ ଦର୍ଶନେନ ଚ । (ଚରକ-ଚି° ୩.ଅ)
ବିଷ୍ଣୁଂ ସହସ୍ରମୂର୍ଦ୍ଧାନଂ ଚରାଚରପତିଂ ବିଭୁମ୍
ସ୍ତୁବନ୍ନାମସହସ୍ରେଣ ଜ୍ୱରାନ୍ ସର୍ବାନ୍ ବ୍ୟପୋହତି । (ଚରକ)

ଏତଦ୍‌ଭିନ୍ନ ମଧ୍ୟ ଲେଖକ ମୋହାନ୍ଧ ଆୟୁର୍ବେଦ ଜଗତ ଉଦ୍ଧାରକ ବେଦରେ ରକ୍ଷୋଘ୍ନ ସମ୍ବନ୍ଧରେ କହିଛନ୍ତି--

ମନ୍ତ୍ରାଂ ବଳ୍ୟୁପହାରାଂଶ୍ଚ ମଣ୍ୟଞ୍ଜନ ଧୂପାଂସ୍ତଥା
ଶାନ୍ତି କର୍ମେଷ୍ଟି ହୋମାଂଶ୍ଚ ଜପସ୍ୱସ୍ତ୍ୟୟନାନି ଚ ।
ବେଦୋକ୍ତାନ୍ ନିୟମାଂଶ୍ଚାପି ପ୍ରାୟଶ୍ଚିତ୍ତାନି ବା ଚରେତ୍
ଭୂତାନାମଧିପଂ ଦେବମୀଶ୍ୱରଂ ଜଗତଃ ପ୍ରଭୁମ୍ ।
ପୂଜୟନ୍ ପ୍ରୟତୋ ନିତ୍ୟଂ ଜୟତ୍ୟୁନ୍ମାଦଜଂ ଭୟମ୍
ରୁଦ୍ରସ୍ୟ ପ୍ରମଥା ନାମ ଗଣା ଲୋକେ ଚରନ୍ତି ଯେ
ତେଷାଂ ପୂଜାଂ ଚ କୁର୍ବାଣ ଉନ୍ମାଦେଭ୍ୟଃ ପ୍ରମୁଚ୍ୟତେ
ବଳିମଙ୍ଗଳ ହୋମାଦ୍ୟୈରୌଷଧୈରଗଦୈସ୍ତଥା
ସତ୍ୟାଚାର ତପୋଜ୍ଞାନ ପ୍ରଦାନ ନିୟମ ବ୍ରତୈଃ
ଦେବ ଗୋବ୍ରାହ୍ମଣାନାଂ ଗୁରୂଣାଂ ପୂଜନେନ ଚ
ଆଗନ୍ତୁଃ ପ୍ରଶମଂ ଯାତି ସିଦ୍ଧୈର୍ମନ୍ତ୍ରୌଷଧୈସ୍ତଥା । (ଚରକ ଚି° ୯ ଅ)

ଗ୍ରନ୍ଥ ବିସ୍ତାର ଭୟରେ ଉପର ଲିଖିତ ସକଳ ଶ୍ଳୋକମାନଙ୍କର ଅନୁବାଦ ଏଠାରେ ଦିଆଯାଇ ପାରିଲା ନାହିଁ । ପାଠକମାନେ ଟିକାଏ ଶ୍ରମ ସ୍ୱୀକାର କରି ଏହାର ଅର୍ଥ ବୁଝିନେବେ । ଉଲ୍ଲିଖିତ ସନ୍ଦର୍ଭାଦି ଶାସ୍ତ୍ରୀୟ ପ୍ରମାଣ ମାନଙ୍କର ତାତ୍ପର୍ଯ୍ୟ ଏହି ଯେ--ଅଧର୍ମ ପ୍ରକୁପିତ ରୁଦ୍ର ଶକ୍ତି ଶରୀର ଭିତରେ ଜଳ, ସ୍ଥଳ ଓ ଅନ୍ତରୀକ୍ଷରେ * ପ୍ରାଣଘାତକ ବିବିଧ ରୋଗର କାରଣ ସମୂହକୁ ସୃଷ୍ଟି କରେ । ଯଦି ବେଦୋକ୍ତ ରୁଦ୍ରାଧ୍ୟାୟ ଆଦି ମନ୍ତ୍ରରେ ସେଇ ମହାଶକ୍ତିର ସ୍ତୁତି, ପୂଜା ଓ ହୋମ ଆଦି ଯାଜ୍ଞିକ କର୍ମ କରାଯାଏ, ତା'ହେଲେ ସେଇ ରୁଦ୍ରଶକ୍ତି ଶିବଶକ୍ତି ରୂପ ଧାରଣ କରି ଜଗତର କଲ୍ୟାଣ ବିଧାନ କରିଥାଏ ।

---

* ନମୋଽସ୍ତୁ ରୁଦ୍ରେଭ୍ୟୋ ଯେ ପୃଥିବ୍ୟାଂ ଯେଽନ୍ତରିକ୍ଷେ ଯେ ଦିବି ଯେଷାମନ୍ନଂ ବାତୋ ବର୍ଷମିଷବଃ । ଇତ୍ୟାଦି । (ଯଜୁର୍ବେଦ ରୁଦ୍ରାଧ୍ୟାୟ)

## ରୁଦ୍ରଦେବତାର ପରିଚୟ

ମହର୍ଷି ଚରକ ଆଗନ୍ତୁକ ରୋଗମାନଙ୍କର ଶାନ୍ତି ନିମନ୍ତେ ରୁଦ୍ର ପୂଜା କର୍ତ୍ତବ୍ୟ ବୋଲି ଉଲ୍ଲେଖ କରି ଅଛନ୍ତି । ଯଜୁର୍ବେଦ ରୁଦ୍ରାଧ୍ୟାୟରେ ରୁଦ୍ରଙ୍କୁ ଆଦି ବୈଦ୍ୟ ବୋଲି କୁହାଯାଇଛି । ଅଥର୍ବଶିର ଉପନିଷଦରେ ଲେଖାଅଛି ଯେ--

"ଯୋଽଗ୍ନୌ ରୁଦ୍ରୋ ଯୋଽପ୍ସୁ ଅନ୍ତ ର୍ଯ ଓଷଧୀର୍ବୀରୁଧ ଆବିବେଶ
ଯ ଇମା ବିଶ୍ବା ଭୁବନାନି ଚକ୍ଳୃପେ ତସ୍ମୈ ରୁଦ୍ରାୟ ନମୋଽସ୍ତ୍ୱଗ୍ନୟେ ।"

ଅର୍ଥାତ୍ ଯେଉଁ ରୁଦ୍ର ଅଗ୍ନିରେ ଜଳରେ ଓଷଧି ଓ ଲତାମାନଙ୍କରେ ପ୍ରବିଷ୍ଟ ଏବଂ ଏହି ଅଖିଳ ବିଶ୍ବବ୍ରହ୍ମାଣ୍ଡ ଯା'ର କଳ୍ପନା ପ୍ରସୂତ, ସେହି ରୁଦ୍ରଙ୍କୁ ନମସ୍କାର ।

ବୈଦିକ ଗାୟତ୍ରୀ ମନ୍ତ୍ରରେ ଭର୍ଗନାମରେ ଯେଉଁ ତେଜକୁ ଅଭିହିତ କରାଯାଇଛି, ମୁଣ୍ଡକ ଉପନିଷଦରେ "ନ ତତ୍ର ସୂର୍ଯ୍ୟୋ ଭାତି ନ ଚନ୍ଦ୍ରତାରକଂ ନେମା ବିଦ୍ୟୁତୋ ଭାନ୍ତି କୁତୋଽୟମଗ୍ନିଃ । ତମେବ ଭାନ୍ତମନୁଭାତି ସର୍ବଂ, ତସ୍ୟ ଭାସା ସର୍ବମିଦଂ ବିଭାତି" ବୋଲି ଯେଉଁ ତେଜକୁ ବର୍ଣ୍ଣନା କରାଯାଇଛି ଏବଂ ତୈତ୍ତିରୀୟ ଉପନିଷଦରେ "ଭୀଷାସ୍ମାଦ୍ ବାତଃ ପବତେ ଭୀଷୋଦେତି ସୂର୍ଯ୍ୟଃ । ଭୀଷାସ୍ମାଦଗ୍ନିଶ୍ଚେନ୍ଦ୍ରଶ୍ଚ ମୃତ୍ୟୁର୍ଧାବତି ପଞ୍ଚମଃ" ବୋଲି ଯେଉଁ ତେଜର ମହିମା ବର୍ଣ୍ଣନା କରାଯାଇଛି ଏବଂ ଗୀତାରେ "ଦିବି ସୂର୍ଯ୍ୟ ସହସ୍ରସ୍ୟ ଭବେଦ୍ ଯୁଗପଦୁତ୍ଥିତା, ଯଦି ଭାଃ ସଦୃଶୀ ସା ସ୍ୟାଦ୍ ଭାସସ୍ତସ୍ୟ ମହାତ୍ମନଃ" ବୋଲି ଯେଉଁ ତେଜର ଅନିର୍ବଚନୀୟତା କୀର୍ତ୍ତିତ ହୋଇଅଛି ଏବଂ ଯେଉଁ ତେଜକୁ ଦିବ୍ୟଚକ୍ଷୁରେ ସନ୍ଦର୍ଶନ କରି ମହାବୀର ଧନଞ୍ଜୟ ଶ୍ରୀକୃଷ୍ଣଙ୍କୁ ପଚାରିଥିଲେ "ଆଖ୍ୟାହି ମେ କୋ ଭବାନୁଗ୍ରରୂପଃ" ଏବଂ ଜର୍ମାନୀର କ୍ୟାଣ୍ଟ ସାହେବ ନିର୍ବିକଳ୍ପ ସମାଧି ଗମ୍ୟ ଯେଉଁ ଚିଦାକାଶ ରୂପ ତେଜକୁ କଳ୍ପନା ଚକ୍ଷୁରେ ଦେଖି ଆପଣାର ଭୀତ ବିହ୍ୱଳ ଅନ୍ତଃକରଣର ଅବସ୍ଥାକୁ ପ୍ରକାଶ କରିଥିଲେ, ସେଇ ଅନାଦି, ଅନନ୍ତ, ଅଟଳ, ଅନିର୍ବଚନୀୟ ସର୍ବପ୍ରକାଶକ, ସର୍ବରକ୍ଷକ, ମୃତ୍ୟୁଞ୍ଜୟ, ମହାକାଳ ବିଷ୍ଣୁ ହିଁ ରୁଦ୍ର । ଏହି ରୁଦ୍ରହିଁ ମଣିଷର ପ୍ରଧାନ ଦେବତା । ଏହାଙ୍କୁହିଁ ସବୁ କାଳରେ, ସବୁ ଦେଶରେ, ଦେବତା, ଅସୁର, ଯକ୍ଷ, ଗନ୍ଧର୍ବ ଓ କିନ୍ନରାଦି ମାନେ ନାନା ରୂପରେ ନାନା

ପ୍ରକାରରେ ଉପାସନା କରିଥାନ୍ତି । ଏହି ଚରାଚର ବ୍ରହ୍ମାଣ୍ଡ ରୁଦ୍ରଙ୍କରହିଁ ପ୍ରକାଶ । ଏହି ଦିଗ୍, ଦେଶ, କାଳ ଓ ସୂର୍ଯ୍ୟାଦି ଗ୍ରହ, ଉପଗ୍ରହ, ରୁଦ୍ରଙ୍କ ଗର୍ଭରେହିଁ ଅବସ୍ଥିତ । ଏତଦ୍ଭିନ୍ନ ମଙ୍ଗଳ ପକ୍ଷରେ ପ୍ରଥମେ ଦିଗ୍‌ଦେଶ କାଳ ସ୍ୱରୂପ ରୁଦ୍ରରୂପ ପରଂବ୍ରହ୍ମ ମୁଁ ଏହି ସଂକଳ୍ପ କରି ଅନାତ୍ମ ଭାବନା ପରିହାର ପୂର୍ବକ କର୍ମାନୁଷ୍ଠାନ କରାଯାଇ ଥାଏ ଏବଂ ଜଗତର ପିତୃମାତୃ ଶକ୍ତିର ଲିଙ୍ଗ ବା ଚିହ୍ନ ରୂପରେ ଏହି ଅଲିଙ୍ଗ ବ୍ରହ୍ମ ରୁଦ୍ରଙ୍କରହିଁ ଲିଙ୍ଗ-ମୂର୍ତ୍ତି ସର୍ବତ୍ର ଉପାସିତ ହୋଇଥାଏ । ସତ୍ୟଯୁଗରେ ଦକ୍ଷଙ୍କର ରୁଦ୍ରୋପାସନା, ତ୍ରେତାଯୁଗରେ ଶ୍ରୀରାମଙ୍କର ଲିଙ୍ଗପୂଜା ଦ୍ୱାପର ଯୁଗରେ ଶ୍ରୀକୃଷ୍ଣଙ୍କର ପାଶୁପତ ବ୍ରତାନୁଷ୍ଠାନ ଏବଂ ଗୋପୀମାନଙ୍କର କାତ୍ୟାୟନୀ ବ୍ରତାନୁଷ୍ଠାନ ଏହାକୁ ବୁଝାନ୍ତି ରୁଦ୍ର ରୁଦ୍ରାଣୀ ବା ମହାକାଳ ମହାକାଳୀ ବା ଶିବଶକ୍ତି ପୂଜା ଯେ ଏ ଦେଶରେ ସନାତନ ଓ ପୁରାତନ ଏ ବିଷୟରେ ଏଠାରେ ଆଉ ଅଧିକ ପ୍ରମାଣ ପ୍ରଦର୍ଶନ ନ କରି ଏତିକି କହିଲେ ଯଥେଷ୍ଟ ହେବ ଯେ ଆଜି ଦେଶର ଶୂଦ୍ରମାନଙ୍କ ମଧ୍ୟ ଘରେ ଘରେ ଈଶାଣୀ ପୂଜା ଏବଂ ଗ୍ରାମେ ଗ୍ରାମେ ଠାକୁରାଣୀ ପୂଜା କରି ଆସୁ ଅଛନ୍ତି । ରୁଦ୍ରଙ୍କର ନାମ ଓ ରୂପ ଅନନ୍ତ । ସେଥି ମଧ୍ୟରେ ତାଙ୍କର ଗୋଟିଏ ନାମ ହେଉଛି :- ପଶୁପତି । ଏହି ପଶୁପତିଙ୍କ ନିକଟରେ ଆମଙ୍କର କାମ କ୍ରୋଧାଦି ପଶୁ ଭାବକୁ ବଳିଦେବା ନ ଯାଏ, ଅର୍ଥାତ୍ ବ୍ରହ୍ମଚର୍ଯ୍ୟ ଲାଭ ନ କରିବା ଯାଏ ପୂଜା ତାହାଙ୍କ ସମ୍ପନ୍ନ ହୁଏ ନାହିଁ । ଏ ହେତୁରୁ ଅନାର୍ଯ୍ୟଜନ ଓ ବନ୍ୟଜନଙ୍କର ସମସ୍ତ ପ୍ରତିଷ୍ଠା କରିବା ପାଇଁ ବାହ୍ୟ ପୂଜାରେ ମଧ୍ୟ ପଶୁ-ବଳି ହୋଇଆସିଥାଏ । ଏ ବିଷୟରେ ଏଠାରେ ଆଉ ଅଧିକ ଲେଖିବା ଅପ୍ରାସଙ୍ଗିକ ।

## ଲିଙ୍ଗମୂର୍ତ୍ତି ପୂଜା ସାର୍ବଦେଶିକ

ପୃଥିବୀର ଇତିହାସ ପାଠକଲେ ଜଣାଯାଏ ଯେ--ଆଫ୍ରିକା--ପ୍ରାଚୀନ ଇଜିପ୍ଟ ଦେଶରେ, ଉତ୍ତର ଆଫ୍ରିକାରେ, ୟୁରୋପର ଗ୍ରୀସ ଦେଶରେ, ଇଫିସିସ ଦେଶରେ, ଇଟାଲୀର ରୋମ ନଗରରେ ଇଂଲଣ୍ଡର ନୋର୍କଦେଶରେ, ଆୟର୍ଲଣ୍ଡରେ, ସ୍କଟଲଣ୍ଡରେ, ଏବଂ ଫ୍ରାନ୍ସ, ନରୱେ, ସ୍ୱିଡେନ, ଶ୍ୟାମ ଦେଶ, ଆରବ, ମକ୍କା, ଭାରତବର୍ଷର ପୂର୍ବ ଦ୍ୱୀପପୁଞ୍ଜ, ଫିନସିଆ, ଜାପାନ, ସିଲନ, ଆଫ୍ରିଗାନସ୍ଥାନ, ଇରାନ, ସାଇବେରିଆ,

ଓସେନିଆ, ଆମେରିକା, ଦକ୍ଷିଣ ଆମେରିକା ଏବଂ ୟୁନାଇଟେଡ଼ ଷ୍ଟେଟରେ ପୂର୍ବକାଳରେ ଲିଙ୍ଗମୂର୍ତ୍ତିପୂଜା ପ୍ରଚଳିତ ଥିଲା । ଏବଂ ଅଦ୍ୟାପି ବହୁ ସ୍ଥାନରେ ସେହି ପ୍ରାଚୀନ ପରମ୍ପରା ଅନୁସୃତ ହେବାର ଦେଖା ଯାଉଛି ।

K. Sudhoff ମହାଶୟ ଏବଂ J. Jolly ମହାଶୟ ତାଙ୍କର ଗ୍ରନ୍ଥରେ ଲେଖିଛନ୍ତି ଯେ--ଆସିରିୟା, ବେବିଲୋନିୟା, ଗ୍ରୀସ, ରୋମ, ମିଶର ଓ ୟୁରୋପୀୟ ଟ୍ୟୁଟନ ଜାତିମଧ୍ୟରେ ଆମର ଆୟୁର୍ବେଦୀୟ ଯେପରି ଭୂତ ପ୍ରେତ ଆଦିର ପ୍ରକୋପକୁ ରୋଗର କାରଣ ବୋଲି ମନା ଯାଇଛି; ସେହି ପରି ଉଲ୍ଲିଖିତ ଜାତି ମାନଙ୍କର ପ୍ରାଚୀନ ବିଚାରରେ ଭୂତ, ପ୍ରେତ, ଦେବତାର ପ୍ରକୋପ ଓ ଦୁର୍ଗତ ପାପକୁମଧ୍ୟ ରୋଗର କାରଣ ବୋଲି ବିଶ୍ୱାସ କରାଯାଉଥିଲା ଏବଂ ରୋଗଶାନ୍ତି ପାଇଁ ଆଥର୍ବଣୀୟ ବିଧିକୁ ଅନୁକରଣ କରି ସ୍ତବାଦି ପଠନ, ମନ୍ତ୍ରପାଠ, କବଚ ଧାରଣ, ମାର୍ଜନ, ଯନ୍ତ୍ରଧାରଣ, ଦେବମୂର୍ତ୍ତି ଅଭିଷେକ, ଜଳଦାନ ଓ ଧୂପାଦିପ୍ରୟୋଗ ଦ୍ୱାରା ରୋଗାପସାରଣ କରାଯାଉ ଥିଲା । ସେମାନଙ୍କର ଉପାସନା ମନ୍ଦିରଗୁଡ଼ିକ ଚିକିତ୍ସାଳୟ ଥିଲା ଏବଂ ଧର୍ମ ଯାଜକ ପୁରୋହିତ ମାନେ ହିଁ ଚିକିତ୍ସକ ଥିଲେ ।

(ଆ. ସ. ଉପୋଦ୍‌ଘାତ)

ଇରାନୀ ପାରସୀମାନଙ୍କର ଧର୍ମଗ୍ରନ୍ଥ ଜେନ୍ଦାବେସ୍ତାରେ ମଧ୍ୟ ରୋଗ ଶାନ୍ତି ନିମନ୍ତେ ଅସୁର ଦେବତାର ଉପାସନା, ଅଗ୍ନିପୂଜା, ଗୋ ପୂଜା, ସୂର୍ଯ୍ୟ ଉପାସନା ଏବଂ ହୋମାଦି ଦେବତା ମିତ୍ର ଓ ବରୁଣାଦିଙ୍କର ନାମ ଉଲ୍ଲେଖ କରାଯାଇଛି ।

ଆନୁରି ମଧ୍ୟ ଉତ୍ତର ଆମେରିକାର ରେଡ଼ ଇଣ୍ଡିଆନ ଜାତି ମଧ୍ୟରେ ପୂର୍ବକାଳରେ ଆଥର୍ବଣୀୟ ମାନ୍ତ୍ରିକ ଚିକିତ୍ସାର ପ୍ରଚଳନ ଥିଲା ବୋଲି ପ୍ରମାଣ ମିଳେ । ପୀ. ସୀ. ରାୟ ମହାଶୟ ତାଙ୍କର ହିଷ୍ଟ୍ରୀ ଅଫ୍ ହିନ୍ଦୁ କେମେଷ୍ଟ୍ରୀ ପୁସ୍ତକର ଭୂମିକାରେ ଲେଖିଛନ୍ତି ଯେ ଅତି ପ୍ରାଚୀନ କାଳରେ ଉଲ୍ଲିଖିତ ଦେଶମାନଙ୍କରେ ଆୟୁର୍ବେଦ କିଛି ନିର୍ଦ୍ଦୋଷ ବାଧାମୂଳକ ଚିକିତ୍ସା ପ୍ରଚଳିତ ଥିଲା ।

ଅଦ୍ୟାପି ଆମଦେଶର ପାହାଡ଼ିଆ ଜାତି କନ୍ଧ ଶବରାଦିମଧ୍ୟରେ ରୋଗନିଦାନକୁ ଭୂତାଦିଙ୍କ ଦୃଷ୍ଟି ବୋଲି ମାନି ତାହାର ଶାନ୍ତି ନିମନ୍ତେ ଅପାମାର୍ଜନ ଓ ବଳିଦାନ ଆଦି ମାନ୍ତ୍ରିକ ଉପଚାର ଓ ଇତର ପ୍ରକ୍ରିୟାରେ

ସଙ୍କ୍ରମଣ ଆଦି କ୍ରିୟା କରାଯାଇ ତା'ର ସୁଫଳ ମଧ୍ୟ ପ୍ରତ୍ୟକ୍ଷ କରାଯାଉଛି । ଏହି କାରଣରୁ ଲୋକେ ମଧ୍ୟ ଶିବଶକ୍ତି ପୂଜା କରନ୍ତି । ଏହିସବୁ ପ୍ରମାଣରୁ ବୁଝାଯାଏ ଯେ - ଆୟୁର୍ବେଦୋକ୍ତ ଯଜ୍ଞଚିକିତ୍ସା ସନାତନ ଓ ସାର୍ବଭୌମ ଅଟେ ।

## ଯକ୍ଷ୍ମାରୋଗରେ ଯଜ୍ଞ ଚିକିତ୍ସା

ଅଥର୍ବବେଦରେ ଲେଖାଅଛି ଯେ -

"ମୁଞ୍ଚାମି ତ୍ୱା ହବିଷା ଜୀବନାୟ କମଜ୍ଞାତ ଯକ୍ଷ୍ମାଦୁତରାଜଯକ୍ଷ୍ମାତ୍ ଗ୍ରାହିର୍ଜଗ୍ରାହ ଯଦ୍ୟେତଦେନଂ ତସ୍ୟା ଇନ୍ଦ୍ରାଗ୍ନୀ ପ୍ରମୁମୁକ୍ତ ମେନମ୍" ।
[ଅଥର୍ବ. କା. ୩ ଅନୁ ୩ ସୂ. ୧୧ ମନ୍ତ୍ର ୧ ]

ଅର୍ଥାତ୍ ହେ ବ୍ୟାଧିଗ୍ରସ୍ତ ! ତୁମକୁ ସୁଖ ସହିତ ଚିରକାଳ ବଞ୍ଚିବା ପାଇଁ ଗୁପ୍ତ ଓ ବ୍ୟକ୍ତ ରାଜଯକ୍ଷ୍ମା ରୋଗରୁ ଆମେ ସମ୍ପୂର୍ଣ୍ଣ ଭାବେ ଆହୁତି ଦ୍ୱାରା ମୁକ୍ତ କରୁଛୁ । ଯେଉଁ ରୋଗରେ ଏହି ସମସ୍ତ ପ୍ରାଣୀ ଗ୍ରସ୍ତ, ବାୟୁ ଦେବତା ଓ ଅଗ୍ନି ଦେବତା ସେହି ରୋଗରୁ ସେମାନଙ୍କୁ ମୁକ୍ତ କରିବେ ।

ଏଥିରୁ ଜଣାଯାଏ ଯେ - ବ୍ୟକ୍ତ ଓ ଅବ୍ୟକ୍ତ ସମସ୍ତ ପ୍ରକାର ଆଧିବ୍ୟାଧି ଯଜ୍ଞ ଚିକିତ୍ସାଦ୍ୱାରା ନିର୍ମୂଳ ହୋଇଥାଏ । ଅତଏବ ଯକ୍ଷ୍ମା ରୋଗର ଚିକିତ୍ସାରେ ଚରକ କହିଛନ୍ତି -

ପ୍ରଯୁକ୍ତ୍ୟା ଯସ୍ୟା ଚେଷ୍ଟ୍ୟା ରାଜଯକ୍ଷ୍ମା ପୁରାଜିତଃ
ତାଂ ବେଦବିହିତାମିଷ୍ଟିମାରୋଗ୍ୟାର୍ଥୀ ପ୍ରୟୋଜୟେତ୍ ।

ଅର୍ଥାତ୍ ଯେଉଁ ଯଜ୍ଞାନୁଷ୍ଠାନ ଦ୍ୱାରା ପ୍ରାଚୀନ କାଳରେ ରାଜଯକ୍ଷ୍ମା ରୋଗକୁ ନିବାରଣ କରାଯାଇ ଥିଲା, ଆରୋଗ୍ୟାର୍ଥୀ ପୁରୁଷ ସେହି ବେଦ-ବିହିତ ଯଜ୍ଞକୁ ଅନୁଷ୍ଠାନ କରିବ ।

ଏହାପରେ ପୁନଃ ଚରକ ମହର୍ଷି ମଧ୍ୟ ଯେ ଲେଖିଛନ୍ତି -

ସିଦ୍ଧେଃ ନିରୂହେ ଯାବେ ନାଗାଗ୍ନିଃ ହୁତ ତାମ୍ୟତ,
ଜାମ୍ବୁଷ୍ଟିସ୍ୟେନୂବରାଂ ଚାମଂ ଚର୍ବିଦ୍ୟଃ ପ୍ରୟୋଜୟେତ୍ ।

## ଭୈଷଜ୍ୟ ଯଜ୍ଞ ଚିକିତ୍ସା ସମ୍ବନ୍ଧେ ଆଧୁନିକ ମତ

୧ । ପାଶ୍ଚାତ୍ୟ ବେଦବାଦୀ ବାନ୍ ମେକ୍ସମୁଲର ସାହେବ ଲେଖିଛନ୍ତି ଯେ--ପ୍ରାଚୀନ କାଳରେ ସୋମଯାଗ ଓ ଅଶ୍ୱମେଧ ଯାଗରେ ମଧ୍ୟ ଭୈଷଜ୍ୟହୋମ କରାଯାଉଥିଲା । ( ଜା. ଧ. )

୨। ବମ୍ବେର ନିବାସୀ ଡାକ୍ତର କୁନ୍ଦନଲାଲ ଏ. ଏ. ଏମ୍. ଏଲ୍. ଏମ୍. ଆର୍. ଏ. ଏସ୍ ମହାଶୟ ପ୍ରାୟ ୪୫ ବର୍ଷ ପର୍ଯ୍ୟନ୍ତ ହୋମ ଦ୍ୱାରା ଯକ୍ଷ୍ମାରୋଗର ଚିକିତ୍ସାକରି ବହୁତ ରୋଗୀଙ୍କୁ ନିରାମୟ କରିଥିବାର କଥା ଉଲ୍ଲେଖ କରିଅଛନ୍ତି।

୩। ଜୟପୁର ପଣ୍ଡିତ ସୀତାରାମ ଶାସ୍ତ୍ରୀ ଲେଖିଛନ୍ତି ଯେ- ମୁଁ କେତେ ବର୍ଷରୁ ଚିକିତ୍ସାର ଅନୁଭବରୁ ନିଶ୍ଚୟ କରିଛି ଯେ, ଯେଉଁ ମହାରୋଗ ଔଷଧ ସେବନ ଦ୍ୱାରା ଦୂର ହୁଏ ନାହିଁ, ସେଇ ସବୁ ରୋଗ ବେଦୋକ୍ତ ଯଜ୍ଞାନୁଷ୍ଠାନ ଦ୍ୱାରା ଦୂର ହୋଇଥାଏ। (କଲ୍ୟାଣ)

୪। ମାନସ ଚିକିତ୍ସକ ଡାକ୍ତର ଦୁର୍ଗାଶଙ୍କର ନାଗର ଲେଖିଛନ୍ତି ଯେ--ମଣ୍ଡୂକପର୍ଣ୍ଣୀ, ଶତାବରୀ, ଶାଳପର୍ଣ୍ଣୀ, ଗୋଲ୍ଡଫେଲ, ବଂଶଲୋଚନା, ଅଗରୁ, କ୍ଷୀରକାକୋଲୀ, ଗୋରୋଚନ, ବାଦାମ, କାଯଫଳ, ପୁନର୍ଣ୍ଣୀ, ଗୋଠକାବୁଲୀଫଳ, ଅଶ୍ୱଗନ୍ଧା, ବାଯଙ୍ଗ, ରାସ୍ନା, ଦେବଦାରୁ, ତଗରପାଦ, ଜଟାମାଂସୀ, ମିଶ୍ରୀ, ଧାନ, ଗିଲୋୟ, ମଞ୍ଜିଷ୍ଠା ଏବଂ ଅନେକ ଏପରି ଦ୍ରବ୍ୟ ସମାନଭାଗରେ ଆଣି ଏ ସମସ୍ତଙ୍କ ସମାନ ଚିନି ମିଶାଇ ଗୁଗ୍ଗୁଲ ଓ ଚୌଷଠି ବର୍ଷର କୃଷ୍ଣ କେତେ ମିଶାଯାଇପାରେ। ତହିଁରେ ଯୋଗ କରିବ। ଏସବୁ ଏକାଠି ଚକଟା ହେଲା ପରେ ଚିନି ଓ ଘିଅ ମିଶାଇ ଏଥିଦ୍ୱାରା ହୋମ କଲେ ଯକ୍ଷ୍ମାରୋଗ ବିନଷ୍ଟ ହୁଏ। ଏହା ତାଙ୍କର ବହୁ ସ୍ଥଳରେ ପରୀକ୍ଷିତ ପ୍ରୟୋଗ। ଏହି ଗ୍ରନ୍ଥର ଲେଖକ ମଧ୍ୟ ଅନେକ ସ୍ଥଳରେ ଯଜ୍ଞାନୁଷ୍ଠାନର ଚମତ୍କାରିକ ଫଳପ୍ରତ୍ୟକ୍ଷ କରିଛନ୍ତି। କେଉଁ ରୋଗ କେଉଁ ଦୋଷରୁ ଜାତ ହୁଏ, ତାର ଶାନ୍ତି ନିମନ୍ତେ କପରି ବିଧିରେ କେଉଁ ମନ୍ତ୍ରରେ ହବନ କରିବାକୁ ହୁଏ, ତା'ର ବିସ୍ତୃତ ବିବରଣୀ ଗ୍ରହବିଶ୍ୱର ଚିକିତ୍ସାଖଣ୍ଡ, ଭାର୍ଗବୀୟ ଓ ଶାତାତପୀୟ କର୍ମବିପାକ, ବରଦାନାରଦୋକ୍ତ ମହାର୍ଣ୍ଣବ ଓ ବଙ୍ଗାକ୍ଷରରେ ମୁଦ୍ରିତ ଶାନ୍ତି ମୁକ୍ତାବଳୀ କଳ୍ପଦ୍ରୁମ ଆଦି ଗ୍ରନ୍ଥମାନଙ୍କରେ ଲେଖା ଯାଇଛି।

## ହବନ ଓ ଧୂପନ ଚିକିତ୍ସା ସନାତନ ଓ ସାର୍ବଭୌମ

ପୂର୍ବକାଳରେ ବେଦୋକ୍ତ ହବନ ଚିକିତ୍ସାହିଁ ସର୍ବତ୍ର ପ୍ରଧାନ ଭାବରେ ପ୍ରଚଳିତ ଥିଲା। କେବଳ ରୋଗମୁକ୍ତି ନିମନ୍ତେ ନୁହେଁ,

ବ୍ୟାଧିନିବୃତ୍ତି, ଅନାବୃଷ୍ଟି ଶାନ୍ତି ଓ ଶତ୍ରୁ ବିଜୟାଦି ସକଳ ପ୍ରକାର ଅଭୀଷ୍ଟ ସିଦ୍ଧି ନିମନ୍ତେ ସ୍ୱତନ୍ତ୍ର ସ୍ୱତନ୍ତ୍ର, ତୀର୍ଥେ ତୀର୍ଥେ, କୁମ୍ଭମେଳା ଆଦି ସାର୍ବଜନୀନ ସମାଗମ ସ୍ଥଳମାନଙ୍କରେ, ମାସ ମାସ, ବର୍ଷ ବର୍ଷ ବ୍ୟାପୀ ଅବିଚ୍ଛିନ୍ନ ଭାବରେ ଯଜ୍ଞାନୁଷ୍ଠାନମାନ କରାଯାଉଥିଲା । ଏମନ୍ତକି ନିରବଚ୍ଛିନ୍ନ ଭାବେ ଦ୍ୱାଦଶ ବାର୍ଷିକ ଯଜ୍ଞାନୁଷ୍ଠାନ କଥା ମଧ୍ୟ ଶାସ୍ତ୍ରରେ ଉଲ୍ଲେଖ ଥିବାର ଦେଖାଯାଏ । ବେଦ ଅଧ୍ୟୟନ ଅଧ୍ୟାପନା ସ୍ୱରୂପ ବ୍ରହ୍ମଯଜ୍ଞ, ତର୍ପଣରୂପ ପିତୃଯଜ୍ଞ ହୋମରୂପ ଦେବଯଜ୍ଞ, ପଶୁପକ୍ଷୀମାନଙ୍କୁ ଆହାର ପ୍ରଦାନ ରୂପ ଭୂତଯଜ୍ଞ ଓ ଅତିଥି ସତ୍କାର ରୂପ ନୃଯଜ୍ଞ ଏହି ପଞ୍ଚଯଜ୍ଞ ସେକାଳର ବ୍ରାହ୍ମଣ ଓ କ୍ଷତ୍ରିୟ ମାନଙ୍କର ନିତ୍ୟକର୍ମ ଥିଲା । ବିଶ୍ୱକଲ୍ୟାଣ କାମୀ ବ୍ରାହ୍ମଣମାନେ ସେ କାଳରେ ଯଜ୍ଞ ଚିକିତ୍ସାର ହିଁ ପ୍ରବର୍ତ୍ତକ ଥିଲେ ।

## ଆୟୁର୍ବେଦୀୟ ଯୁକ୍ତି ବ୍ୟପାଶ୍ରୟ ଚିକିତ୍ସା

ଓଁ ଯୋ ଦେବୋଽଗ୍ନୌ ଯୋଽପ୍ସୁ ଯୋ ବିଶ୍ୱଂ ଭୁବନମାବିବେଶ
ଯୋ ଓଷଧୀଷୁ ଯୋ ବନସ୍ପତିଷୁ ତସ୍ମୈ ଦେବାୟ ନମୋନମଃ ।
(ଋଗ୍‌ବେଦ)

ପ୍ରାଣୀମାନଙ୍କର ସ୍ଥୂଳ ଶରୀରସ୍ଥ ବାତପିତ୍ତ ଆଦି ଧାତୁମାନଙ୍କର କ୍ଷୟ ବୃଦ୍ଧି ରୂପ ବିକାର ସମୂହକୁ ଲକ୍ଷ୍ୟ କରି ତା'ର ପ୍ରତିକାର ନିମନ୍ତେ ଭୌତିକ ଔଷଧ, ଅନ୍ନ ଓ ବିହାରର ବ୍ୟବସ୍ଥା କରିବାର ନାମ--ଯୁକ୍ତି ବ୍ୟପାଶ୍ରୟ ଚିକିତ୍ସା । ଏହି ଚିକିତ୍ସା ମଧ୍ୟ ଶାସ୍ତ୍ରାନୁମୋଦିତ ହେବା ଉଚିତ ବୋଲି ଋଷିମାନଙ୍କର ମତ । କାରଣ କି ଔଷଧ ଓ ପଥ୍ୟର ଗୁଣକ୍ରିୟା ମଧ୍ୟ ଶାସ୍ତ୍ରାଧୀନ । ତେଣୁ ରୋଗଶାନ୍ତି ନିମନ୍ତେ ବଟ, ଅଶ୍ୱତ୍ଥ, ତୁଳସୀ, ଅପାମାର୍ଗ, ଅରିଷ୍ଟ ବେଲ ପ୍ରଭୃତି ଔଷଧି ବନସ୍ପତିମାନଙ୍କର ପୂଜା ଆରାଧନା ଶାସ୍ତ୍ରରେ ଲେଖା ଯାଇଛି । ଆଜି ମଧ୍ୟ ବନୌଷଧି ସଂଗ୍ରହ କାଳରେ ଔଷଧିର ପ୍ରାର୍ଥନା, ଉତ୍ପାଟନମନ୍ତ୍ର ଏବଂ ଭୈଷଜ୍ୟ ନିର୍ମାଣ କାଳରେ "ଅଘୋରାଦି ମନ୍ତ୍ର ପାଠ ଏବଂ ଔଷଧ ସେବନ କାଳରେ ମଧ୍ୟ "ଅଚ୍ୟୁତାନନ୍ତ ଗୋବିନ୍ଦ" ଇତ୍ୟାଦି ମନ୍ତ୍ର ଉଚ୍ଚାରଣ କରିବା ପାଇଁ ଏବଂ ଭୋଜନ କାଳରେ ଓ କର୍ମାରମ୍ଭରେ ବିଷ୍ଣୁଙ୍କୁ ସ୍ମରଣ କରିବା ପାଇଁ ସେମାନେ

ଉପଦେଶ ଦେଇଛନ୍ତି । *

Medical Jurisprudence ନାମକ ଗ୍ରନ୍ଥରେ ଡାକ୍ତର ରାୟାନ୍ ( Dr. Ryan ) ଲେଖିଛନ୍ତି—

All medicino is derived from God and without his will it cannot exist or be practised. Hence the healing art, if disunited from religion, would be impious. Illness requires us to implore the Deity for assistanco and relief. The seeds of the art, the wonderful cures, and the power of remedies are in the hand of God. He has beneficially supplied various remedis and pronounces with our tongues the fate, life and death of a man. When we see the dignity of medicine what reverence is due to God ? Nono put the impious doubt the truth and none but fools dare to deny it.

---

* ଭୂତାପସାରଣ ମନ୍ତ୍ର—

ଓଁ ଅବସର୍ପନ୍ତୁ ନ୍ତ ଭୂତାନି ଯାନ୍ତି ନ କାନଚଦ୍ରୂମେ
ଅପକ୍ରାମନ୍ତୁ ତସ୍ମାନ ପ୍ରକାର୍ଯ୍ୟଂ ପାଠ୍ୟତେ ଦ୍ରୁମଃ ।
ଓଁ ବେତାଳାଶ୍ଚ ପିଶାଚାଶ୍ଚ ରାକ୍ଷସାଶ୍ଚ ସରୀସୃପାଃ
ଯେ ଭୂତାସ୍ତେଽପସର୍ପନ୍ତୁ ବୃକ୍ଷାଦସ୍ମାଚ୍ଛିବାଜ୍ଞୟା

ଔଷଧି ଉତ୍ପାଟନ ମନ୍ତ୍ର—

ଓଁ ଯେନତ୍ୱାଂ ଖନତେ ବ୍ରହ୍ମାଯେନେନ୍ଦ୍ରୋ ଯେନ କେଶବଃ
ତେନାହଂ ତ୍ୱାଂ ଖନିଷ୍ୟାମି ମନ୍ତ୍ରପୂତେନ ପାଣିନା ।
ସେବନ କାଳରେ ଔଷଧର ଅଭିମନ୍ତ୍ରଣ-ଯଥା--
ଅଚ୍ୟୁତାନନ୍ତ ଗୋବିନ୍ଦ ନାମୋଚ୍ଚାରଣ ଭୀଷିତାଃ
ନଶ୍ୟନ୍ତୁ ସକଳାରୋଗାଃ ସତ୍ୟଂ ସତ୍ୟଂ ବଦାମ୍ୟହମ୍ ।

ପାରଦାଦିର ସଂଶୋଧନ ମନ୍ତ୍ର--

ଓଁ ଅଘୋରେଭ୍ୟୋଽଥଘୋରେଭ୍ୟୋ ଘୋର ଘୋରତରେଭ୍ୟଃ
ସର୍ବତଃ ଶର୍ବସର୍ବେଭ୍ୟଃ ସଦାନ୍ତରେଭ୍ୟୋ ନମସ୍ତେଽସ୍ତୁ ରୁଦ୍ରରୂପେଭ୍ୟଃ ।

ଅର୍ଥାତ୍ ଔଷଧମାନଙ୍କର କର୍ମରେ ପ୍ରଭାବ ବଡ଼ । ଔଷଧର ଯଥା ବା ପ୍ରୟୋଗ ଯୋଗ୍ୟତା ପରମେଶ୍ୱରଙ୍କର ହିଁ ଅଧୀନ । ଅତଏବ ଯେଉଁ ଶାସ୍ତ୍ରୀୟ ବିଧି ନେଇ ସମସ୍ତ ସ୍ଥିର କରନ୍ତି, ତାହା ନାସ୍ତିକର ଅଜ୍ଞାନ ମାତ୍ର । ଈଶ୍ୱରଙ୍କ ସାହାଯ୍ୟ ପାଇଁ ବୈଦ୍ୟର ଏବଂ ରୋଗମୁକ୍ତି ପାଇଁ ରୋଗୀର ଭଗବତ୍ ପ୍ରାର୍ଥନା ଆବଶ୍ୟକ । କାରଣ- ତାହାଙ୍କ ଜୀବନର ନିଗୂଢ଼ ରହସ୍ୟ, ତାହାଙ୍କ ଦ୍ୱାରା ବହୁକାଳ ରୋଗ ନିବୃତ୍ତି ଏବଂ ଔଷଧର ରୋଗ ସଂହରଣ ଶକ୍ତି ଏବଂ ମନୁଷ୍ୟଙ୍କ ଦୈବାନୁଗ୍ରହ ( ଦୈବାନୁଗ୍ରହ ସ୍ୱରୂପ ) । ସେହିପରି ପ୍ରକାରେ ଉପାୟ ସବୁ ସେହି ପରମେଶ୍ୱର ହିଁ ଉଦ୍ଭାବନ କରି ଆମମାନଙ୍କୁ ପ୍ରଦାନ କରିଛନ୍ତି । ଆମମାନଙ୍କ ମୁଖରେ ହିଁ ସେ ରୋଗିମାନଙ୍କର ଭାଗ୍ୟମୂଳକ ଜୀବନ ମଙ୍ଗଳ ବ୍ୟକ୍ତ କରିଥାଆନ୍ତି । ଔଷଧର ମହିମା ଦେଖିଲେ ତାଙ୍କ ପ୍ରତି ଆମମାନଙ୍କର କେତେ ନା କେତେ ଭକ୍ତି ଶ୍ରଦ୍ଧାର ଉଦୟ ହୁଏ ? ତାହାଙ୍କ ବ୍ୟତୀତ ଅନ୍ୟ କେହି ଏହିସବୁ ବିଷୟର ସନ୍ତୋଷରେ ସମାଧାନ ହୁଏ ନାହିଁ । ଜଗନ୍ନାଥ ବ୍ୟତୀତ ସଂସାର ଅପଲାପ ବିଷୟରେ କେହି ସାହାଯ୍ୟ ହେବା ସମ୍ଭବପର ନୁହେଁ । (ବୈଦ୍ୟକ ଦୃଷ୍ଟାନ୍ତରୁ ଉଦ୍ଧୃତ)

ଏହି ହେତୁବ୍ୟତ୍ୟାସୀୟ ଉପଶୟ – ରୋଗହେତୁ ବିପରୀତ ଔଷଧ ଓ ପଥ୍ୟ ଏବଂ ଅର୍ଥକାରୀ ଔଷଧ ଓ ପଥ୍ୟ ଭେଦରେ ତିନି ତିନି ପ୍ରକାର ହୋଇଥାଏ । ଯଥା-*

(କ) ୧ ହେତୁବିପରୀତ ଔଷଧ ଓ ପଥ୍ୟ ( ଆହାର ବିହାର )
୨ ବ୍ୟାଧି ବିପରୀତ ଔଷଧ ଓ ପଥ୍ୟ „
୩ ହେତୁ ବ୍ୟାଧି ବିପରୀତ ଔଷଧ ଓ ପଥ୍ୟ । „
(ଖ) ୧ ହେତୁ ବିପରୀତାର୍ଥ କାରୀ- ଔଷଧ ଓ ପଥ୍ୟ
୨ ବ୍ୟାଧି ବିପରୀତାର୍ଥ କାରୀ- ଔଷଧ ଓ ପଥ୍ୟ
୩ ହେତୁ ବ୍ୟାଧି ବିପରୀତାର୍ଥ କାରୀ- ଔଷଧ ଓ ପଥ୍ୟ,

ଏଠାରେ ପ୍ରଶ୍ନ ଏହିକି- ରୋଗର ହେତୁ କ'ଣ ? ଏବଂ ତାହା

---

* ହେତୁବ୍ୟାଧି ବିପର୍ଯ୍ୟସ୍ତ ବିପର୍ଯ୍ୟସ୍ତାର୍ଥ କାରିଣାମ୍
ଔଷଧାନ୍ନ ବିହାରାଣାମୁପଯୋଗଃ ସୁଖାବହଃ
ବିଦ୍ୟାଦୁପଶୟଂ ବ୍ୟାଧେଃ ସ ହି ସାତ୍ମ୍ୟମିତି ସ୍ମୃତଃ
( ମାଧବନିଦାନ )

କେତେ ପ୍ରକାର ? ଏହାର ଉତ୍ତରରେ ବାଗ୍‌ଭଟ କହିଅଛନ୍ତି--

କାଳବୁଦ୍ଧୀନ୍ଦ୍ରିୟାର୍ଥାନାଂ ଯୋଗୋ ମିଥ୍ୟା ନ ଚାତି ଚ
ଦ୍ୱୟାଶ୍ରୟାଣାଂ ବ୍ୟାଧୀନାଂ ତ୍ରିବିଧୋ ହେତୁସଂଗ୍ରହଃ ।

ଅର୍ଥାତ୍ ଶୀତୋଷ୍ଣ ବର୍ଷାରୂପ କାଳର ଅଯୋଗ, ଅତିଯୋଗ, ଓ ମିଥ୍ୟା ଯୋଗ, ଜ୍ଞାନେନ୍ଦ୍ରିୟ ଓ କର୍ମେନ୍ଦ୍ରିୟମାନଙ୍କର ନିଜ ନିଜ ବିଷୟ ସହିତ ସମ୍ପର୍କର ଅଯୋଗ, ଅତିଯୋଗ, ଓ ମିଥ୍ୟା ଯୋଗ ଏବଂ ବୁଦ୍ଧିର ଅଯୋଗ, ଅତି ଯୋଗ ଓ ମିଥ୍ୟା ଯୋଗ ଏହି ତିନିପ୍ରକାର ହେତୁରୁ ଶାରୀରିକ ଓ ମାନସିକ ବ୍ୟାଧି ସକଳ ଉତ୍ପନ୍ନ ହୋଇଥାଏ ।

ବାହ୍ୟ ଓ ଆନ୍ତର ଭେଦରେ ରୋଗର ହେତୁ ଦୁଇ ପ୍ରକାର ହୁଏ ।

ରୋଗର ବାହ୍ୟ ହେତୁକୁ ନିଦାନ ବୋଲାଯାଏ * ଏହା ନିଜ ଓ ଆଗନ୍ତୁକ ଭେଦରେ ଦୁଇଭାଗରେ ବିଭକ୍ତ ଅଟେ । ଶରୀରସ୍ଥ ଦୋଷ, ଧାତୁ ଓ ମଳର କ୍ଷୟ ବା ବୃଦ୍ଧି କାରକ ଅପଥ୍ୟ ଆହାର ବିହାର ହେତୁରୁ ଯେଉଁସବୁ ରୋଗ ଜାତ ହୁଏ, ତାକୁ ନିଜ ବା ସ୍ୱୋତ୍ପାଦିତ ରୋଗହେତୁ (Acquired) ବୋଲନ୍ତି ଏବଂ କାଠ ପାଷାଣ ଆଦିର ଆଘାତ, ଭୂତାବେଶ, ଜୀବାଣୁ ସଂସର୍ଗ, ଶସ୍ତ୍ରକ୍ଷତ, ବିଷବାଷ୍ପ ସଂସର୍ଗ, ଅଗ୍ନିଦାହ ଅଭିଚାର ଆଦି କିମ୍ବା କାମ, କ୍ରୋଧ, ଲୋଭ; ମୋହ, ଭୟ, ଉଦ୍‌ବେଗ ଆଦିର ଜନକ ବାହ୍ୟହେତୁକୁ ଆଗନ୍ତୁକ ରୋଗହେତୁ ( External ) ବୋଲାଯାଏ । ଯେଉଁ ହେତୁର ଯେଉଁ ଗୁଣ କିମ୍ବା ଯୋଗରେ ଯେଉଁ ପ୍ରକାର ଶାରୀରିକ ବା ମାନସିକ ବ୍ୟାଧି ଉତ୍ପନ୍ନ ହୋଇଥାଏ, ତଦ୍ ବିପରୀତ ଗୁଣ ସମ୍ପନ୍ନ ଔଷଧ ଓ ପଥ୍ୟର ପ୍ରୟୋଗରେ ତାହା ଶାନ୍ତ ହୋଇଥାଏ । * ଏହିକଳ ଯୁକ୍ତିରେ ଧାତୁ ସାମ୍ୟକାରକ ଓ ରୋଗନାଶକ ଚିକିତ୍ସାକୁ ହେତୁ ବିପରୀତ ଚିକିତ୍ସା ବୋଲନ୍ତି । ଏହାର ଉଦାହରଣ

---

* ଯେନାହାର ବିହାରେଣ ରୋଗାଣାମୁଦ୍ଭବୋ ଭବେତ୍
କ୍ଷୟୋ ବୃଦ୍ଧିଶ୍ଚ ଦୋଷାଣାଂ ନିଦାନଂ ତଦୁଦୀର୍ଯ୍ୟତେ ( ବଙ୍ଗସେନ )
ନିଦାନାର୍ଥକରୋ ରୋଗୋ ରୋଗସ୍ୟାପ୍ୟୁପଜାୟତେ
ତେ ପୂର୍ବଂ କେବଳା ରୋଗାଃ ପଶ୍ଚାଦ୍ଧେତ୍ୱର୍ଥକାରିଣଃ
କଶ୍ଚିଦ୍ଧି ରୋଗୋ ରୋଗସ୍ୟ ହେତୁର୍ଭୂତ୍ୱା ପ୍ରଶାମ୍ୟତି
ନ ପ୍ରଶାମ୍ୟତି ଚାପ୍ୟନ୍ୟୋ ହେତୁତ୍ୱଂ କୁରୁତେଽପି ଚ (ମା.ନି.)

ଏହାପରେ— ଶୀତ ପ୍ରଧାନ ଜ୍ୱର ସନ୍ଧି ଦୂରକରିବା ପାଇଁ ଶୁଣ୍ଠୀ ପାଚନ ଏବଂ ରୁକ୍ଷ, ସ୍ନିଗ୍ଧ, ଶୀତଉଷ୍ଣରୁ ଉତ୍ପନ୍ନ ରୋଗରେ ଲଙ୍ଘନ ରୁକ୍ଷ ଏବଂ ଉଷ୍ଣ ଔଷଧ, ଏବଂ ସନ୍ତର୍ପଣରୁ ଉତ୍ପନ୍ନ ରୋଗରେ ଅପତର୍ପଣ ଏବଂ ଅପତର୍ପଣରୁ ଉତ୍ପନ୍ନ ବ୍ୟାଧିରେ ସନ୍ତର୍ପଣ ଚିକିତ୍ସା, ଏସବୁ ଔଷଧ ଓ ପଥ୍ୟ । * ରୋଗମାନଙ୍କର ହେତୁଣି ନାଶକାରୀ ହୋଇବାଲାଗି ଏହାକୁ ହେତୁ ବିପରୀତ ଚିକିତ୍ସା ବୋଲି ଯାଏ । * ରୋଗମାନଙ୍କର ହେତୁ ନିରୂପଣ ବା ନିଦାନ ବଡ଼ କଠିନ ବ୍ୟାପାର । କାରଣ କି, ମଧୂକୋଷ ଟୀକାରେ ଲେଖାଅଛି ଯେ—

ଏକୋ ହେତୁ ରନେକସ୍ୟ ତଥୈକସ୍ୟୈକ ଏବ ହି
ବ୍ୟାଧେରେକସ୍ୟ ବହବୋ ବହୂନାଂ ବହବସ୍ତଥା ।

ଅର୍ଥାତ୍ ଗୋଟିଏ ମାତ୍ର ଅହିତକର ଅପଥ୍ୟ ବସ୍ତୁର ଉପଯୋଗ ହେତୁରୁ ଅନେକ ରୋଗ ଜନ୍ମିଥାଏ, ସ୍ଥଳ ବିଶେଷରେ ଗୋଟିଏ ମାତ୍ର ବସ୍ତୁ ଏକପ୍ରକାର ରୋଗ ଉତ୍ପାଦନ କରେ । ଯେପରି- ମୃତ୍ତିକା ଭକ୍ଷଣ କଲେ ପାଣ୍ଡୁ ରୋଗ ଏବଂ ମତ୍ସ୍ୟ ଭକ୍ଷଣ କଲେ ଶ୍ୱିତ୍ରରୋଗ ଜନ୍ମେ । ସ୍ଥଳ ବିଶେଷରେ ଆହାର ବିହାର ଦୋଷ, ଦେଶକାଳ ଦୋଷ, ବଂଶଗତ-ଦୋଷ; ଗ୍ରହଦୋଷ, ସଂସର୍ଗଦୋଷ ଆଦି ବହୁବିଧ ହେତୁରୁ ଏକପ୍ରକାର ରୋଗ ଉତ୍ପନ୍ନ ହୋଇଥାଏ ଏବଂ ଉପରୋକ୍ତ ବହୁବିଧ ହେତୁରୁ ବହୁପ୍ରକାର ବ୍ୟାଧି ଜନ୍ମିବାର ମଧ୍ୟ ଦେଖାଯାଏ ।

---

* ତତ୍ତଦ୍‌ବୃଦ୍ଧିକରାହାରବିହାରାନ୍ତନପେକ୍ଷଣାତ୍
ଦୋଷଧାତୁମଲାନାଂ ହି ବୃଦ୍ଧିଦ୍ରୁକ୍ତାହ୍ରଦରଦରେ । ।
ତତ୍ତଦ୍ହ୍ରାସକରାହାର ବିହାର ପରିସେବଣାତ୍
ଦୋଷଧାତୁମଲାନାଂହି ହ୍ରାସୋ ଜାଗଦ୍‌ଭୋଜନଣାମ୍ ॥
ତତ୍ତତ୍ ସମୃଦ୍ଧନାହାର ବିହାରନ୍ତ ନିଷେବଣାତ୍
ତତ୍ତତ୍ ପ୍ରାପ୍ୟ ନରଃ ଶୀଘ୍ରଂ ତତ୍ତତ୍ ସାମ୍ୟମପୋହତି ॥ ( ଭାବପ୍ରକାଶ )
ପ୍ରଶାମ୍ୟ ତ୍ୟୌଷଧୈଃ ପୂର୍ବୋ ଦୈବଯୁକ୍ତି ବ୍ୟପାଶ୍ରୟୈଃ
ମାନସୋଜ୍ଞାନବିଜ୍ଞାନ ଧୈର୍ଯ୍ୟସ୍ମୃତି ସମାଧିଭିଃ । (ଚରକ)

* ଆୟୁର୍ବେଦ ଶାସ୍ତ୍ରରେ ପଥ୍ୟକୁ ମଧ୍ୟ ଔଷଧ ବୋଲାଯାଇଛି ଯଥା–
ପଥ୍ୟେସତିଗଦାର୍ତ୍ତସ୍ୟକମୌଷଧ ନିଷେବଣୈଃ ।
ପଥ୍ୟେଽସତି ଗଦାର୍ତ୍ତସ୍ୟ କମୌଷଧ ନିଷେବଣୈଃ ( ବୈ, ଜୀ )

ଏହି ସବୁ କାରଣରୁ ହିଁ ଅନେକସ୍ଥଳରେ ରୋଗରନାମ ନିର୍ଦ୍ଦେଶ କରାଯାଇପାରେ ନାହିଁ । ରୋଗ ଅସଂଖ୍ୟ ହେବା ଯୋଗୁଁ ସବୁ ରୋଗର ନାମ ଶାସ୍ତ୍ରରେ କୁହାଯାଇ ନାହିଁ । ମାତ୍ର ଉକ୍ତ ଅନୁକ୍ତ ସମସ୍ତ ରୋଗର ଚିକିତ୍ସା ସମ୍ବନ୍ଧେ ସୁଶ୍ରୁତଙ୍କର ଉପଦେଶ ଏହିପରି—

ନାସ୍ତି ରୋଗୋ ବିନାଦୋଷୈର୍ଯସ୍ମାତ୍ତସ୍ମାଦ୍ବିଚକ୍ଷଣଃ
ଅନୁକ୍ତମପି ଦୋଷାଣାଂ ଲିଙ୍ଗୈର୍ବ୍ୟାଧିମୁପାଚରେତ୍ (ସୁ.ସୂ ୩୫।୧୯)

ଅର୍ଥାତ୍ ଦୋଷବୈଷମ୍ୟ ବ୍ୟତିରେକ କୌଣସି ରୋଗ ହୁଏନାହିଁ । ଅତଏବ ଅନୁକ୍ତ ରୋଗମାନଙ୍କୁ ଦୋଷମାନଙ୍କର ଲକ୍ଷଣ ଦେଖି ଚିକିତ୍ସା କରିବ । ( ଏହାହିଁ ଦୋଷାମିତ୍ତ ପ୍ରତ୍ୟାତ୍ମକ ଲାକ୍ଷଣିକ ଚିକିତ୍ସାର ବୀଜ ) ଚରକ ମଧ୍ୟ କହିଛନ୍ତି—

ବିକାର ନାମାକୁଶଲୋ ନ ଜିହ୍ରୀୟାତ୍ କଦାଚନ
ନହି ସର୍ବବିକାରାଣାଂ ନାମତୋଽସ୍ତି ଧ୍ରୁବା ସ୍ଥିତିଃ (ଚ.ସୂ. ୧୮ ଅ )

ଅର୍ଥାତ୍ ଦୋଷମାନଙ୍କର କ୍ଷୟ ବୃଦ୍ଧିର ଲକ୍ଷଣ ସମଷ୍ଟି ହିଁ ରୋଗ ସୁତରାଂ ବିକାରର ନାମ ଜଣାନଗଲେ ଲଜ୍ଜିତ ହେବାର କାରଣ ନାହିଁ । ଆୟୁର୍ବେଦ ଶାସ୍ତ୍ରରେ ହେତୁ ବିପରୀତ ଚିକିତ୍ସାକୁ ଶ୍ରେଷ୍ଠ ଚିକିତ୍ସା ବୋଲାଯାଏ କିନ୍ତୁ ଏହା ଅତୀବ ଗହନ । ବିମଳ ବିପୁଳ ବୁଦ୍ଧିମାନ୍ ବ୍ୟକ୍ତି ପକ୍ଷରେ ମଧ୍ୟ ଏ ଚିକିତ୍ସାର ରହସ୍ୟ ଭେଦକରିବା ଅତୀବ ଦୁରୂହ । କାରଣ ଏହି ଚିକିତ୍ସାରେ ଆଭ୍ୟନ୍ତର ହେତୁ ବାତ ପିତ୍ତ କଫର କ୍ଷୟ ବୃଦ୍ଧିରୂପ ୬୩ ପ୍ରକାର ଭେଦ ଅନୁସାରେ ବାହ୍ୟହେତୁଭୂତ ଷଟ୍ ରସାତ୍ମକ ଔଷଧ ଓ ଆହାର ମଧ୍ୟ ୬୩ ପ୍ରକାର ରସଭେଦରେ କଳ୍ପନା କରିବାକୁ ପଡ଼େ * ଏବଂ କ୍ଷୀଣ ହୋଇ ଥିବା ଦୋଷଧାତୁ ମଳକୁ ବୃଂହିତ କରିବାପାଇଁ ପୁଣି ପ୍ରବୃଦ୍ଧ ହୋଇଥିବା ଦୋଷଧାତୁ ମଳକୁ କର୍ଷଣ କରି † ଯଥାସ୍ଥାନାବସ୍ଥିତ

---

* ଏଷା ବିଷଷ୍ଟି ର୍ବ୍ୟାଖ୍ୟାତା ରସାନାଂରସ ଚିନ୍ତକୈଃ
ଦୋଷଭେଦେ ବିଷଷ୍ଟିସ୍ତୁ ପ୍ରଯୋକ୍ତବ୍ୟା ବିଚକ୍ଷଣୈଃ ।
( ସୁ. ଉ. ତ. ୬୩ ଅ )

† କର୍ଷୟେଦ୍ ବୃଂହୟେଚ୍ଚାପି ଦୋଷଧାତୁମଲାନ୍ ଭିଷକ୍
ତାବଦ୍ ଯାବଦ୍ ଅରୋଗଃସ୍ୟାତ୍ ଏତତ୍ ସାମ୍ୟସ୍ୟଲକ୍ଷଣମ୍ ।

କରିବା ପାଇଁ ପଞ୍ଚ କର୍ମ ବ୍ୟବସ୍ଥା ଆବଶ୍ୟକ ହୁଏ । * । ସନ୍ତର୍ପଣ ଅପତର୍ପଣ, ସଂଶମନ ଓ ସଂଶୋଧନ ସ୍ଥାନକୁ * ବୃଦ୍ଧି ଦେଶ,କାଳ,ବଳ, ସାତ୍ମ୍ୟ ଓ ପ୍ରକୃତି ପରୀକ୍ଷାକରି ତାହା ପ୍ରୟୋଗ କରିବାକୁ ହୁଏ । ସୁତରାଂ ଏହିହେତୁ ବିପରୀତ ଚିକିତ୍ସା ସଙ୍କଟପୂର୍ଣ୍ଣହୋଇଥିଲେହେଁ ଏହା ବର୍ତ୍ତମାନ କାଳରେ ଅତି ଦୁର୍ଗମ ବୋଲିବାକୁ ହେବ ଏହାହିଁ ପରେ ।

## ବ୍ୟାଧି ବିପରୀତ ଚିକିତ୍ସା

ରୋଗର ବିରୋଧୀ ଔଷଧ ପ୍ରୟୋଗ କରିବାହାକୁ ବ୍ୟାଧି ବିପରୀତ ଚିକିତ୍ସା ବୋଲି ଯାଏ । ଯେପରି କି,- ବିଷରୋଗରେ ଶିରୀଷ, ପ୍ରମେହ-ରୋଗରେ ହଳଦୀ, କୁଷ୍ଠ ରୋଗରେ ଖଇର, ଅତିସାର ରୋଗରେ ଅକାନବିନ୍ଦୀ ଇତ୍ୟାଦି ଏହି ଚିକିତ୍ସାରେ ଦୋଷ, ଦୂଷ୍ୟ ଏବଂ ଔଷଧର ରସ ଗୁଣ ବିଚାର କରାଯାଏ ନାହିଁ । ଏହା ସାଧାରଣତଃ ସଦ୍ୟୋମାରକ ବିସୂଚିକା ଓ ମୂର୍ଚ୍ଛା ଆଦି ରୋଗରେ ହିଁ ବ୍ୟବସ୍ଥା କରାଯାଇଥାଏ । ଅଧିକାଂଶ ସ୍ଥାନରେ ରୋଗୀର ଅବସ୍ଥା ନ ବୁଝି ବ୍ୟାଧି ବିପରୀତ ଔଷଧ ପ୍ରୟୋଗ କଲେ ଅନିଷ୍ଟଫଳ ଉତ୍ପନ୍ନ ହୋଇଥାଏ । ଯେପରିକି— ଆମଜ୍ୱରରେ ଜ୍ୱରଘ୍ନ ଔଷଧ ଏବଂ ଆମାତିସାରରେ ସ୍ତମ୍ଭନ ଔଷଧ ପ୍ରୟୋଗ ଅନିଷ୍ଟ ସାଧନ କରିଥାଏ । କିନ୍ତୁ ଏହିସବୁ ଦୋଷ, ଦୂଷ୍ୟ, ସାମ, ନିରାମଭେଦର ରସ ଚିକିତ୍ସାରେ ପ୍ରୟୋଜନ ହୁଏନାହିଁ ବୋଲି ରସ-ବୈଦ୍ୟମାନେ କହନ୍ତି । ସେମାନେ ଲେଖିଛନ୍ତି ଯେ -

"ନ ଦୋଷାଣାଂ ନ ଦୂଷ୍ୟାଣାଂ ନ ରୋଗାଣାଂ ପରୀକ୍ଷଣମ୍
ନ ଦେଶସ୍ୟ ନ କାଳସ୍ୟ କୁର୍ଯ୍ୟାଦ୍ ରସ ଚିକିତ୍ସିତେ ।
ପାରଦେ ଯାବତୀ ଶକ୍ତି ରୋଗ ନିର୍ମୂଳନକ୍ଷମା
ତାବନ୍ନୋ ନୈବ ରୋଗାଃ ସ୍ୟୁ ବାତପିତ୍ତ କଫୋଦ୍ଭବାଃ ।

---

* ପ୍ରଧାନଂ ବମନଂ ପଶ୍ଚାଦ ବିରେଚନସ୍ତାନୁବାସନମ୍
ଏତାନି ପଞ୍ଚକର୍ମାଣି ନିରୂହୋ ନାବନଂ ତଥା । ( ଭାବପ୍ରକାଶ)
ଦୋଷାଃ କଦାଚିତ୍ କୁପ୍ୟନ୍ତି ଜିତା ଲଙ୍ଘନପାଚନୈଃ
ଯେ ତୁ ସଂଶୋଧନୈଃ ଶୁଦ୍ଧାଃ ନ ତେଷାଂ ପୁନରୁଦ୍ଭବଃ । (ଚରକ)
ନ ଶୋଧୟତି ଯଦ୍ଦୋଷାନ୍ ସମାନ୍ନୋଦୀରୟତ୍ୟପି
ସମୀକରୋତି ଚ କ୍ରୁଦ୍ଧାନ ତତ୍ସଂଶମନମୁଚ୍ୟତେ । (ସୁଶ୍ରୁତ)

କେଚିତ୍ତ୍ୱାଂ ମାତ୍ରାଦାଦନଂଙ୍କୁ ନ ଦୋଷାଃ କେଶବାନ୍ତୁ ମରଃ
ନ କେଚିଦ୍ୟାନ୍ତପନ୍ତି ଶନ୍ତୁଃ ନ ତାନାତ୍ମ ଅପରେତ୍ତ ତଥ୍ୟଃ ।
ପ୍ରଯାନ୍ତ୍ୟା ଯେଯା ଭବେଦ୍ ରୋଗା ପଥ୍ୟ ନାସ୍ତି ଚିକିତ୍ସିତମ୍
ରସେନ୍ଦ୍ର ଯନ୍ତ୍ର ତଂ ଶ୍ରେଷ୍ଠଂ ନରକୁଞ୍ଜରବାଜିନାମ୍ ।
ଚାରଂ ଦତ୍ତ୍ୱା ଯଥା ରୋଗାନ୍ ମର୍ଦ୍ଦ୍ୟାଦେବ ସଞ୍ଚରମ୍
ପାରଦଃ କଥିତସ୍ତସ୍ମାତ୍ ସର୍ବରୋଗକୁଳାନ୍ତକୃତ୍ ।
ଅନୁଭୂତା ହି ବର୍ତ୍ତନ୍ତେ ତତ୍ତ୍ୱସା ଯୋଗବାହିନ
ମଞ୍ଜୁଳ ସ୍ୱୈବୋପରି ପାରଦେ ରୋଗପାରଦେ ।
ନଯର୍ବହିନମାନେଷ୍ ବିଦ୍ୟାନୁସୂତ୍ରଂ ସ୍ୱାମସୂମ୍
ନୈବତେ ୧ ଯୋ ସଦା ଦେହେ ବେଗ ଶାମ୍ୟ କଲ୍ପତେ ।
ଶ୍ଲେଷ୍ମଣ ମନ୍ଦାଗ୍ନିଂ ଯଦ୍ ବର୍ଦ୍ଧୟନ୍ତି ଚାବନଃ
ତଦ୍ବର୍ଦ୍ଧୟନ୍ତି ସୂତାଂଶୂଂ ରୋଗାନ୍ ଦୋଷସମୁଦ୍ଭବାନ୍ ।
(ର. ର. ସ.)

ମୋଟ କଥା ଏହିକି-- ବୈଦ୍ୟ ଚିକିତ୍ସକମାନେ ହେତୁବ୍ୟାଧି ବିପରୀତ କରି ଯେପରି ବାତ ଶୋଥରେ ବାତ ଓ ଶୋଥ ନାଶକ ଦଶମୂଳର କ୍ୱାଥାଦି ବ୍ୟବସ୍ଥା କରନ୍ତି, ଏହି ରସ ଚିକିତ୍ସାରେ ସେଇପରି ବିଚାରର ଆବଶ୍ୟକତା ରହେନାହିଁ । ରସ ଅନୁପାନ ବିଶେଷ ଯୋଗରେ ହେତୁ ଓ ବ୍ୟାଧି ଉଭୟର ବିରୁଦ୍ଧରେ କାର୍ଯ୍ୟକରିଥାଏ । ପ୍ରବଳ ଚିକିତ୍ସାର ଏଠାରେ ମୂଳ ମନ୍ତ୍ର ଏହିପରି -ସୁଶ୍ରୁତ ଲେଖିଛନ୍ତି--

ସଂକ୍ଷେପତଃ କ୍ରିୟାଯୋଗଃ ନିଦାନ ପରି ବର୍ଜନମ୍ ।

ଏହାର ବ୍ୟାଖ୍ୟାରେ ଡଲ୍ହଣ ଲେଖିଛନ୍ତି--

"ନିଦାନାନାଂ ଦୋଷକାରକ ହେତୂନାଂ ବ୍ୟାଧିକାରକ ହେତୂନାଂ ଚ ସର୍ବତୋ ବର୍ଜନମ୍ । (ସୁ.ଉ. ୧୨୫)

ଅର୍ଥାତ୍ ଦୋଷକାରକ ଓ ବ୍ୟାଧିକାରକ ହେତୁମାନଙ୍କର ବର୍ଜନହିଁ ସଂକ୍ଷେପତଃ ଚିକିତ୍ସା ।

ଏଥିରୁ ଜଣାଯାଏ ଯେ, ଦୋଷ ପ୍ରକୋପକ ବାହ୍ୟହେତୁ ଏବଂ ରୋଗ ପ୍ରକୋପକ ବାହ୍ୟହେତୁ ଏକ ପ୍ରକାର ନୁହେଁ । ସୁତରାଂ କେବଳ ହେତୁ

ଉପଶୟର ଲେଖା ଦ୍ୱାରା ସକଳ କ୍ଷେତ୍ରରେ ବ୍ୟାଧି ନିର୍ଣ୍ଣୟ ହୋଇ ନ ପାରେ । ଏଥିପାଇଁ ବ୍ୟାଧିର ବାହ୍ୟଲକ୍ଷଣକୁ ନିରୂପଣ କରି ବ୍ୟାଧି ଉପଶୟର ଚିକିତ୍ସା କରିବା ଆବଶ୍ୟକ । ଯଥା ପ୍ରକୁପିତ ଅନ୍ତରଦୋଷ ଓ ଉପସ୍ଥିତ ବ୍ୟାଧି ଉଭୟେହିଁ ବଳବାନ୍ ଦେଖାଯାନ୍ତି, ସେପରି ସ୍ଥଳରେ ଦୋଷ ଓ ବ୍ୟାଧି-ଉଭୟର ଉପଶୟ ଚିକିତ୍ସା ଅବଲମ୍ବନୀୟ ଶ୍ରେୟସ୍କର । ଏଥିପାଇଁ ପଞ୍ଚକର୍ମ ମୂଳକ ଉଭୟ ଚିକିତ୍ସା ହିଁ ପ୍ରଶସ୍ତ ।

ରସ ଶାସ୍ତ୍ରରେ କୁହାଯାଇଅଛି--

ପାଚନଂ ଶୋଧନଂ ଶ୍ରେଷ୍ଠୋ ବମନଞ୍ଚ ବିରେଚନମ୍
ଏତାନି ପଞ୍ଚକର୍ମାଣି ଜ୍ଞାତବ୍ୟାନି ଭିଷଗ୍ୱରୈଃ
ପଞ୍ଚକର୍ମ ପୁରା କୃତ୍ୱା ପଶ୍ଚାତ୍ ସକଳ ଦେହିନାମ୍
ଯୋଜନୀୟା ରସାଃ ସର୍ବେ ଶୀଘ୍ରଂ ସିଦ୍ଧି ପ୍ରଦାୟକାଃ (ର.ର.ସ)
ସଂଶୋଧନଂ ସଂଶମନଂ ନିଦାନସ୍ୟ ଚ ବର୍ଜନମ୍ ।
ଏତାବଦ୍ ଭିଷଜା କାର୍ଯ୍ୟଂ ରୋଗେ ରୋଗେ ଯଥାବିଧି ।[ଚ.ସୂ.୭।୩୦]

୧ ) ହେତୁ ବିପରୀତ ଅର୍ଥକାରୀ ଔଷଧ ଓ ପଥ୍ୟ -ଯଥା-ବ୍ୟାଧିର ହେତୁ ଭୂତ ପଦାର୍ଥମାନଙ୍କରେ ଯେଉଁ ସବୁ ଗୁଣକ୍ରିୟା ଥାଏ, ସେହି ସବୁ ଗୁଣ କ୍ରିୟା ଯୁକ୍ତ ଅନ୍ୟ ପଦାର୍ଥର ପ୍ରୟୋଗ ଯଦି ସେହି ବ୍ୟାଧିକୁ ପ୍ରଶମନ କରେ, ତାହେଲେ ତାକୁ ହେତୁ ବିପରୀତ ଅର୍ଥକାରୀ ଔଷଧ ଓ ପଥ୍ୟ ବୋଲନ୍ତି । ଯେପରି ଅଧାର୍ମିକକୁ ଅଧର୍ମ ଆଚରଣ 'ଡାକୁ ହିଂସକଙ୍କୁ ପ୍ରତିହିଂସା ଦ୍ୱାରା, ହତ୍ୟାକାରୀକୁ ହତ୍ୟା କରିବା ଦ୍ୱାରା ଶଠକୁ ଶାଠ୍ୟଦ୍ୱାରା ନିପାତ କରିବାକୁ ହୁଏ, ଏହି ହେତୁ ବିପରୀତ ଅର୍ଥକାରୀ ଚିକିତ୍ସାଟି ମଧ୍ୟ ତଦ୍ରୂପ । ଯେପରିକି-- ପିତ୍ତ ଜାତ ବ୍ରଣ ଶୋଥରେ ପିତ୍ତ କର ଉଷ୍ମ ପ୍ରଲେପ ଏବଂ ବାତଜ ଉନ୍ମାଦ ରୋଗରେ ବାତବର୍ଦ୍ଧକ ଭୀତି ପ୍ରଦର୍ଶନ ଇତ୍ୟାଦି । ଏହି ଚିକିତ୍ସାର ମର୍ମ ହେଉଛି "ଯେସାକୁ ତେସା" ।

୨ ) ବ୍ୟାଧି ବିପରୀତ ଅର୍ଥକାରୀ ଔଷଧ ଓ ପଥ୍ୟ--ଯଥା-ଯେଉଁ ବ୍ୟାଧିର ଯାହା୨ ଲକ୍ଷଣ, ସେହି ସବୁ ଲକ୍ଷଣ ଯେଉଁ ଔଷଧର ପ୍ରୟୋଗ ପ୍ରକାଶ କରେ, ସେହି ଔଷଧକୁ ସେହି ବ୍ୟାଧିର ଶାନ୍ତି ନିମନ୍ତେ ପ୍ରୟୋଗ

କରିବା ବ୍ୟବସ୍ଥାକୁ ବ୍ୟାଧି ବିପରୀତ ଚିକିତ୍ସା କହାଯାଏ । ଯେପରି ବାତ ରୋଗରେ ବାତନାଶକ ମଦନଫଳ (ଚିଙ୍ଗ ଆମଳ)ର ପ୍ରୟୋଗ, ପ୍ରବାହିକା ରୋଗରେ ଏରଣ୍ଡ ତୈଳ (ଜଡ଼ାମଞ୍ଜି)ର ବିରେଚନ ଏବଂ ପିତ୍ତଜ ଭ୍ରମ ଓ ମୂର୍ଚ୍ଛା ଆଦି ରୋଗରେ ପିତ୍ତବର୍ଦ୍ଧକ, ଖର୍ଜୁର, ଡିମ୍ବା, ଚାଳ, ଗଣ୍ଡକ ଓ ମଧୁରାଦି ଯୋଗରେ ଘଟିତ ସନ୍ତର୍ପଣର ରସ ପ୍ରୟୋଗ ଇତ୍ୟାଦି । ଏହି ଚିକିତ୍ସାହିଁ ଆଧୁନିକ ହୋମିଓପ୍ୟାଥି ଚିକିତ୍ସାର ନିଜ ସ୍ୱରୂପ ଅଟେ ।

ଗ) ହେତୁ ଓ ବ୍ୟାଧି ବିପରୀତ ଅର୍ଥକାରୀ ଔଷଧ ଓ ପଥ୍ୟ । ଯେଉଁ ଔଷଧ ଓ ପଥ୍ୟ ବ୍ୟାଧିର ହେତୁଭୂତ ପଦାର୍ଥର ଗୁଣକ୍ରିୟା ଯୁକ୍ତ ଏବଂ ବ୍ୟାଧିର ଲକ୍ଷଣ ସବୁ ପ୍ରକାଶ କରିବାକୁ ସମର୍ଥ, ସେଇ ଔଷଧର ପ୍ରୟୋଗରେ ଯେଉଁଭଳି ବ୍ୟାଧିର ନିରାକରଣ ବ୍ୟବସ୍ଥାକୁ ହେତୁବ୍ୟାଧି ବିପରୀତ ଅର୍ଥକାରୀ ଚିକିତ୍ସା କହନ୍ତି । ଯେପରିକି ଅଗ୍ନିଦଗ୍ଧ ବ୍ରଣରେ ତୁଳ ମିଶ୍ରିତ ଗୁଣ୍ଡିତେଲ ବା ନଡ଼ିଆତେଲ ମଲମର ପ୍ରଲେପ, ମଦ୍ୟପାନଜନିତ ମଦାତ୍ୟୟ ରୋଗରେ ପରିମିତ ମାତ୍ରାରେ ମଦ୍ୟପାନ, ଏବଂ ଜଙ୍ଗମବିଷ ବିକାର ନାଶାର୍ଥରେ ସ୍ଥାବର ବିଷ, ଏହିପରି ସ୍ଥାବର ବିଷବିକାର ନାଶାର୍ଥରେ ଜଙ୍ଗମ ବିଷର ପ୍ରୟୋଗ ବ୍ୟବସ୍ଥା- ଏହି ସବୁ ହେତୁ ବ୍ୟାଧି ବିପରୀତାର୍ଥକାରୀ ଚିକିତ୍ସା ଅଟେ । ଆଧୁନିକ ଏଲୋପ୍ୟାଥି ଚିକିତ୍ସାକୁ ଏହି ହେତୁ ବ୍ୟାଧି ବିପରୀତାର୍ଥକାରୀ ଚିକିତ୍ସା କିମ୍ବା ହେତୁ ବିପରୀତ ଚିକିତ୍ସାର ଅନ୍ତର୍ଗତ ବୋଲି ବୁଝିବାକୁ ହେବ ।

ବର୍ତ୍ତମାନ ପୃଥିବୀରେ ପ୍ରଚଳିତ ସକଳପ୍ରକାର ଚିକିତ୍ସାପଦ୍ଧତି ସମ୍ପୂର୍ଣ୍ଣ ଆୟୁର୍ବେଦ ଚିକିତ୍ସାର ଏକ ଏକ କଳା ମାତ୍ର । ସ୍ଥୂଳ ଶରୀରରୁ ଉତ୍ପନ୍ନ ହେବା ରୋଗମାନଙ୍କର ପ୍ରତିକାର ବିଚାର ଛଡ଼ା ଆତ୍ମା, ମନ ଓ ଶରୀର ସହିତ ଅନାଦି ଅନନ୍ତ ବିଶ୍ୱପ୍ରକୃତିର କି ସାମଞ୍ଜସ୍ୟ ରହିଛି ? ପ୍ରକୃତ ସ୍ୱାସ୍ଥ୍ୟ ଲାଭର ପନ୍ଥା କଣ ? ତାହା ଆୟୁର୍ବେଦ ବ୍ୟତିରେକ ପୃଥିବୀର କୌଣସି ଚିକିତ୍ସା ବିଜ୍ଞାନ ଏ ପର୍ଯ୍ୟନ୍ତ ଦେଖି ନାହିଁ କି ଦେଖି ପାରିବ ନାହିଁ । କାରଣ କି, ପ୍ରକୃତସ୍ୱାସ୍ଥ୍ୟତତ୍ତ୍ୱ ଭୌତିକ ବିଜ୍ଞାନର ବିଚାର ସୀମାର ବହିର୍ଭୂତ । ଯେଉଁ ସ୍ୱାସ୍ଥ୍ୟ ଲାଭକଲେ ପୁରୁଷ ପୁରୁଷୋତ୍ତମ ପଦବାଚ୍ୟ ହୁଏ, ସେଇ ସମ୍ପୂର୍ଣ୍ଣ ସ୍ୱାସ୍ଥ୍ୟ ଲାଭହିଁ

ଆୟୁର୍ବେଦର ଚରମ ଲକ୍ଷ୍ୟ । ଅତଏବ ଆୟୁର୍ବେଦ ସୂତ୍ରର ସ୍ୱାସ୍ଥ୍ୟ ସୂତ୍ରରେ ଲକ୍ଷଣ ଏହିପରି ଲେଖିଛନ୍ତି ଯେ—

"ସମଦୋଷଃ ସମାଗ୍ନିଶ୍ଚ ସମଧାତୁ ମଲକ୍ରିୟଃ
ପ୍ରସନ୍ନାତ୍ମେନ୍ଦ୍ରିୟମନାଃ ସ୍ୱସ୍ଥ ଇତ୍ୟଭିଧୀୟତେ ।

## ବିଦେଶରେ ଆୟୁର୍ବେଦ ଚିକିତ୍ସାର ଗୌରବ

୧ । ଆମେରିକାର ଜଣେ ପ୍ରସିଦ୍ଧ ଏଲୋପ୍ୟାଥିକ ଡାକ୍ତର ଜର୍ଜ କ୍ଲାର୍କ ଏମ୍. ଡି କହିଛନ୍ତି ଯେ--

ଯଦି ଡାକ୍ତରି ବିଦ୍ୟାମାନଙ୍କର ସ୍ଥାନରେ କେବଳ କହିଥିବା କିଛି ଗୁଳିକ ପ୍ରୟୋଗ କରି ଯାଆନ୍ତା, ତା' ହେଲେ ପ୍ରତିଦିନ ପ୍ରତିଘଣ୍ଟାରେ କବର ଖୋଳିବା ଲୋକଙ୍କ ପାଇଁ କାମମିଳିବା ଦୁର୍ଘଟ ହୁଅନ୍ତା ଏବଂ ମୃତ୍ୟୁଶା ରୋଗୀମାନଙ୍କର ସଂଖ୍ୟା ମଧ୍ୟ କମି ଯା'ନ୍ତା ।

୨ । ଆଉଜଣେ ଆମେରିକାର ନାଗରିକ ଡାକ୍ତର ଆଲେନ୍ସ କେମ୍ବରମାର୍କୀ—ଯେ କି ଏଲୋପ୍ୟାଥି ଚିକିତ୍ସାର ଦୁଷ୍ପରିଣାମ ଭୋଗକରି ଆୟୁର୍ବେଦ ଚିକିତ୍ସାରେ ସ୍ୱାସ୍ଥ୍ୟ ଲାଭ କରିଥିଲେ, ସେ କହନ୍ତି ଯେ, "ମୁଁ ଯେଉଁଆଡେ ଯାଉଛି, ସେଇଆଡେ ଆୟୁର୍ବେଦର ଉତ୍କୃଷ୍ଟତା ପ୍ରଚାର କରୁଛି--ଏହି ଅଦ୍ଭୁତ ପ୍ରାଚୀନ ସ୍ୱାସ୍ଥ୍ୟପ୍ରଦ ବିଜ୍ଞାନ ବିଷୟରେ ଭାରତବର୍ଷର ଅଧିକାଂଶ ବୁଦ୍ଧିଜୀବୀ ଏବଂ ଶିକ୍ଷିତଂମନ୍ୟ ବ୍ୟକ୍ତି କିପରି ସର୍ବଥା ଅନଭିଜ୍ଞ ଏହିକଥା ଦେଖି ମୋତେ ବଡ଼ ଆଶ୍ଚର୍ଯ୍ୟ ଓ କଷ୍ଟ ବୋଧ ହେଉଛି । ଏହିପରି ପ୍ରତୀତ ହେଉଛି ଯେ -ଏହି ପ୍ରାଚୀନ ସ୍ୱାସ୍ଥ୍ୟ ବିଜ୍ଞାନର ଆଲୋକରୁ ପାଶ୍ଚାତ୍ୟ ସଂସାରର ଜନତା ବଞ୍ଚିତ ହେଲାପରି ଏମାନେ ମଧ୍ୟ ପାଶ୍ଚାତ୍ୟ ଚିକିତ୍ସା ପଦ୍ଧତିର ମିଥ୍ୟା ମାୟାଜାଲରେ ସମ୍ପୂର୍ଣ୍ଣ ଅଭିଭୂତ ହୋଇ ମୋହ ନିଦ୍ରାରେ ପଡ଼ିଛନ୍ତି । ଏମାନଙ୍କର ଲେଶମାତ୍ର ଏହି ଅନୁଭୂତି ନାହିଁ ଯେ---ଆୟୁର୍ବେଦ ରୂପରେ ଭାରତବର୍ଷର ହସ୍ତଗତ ଏକ ଅଭିଜ୍ଞତାପୂର୍ଣ୍ଣ ଚିକିତ୍ସା ବିଜ୍ଞାନ, ଯାହାକି ହଜାର ୨ ବର୍ଷର ଅଭ୍ୟାସ ଦ୍ୱାରା ପରୀକ୍ଷିତ ଓ ପ୍ରମାଣିତ ହୋଇ ରହିଛି ଏବଂ ଏଲୋପ୍ୟାଥିର ଦୂଷିତ, ଜଟିଳ ଓ ଭୟଙ୍କର ବିଧାନରୁ ଅଧିକାଂଶରେ ଅତୁଳନୀୟ ଉତ୍କୃଷ୍ଟତାକୁ ପ୍ରାପ୍ତ ହୋଇଛି ।" (ବଙ୍ଗବାସୀ ପ୍ରକାଶିତ ଚରକ ଭୂମିକାରୁ ଉଦ୍ଧୃତ)

୩ । ପ୍ରାଚୀନ ଚରକ ଜାପାନର ୭୯ ବର୍ଷୀୟ ଗୁସିବ ଚିକିତ୍ସକ କର୍ଣ୍ଣ ଓିଶୋପା ଭାରତ ବର୍ଷକୁ ଆସିଥିଲେ । ସେ କଲିକତାର "ଗଡ଼ିଆ ଶିବାନୁଭୂତି ମଠରେ ଆୟୋଜିତ ଏକ ସଭାରେ କହିଥିଲେ ଯେ- "ଜାପାନରେ କେତେ କାଳ ପୂର୍ବରୁ ଆୟୁର୍ବେଦୀୟ ଚିକିତ୍ସା ପଦ୍ଧତି ପ୍ରଚଳିତ ଥିଲା । କିନ୍ତୁ ଏବେ ଜାପାନରେ ତା'ର ଅସ୍ତିତ୍ୱ ନାହିଁ । ୨୧ ବର୍ଷ ଅବସ୍ଥାରେ ମୋର ଯକ୍ଷ୍ମାରୋଗ ହୋଇଥିଲା; ଅନେକ ଚିକିତ୍ସା କରିବା ପରେ ମୁଁ ଆୟୁର୍ବେଦୀୟ ଚିକିତ୍ସାରେ ହିଁ ଯକ୍ଷ୍ମାରୋଗରୁ ମୁକ୍ତ ହେଲି । ସେହିଦିନଠାରୁ ମୁଁ ଆୟୁର୍ବେଦୀୟ ସିଦ୍ଧାନ୍ତର ଅଧ୍ୟୟନ ଓ ମନନ କଲି । ତା'ପରେ ମୁଁ ଜାପାନରେ ଆୟୁର୍ବେଦୀୟ ପଦ୍ଧତିର ପୁନରୁଦ୍ଧାର ବିଷୟରେ ଏକ ମହାନ୍ ପ୍ରତିଜ୍ଞା ଗ୍ରହଣ କଲି । ମୁଁ ଏପର୍ଯ୍ୟନ୍ତ ଆୟୁର୍ବେଦ ପଦ୍ଧତିରେ ଚିକିତ୍ସା କରି କ୍ୟାନ୍‌ସର, ଯକ୍ଷ୍ମା, ଶ୍ୱାସ, ବାତରୋଗ, ପାଇଓରିଆ ଆଦି ଶତ ଶତ ଜଟିଳ ରୋଗୀମାନଙ୍କୁ ରୋଗମୁକ୍ତ କରିଛି । ଏହା ଭାରତର ଚିକିତ୍ସା ବିଜ୍ଞାନ । ସେହି କାରଣରୁ ମୁଁ ଆଜି ଭାରତକୁ ଆସିବା ଦ୍ୱାରା ଆପଣାର ଗୌରବ ଅନୁଭବ କରୁଛି । (ଜୟ ଆୟୁର୍ବେଦ)

## ଆୟୁର୍ବେଦୀୟ ସ୍ୱସ୍ଥ ବୃତ୍ତ

ସମସ୍ତେ ଏହା ଜାଣନ୍ତି ଯେ--ପ୍ରତ୍ୟେକ ଶରୀରଧାରୀ ପୁରୁଷର ଜ୍ଞାନେନ୍ଦ୍ରିୟ ପାଞ୍ଚପ୍ରକାର ଅଟେ । ଯଥା-- ଦର୍ଶନ, ଶ୍ରବଣ, ଘ୍ରାଣ, ରସନ ଓ ସ୍ପର୍ଶନ । ଏ ବୃତ୍ତିକୁ ଯଥାକ୍ରମେ ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା ଓ ଚର୍ମେନ୍ଦ୍ରିୟ ବୋଲଯାଏ । ଏହି ପାଞ୍ଚ ଇନ୍ଦ୍ରିୟର ଉପକରଣ ଦ୍ରବ୍ୟ-ଯଥାକ୍ରମେ ଜ୍ୟୋତି, ଆକାଶ, ପୃଥିବୀ, ଜଳ ଓ ବାୟୁ । ଏହି ପାଞ୍ଚ ଇନ୍ଦ୍ରିୟର ଭୋଗ୍ୟ ବିଷୟ ଯଥାକ୍ରମେ ରୂପ, ଶବ୍ଦ, ଗନ୍ଧ, ରସ ଓ ସ୍ପର୍ଶ । ଏହି ଇନ୍ଦ୍ରିୟ-ମାନେ ମନର ଅନୁବର୍ତ୍ତୀ ହୋଇ ବିଷୟ ଗ୍ରହଣ କରିବାକୁ ସମର୍ଥ ହୁଅନ୍ତି । ମନ କର୍ମପୁରୁଷର ସର୍ବଦା ଅନୁବର୍ତ୍ତୀ ହୋଇ ରହେ । କର୍ମପୁରୁଷ, ମନ, ଇନ୍ଦ୍ରିୟ, ଓ ଇନ୍ଦ୍ରିୟାର୍ଥ ବା ବିଷୟର ଏକ ଯୋଗ ହେଲେ ସେଇ ବିଷୟ ବୋଧର ଉଦୟ ହୁଏ । ମନ, ମନର ବିଷୟ, ବୁଦ୍ଧି ଓ କର୍ମ ପୁରୁଷ ବା ଭୂତାତ୍ମା, ଏହି କେତୋଟି ଆଧ୍ୟାତ୍ମିକ ଦ୍ରବ୍ୟଗଣ । ଏହି ଗଣହିଁ ଶୁଭାଶୁଭ ବା ହିତାହିତ ପ୍ରବୃତ୍ତିର ହେତୁ । କର୍ମ ପୁରୁଷର ସମସ୍ତ କ୍ରିୟା ଦ୍ରବ୍ୟାଶ୍ରିତ ଅଟେ । ଇନ୍ଦ୍ରିୟ ଗୁଡିକ ପଞ୍ଚମହାଭୂତର

ବିକାର, ଏହା ଅନୁମାନ ଦ୍ୱାରା ସ୍ଥିର କରାଯାଇଥାଏ । ସେଥିମଧ୍ୟରେ ନେତ୍ର-ନକ୍ଷତ୍ରରେ, ଆକାଶ-କର୍ଣ୍ଣରେ, ପୃଥିବୀ-ଘ୍ରାଣରେ, ଜଳ ଜିହ୍ୱାରେ ଓ ବାୟୁ-ତ୍ୱଗିନ୍ଦ୍ରିୟରେ ବିଶେଷ ରୂପରେ ଅବସ୍ଥାନ କରେ । ସେହି ଇନ୍ଦ୍ରିୟ ସେହି ମହାଭୂତର ନିର୍ମିତ, ସେହି ଇନ୍ଦ୍ରିୟ ତା'ର ସ୍ୱଭାବସ୍ଥ ହୋଇଥାଏ. ସୁତରାଂ ସେହି ମହାଭୂତର ଗୁଣ ବିଷୟରେହିଁ ତା'ର ଅନୁବୃତ୍ତି ହୋଇଥାଏ । ସେହି ବିଷୟର ଅଯୋଗ, ଅତି-ଯୋଗ ଓ ମିଥ୍ୟା ଯୋଗ ହେଲେ ମନ ଓ ଇନ୍ଦ୍ରିୟ ବିକୃତ ହୋଇଯାଏ । ସେହି ସମୟରେ ବୁଦ୍ଧି ନଷ୍ଟ ହୁଏ, ଏବଂ ସେହିସବୁ ବିଷୟର ଯଥା ଯୋଗ ହେଲେ ମନ ଓ ଇନ୍ଦ୍ରିୟ ପ୍ରକୃତିସ୍ଥ ହୋଇ ରହେ ଏବଂ ବୁଦ୍ଧି ବଢ଼େ । ମନର ବିଷୟ ହେଉଛି ଚିନ୍ତା । ଏଠାରେ ସ୍ଥଳରେ ମଧ୍ୟ ମନ ଓ ବୁଦ୍ଧିର ଯଥାଯୋଗ, ହୀନଯୋଗ, ଅତିଯୋଗ ଓ ମିଥ୍ୟାଯୋଗ ପ୍ରକୃତି ଓ ବିକୃତିର କାରଣ ହୋଇଥାଏ । ସୁତରାଂ ଯାହା-ଦ୍ୱାରା ଇନ୍ଦ୍ରିୟ ଓ ମନ ଅନୁପହତ ହୋଇ ପ୍ରକୃତିସ୍ଥ ରହେ, ସେ ବିଷୟରେ ଯତ୍ନଶୀଳ ହେବା ଉଚିତ । ତାହା କହୁଛନ୍ତି ଯେ-

ଯେଉଁ ସବୁ ଖାଦ୍ୟ ବିଷୟ ଅସାତ୍ମ୍ୟ ବା ଅହିତକର, ସେହିସବୁ ବିଷୟ ପରିହାର କରି ସାତ୍ମ୍ୟ ବା ପଥ୍ୟ ବିଷୟର ସର୍ବଦା ଅନୁସରଣ କରିବ । ବିବେକର ସହିତ ଦେଶ, କାଳ ଓ ଆତ୍ମାର ଅବିରୁଦ୍ଧ ବ୍ୟବହାର କରିବ । ଆତ୍ମ ହିତୈଷୀ ବ୍ୟକ୍ତି ସର୍ବଦା ସକଳ ବିଷୟରେ ମନବୁଦ୍ଧିର ତୃପ୍ତି ସତ୍କାର୍ଯ୍ୟ ଅନୁଷ୍ଠାନ କରିବ । ଏଥି ଦ୍ୱାରା ଆରୋଗ୍ୟ-ଲାଭ ସହିତ ଇନ୍ଦ୍ରିୟ ଜୟ ମଧ୍ୟ ହୋଇଥାଏ । ଆୟୁଷ୍କାମୀ ଓ ଆରୋଗ୍ୟାର୍ଥୀ ସୁନ୍ଦର ଦେବତା, ବ୍ରାହ୍ମଣ, ଗୋରୁ, ବୃଦ୍ଧ, ସିଦ୍ଧ, ଗୁରୁ ଓ ଆଚାର୍ଯ୍ୟମାନଙ୍କୁ ନିତ୍ୟ ଅର୍ଚ୍ଚନା କରିବ । ଅଗ୍ନିଙ୍କୁ ପୂଜା କରିବ, ପ୍ରଶସ୍ତ ଔଷଧମାନଙ୍କୁ ଧାରଣ କରିବ । ପ୍ରାତଃକାଳେ ଓ ସାୟଂକାଳେ ନିଜ ନିଜ ଜାତି ଧର୍ମ ଅନୁସାରେ ସନ୍ଧ୍ୟୋପାସନା ବା ଈଶ୍ୱର ଉପାସନା କରିବ, ଜଳଦ୍ୱାରା ଆଚମନ କରିବ । ଘ୍ରାଣ ଆଦି ଇନ୍ଦ୍ରିୟମାନଙ୍କରେ ଯେପରି ମଇଳା ନ ରହେ ଏବଂ ପାଦ ଦୁଇଟି ଯେପରି ସର୍ବଦା ନିର୍ମଳ ରହେ, ସେଥିପ୍ରତି ସାବଧାନ ହେବ । ପାଞ୍ଚ ପାଞ୍ଚଦିନରେ ଥରେ କେଶ, ଶ୍ମଶ୍ରୁ (ଦାଢ଼ି) ଲୋମ ଓ ନଖ ଛେଦନ କରିବ, କ୍ଷୌରହେବ, ସର୍ବଦା

ଅକ୍ଳିଷ୍ଟ ବସ୍ତ୍ର ପରିଧାନ କରିବ, ପ୍ରସନ୍ନଚିତ୍ତ ହୋଇ ରହିବ, ସୁଗନ୍ଧଦ୍ରବ୍ୟ ଧାରଣ କରିବ । ସଦାଚାର ସୂଚକ ବେଶ ଓ କେଶବିନ୍ୟାସ ଗ୍ରହଣ କରିବ । ପ୍ରତିଦିନ ମସ୍ତକ, କର୍ଣ୍ଣ, ନାସିକା ଓ ପାଦରେ ତୈଳ ମର୍ଦ୍ଦନ କରିବ । ଆବଶ୍ୟକସ୍ଥଳେ ଧୂମପାନ କରିବ । ଆଗନ୍ତୁକ ବ୍ୟକ୍ତିଙ୍କୁ ପ୍ରଥମେ ସମ୍ଭାଷଣ କରିବ ଓ ମଧୁର କଥା କହିବ । ବିପନ୍ନଙ୍କୁ ଆଶ୍ୱାସନା ଦେବ, ପ୍ରତିଦିନ ଜପ, ହୋମ, ଯଜ୍ଞ, ଦାନ ଓ ନମସ୍କାର ସହିତ ଚତୁଷ୍ପଥରେ ବଳିଦାନ କରିବ । ଅତିଥିମାନଙ୍କ ପୂଜା କରିବ, ପିତୃଗଣଙ୍କୁ ପିଣ୍ଡଦାନ କରିବ । ସମୟ ଅନୁସାରେ ହିତ, ପରିମିତ ଓ ମଧୁର ଅର୍ଥଯୁକ୍ତ ବାକ୍ୟ ପ୍ରୟୋଗ କରିବ । ସଂଯତାତ୍ମା ଓ ଧର୍ମାତ୍ମା ହେବ । ଯେଉଁ କାରଣରୁ କାହାର କିଛି ଉନ୍ନତି ହୋଇଥାଏ, ସେହି କାରଣ ପ୍ରତି ଈର୍ଷ୍ୟା କରିବ । କିନ୍ତୁ ସେହି କାରଣର ଫଳ ପ୍ରତି ଈର୍ଷ୍ୟା କରିବ ନାହିଁ । (ଅର୍ଥାତ୍ ପ୍ରଯତ୍ନ, ଉଦ୍ୟମ ଓ ପରିଶ୍ରମ ଗୁଣଦ୍ୱାରା ହିଁ ଲୋକର ଉନ୍ନତି ହୁଏ, ଅତଏବ କାହାର ଉନ୍ନତି ପ୍ରତି ଈର୍ଷ୍ୟା ନକରି ତା'ର ପ୍ରଯତ୍ନ, ଉଦ୍ୟୋଗ, ଓ ପରିଶ୍ରମ ପ୍ରତି ଈର୍ଷ୍ୟା ପ୍ରକାଶ କରିବ । ଅର୍ଥାତ୍ ଅଧିକ ପ୍ରଯତ୍ନ, ଅଧିକ ଉଦ୍ୟୋଗ ଓ ଅଧିକ ପରିଶ୍ରମ ସହିତ ତାହାପେକ୍ଷା ଅଧିକ ମହତ୍ତ୍ୱ ସମ୍ପନ୍ନ କାର୍ଯ୍ୟ ସାଧନ କରିବାକୁ ଚେଷ୍ଟା କରିବ । ନିଶ୍ଚିନ୍ତ, ନିର୍ଭୀକ, ଲଜ୍ଜାଶୀଳ, ବିମୃଶ୍ୟ-କାରୀ, ଉତ୍ସାହୀ, ଦକ୍ଷ, କ୍ଷମାବାନ୍, ଧାର୍ମିକ ଓ ଆସ୍ତିକ ହେବ । ବିନୟ, ବୁଦ୍ଧି ଓ ବିଦ୍ୟା ସମ୍ବନ୍ଧରେ ଯେଉଁମାନଙ୍କର ଉତ୍କର୍ଷ ଅଛି ଏବଂ ଯେଉଁମାନେ ବୟୋବୃଦ୍ଧ, ଏବଂ ସିଦ୍ଧ ଆଚାର୍ଯ୍ୟ, ସେମାନଙ୍କର ଉପାସନା କରିବ । ଛତ୍ର, ଦଣ୍ଡ, ଉଷ୍ଣୀଷ ଓ ଉପାନହ ( ଜୋତା ବା ପାଦତ୍ରାଣ ) ଧାରଣ କରିବ । ଗମନ ସମୟରେ ଆଗକୁ ଅନ୍ତତଃ ଚାରିହାତ ପର୍ଯ୍ୟନ୍ତ ଦୃଷ୍ଟି ଦେଇ ଚାଲିବ । ସର୍ବଦା ମଙ୍ଗଳାଚରଣ କରିବ । କୁତ୍ସିତ ମଇଳା ବସ୍ତ୍ର, ଅସ୍ଥି, କଣ୍ଟକ, ଅପବିତ୍ର, କେଶ, ତୁଷ, ଅଳିଆଗଦା, ପାଉଁଶ ଓ ଖପର ଗଦା ନିକଟ ଦେଇ ଯିବ ନାହିଁ । ବଳି ଦିଆଯାଇଥିବା ସ୍ଥାନ ପରିହାର କରିବ । ଶ୍ରାନ୍ତି ବୋଧ ନ ହେବା ପୂର୍ବରୁ ଶ୍ରମ ପରିତ୍ୟାଗ କରିବ । ଅର୍ଥାତ୍ ଏତେ ପରିଶ୍ରମ କରିବ ନାହିଁ ଯଦ୍ଦ୍ୱାରା ଶରୀର କ୍ଳାନ୍ତ ହୋଇପଡ଼େ । ସମସ୍ତ ପ୍ରାଣୀ ପ୍ରତି ବନ୍ଧୁଭାବ ପ୍ରଦର୍ଶନ କରିବ । କ୍ରୋଧୀ ପ୍ରତି ଅନୁନୟ ଓ ଭୀତପ୍ରତି ଆଶ୍ୱାସନା ପ୍ରଦାନ କରିବ । ଦରିଦ୍ରମାନଙ୍କ

ପ୍ରତି ଅନୁରକ୍ତ ହୋଇବ । ସତ୍ୟସନ୍ଧ ହେବ । ସାମ, ଦାନ, ଭେଦ ଓ ଦଣ୍ଡ ଏହି ଚାରି ଉପାୟ ମଧ୍ୟରୁ ସାମ ଉପାୟକୁ ପ୍ରଧାନ ଭାବରେ ଅବଲମ୍ବନ କରିବ । ପରର କର୍କଶ ବାକ୍ୟ ଶୁଣିଲେ ସହିଷ୍ଣୁତା ପ୍ରଦର୍ଶନ କରିବ । କିନ୍ତୁ ନିଜେ କର୍କଶ ହେବନାହିଁ । ଭଲଗୁଣ ଦେଖିଲେ ଉତ୍ସାହ ପ୍ରଦାନ କରିବ । ଅଥବା ଦୋଷପରିତ୍ୟାଗ କରି ଗୁଣ ଗ୍ରହଣ କରିବ । ସ୍ୱଗୃହର କାର୍ଯ୍ୟ ସମ୍ପାଦନ କରିବ । ଅସତ୍ୟ କହିବନାହିଁ ଏବଂ ପରସ୍ୱ ଗ୍ରହଣ କରିବ ନାହିଁ । ଅନ୍ୟସ୍ତ୍ରୀ ଅଭିଳାଷ କରିବ ନାହିଁ । ପର ଶ୍ରୀକାତର ହେବ ନାହିଁ, ବୈରି ଇଚ୍ଛା କରିବ ନାହିଁ । ପାପ କରିବ ନାହିଁ । ଅପକାରୀର ମଧ୍ୟ ଅପକାର କରିବନାହିଁ । ପରର ଦୋଷ କହିବ ନାହିଁ । ପରର ରହସ୍ୟ ପ୍ରକାଶ କରିବ ନାହିଁ । ଅଧାର୍ମିକ କିମ୍ବା ରାଜ-ବିଦ୍ୱିଷ୍ଟ ପୁରୁଷ ସହିତ ବାସ କରିବ ନାହିଁ । ଉନ୍ମତ୍ତ, ପତିତ, ଭ୍ରୂଣହନ୍ତା, ନୀଚ ଓ ଦୁଷ୍ଟଲୋକମାନଙ୍କ ସହିତ ବାସ କରିବ ନାହିଁ । ଦୁଷ୍ଟ ଯାନ ଆରୋହଣ କରିବନାହିଁ । ଜାନୁକର ଆସନରେ ବସିବନାହିଁ । ଅନାସ୍ତୀର୍ଣ୍ଣ, ଉପାଧାନ ହୀନ (ତକିଆ ନଥାଇ) ଅପ୍ରଶସ୍ତ ବିଷମ ଶଯ୍ୟାରେ ଶୋଇବ ନାହିଁ । ଦୁର୍ଗମ ପର୍ବତମାନଙ୍କରେ ବିଚରଣ କରିବ ନାହିଁ । ବୃକ୍ଷାରୋହଣ କରିବ ନାହିଁ । ଉଗ୍ରସ୍ରୋତ ଜଳରେ ସ୍ନାନ କରିବନାହିଁ । ବରକୋଳି ଗଛର ଛାଇରେ ବସିବ ନାହିଁ, ଅଗ୍ନିପ୍ରାନ୍ତ ସ୍ଥାନର ସମୀପରେ ସଞ୍ଚରଣ କରିବ ନାହିଁ, ଉଚ୍ଚରେ ହାସ୍ୟ କରିବ ନାହିଁ, ଲୋକ ସମ୍ମୁଖରେ ସଶବ୍ଦ ଅଧୋବାୟୁ ତ୍ୟାଗ କରିବ ନାହିଁ । ମୁଖକୁ ଅନାବୃତଭାବରେ ରଖି ଜୃମ୍ଭା (ହାଇ) କ୍ଷବଥୁ (ଛିଙ୍କ) କିମ୍ବା ହାସ୍ୟ କରିବ ନାହିଁ । ବାରମ୍ବାର ନାକକୁ ମର୍ଦ୍ଦିବ ନାହିଁ । ଦାନ୍ତ ଉପାଡ଼ିବ ନାହିଁ । ନଖରେ ନଖକୁ ଘଷିବନାହିଁ । ଶରୀର ଅସ୍ଥିମାନଙ୍କୁ ଅଭିଘାତ କରିବନାହିଁ । ଭୂମିରେ ଲେଖିବ ନାହିଁ । ତୃଣ ବା ତୃଣ ଛିଣ୍ଡାଇବ ନାହିଁ । ପାଦାଦିର ଦ୍ୱାରା ବା ଲୋଷ୍ଟ୍ର (ଢେଲା)କୁ ଚୂର୍ଣ୍ଣ କରିବ ନାହିଁ । ଅଙ୍ଗ ମାନଙ୍କୁ କୁତ୍ସିତଭାବରେ ସଙ୍କୁଚିତ ବା ପ୍ରସାରିତ କରି କୌଣସି କାର୍ଯ୍ୟ କରିବ ନାହିଁ । ଉଜ୍ଜ୍ୱଳ ଜ୍ୟୋତିଃ ପଦାର୍ଥ ପ୍ରତି ବା ଅପବିତ୍ର ଅପ୍ରଶସ୍ତ ଅପ୍ରି ପ୍ରତି ଦୃଷ୍ଟିପାତ କରିବନାହିଁ । ଶବ ଦେଖି ହୁଁକାର କରିବ ନାହିଁ । ପୂଜନୀୟ ବୃକ୍ଷ, ଶ୍ମଶାନବୃକ୍ଷ ଓ ବଲ୍ମୀକ ଦେବାଦିର ଛାୟାକୁ ଏବଂ ଶୁନ୍ତ୍ର

ଓ ପୂଜ୍ୟବ୍ୟକ୍ତିମାନଙ୍କର ଛାୟାକୁ ଲଂଘନ (ଡେଇଁବା) କରିବ ନାହିଁ । ଏହିପରି ଅସ୍ପୃଶ୍ୟ ଚଣ୍ଡାଳାଦିର ଛାୟାକୁ ମଧ୍ୟ ମାଡ଼ିଯିବ ନାହିଁ । ରାତ୍ରିରେ ଦେବାଳୟରେ, ବୃକ୍ଷ ଓ ଅଶ୍ୱତ୍ଥ ପ୍ରଭୃତି ଗଛ ତଳରେ, ଚତୁଷ୍ପଥରେ (ଚୌରାସ୍ତାରେ) ଉପବନରେ ଶ୍ମଶାନରେ ଓ ବଧଭୂମିରେ ରହିବ ନାହିଁ । ଶୂନ୍ୟଗୃହରେ ଏବଂ ଜଙ୍ଗଲ ମଧ୍ୟରେ ଏକାକୀ ପ୍ରବେଶ କରିବ ନାହିଁ । ପାପାଚାରିଣୀ ସ୍ତ୍ରୀ, ପାପୀ ମିତ୍ର ଓ ଭୃତ୍ୟକୁ ସର୍ବଦା ନିକଟରେ ରଖିବ ନାହିଁ । ଉତ୍ତମ ଲୋକ ସହିତ ବିରୋଧ କରିବ ନାହିଁ । ନିକୃଷ୍ଟ ଲୋକକୁ ଉପାସନା କରିବ ନାହିଁ । କୁଟିଳ ପ୍ରକୃତିର ଅନୁସରଣ କରିବ ନାହିଁ । ଅନାର୍ଯ୍ୟକୁ ଆଶ୍ରୟ କରିବ ନାହିଁ । କାହାରି ଦେହରେ ଭୟ ଉତ୍ପାଦନ କରିବ ନାହିଁ । ଅତିସାହାସ, ଅତିନିଦ୍ରା, ଅତିଜାଗରଣ, ଅତିସ୍ନାନ, ଅତିପାନ ଓ ଅତିଭୋଜନ କରିବ ନାହିଁ, ଉର୍ଦ୍ଧ୍ୱ ଜାନୁ ହୋଇ ଅଧିକ କ୍ଷଣ ବସିବ ନାହିଁ । ସର୍ପ, ବ୍ୟାଘ୍ରାଦି ଜନ୍ତୁ ଓ ଶୃଙ୍ଗଧାରୀ ଜନ୍ତୁର ନିକଟକୁ ଯିବନାହିଁ । ପୂର୍ବଦିଗର ପବନ, ପ୍ରଚଣ୍ଡ ଆତପ, ହିମପ୍ରପାତ ଓ ପ୍ରଖର ପବନ ପରିହାର କରିବ । କଳହ କରିବ ନାହିଁ । ଅସମାହିତ ଓ ଅସନ୍ନିକାଚ (ଏକାକୀ) ହୋଇ ଅଗ୍ନି ଉପାସନା କରିବ ନାହିଁ । ଉଚ୍ଛିଷ୍ଟ ମୁଖହୋଇ ଅଗ୍ନିକୁ ସ୍ପର୍ଶ କରିବ ନାହିଁ । ପାଦର ଅଧୋଭାଗରେ ଅଗ୍ନିକୁ ଜ୍ୱଳନ କରି ଆହାର ସାମଗ୍ରୀ ଉତ୍ତପ୍ତ କରିବ ନାହିଁ । ଶ୍ରମ ଓ ଘର୍ମ (ଝାଳ) ଦୂର ନ ହେବାଯାଏ ସ୍ନାନ କରିବ ନାହିଁ । ଉଲଙ୍ଗ (ଲଙ୍ଗଳା) ହୋଇ ସ୍ନାନ କରିବ ନାହିଁ । ସ୍ନାନପରେ ପାଲଟା ଲୁଗାରେ ମସ୍ତକ ପୋଛିବ ନାହିଁ ଓ କେଶର ଅଗ୍ରଭାଗକୁ ଧରି ଝାଡ଼ିବ ନାହିଁ । ସ୍ନାନପରେ ଯେଉଁ ଗାମୁଛାରେ ଦେହ ଓ ମସ୍ତକ ମାର୍ଜନ କରାଯାଇ ଥିବ, ସେଇ ଗାମୁଛାକୁ ଦେହରେ ଧରିବ ନାହିଁ ଏବଂ ସେଇ ପାଲଟା ଓଦା ଲୁଗାକୁ ପିନ୍ଧିବ ନାହିଁ । ରତ୍ନ, ଘୃତ, ପୂଜ୍ୟଦ୍ରବ୍ୟ, ମାଙ୍ଗଲ୍ୟ ଦ୍ରବ୍ୟ ଓ ପୁଷ୍ପକୁ ସ୍ପର୍ଶ ନ କରି ବାହାରକୁ ଯିବ ନାହିଁ । ପୂଜ୍ୟ ଗୁରୁ ବ୍ରାହ୍ମଣାଦି ମାନଙ୍କୁ ବାମ ଭାଗରେ ଏବଂ ଅପୂଜ୍ୟ ଶବ ଶୃଗାଳାଦି ଅମାଙ୍ଗଳିକ ଦ୍ରବ୍ୟକୁ ଦକ୍ଷିଣ ଭାଗରେ ରଖି ଯାତ୍ରା କରିବ ନାହିଁ । ହାତରେ ରତ୍ନ ଧାରଣ ନକରି ସ୍ନାନ ନ କରି ରାତିରେ ପିନ୍ଧିଥିବା ବସ୍ତ୍ର ତ୍ୟାଗ ନକରି, ଜପନକରି, ହୋମ ନ କରି, ଦେବତାମାନଙ୍କୁ ନୈବେଦ୍ୟ ନ କରି,

ଅକାମାଃ; ଅରଜସ୍କା; ଅପ୍ରଶସ୍ତା; ଅନଭିଳଷିତ ରୂପା ଅନନୁକୂଳ ଚାରିତ୍ରା; ଅନନୁକୂଳ ଚିତ୍ତ ନେତ୍ରା, ଅଦକ୍ଷା; ବନ୍ଧ୍ୟା ଓ ଅନ୍ୟ ପୁରୁଷ ସ୍ତ୍ରୀ ଗମନ କରିବ ନାହିଁ। ଗର୍ଭିଣୀ ଗମନ କରିବ ନାହିଁ। ସମାନ ଜାତିର ଲୋକ ଓ ଅନ୍ୟ ଲୋକଙ୍କର (ଗୁରୁପତ୍ନୀକରେ) ଗମନ କରିବ ନାହିଁ। ଯୋନିଭିନ୍ନ ସ୍ଥାନ (ମୁଖ)ରେ ଗମନ କରିବ ନାହିଁ। ବଟ ଅଶ୍ୱତ୍ଥ ଦେବବୃକ୍ଷମାନଙ୍କର ସମୀପରେ ଅଗ୍ନିପାଦରେ ଚତୁଷ୍ପଥରେ (ଚୌବାଟିରେ) ଶ୍ମଶାନରେ, ବଧସ୍ଥଳରେ, ବଧ୍ୟସ୍ଥାନରେ, ଜଳରେ ଔଷଧାଳୟରେ ବ୍ରାହ୍ମଣ, ଗୁରୁ ଓ ଦେବତାର ମନ୍ଦିରରେ ପ୍ରଭାତକାଳରେ ଓ ସନ୍ଧ୍ୟାକାଳରେ ସ୍ତ୍ରୀ ଗମନ କରିବ ନାହିଁ। ନିଷିଦ୍ଧ ତିଥିରେ (ପୂର୍ଣ୍ଣିମା, ଅଷ୍ଟମୀ, ଚତୁର୍ଦ୍ଦଶୀ, ଅମାବାସ୍ୟା ସଂକ୍ରାନ୍ତିରେ) ଅଶୁଚି ଅବସ୍ଥାରେ ଔଷଧ ସେବନ ନ କରି ଇଚ୍ଛା ନଥାଇ ହର୍ଷ ନ ଥାଇ ତଥା ଭୋଜନରେ ଅତିଭୋଜନ ପରେ ସ୍ତ୍ରୀ ସଙ୍ଗମ କରିବ ନାହିଁ। ବିଷମ ସ୍ଥଳରେ ରକ୍ତ ମୂତ୍ର ଓ ମଳ ବେଗରେ ପୀଡ଼ିତ ହୋଇ ଏବଂ ଶ୍ରମ, ବ୍ୟାୟାମ, ଉପବାସ ଓ କ୍ଳାନ୍ତି ଦ୍ୱାରା ଅବସନ୍ନ ହୋଇ କିମ୍ବା ପ୍ରକାଶ୍ୟ ସ୍ଥାନରେ ସ୍ତ୍ରୀ ସମ୍ପର୍କ କରିବ ନାହିଁ। ସାଧୁ ଓ ଗୁରୁମାନଙ୍କର ନିନ୍ଦା କରିବ ନାହିଁ। ଅଶୁଚି ହୋଇ ଅଭିଚାର କର୍ମ, ଚୈତ୍ୟ ପୂଜା (ବଟ ଅଶ୍ୱତ୍ଥ ପୂଜା) ପୂଜ୍ୟ ପୂଜା ଓ ଅଧ୍ୟୟନ କରିବ ନାହିଁ। ଅକାଳବୃଷ୍ଟି, ମେଘ ଗର୍ଜନ, ଅଗ୍ନ୍ୟୁତ୍ପାତ, ଓ ଭୂମିକମ୍ପ ସମୟରେ ମହୋତ୍ସବକାଳରେ, ଉଲ୍କାପାତ ସମୟରେ, ସୂର୍ଯ୍ୟଗ୍ରହଣ କାଳରେ ନଷ୍ଟଚନ୍ଦ୍ର ତିଥିରେ, ପ୍ରଭାତରେ ଓ ସନ୍ଧ୍ୟାକାଳରେ, ଗୁରୁବୃତ୍ତିହୀନରେ ଗୁରୁମୁଖରୁ ପ୍ରଥମ ଗ୍ରହଣ ନକରି ଅତି ଦ୍ରୁତବେଗରେ ବିକୃତ ବିଳମ୍ବିତ, ଦୁର୍ବଳ, କ୍ଷୀଣ ବା ଅତିଉଚ୍ଚସ୍ୱରରେ ପଦଚ୍ଛେଦ ନଥାଇ ଅଧ୍ୟୟନ କରିବ ନାହିଁ। ବହୁଲୋକ ମିଳିତ ହୋଇ କରିଥିବାର ନିୟମ ଭଙ୍ଗ କରିବ ନାହିଁ। ରାତ୍ରି କାଳରେ ଅପରିଚିତ ସ୍ଥାନରେ ଭ୍ରମଣ କରିବ ନାହିଁ। ସନ୍ଧ୍ୟାକାଳରେ ଆହାର, ଅଧ୍ୟୟନ, ସ୍ତ୍ରୀ ଓ ନିଦ୍ରା ସେବନ କରିବ ନାହିଁ। ବାଳକ, ବୃଦ୍ଧ, ଲୁବ୍ଧ, ମୂର୍ଖ, ରୋଗୀ ଓ ନପୁଂସକ ବ୍ୟକ୍ତି ସହିତ ମିତ୍ରତା କରିବ ନାହିଁ। ମଦ୍ୟପାନ, ଜୁଆଖେଳ ଓ ବେଶ୍ୟାସଙ୍ଗ କରିବ ନାହିଁ। ଗୋପନୀୟ କଥା ପ୍ରକାଶ କରିବ ନାହିଁ। କାହାକୁ

ଅବମାନନା କରିବ ନାହିଁ । ଅଭିମାନୀ ବା ଗର୍ବୀ ହେବ ନାହିଁ । ଅକର୍ମଣ୍ୟ, ଅଳସ, ପ୍ରତିକୂଳ (ବିରୋଧୀ) ଓ ଅସୂୟାପରାୟଣ ହେବ ନାହିଁ । ଅପବାଦ ଦେବ ନାହିଁ । ସ୍ତ୍ରୀ ପୁରୁଷମାନଙ୍କୁ ନିନ୍ଦା କରିବ ନାହିଁ । ଗୋରୁମାନଙ୍କ ପ୍ରତି ଦଣ୍ଡୋତ୍ତୋଳନ କରିବ ନାହିଁ । ବ୍ରାହ୍ମଣ, ବୃଦ୍ଧ, ଗୁରୁ, ରାଜା ଓ କୌଣସି ଦଳକୁ ଭର୍ତ୍ସନା କରିବ ନାହିଁ ଏବଂ ସେମାନଙ୍କର ସମ୍ମୁଖରେ ବହୁତ କଥା କହିବ ନାହିଁ । ବାନ୍ଧବମାନଙ୍କୁ, ଅନୁରକ୍ତମାନଙ୍କୁ, ସାହାଯ୍ୟକାରୀମାନଙ୍କୁ ଓ ରହସ୍ୟଜ୍ଞମାନଙ୍କୁ କଷ୍ଟ ସମୟରେ ନିକାଳି ଦେବ ନାହିଁ । ଚଞ୍ଚଳ କିମ୍ବା ଉଦ୍ଧତ ହେବ ନାହିଁ । ଭୃତ୍ୟମାନଙ୍କୁ ଠିକ୍ ସମୟରେ ବେତନ ଦେବ । ସ୍ୱଜନଙ୍କୁ ଅବିଶ୍ୱାସ କରିବ ନାହିଁ । ମିଳିମିଶି ନିଜ ପରିବାର ସହିତ ରହିବ । ଏକାକୀ ସୁଖଭୋଗ କରିବାକୁ ଚେଷ୍ଟା କରିବ ନାହିଁ । ଦୁଃଖଜନକ ଆଚରଣ ଓ ସେବା କରିବ ନାହିଁ । ସମସ୍ତଙ୍କୁ ସନ୍ଦେହ ଦୃଷ୍ଟିରେ ଦେଖିବ ନାହିଁ । ପଦେ ପଦେ ଭାବ ଚିନ୍ତା ବିଚାର କରି ଚଳିବ । ସବୁକାଳରେ ଚିନ୍ତାମଗ୍ନ ହୋଇ ରହିବ ନାହିଁ । କାର୍ଯ୍ୟକାଳ ଅତିବାହିତ କରିବ ନାହିଁ । ଅପରୀକ୍ଷିତ ବ୍ୟକ୍ତିର ପ୍ରତି ନିର୍ଭର କରିବ ନାହିଁ । ଇନ୍ଦ୍ରିୟମାନଙ୍କର ବଶୀଭୂତ ହେବ ନାହିଁ । ଚଞ୍ଚଳ ମନକୁ ଆଉରି ଅଧିକ ଚଞ୍ଚଳ କରିବ ନାହିଁ । ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କୁ ଅଧିକ ଭାରଗ୍ରସ୍ତ କରିବ ନାହିଁ । ଅତ୍ୟନ୍ତ ଦୀର୍ଘସୂତ୍ରୀ ହେବ ନାହିଁ । କ୍ରୋଧ ଓ ହର୍ଷ ହେବା ମାତ୍ରେ ତଦନୁସାରେ କାର୍ଯ୍ୟ କରିବ ନାହିଁ । ଶୋକର ବଶୀଭୂତ ହେବ ନାହିଁ । କାର୍ଯ୍ୟ ସଫଳ ହେଲେ ହର୍ଷରେ ଫୁଲିଯିବ ନାହିଁ । ଏବଂ କାର୍ଯ୍ୟ ସଫଳ ନ ହେଲେ ଦୀନତା ପ୍ରାପ୍ତ ହେବ ନାହିଁ । ନିରନ୍ତର ପ୍ରକୃତିର ଅନୁସରଣ କରିବ । କାରଣରେ ଯେ କାର୍ଯ୍ୟକାରିତା ଅଛି, ତାହା ସୁନିଶ୍ଚିତ ବୋଲି ଜାଣିବ, ନିଜର ଭାଗ୍ୟୋନ୍ନତିର କାରଣ ନିଜେ ବୋଲି ବୁଝି ସର୍ବଦା ଉଦ୍ୟମଶୀଳ ହେବ । ଯାହା କରିବାର ଥିଲା, ତାହା କରାଯାଇଛି, ଆଉ କିଛି କରିବାର ନାହିଁ । ଏହି ପରି ଭାବି ନିଶ୍ଚିନ୍ତ ହେବ ନାହିଁ । ନିଜର ପୌରୁଷ ବା ବିକ୍ରମ ଛାଡ଼ିବ ନାହିଁ । କାହାରି ଅପବାଦ ବା ଗାଳି ସ୍ମରଣ କରିବ ନାହିଁ । ଶୁଦ୍ଧ ପୂତ ହୋଇ ଉତ୍କୃଷ୍ଟ ଘୃତ, ଅକ୍ଷତ, ତିଳ (ରାଶି) କୁଶ ଓ ସୋରିଷ ଦ୍ୱାରା ଅଗ୍ନିରେ ହୋମ କରିବ । ହୋମ

ଶେଷରେ ଆତ୍ମାକୁ ଏହିପରି ଆଶୀର୍ବାଦ କରିବ ଯେ—"ଅଗ୍ନି ମୋର ଶରୀରକୁ ଉପଗତ ତେଜଦାନ, ବାୟୁ ମୋର ପ୍ରାଣାଧାନ କରୁ । ବିଷ୍ଣୁ ମୋର ବଳାଧାନ କରନ୍ତୁ । ଇନ୍ଦ୍ର ମୋର ବୀର୍ଯ୍ୟାଧାନ କରନ୍ତୁ । ମାଙ୍ଗଲ୍ୟ ଜଳ ମୋର ଶରୀରରେ ଆବିର୍ଭୂତ ହେଉ । ଆପୋହିଷ୍ଠେତ୍ୟୁକ୍ତ ମନ୍ତ୍ର ପାଠ କରି ଜଳସ୍ପର୍ଶ କରିବ । ଦୁଇ ଓଷ୍ଠରେ ମସ୍ତକର ସକଳ ଦ୍ୱାରରେ ଶରୀର, ହୃଦୟ ଓ ମସ୍ତକରେ ଜଳସମ୍ମାର୍ଜନ କରିବ । ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରିବ, ସର୍ବଦା ଆତ୍ମଜ୍ଞାନ ଲାଭ କରିବା ପାଇଁ ଯତ୍ନ କରିବ । ଯଥାଶକ୍ତି ଦାନ କରିବ, ସକଳ ପ୍ରାଣୀଠାରେ ମୈତ୍ରିଭାବନା କରିବ । କାହାକୁ ହିଂସା କରିବ ନାହିଁ ଦୟାଳୁ ହେବ । ହୃଷ୍ଟ ଚିତ୍ତହୋଇ ରହିବ । ଆସକ୍ତି ପରିହାର କରିବ । ସର୍ବଦା ଶାନ୍ତମନା ହୋଇ ରହିବ । (ଚ. ସୂ. ୮ଅ) ତା'ର ପରେ ସେ କହିଛନ୍ତି ଯେ ବୁଦ୍ଧିମାନ ପୁରୁଷ ଶାରୀରିକ, ମଳ, ମୂତ୍ର, ଅଧୋବାୟୁ, ବାନ୍ତି, ଛିଙ୍କ, ଉଦ୍‌ଗାର, କ୍ଷୁଧା, ତୃଷା, ଅଶ୍ରୁ, ନିଦ୍ରା, ଜୃମ୍ଭା ଏବଂ ଶ୍ରମଜନ୍ୟ ନିଃଶ୍ୱାସ ପ୍ରଭୃତିର ବେଗ କଦାପି ଧାରଣ କରିବ ନାହିଁ । କିନ୍ତୁ ଅନୁଚିତ ସାହସର ବେଗ, ମନୋବେଗ, ବାକ୍ୟବେଗ, କାୟବେଗ, କର୍ମବେଗ ଏବଂ କ୍ରୋଧ, ଲୋଭ; ଭୟ; ଶୋକ ଓ ଅଭିମାନର ବେଗ ଧାରଣ କରିବ ଏବଂ ନିର୍ଲଜତା; ପରଶ୍ରୀକାତରତା; ଈର୍ଷ୍ୟା ଓ ଅନୁରାଗର ବେଗ ସମ୍ବରଣ କରିବ । ସ୍ତ୍ରୀ ସମ୍ପର୍କ; ଚୌର୍ଯ୍ୟ ଓ ହିଂସାଦିର ବେଗଧାରଣ କରିବ । କର୍କଶ ଅତ୍ୟନ୍ତ ଗ୍ଲାନି ସୂଚକ; ମିଥ୍ୟା ଓ ଅଯଥା ବାକ୍ୟର ବେଗ ଉତ୍ପନ୍ନ ହେବା ମାତ୍ରେ ତାକୁ ସମ୍ବରଣ କରିବ ଏବଂ ପରର ପୀଡ଼ାଦାୟକ କୌଣସି ପ୍ରକାର ପ୍ରବୃତ୍ତି ଜନ୍ମିଲେ ତା'ର ବେଗ ଅବଶ୍ୟ ସମ୍ବରଣ କରିବ । (ଚ. ସୂ.)

ଏହି ସବୁ ସ୍ୱସ୍ଥବୃତ୍ତ ଉପଦେଶ ଦେବାପରେ ଚରକ କହିଛନ୍ତି ଯେ-

ସ୍ୱସ୍ଥବୃତ୍ତଂ ଯଥୋଦ୍ଦିଷ୍ଟଂ ଯଃ ସମ୍ୟକ୍ ଅନୁତିଷ୍ଠତି
ସ ସମାଃଶତମବ୍ୟାଧି ରାୟୁଷା ନ ବିୟୁଜ୍ୟତେ ।

ଅର୍ଥାତ୍ ଆୟୁର୍ବେଦୀୟ ଶାସ୍ତ୍ରମାନଙ୍କରେ ଯେଉଁ ସମସ୍ତ ସ୍ୱସ୍ଥ ବୃତ୍ତ ଉପଦିଷ୍ଟ ହୋଇ ଅଛି; ସେହି ସମସ୍ତ ଯଥା-ନିୟମରେ ଯେଉଁ ବ୍ୟକ୍ତି ଅନୁଷ୍ଠାନ କରେ; ସେ ନୀରୋଗ ହୋଇ ଶତସମ୍ବତ୍ସର ପରମାୟୁ ଭୋଗ କରେ ।

## ସ୍ୱାସ୍ଥ୍ୟ ରକ୍ଷାର ସରଳ ନିୟମ

ନିତ୍ୟଂହିତାହାରବିହାର ସେବୀ ସମୀକ୍ଷ୍ୟକାରୀ ବିଷୟେଷ୍ୱସକ୍ତଃ
ଦାତା ସମଃ ସତ୍ୟପରଃ କ୍ଷମାବାନ୍‌ଆପ୍ତୋପସେବୀ ଚ ଭବତ୍ୟରୋଗଃ ।

(୧) ଦୀର୍ଘ ଆୟୁଷ୍କାମୀ ପୁରୁଷ ପ୍ରାତଃ ସୂର୍ଯ୍ୟୋଦୟର ୧୨ ଘଣ୍ଟା ପୂର୍ବେ (ବ୍ରାହ୍ମ ମୁହୂର୍ତ୍ତରେ) ଉଠିବା ଉଚିତ ।

(୨) ମଳମୂତ୍ର ନିବାରଣାର୍ଥେ ଝାଡ଼ାଯିବା ପୂର୍ବେ ଏକ ବା ଦୁଇଗ୍ଲାସ ଥଣ୍ଡାପାଣି ପିଇବା ଉଚିତ ।

(୩) ଆରୋଗ୍ୟ ରକ୍ଷାନିମନ୍ତେ ପ୍ରାତଃରେ ଖୋଲାପବନରେ ଭ୍ରମଣ କରିବା ଆବଶ୍ୟକ ।

(୪) ଦାନ୍ତକୁ ରକ୍ଷା କରିବାପାଇଁ ନିମ୍ବ, ଶାକୁଆ, ବାବୁଲ ଆଦି ପିତ୍ତ, କମ୍ବା କଷାୟ ରସଯୁକ୍ତ ଦାନ୍ତକାଠିରେ ଦାନ୍ତ ଘଷିବା ଆବଶ୍ୟକ ।

(୫) ଚର୍ମରୋଗରୁ ରକ୍ଷାପାଇବା ପାଇଁ ଶୀତଋତୁରେ ସୋରିଷତେଲ ଏବଂ ଗ୍ରୀଷ୍ମ ଋତୁରେ ରାଶିତେଲ ପ୍ରତିଦିନ କମ୍ବା ସପ୍ତାହରେ ଦୁଇଥର ଦେହରେ ମାଲିସ କରିବା ଉଚିତ । ପାଦରେ ତେଲ ମାର୍ଦ୍ଦନ କଲେ ପାଦଫଟା ପ୍ରଭୃତି ହୁଏ ନାହିଁ । ଏବଂ କାନରେ ତେଲ ପକାଇଲେ କାନର ରୋଗ ହୁଏ ନାହିଁ ।

(୬) ତେଜ ଓ ବଳକୁ ରକ୍ଷାକରିବା ପାଇଁ ପ୍ରତିଦିନ ଶୀତଳ ଜଳରେ ସ୍ନାନ କରିବା ଅତ୍ୟନ୍ତ ଆବଶ୍ୟକ ।

(୭) ଆତ୍ମବଳ ବୃଦ୍ଧି ନିମନ୍ତେ ନିଜ ୨ ଧର୍ମାନୁସାରେ ପ୍ରତିଦିନ ନିୟମିତ ସମୟରେ ଯଥାଶକ୍ତି ଈଶ୍ୱର ଉପାସନା କରିବା ଉଚିତ ।

(୮) କ୍ଷୁଧା ଲାଗିଲେ ସାତ୍ତ୍ୱିକ, ଲଘୁ, ପୁଷ୍ଟିକର, ସଜ, ସ୍ନିଗ୍ଧ, ଆହାର ପ୍ରସନ୍ନ ମନରେ, ଶାନ୍ତି ସହିତ ଧୀରେ ୨ ଚୋବାଇ ୨ ଭୋଜନ କରିବା ଉଚିତ ।

(୯) ଅଗ୍ନିଦୀପନାର୍ଥେ ଭୋଜନ ପୂର୍ବେ ସୈନ୍ଧବ ଚୂର୍ଣ୍ଣ ସହିତ ଖଣ୍ଡିଏ ଅଦା ଚୋବାଇ ଖାଇବା ଉଚିତ ।

(୧୦) ପେଟରେ ବିକାର ଶାନ୍ତି ନିମନ୍ତେ ନିୟମିତ ସମୟରେ ଭୋଜନ କରି କିଛି ସମୟ ଟହଲି ବାମ ପାର୍ଶ୍ୱ ଦେଇ ଶେଜରେ ବିଶ୍ରାମ ନେବା ଉଚିତ ।

(୧୧) ଖାଇଥିବା ଅନ୍ନର ପରିପାକ ନିମନ୍ତେ ଅଳ୍ପ ଜଳ ବାରମ୍ବାର ପାନ କରିବା ଉଚିତ ।

(୧୨) ଭୋଜନ ପରେ କୁଳି କରି ସେହି ଓଦା ହାତକୁ ଲଗାଇଲେ ମୁହଁର କାନ୍ତି ଓ ନେତ୍ରର ଜ୍ୟୋତି ବଢ଼େ ।

(୧୩) ଭୋଜନ ପୂର୍ବେ ମୂତ୍ରତ୍ୟାଗ କଲେ ମୂତ୍ରବିକାର ହୁଏ ନାହିଁ ।

(୧୪ ଚାହା, ସିଗା, ବଜାର ମିଠାଇ ଏବଂ ଆଇସ୍‌କ୍ରିମ୍ ଆଦି ପେଟରେ ବିକାର ଉତ୍ପାଦନ କରେ; ଅତଏବ ସେ ସବୁ ତ୍ୟାଗ କରିବା ଉଚିତ ।

(୧୫) ଋତୁ ଅନୁସାରେ ଶାସ୍ତ୍ର ଉପଦିଷ୍ଟ ଅନୁକୂଳ ଆହାର ବିହାର ସେବନ କରିବା ଉଚିତ ।

(୧୬) ଶୀତଋତୁରେ ଜଠରାଗ୍ନି ପ୍ରଦୀପ୍ତ ହୁଏ । ଅତଏବ ଦୁଗ୍ଧ; ଘିଅ ପ୍ରଭୃତି ପୁଷ୍ଟିକର ଖାଦ୍ୟ ସେ ସମୟରେ ଯଥେଷ୍ଟ ପରିମାଣରେ ଭୋଜନ କରିବା ଉଚିତ ।

(୧୭) ଗ୍ରୀଷ୍ମ ଋତୁରେ; ଲେମ୍ବୁ; ତିନ୍ତୁଳି; କମଳା; ମାତୁଲିଙ୍ଗ; ଆମ୍ବ; ଧନିଆଁ ଓ ପୋଦିନା ଆଦି ଶାଗ ଖାଇଲେ ଏବଂ ଶୀତଳ ଜଳରେ ସ୍ନାନ ଓ ଚନ୍ଦନଲେପନ କଲେ କଲେରା ପ୍ରଭୃତି ରୋଗ ଭୟ ରହେନାହିଁ ।

(୧୮) ବର୍ଷାଋତୁରେ ଜଠରାଗ୍ନି ମନ୍ଦ ହୋଇଯାଏ, ଅତଏବ ସେ ସମୟରେ ଲଘୁଭୋଜନ ଏବଂ ଫୁଟାପାଣି ପିଇବା ଉଚିତ ।

(୧୯) ଆଶ୍ୱିନ ଓ ଚୈତ୍ରମାସରେ ବିରେଚନ ନେଇ ପେଟକୁ ସଫା କରାଇବା ଉଚିତ । ସେପରି କଲେ ଋତୁପରିବର୍ତ୍ତନ ଜନିତ କୌଣସି ବିକାର ହୁଏ ନାହିଁ ।

(୨୦) ଥଣ୍ଡା ପାଣିରେ ହାତ ଓ ପାଦକୁ ଧୋଇ ପୋଛି ଶୋଇଲେ ସୁଖନିଦ୍ରା ହୁଏ ଏବଂ ସ୍ୱପ୍ନଦୋଷର ଭୟ ରହେନାହିଁ ।

(୨୧; ସବୁରୋଗର ମୂଳ ପେଟର ବିକାର ଶାନ୍ତି ନିମନ୍ତେ ପକ୍ଷରେ ଏକଦିନ (ଅମାବାସ୍ୟା ଓ ପୂର୍ଣ୍ଣିମା ତିଥିରେ) ଉପବାସ କରିବା ଅତ୍ୟନ୍ତ ଲାଭଦାୟକ ।

(୨୨, ଚିରସ୍ଥାୟୀ ସ୍ୱାସ୍ଥ୍ୟ ଓ ଦୀର୍ଘଜୀବନ ନିମନ୍ତେ ସାତ୍ତ୍ୱିକ ଭୋଜନ, ସୁଖନିଦ୍ରା ଓ ବ୍ରହ୍ମଚର୍ଯ୍ୟପାଳନ ସମସ୍ତଙ୍କ ପକ୍ଷରେ ଅପରିହାର୍ଯ୍ୟ ଅଟେ ।

ଦିନଚର୍ଯ୍ୟାଂ ରାତ୍ରିଚର୍ଯ୍ୟାଂ ଋତୁଚର୍ଯ୍ୟାଂ ଯଥୋଦିତାମ୍
ଆଚରନ୍ ପୁରୁଷଃ ସ୍ୱସ୍ଥଃ ସଦା ତିଷ୍ଠତି ନାନ୍ୟଥା ।

## ପ୍ରାକୃତିକ ଚିକିତ୍ସା ବିଜ୍ଞାନରେ ଶରୀର ରକ୍ଷାର ସାଧାରଣ ନିୟମ

୧ । ସକାଳ ପାଞ୍ଚ ଘଣ୍ଟା ସମୟରେ ଶୋଇରୁ ଉଠିବ ।

୨ । ଶୋଇରୁ ଉଠି ପରିଷ୍କାର ବାଲିଆ ମାଟିରେ ଦାନ୍ତ ଘଷିବ । ତା'ପରେ ଥଣ୍ଡା ପାଣିରେ ଭଲ ଭାବରେ କୁଳକୁଚ କରିବ ।

୩ । ଦାନ୍ତ ଘଷିବା ପରେ ଏକଗ୍ଲାସ୍ କିମ୍ବା ଯେତିକି ପେଟରେ ଧରିବ, ସେତିକି ଗ୍ଲାସ୍ ଥଣ୍ଡା ଜଳ ପିଇବ ।

୪ । ମଳ ଓ ମୂତ୍ରର ବେଗ କେବେହେଲେ ଧାରଣ କରିବ ନାହିଁ ।

୫ । ପ୍ରାତଃକାଳ ଅନ୍ତତଃ ଏକ ଘଣ୍ଟା ଖୋଲା ଜାଗାରେ ନିର୍ମଳ ବାୟୁରେ ବୁଲିବ ।

୬ । ସମୁଦାୟ ଦିନର ଗୋଟିଏ ତାଲିକା ପ୍ରସ୍ତୁତ କରି ତଦନୁଯାୟୀ ଲେଖା, ପଢା, ଖେଳିବା, ବୁଲିବା ପ୍ରଭୃତି କାର୍ଯ୍ୟ କରିବ ।

୭ । କ୍ଷୁଧା ଶରୀରର ଉପକାରୀ, କ୍ଷୁଧା ନ ହେଲେ ଖାଇବ ନାହିଁ ।

୮ । ପ୍ରତିଦିନ ଦିନରେ ଦୁଇଥର ସ୍ନାନ କରିବ ।

୯ । ଦେହ ଖରାପ ହେଲେ ସ୍ନାନକୁ ବନ୍ଦ କରିବ ନାହିଁ । ବରଂ ଦେହ ଖରାପ ହେଲେ ସ୍ନାନର ମାତ୍ରା ଟିକିଏ ବଢାଇବ ।

୧୦ । ଉପବାସ କଲେ ଦେହର ଅନେକ ରୋଗ ଛାଡ଼ିଯାଏ । କ୍ଷୁଧା ନଥିଲେ ଗୋଟିଏ ବେଳା ମୋଟେ ଖାଇବ ନାହିଁ । ଅଳ୍ପ କ୍ଷୁଧା ଥିଲେ, ଅଳ୍ପ ପରିମାଣରେ ଖାଇବ ।

୧୧ । କ୍ଷୁଧା ସମୟରେ ଖାଇବାକୁ ନ ପାଇଲେ, ତାର ବଦଳରେ ଅଳ୍ପ ଅଳ୍ପ ଜଳ ପିଇବ ।

୧୨ । ଯେ କୌଣସି ରୋଗରେ ଔଷଧ ପରି ମଧ୍ୟେ ୨ ଅଳ୍ପ ଅଳ୍ପ ଜଳ ପିଇବ ।

୧୩ । କେବେ ହେଲେ ଘରର ଝରକା ବନ୍ଦ କରି ଶୋଇବ ନାହିଁ ।

ଶୀତ ଦିନରେ ଦେହକୁ ଘୋଡ଼ାଇ କରି ଶୋଇବ କିନ୍ତୁ ଝରକା ବନ୍ଦ କରିବ ନାହିଁ ।

୧୪ । ରାତ୍ର ନ ବଢ଼ି ସମୟରେ ଶୋଇବ ।

୧୫ । ଯାହା ଖାଇଲେ ମଧ୍ୟ ତାକୁ ଖାଇବା ସମୟରେ ଭଲ ଭାବରେ ଚୋବାଇ ଖାଇବ ।

୧୬ । ଟଙ୍କା ନ ହେଲେ ଔଷଧ ପାଇଁ ସବୁବେଳେ ବ୍ୟସ୍ତ ହେବନାହିଁ । ଯେଉଁ ନିୟମ କୁହା ଯାଇଛି ତା'କୁ ମାନି ଚଳିବ ।

୧୭ । କୁସଙ୍ଗ କରିବ ନାହିଁ । କୁକଥା କହିବ ନାହିଁ, କୁକାର୍ଯ୍ୟ କରିବ ନାହିଁ । ଏଥିରୁ କେବଳ ଦେହ ଏବଂ ମନ ଖରାପ ହୁଏ ।

୧୮ । ଯେତେ ସମୟ ପର୍ଯ୍ୟନ୍ତ ଚେତା ଥିବ, ସେତେ ସମୟ କୌଣସି ହେଲେ ଦରକାରୀ କାର୍ଯ୍ୟ କରୁଥିବ । ନଚେତ୍ ପଢ଼ିବ, କେବେହେଲେ ହେଲେ ଆଳସ୍ୟରେ ଦିନ କଟାଇବ ନାହିଁ ।

୧୯ । ପରର ହିଂସା କରିବ ନାହିଁ । କାହା ସଙ୍ଗେ ଗଣ୍ଡଗୋଳ କରିବ ନାହିଁ । ଏଥିଦ୍ୱାରା ମନ ସଙ୍ଗେ ଦେହ ମଧ୍ୟ ଖରାପ ହୁଏ ।

୨୦ । ସର୍ବଦା ଆନନ୍ଦରେ ରହିବା ପାଇଁ ଚେଷ୍ଟା କରିବ ।

୨୧ । ଦୁଃଖ କଷ୍ଟକୁ କେବେହେଲେ ପ୍ରଶ୍ରୟ ଦେବନାହିଁ ।

୨୨ । ରୋଗ ହେଲେ କେବେହେଲେ ରୋଗ ବିଷୟ ଭାବିବ ନାହିଁ । ଭାବନା ଦ୍ୱାରା ରୋଗ ବଢ଼ିଯାଏ ଏବଂ କମିବା ପାଇଁ ବହୁତ ସମୟ ଲାଗେ ।

୨୩ । ଯେତେ ଦୂର ସମ୍ଭବ ନିଜଉପରେ ନିର୍ଭର ରଖିବ । ନିଜର ଶକ୍ତିକୁ ବିଶ୍ୱାସ କରିବ ।

୨୪ । ଯେତେ ଦୂର ପାରିବ, ଅଭାବକୁ କମାଇବ ।

୨୫ । ପଚା ଓ ଖରାପ ଖାଦ୍ୟ ଖାଇବ ନାହିଁ ।

୨୬ । କର୍ତ୍ତବ୍ୟ କାର୍ଯ୍ୟ କରି ଯିବ କିନ୍ତୁ ତା'ର ଫଳାଫଳ ଭଗବାନଙ୍କ ଉପରେ ସମ୍ପୂର୍ଣ୍ଣ ରୂପେ ନିର୍ଭର କରିବ ।

୨୭ । ଶୋଇବା ପୂର୍ବରୁ ସମସ୍ତ ଦିନର କାର୍ଯ୍ୟର ହିସାବ ଲେଖିବ । ତା'ପରେ ଭଗବାନ୍ଙ୍କୁ ଚିନ୍ତା କରିବ । ତା'ହେଲେ ସୁଖରେ ନିଦ୍ରା ହେବ ।

(୨୮) ରାଗ, ହିଂସା, ମିଥ୍ୟା, ପାପକାର୍ଯ୍ୟ ପ୍ରଭୃତିକୁ ଘୃଣା କରିବ ।

(୨୯) କୁଚିନ୍ତା ମନକୁ ଆସିବାମାତ୍ରେ ଦୂର କରିବାପାଇଁ ଚେଷ୍ଟା କରିବ ।

(୩୦) ପରିଷ୍କାର ଲୁଗାପଟା ପିନ୍ଧିବ । ଘରଦ୍ୱାର ଜିନିଷ ପ୍ରଭୃତି ସର୍ବଦା ପରିଷ୍କାର ରଖିବ ।

(୩୧) ରୋଗ ହେଲେ ଭଗବାନ ନାମ ଓ ସ୍ତବ ଉପରେ ନିର୍ଭର କରିବ । ମନରେ କୋଡ଼ିଏ ପଚିଶଥର, ମୁଁ ନିଜକୁ ଭଲ ଦେଖୁଛି, ଏହି ମନ୍ତ୍ର ଜପ କରିବ ।

(୩୨) ଲେଖା, ପଢ଼ା କରିବା ପାଇଁ, ଥିଏଟର ସିନେମା ପ୍ରଭୃତି ଦେଖିବା ପାଇଁ ରାତି ଅନିଦ୍ରା ରହିବ ନାହିଁ ।

(୩୩) ପ୍ରତ୍ୟେକ ଥର ପାଇଖାନା କରିବାପରେ ଥଣ୍ଡା ଜଳରେ ମଳଦ୍ୱାର ପରିଷ୍କାର କରିବ ।

(୩୪) ଖୁବ୍ ମୋଟା ଲୁଗା ପିନ୍ଧିବ ନାହିଁ । ଯେତେ ଦୂର ପାରିବ, ଖୋଲା ପାଦ ଏବଂ ଖୋଲା ଦେହରେ ରହିବ ।

(୩୫) ସ୍ନାନ କରିବାର ଅନ୍ତତଃ ଏକ ଘଣ୍ଟା ପରେ ଖାଇବ । ଖାଇବା ପରେ ଅନ୍ତତଃ ତିନି ଘଣ୍ଟା ପରେ ସ୍ନାନ କରିବ ।

ଏହି ସମସ୍ତ ନିୟମ ଗୁଡ଼ିକ ମାନି ଚାଲିଲେ ସହଜରେ ରୋଗ ହୁଏ ନାହିଁ । ନିୟମରୁ ବ୍ୟତିକ୍ରମ ହୋଇ ଗଲେ, ଶରୀରର ଦୋଷରୁ ଯଦି କୌଣସି ରୋଗ ହୋଇଥାଏ; ତାହା ମଧ୍ୟ ସଙ୍ଗେ ସଙ୍ଗେ କମିଯାଏ । ଏହି କଥା କେବେହେଲେ ଭୁଲ ନାହିଁ । ଏହିପରି ଶରୀର ସୁସ୍ଥ ରହିଲେ ଜୀବନ ସୁଖମୟ ହୁଏ । ଅନେକ ଭଲ କାର୍ଯ୍ୟକରି ହୁଏ । ବାପ, ମା, ଆତ୍ମୀୟ, ସ୍ୱଜନ ଓ ବନ୍ଧୁ ବାନ୍ଧବ ସମସ୍ତେ ସୁଖୀ ହୁଅନ୍ତି ।

## ସ୍ୱାସ୍ଥ୍ୟ ରକ୍ଷା ସମ୍ବନ୍ଧେ ସଂକ୍ଷିପ୍ତ ସଦୁପଦେଶାବଳୀ

୧ । ହସ୍ତ ପାଦ ପ୍ରଭୃତି କର୍ମେନ୍ଦ୍ରିୟ ଦ୍ୱାରା କିମ୍ବା ଚକ୍ଷୁ କର୍ଣ୍ଣ ପ୍ରଭୃତି ଜ୍ଞାନେନ୍ଦ୍ରିୟ ଦ୍ୱାରା ଅଧିକ କାର୍ଯ୍ୟ କିମ୍ବା ଅନୁଚିତ କାର୍ଯ୍ୟ କିମ୍ବା ଅନିୟମିତ କାର୍ଯ୍ୟ କରନାହିଁ ଏବଂ ଇନ୍ଦ୍ରିୟ ମାନଙ୍କର ସାମର୍ଥ୍ୟ ଅନୁସାରେ କର୍ମ ନକରି ସେମାନଙ୍କୁ ଅକର୍ମା କରି ରଖନାହିଁ ।

୨ । ମନକୁ ଚଞ୍ଚଳ କରି ଉଦ୍ୟମ କରନାହିଁ, ମନୋଯୋଗ ନକରି କୌଣସି କାମ କରନାହିଁ, ପ୍ରତ୍ୟେକ କାର୍ଯ୍ୟ ଠିକ୍ ନିୟମରେ କର ଏବଂ ରାଗ, ଦ୍ୱେଷ, ଲୋଭ, ଈର୍ଷା ପ୍ରଭୃତି ଦୁଷ୍ଟ ମନୋବୃତ୍ତିମାନଙ୍କୁ ଦମନ କର ।

୩ । ଶରୀରକୁ ନିର୍ମଳ ରଖ । ନାକ, କାନ, ଆଖି, ଗୁହ୍ୟଦ୍ୱାର ଓ ଲିଙ୍ଗକୁ ସର୍ବଦା ପରିଷ୍କାର ରଖ । ସେଥିରେ ଯେପରି ମଇଳା ନ ରହେ, ସେପରି ସାବଧାନ ହୁଅ । ଦାନ୍ତ ଓ ମୁହଁକୁ ସଫା ରଖ ।

୪ । ପାଞ୍ଚଦିନରେ ଥରେ କ୍ଷୌର ହୁଅ । ନିର୍ମଳ ଲୁଗା ପିନ୍ଧ ଏବଂ ଆଙ୍ଗୁଠି ମାନଙ୍କର ନଖ ବୃଦ୍ଧିକୁ କଟାଇଦିଅ ।

୫ । ପ୍ରତିଦିନ ସ୍ନାନକର, ପ୍ରତିଦିନ ଦୁଇଥର ଭଲରେ ଦାନ୍ତ ଘଷି, ଆଖିରେ ଅଞ୍ଜନ ଲଗାଅ । ମସ୍ତକରେ ଓ ପାଦରେ ପ୍ରତିଦିନ ତେଲ ମର୍ଦ୍ଦନ କର । କାନରେ ତେଲ ପକାଅ ।

୬ । ଯେଉଁ ଋତୁରେ ଯେପରି ଲୁଗା ପିନ୍ଧିବା ଉଚିତ, ସେପରି ଲୁଗା ପିନ୍ଧ । ଯେଉଁ ଲୁଗା ପିନ୍ଧୁଛ, ତାହା ଯେପରି ସ୍ୱଦେଶୀ, ସାଧାସିଧା ସଫା ଓ ଢିଲା ରହେ ଏବଂ ତଦ୍ୱାରା ଶିଷ୍ଟତା ଓ ସୌଜନ୍ୟର ପରିଚୟ ମିଳେ, ସେପରି ଲୁଗା ପିନ୍ଧ ।

୭ । ମନରେ ସର୍ବଦା ଦୟା ରଖ । କାହାରିକୁ କୌଣସି ପ୍ରକାର କଷ୍ଟ ଦିଅ ନାହିଁ ।

୮ । ଏପରିଭାବେ ଧନ ବ୍ୟବହାର କର, ଯେପରିକି କାହାର ମନରେ କଷ୍ଟ ନହୁଏ । ମନକୁ ଖରାପ କର ନାହିଁ, ସ୍ୱାଧୀନ ରଖ । ପ୍ରତ୍ୟେକ କାର୍ଯ୍ୟ ଖୁବ୍ ମନୋଯୋଗ ପୂର୍ବକ ଆରମ୍ଭ କର, ମାତ୍ର କାର୍ଯ୍ୟର ପରିଣାମରେ ଯାହା ଫଳ ମିଳିବ ସେଥିରେ ସନ୍ତୁଷ୍ଟ ହୁଅ । ମନର ଇଚ୍ଛାନୁସାରେ ଫଳ ମିଳିନାହିଁ ବୋଲି ବିରକ୍ତ କିମ୍ବା ଅଧୀର ହୁଅ ନାହିଁ ।

୯ । ସକଳଠାରେ ବିଶ୍ୱାସ ରଖି ନିଶ୍ଚିନ୍ତ ଓ ନିର୍ଭୟ ହୁଅ । ନିର୍ଲଜ୍ଜ ହୁଅ ନାହିଁ । ବୁଦ୍ଧିରେ ବିଚାର କରି ପ୍ରତ୍ୟେକ କାର୍ଯ୍ୟ କର । ଧର୍ମରେ ରୁଚି ରଖ, ଦୁର୍ବଳ ଉପରେ ଦୟା ରଖ, ନାସ୍ତିକ ହୁଅନାହିଁ ଓ ଗର୍ବ କରନାହିଁ ।

୧୦ । ଶାନ୍ତ ହୁଅ; ଅଧିକ ଭ୍ରମଣ କର, କ୍ରୋଧକୁ ସମ୍ଭାଳ ଏବଂ କଳହରେ ପ୍ରବୃତ୍ତ ହୁଅନାହିଁ ।

୧୧ । ହଠାତ ପରଙ୍କର ପରଧନ ଆତ୍ମସାତ୍ କରିବାକୁ ଚେଷ୍ଟା କରନାହିଁ । ପରସ୍ତ୍ରୀ ଉପରେ କୁଦୃଷ୍ଟି ଦିଅନାହିଁ । ପରର ଧନ ଦେଖି ଈର୍ଷ୍ୟା କରନାହିଁ । କାହାକୁ ଦୁଃଖ କିମ୍ବା ପରିହାସ କର ନାହିଁ, ପାପ-କର୍ମ କରନାହିଁ ।

୧୨ । ଅଧର୍ମୀ, ବେଶ୍ୟାଗାମୀ, ଜୁଆଖେଳୁଆ, ଗୁଳିଖୋର ନୀଚ ପ୍ରକୃତି ଓ ଦୁଶ୍ଚରିତ୍ର ବ୍ୟକ୍ତିର ସଙ୍ଗ ପରିତ୍ୟାଗ କର ।

୧୩ । ମଳ, ମୂତ୍ର, ଶୁକ୍ର, ଢେକାରି, ନିଦ, ଛିଙ୍କ, ଅଧୋବାୟୁ, କାସ, ଶ୍ୱାସ, ହାଇ, ଲୁହ, ବାନ୍ତି ଓ ସର୍ଦ୍ଦି ଏମାନଙ୍କର ଆସିବାର ବେଗକୁ ବଳପୂର୍ବକ ରୋକ ଦିଅନାହିଁ ।

୧୪ । ପ୍ରତିଦିନ ଠିକ୍ ସମୟରେ ଓ ଠିକ୍ ମାତ୍ରାରେ ସାଧାସିଧା ଭୋଜନ କର । ଭୋଜନ ସମୟରେ ରାଗ, ଆମ୍ଳ, ମଧୁର, ଲୁଣି ଓ ଗରମ-ମସଲା ସାମାନ୍ୟ ପରିମାଣରେ ଖାଅ । ସଳଖରେ ବସି ପେଟରେ ଅସୁଖ ନ ହେବା ଭଳି ଭୋଜନ କର ।

୧୫ । ଠିକ୍ ସମୟରେ ଶୁଅ ଏବଂ ଠିକ୍ ସମୟରେ ଉଠ ।

୧୬ । ଠିକ୍ ସମୟରେ ମଳ ମୂତ୍ର ତ୍ୟାଗ କରିବାର ଅଭ୍ୟାସ ରଖ ।

୧୭ । ପ୍ରତ୍ୟେକ ବ୍ୟକ୍ତି ଉପରେ ପୂର୍ଣ୍ଣ ବିଶ୍ୱାସ କରନାହିଁ କିମ୍ବା ଅବିଶ୍ୱାସ ରଖ ନାହିଁ ।

୧୮ । ଲଙ୍ଗଳା ହୋଇ ସ୍ନାନ କିମ୍ବା ନିଦ୍ରା କରନାହିଁ । ରହସ୍ୟ କଥା କହନାହିଁ ।

୧୯ । ସମସ୍ତଙ୍କର ବ୍ୟବହାର ଯୋଗ୍ୟ ପରିଷ୍କାର ନିର୍ମଳ ସ୍ଥାନରେ ମଳ ମୂତ୍ର, ଛେପ ଖଙ୍କାର ଓ ଅଳିଆ ଅଶୁଦ୍ଧ ପକାଇ ଖରାପ କରନାହିଁ ।

୨୦ । ପଣ୍ଡିତ, ପୂଜ୍ୟ ଓ ବଡ଼ଲୋକ ସହିତ ବିବାଦ କରନାହିଁ ।

୨୧ । ମୂର୍ଖ, ରୋଗୀ, କ୍ରୋଧୀ ଓ ପାଗଳ ସହିତ ଜବାବ ସବାଲ କରନାହିଁ ।

୨୨। କାଳକୁ ଜଗି କର୍ମକର, ବୃଥାରେ ସମୟ ନଷ୍ଟ କରନାହିଁ ଏବଂ ନିଜର ନିୟମକୁ ସର୍ବଦା ପାଳନ କର।

୨୩। ପ୍ରାତଃକାଳରେ ଓ ସାୟଂକାଳରେ ଭୋଜନ, ନିଦ୍ରା, ସ୍ତ୍ରୀ ସହବାସ ଓ ଶାସ୍ତ୍ରପାଠ ଏସବୁ କାମ ନକରି ଈଶ୍ୱରଙ୍କୁ ଧ୍ୟାନକର।

୨୪। ଅପରିଚିତ; ମାୟାବୀ; ମୂର୍ଖ ବୈଦ୍ୟର ଔଷଧ ଖାଅନାହିଁ। ଶୁଣା ଶୁଣି ନକରି ମୂର୍ଖର ବ୍ୟବସ୍ଥା ମାନି ଚଳନାହିଁ ଏବଂ ବିନାବେଗରେ କଡ଼ା ଔଷଧ ଖାଅନାହିଁ।

୨୫। ବିଷମ ଓ ଖରାପ ଜାଗାରେ ଶୁଆ ବସା କରନାହିଁ। କୌଣସି ସମୟରେ ଠହ ଠହ କରି ଜୋରରେ ହସନାହିଁ।

୨୬। ଭୋଜନ ପରେ ହାତକୁ ଉତ୍ତମ ରୂପେ ଧୋଇ ନିର୍ମଳ ଅଙ୍ଗୁଳିରେ ସବୁଦିନ ଆଖି ଦୁଇଟାକୁ ପୋଛ।

୨୭। ଏକାନ୍ତରେ ଶାନ୍ତରେ ମୌନହୋଇ ବସି ଭୋଜନ କର। ଭୋଜନ ସମୟରେ ଥଣ୍ଡାଜଳ ପିଅ।

୨୮। କ୍ଷୁଧା ସମୟରେ ଖାଲି ପାଣି ପିଅନାହିଁ। ବଡ ତୃଷାହେବା ସମୟରେ ପାଣି ଅଳ୍ପ ଅଳ୍ପ ପିଅ।

୨୯। ଶରୀରରେ ଦୃଢ଼ତା, ହୃଦୟରେ ସହିଷ୍ଣୁତା, ମନରେ ପ୍ରସନ୍ନତା ଓ ଶରୀରରେ ନିର୍ମଳତା ରଖ। ସର୍ବଦା ସତ୍‌ସଙ୍ଗୀ ହୋଇ କାଳଯାପନ କର।

୩୦। ରୋଗ ସମ୍ବନ୍ଧେ ମନରେ ଚିନ୍ତା ଓ ଡର ରଖନାହିଁ। ସର୍ବଦା ଦୃଢଭାବରେ ଏହି ବିଶ୍ୱାସ ରଖଯେ- ତୁମେ କେବଳ ନିର୍ବିକାର ନିରଞ୍ଜନ ସଚ୍ଚିଦାନନ୍ଦ ପରମାତ୍ମା। ରୋଗ ଶୋକ ଏ ସବୁ କାଳ୍ପନିକ ଓ ମିଥ୍ୟା। ଏହି ଆତ୍ମବିଶ୍ୱାସହିଁ ଆରୋଗ୍ୟର ମୂଳମନ୍ତ୍ର। ଏହାକୁ କଦାପି ଭୁଲିବାକୁ ହେବନାହିଁ।

## ସାର୍ବଜନୀନ ସ୍ୱାସ୍ଥ୍ୟ ଓ ଆରୋଗ୍ୟନିମନ୍ତେ ଭୈଷଜ୍ୟ ଯଜ୍ଞ

ଗୋପଥ ବ୍ରାହ୍ମଣରେ ଲେଖାଅଛିଯେ--

"ଭୈଷଜ୍ୟ ଯଜ୍ଞା ବା ଏତେ, ଯଚ୍ଚାତୁର୍ମାସ୍ୟାନି, ତସ୍ମାଦ୍ ଋତୁସନ୍ଧିଷୁ ପ୍ରଯୁଜ୍ୟନ୍ତେ। ଋତୁସନ୍ଧିଷୁ ବୈ ବ୍ୟାଧିର୍ଜାୟତେ।"

ଅର୍ଥାତ୍ ଉକ୍ତ ସ୍ଥାନମାନଙ୍କରେ ବ୍ୟାଧି ଜାତ ହୁଏ । ଏଥିପାଇଁ ସେହି ସବୁ ବ୍ୟାଧିର ନିବାରଣାର୍ଥେ ଉକ୍ତ ସ୍ଥାନମାନଙ୍କରେ ଯଜ୍ଞ କରାଯାଇ ଥାଏ । ଯେଉଁ ବ୍ୟାଧି ଯେଉଁ ଋତୁରେ ହୁଏ, ସେହି ଋତୁରେ ତାର ଶାନ୍ତି ନିମନ୍ତେ ଯଜ୍ଞ କରାଯାଏ । ଏଥି ଦ୍ୱାରା ବାୟୁ ଶୁଦ୍ଧି ଓ ବ୍ୟାଧି ଶାନ୍ତି ହୋଇ ଥାଏ । ବ୍ୟାଧି ଶାନ୍ତି ନିମନ୍ତେ ଯେଉଁ ସବୁ ଔଷଧ ଦିଆଯାଏ, ପ୍ରାୟ ସେହିମାନଙ୍କୁ ହିଁ ରୋଗଶାନ୍ତି ନିମନ୍ତେ ଯଜ୍ଞରେ ହବନ କରାଯାଇଥାଏ । ଉକ୍ତ ବ୍ୟାପକ ସମ୍ପୁଟରେ ଯଜ୍ଞାନୁଷ୍ଠାନ କରିବା ବ୍ୟକ୍ତିଙ୍କୁ ଋତ୍ୱିକ୍ ବୋଲି ଯାଏ ।

ଶିକ୍ଷିତ ବ୍ୟକ୍ତି ମାନେହିଁ ଏହା ଜାଣନ୍ତି ଯେ- ସୂକ୍ଷ୍ମହିଁ ସ୍ଥୂଳର ଅଭିବ୍ୟକ୍ତି ହୁଏ । ସ୍ଥୂଳଦ୍ରବ୍ୟକୁ ନିଆଁରେ ଜାଳିଦେଲେ ତାହା ସେହି ସୂକ୍ଷ୍ମରୂପରେ ହିଁ ପରିଣତ ହୁଏ । ଜାଳିଦେବା ଦ୍ୱାରା କୌଣସି ବସ୍ତୁ ନଷ୍ଟ ହୁଏ ନାହିଁ । ସ୍ଥୂଳଦ୍ରବ୍ୟଠାରୁ ସୂକ୍ଷ୍ମଦ୍ରବ୍ୟ ଅଧିକ ଶକ୍ତିଶାଳୀ ଅଟେ । ଯଦି ତୋଳେ ଚର୍ଯ୍ୟ ସୁନାକୁ ୮° ଭାଗ କରି ଦୈନିକ ଦୁଇଥର ତାକୁ ୪୦ ଦିନ ପର୍ଯ୍ୟନ୍ତ ସେବନ କରାଯାଏ, ତଦ୍ୱାରା କୌଣସି ଉପକାର ହୁଏ ନାହିଁ । କିନ୍ତୁ ସେହି ସୁନାକୁ ଯଦି ଭସ୍ମ କରି ତାହାରୁ ଅଳ୍ପ ମାତ୍ରାରେ ସେତିକି ଦିନ ସେବନ କରାଯାଏ, ତାହା ହେଲେ ଅଗ୍ନି, ବଳ, ସ୍ମୃତି ଉତ୍ସାହ ଓ କାନ୍ତି ବୃଦ୍ଧି ହୋଇଥାଏ । ଏହିପରି ୧୦ ପୁଟୀ ଅଭ୍ର ଭସ୍ମଠାରୁ ଶତପୁଟୀ, ଶତପୁଟୀ ଠାରୁ ସହସ୍ର ପୁଟୀ ଅଭ୍ର ଭସ୍ମ ଅଧିକ ଫଳପ୍ରଦ ହୋଇଥାଏ । ଲଙ୍କାମରିଚକୁ ଖାଇଲେ କଷ୍ଟ ଜଣାଯାଏ ନାହିଁ, କିନ୍ତୁ ତାକୁ କୁଟି ଗୁଣ୍ଡ କରିଦେଲେ କିମ୍ବା ତାକୁ ନିଆଁରେ ପକାଇ ପୋଡ଼ିଦେଲେ ତାହାର ଗୁଣ ଧର୍ମ ବୃଦ୍ଧିଆଡ଼େ ଖେଳେଇ ହୋଇଯାଏ ଏବଂ ତା'ର ଚାରିପଟେ ବସିଥିବା ଲୋକଙ୍କ ଛିଙ୍କ ଓ କାଶ ଉଠେ । ଏହାର କାରଣ ଏହି ଯେ--ପୋଡ଼ିଦେବା ଦ୍ୱାରା ଦ୍ରବ୍ୟଟି ତା'ର ସ୍ଥୂଳ ରୂପ ତ୍ୟାଗ କରି ଶକ୍ତିମନ୍ତ ପରମାଣୁ ରୂପ ଧାରଣ କରେ । ସ୍ଥୂଳ ଔଷଧର ପ୍ରୟୋଗ ସୂକ୍ଷ୍ମ ବସ୍ତୁ ଉପରେ କାର୍ଯ୍ୟକାରୀ ହୁଏ ନାହିଁ । ସୂକ୍ଷ୍ମ ଜୀବାଣୁମାନଙ୍କୁ ମାରିବା ପାଇଁ ସୂକ୍ଷ୍ମ ଔଷଧହିଁ ପ୍ରୟୋଗ କାର୍ଯ୍ୟକାରୀ ହୋଇଥାଏ ।

ଯକ୍ଷ୍ମାଆଦି ସଂକ୍ରାମକ ରୋଗମାନଙ୍କର ଜୀବାଣୁ ଏତେ ସୂକ୍ଷ୍ମ ଯେ- ଯଦି [illegible] ହଜାର ଜୀବାଣୁ ଗୋଟିଏ ସେଣ୍ଟରେ ରଖାଯାଏ ତାହେଲେ

ବେଶ ପାଇଁ ଏକ ଇଞ୍ଚ ସ୍ଥାନ ମଧ୍ୟରେ ଅନ୍ତତ ଏବଂ ୧୦୦ ଶତନ୍ନ କୋଟି ଜୀବାଣୁଙ୍କୁ ଏକାଠି କରି ଲାଇନରେ ଠିଆ କରାଯାଏ, ତା'ହେଲେ ସେଇ ସମୁଦାୟର ଓଜନ ଗୋଟିଏ ଗୁଞ୍ଜାର ଓଜନରୁ ଅଧିକ ହେବ ନାହିଁ। ଏତେ ସୂକ୍ଷ୍ମ ଜୀବାଣୁମାନଙ୍କୁ ସ୍ଥୂଳ ଔଷଧର ପ୍ରୟୋଗରେ ମାରିବାକୁ ଚେଷ୍ଟା କଲେ, ତାଙ୍କର ସମ୍ପର୍କ ସ୍ଥାପନ ହିଁ ଦୁଷ୍କର ହୁଏ। କିନ୍ତୁ ହବନ ଓ ଧୂପନ ଦ୍ୱାରା ଓଷଧିମାନଙ୍କର ଅତ୍ୟନ୍ତ ସୂକ୍ଷ୍ମ ଭାଗ ଶ୍ୱାସ ପ୍ରଶ୍ୱାସ ଦ୍ୱାରା ରକ୍ତ ସଞ୍ଚାରରେ ପୂର୍ବ-ପୂର୍ବ ଜୈବିକ କୋଷ ପର୍ଯ୍ୟନ୍ତ; ଅର୍ଥାତ୍ ଜୀବାଣୁ ପର୍ଯ୍ୟନ୍ତ ରକ୍ତ ସଞ୍ଚାରରେ ପ୍ରବେଶ କରିଥାଏ। ଏ ଦୃଷ୍ଟିରୁ ହବନ ଓ ଧୂପନ ରୋଗଜୀବାଣୁ ନାଶ କରିବା ପାଇଁ ସର୍ବୋତ୍କୃଷ୍ଟ ଉପାୟ ବୋଲି ବୁଝିବାକୁ ହେବ।

## ଋତୁଭେଦରେ ଯଜ୍ଞପାଇଁ ସମିଧ

ବସନ୍ତରେ ଶମୀ, ଗ୍ରୀଷ୍ମରେ ଅଶ୍ୱତ୍ଥ, ବର୍ଷାରେ ବେଲ ଓ ପଲାଶ, ଶରତ୍ କାଳରେ ଜମ୍ବୁ ବା ଆମ୍ବ, ହେମନ୍ତରେ ଖଇର, ଶିଶିର ଋତୁରେ ଡ଼ିମ୍ବିରି ଓ ବରର ସମିଧ ପ୍ରଶସ୍ତ ଅଟେ।

## ଋତୁ ଭେଦରେ ହୋମ ଯୋଗ୍ୟ ଦ୍ରବ୍ୟ ଓ ତାର ମାତ୍ରା

### (କ) ବସନ୍ତ ଋତୁରେ

ତାଳୀଶ ପତ୍ର ୨ ଭାଗ, ତେଜପତ୍ର ୨ ଭାଗ, ଦ୍ରାକ୍ଷା ୫ ଭାଗ, ଲଜକୋଳୀର ସର୍ବାଙ୍ଗ ୧ ଭାଗ, ଶୀତଳ ମରିଚ ୨ ଭାଗ, ଗନ୍ଧଶୁଣ୍ଠୀ ୨ ଭାଗ, ଦେବଦାରୁ ୫ ଭାଗ, ଗୁଳୁଚି ୫ ଭାଗ, ଅଗରୁ ୨ ଭାଗ, ତଗରପାଦ ୨ ଭାଗ, ସୈନ୍ଧବ ୨ ଭାଗ, କୁଙ୍କୁମ ୧ ଭାଗରୁ ୬ ଅଂଶ, ଇନ୍ଦ୍ରଜବ ୨ ଭାଗ, ଗୁଗ୍ଗୁଳ ୫ ଭାଗ, ଚନ୍ଦନ (ଶ୍ୱେତ, ରକ୍ତ, ପୀତ) ୬ ଭାଗ, ଜାଇପତ୍ରୀ ୧ ଭାଗର ୬ ଅଂଶ, ଧାଇଫୁଲ ୨ ଭାଗ, ସଜଳସ ୫ ଭାଗ, ପୁଷ୍କରମୂଳ ୫ ଭାଗ, ମଞ୍ଜିଷ୍ଠା ୩ ଭାଗ, ଏକଅଙ୍ଗୀ ୨ ଭାଗ, ଗୁଡ଼ତ୍ୱକ ୨ ଭାଗ, ଡ଼ିମ୍ବିରିଛାଲି ୫ ଭାଗ, ଶଙ୍ଖପୁଷ୍ପୀ ୧ ଭାଗ, ତରାଇତା ୨ ଭାଗ, ଉଶୀରବେଣା ୨ ଭାଗ, ଗୋକ୍ଷୁର ୨ ଭାଗ, ଖଣ୍ଡ ୧୫ ଭାଗ, ଗାଈ ଘିଅ ୧୦ ଭାଗ।

## (ଖ) ଗ୍ରୀଷ୍ମ ଋତୁରେ

ଶାଳପର୍ଣ୍ଣୀ ୧ ଭାଗ, ବରଙ୍ଗ ୨ ଭାଗ, ଚକ୍ରମୂର୍ଦ୍ଧି ୭୪ ଭାଗ, କ୍ଷୀରକୋଳି ୫ ଭାଗ, ନାଗରମୋଥା ୭ ଭାଗ, ପୀତଚନ୍ଦନ ୭ ଭାଗ, ନୀଳକଞ୍ଜ ୨ ଭାଗ, କତକ ୨ ଭାଗ, ଛୋଟବଣ ୭ ଭାଗ, ଉଶୀରବେଣା ୨ ଭାଗ; ଗୁଳୁଚୀ ୨ ଭାଗ; ସଜଳସ ୨ ଭାଗ, ମୁସ୍ତକ ୨ ଭାଗ, ଲବଙ୍ଗ ୭ ଭାଗ; ଗୋଲାପଫୁଲ ୫୧ ଭାଗ; ଚନ୍ଦନ ୪ ଭାଗ; ତଗର ୭ ଭାଗ, ସୁପାରି ୫ ଭାଗ; ତାଳୀଶପତ୍ର ୭ ଭାଗ; ପଦ୍ମକାଠ ୭ ଭାଗ; ଦାରୁହଳଦୀ ୨ ଭାଗ; ରକ୍ତ-ଚନ୍ଦନ ୨ ଭାଗ; ମଞ୍ଜିଷ୍ଠା ୨ ଭାଗ; ଶୈଳଜ ୨୪ ଭାଗ; କୁଙ୍କୁମ ୧ ଭାଗର ୬ ଅଂଶ, ଜଟାମାଂସୀ ୨ ଭାଗ; ଅଳାଇଚ ୨ ଭାଗ; ଖଣ୍ଡ ୧୫ ଭାଗ ଓ ଗାଈଘିଅ ୧୦ ଭାଗ ।

## (ଗ) ବର୍ଷା ଋତୁରେ

କୃଷ୍ଣ ଅଗୁରୁ ୨ ଭାଗ; ଇନ୍ଦ୍ରଯବ ୭ ଭାଗ; ସଜଳସ ୭ ଭାଗ; ଉଗ୍ରପାଠ ୭ ଭାଗ; ଦେବଦାରୁ ୫ ଭାଗ; ଗୁଗ୍‌ଗୁଳ ୫ ଭାଗ; ଗାମ୍ଭାରୀ ୫ ଭାଗ; ଜାଇଫଳ ୨ ଭାଗ; ତେଜପତ୍ର ୭ ଭାଗ; ଚନ୍ଦ୍ରଶୁଣ୍ଠୀ ୭ ଭାଗ; ବେଲ ୨ ଭାଗ; ଗୁଳୁଚ ୭ ଭାଗ; ତୁଳସୀମଞ୍ଜରୀ ୩ ଭାଗ; ବରଙ୍ଗ ୨ ଭାଗ ଜଟାମାଂସୀ ୫ ଭାଗ; ଗୁଲୁରଣ୍ଡି ୧ ଭାଗ; ବଚ ୫ ଭାଗ; ଚନ୍ଦନଗୁଣ୍ଡ ୫ ଭାଗ; ନାଗେଶ୍ୱର ୨ ଭାଗ; ଟିବାଳତା ୨ ଭାଗ; ଦ୍ରାକ୍ଷା ୫ ଭାଗ ମୋଚରସ ୨ ଭାଗ; ନମପନ ୫ ଭାଗ; ଘିଅ ୧୦ ଭାଗ ଓ ଖଣ୍ଡ ୧୫ ଭାଗ ।

## (ଘ) ଶରଦୃତୁରେ

ଚନ୍ଦନଗୁଣ୍ଡ ୫ ଭାଗ; ପୀତଚନ୍ଦନ ୨ ଭାଗ; ଗୁଗ୍‌ଗୁଳ ୫ ଭାଗ; ନାଗେଶ୍ୱର ୭ ଭାଗ; ଅଳାଇଚ ୨ ଭାଗ; ଗୁଳୁଚୀ ୨ ଭାଗ; କ୍ଷୀରକୋଳି ୫ ଭାଗ; ଡିମ୍ବିଚୁଳି ୫ ଭାଗ; ଚନ ୨ ଭାଗ; ମୋଚରସ ୭ ଭାଗ, କର୍ପୂରହଳଦୀ ୫ ଭାଗ, ମାପଡ଼ା ୨ ଭାଗ, ଅଗୁରୁ ୨ ଭାଗ, ବ୍ରହ୍ମଯଷ୍ଟୀ ୨ ଭାଗ; ଇନ୍ଦ୍ରଯବ ୨ ଭାଗ; ଅଶ୍ୱଗନ୍ଧା ୨ ଭାଗ; ଶିତଳାମରିଚ ୭ ଭାଗ, ଜାଇଫଳ ୭ ଭାଗ; ତେଜପତ୍ର ୭ ଭାଗ; ଚବଇନ୍ଦ୍ରା ୨ ଭାଗ; କୁଙ୍କୁମ ୧ ଭାଗର ଷଷ୍ଠାଂଶ, ଦ୍ରାକ୍ଷା ୬ ଭାଗ; କୁରୁଟବଳି ୫ ଭାଗ, ତାଳମଖନା ୨ ଭାଗ; ଡାସକପୂର ୧ ଭାଗ, ଲଆ ୨ ଭାଗ, ଚନ୍ଦ୍ରଶୁଣ୍ଠୀ ୨୫ ଭାଗ, ଘିଅ ୧୦ ଭାଗ ଓ ଖଣ୍ଡ ୧୫ ଭାଗ ।

## (ଙ) ହେମନ୍ତ ଋତୁରେ

କୁଡ଼ ୧ଭାଗ, ତାଳମୂଳୀ ୨ଭାଗ; ଘୋଡ଼ାବଚ ୨ଭାଗ; ପାଟଙ୍ଗ ୨ଭାଗ, କର୍ପୂର ୧ଭାଗ, କମ୍ବୁକାଦଳଣି ୪ଭାଗ; ଗୁଳୁଚି ୧ଭାଗ; ଚଟୋଳଚନ୍ଦ ୧ଭାଗ; ଗୁଡ଼ଲ୍କ୍ ୧ ଭାଗ; ବ୍ରହ୍ମଯଷ୍ଟୀ ୨ ଭାଗ; ସୌମ ୨ ଭାଗ, ଦ୍ରାକ୍ଷା ୪୪ଭାଗ, ଗୁଗ୍ଗୁଳ ୫ଭାଗ; ଆଖୋଟବ୍ରଠ ଫଳ ୪ଭାଗ; ପୁଷ୍କରମୂଳ ୧ଭାଗ; ଦ୍ରାକ୍ଷା ୬ଭାଗ; ଗୋଖର ୧ ଭାଗ, ବାଇଡ଼ଙ୍କ ମଞ୍ଜୀ ୧ ଭାଗ, ବାଦାମ ୧ ଭାଗ, ମାଠିମଧୁ ୧ ଭାଗ, ସର୍ଜି ୫ ଭାଗ, ଜାଇଫଳୀ ୭ଭାଗ; ରକ୍ତଚନ୍ଦନ ୨ଭାଗ, ତାଳୀଶପତ୍ର ୧ ଭାଗ, ଖଣ୍ଡ ୫ ଭାଗ ଓ ଘିଅ ୧୦ ଭାଗ ।

## (ଚ) ଶିଶିର ଋତୁରେ

ଆଖୋଟବ୍ଲଟ ୪ଭାଗ; ଗନ୍ଧଶୁଣ୍ଠୀ ୧ଭାଗ, ଲବଙ୍ଗ ୧ଭାଗ; ଅଳାଇଚ ୬ଭାଗ; ମାଠିମଧୁ ୧ଭାଗ; ମୋଚରସ ୧ଭାଗ; ଗୁଳୁଚି ୧ଭାଗ; ଦ୍ରାକ୍ଷା ୧ ଭାଗ; ରେଣୁକା ୧ଭାଗ, ରାଶି ୪ଭାଗ; ଚିତ୍ରକପତ୍ର ୧ଭାଗ, ଚନ୍ଦନ ୪ଭାଗ; ଚାଗଇଚା ୧ଭାଗ; ଦ୍ରାକ୍ଷା ୪ଭାଗ; ତୁଳସୀମଞ୍ଜୀ ୪ଭାଗ; ଗୁଗ୍ଗୁଳ ୩ଭାଗ; କ୍ଷୀରକାକୋଳି ୧ ଭାଗ; କାକଡ଼ାଶୃଙ୍ଗୀ ୧ଭାଗ; ଶତାବରୀ ୧ଭାଗ ଦାରୁହଳଦୀ ୧ ଭାଗ; ଶଙ୍ଖପୁଷ୍ପୀ ୧ଭାଗ; ପଦ୍ମକାଠ ୧ଭାଗ; ବାଇଡ଼ଙ୍କ ମଞ୍ଜୀ ୧ ଭାଗ; ଜଟାମାଂସୀ ୧ଭାଗ; ଭୂର୍ଜପତ୍ର ୧ଭାଗ; ସର୍ଜରସ ୫ଭାଗ; ଗୁଆ ୧ଭାଗ; ଘିଅ ୧୧୪ ଭାଗ ଓ ଖଣ୍ଡ ୧୫ ଭାଗ ।

## ଅଭାବରେ ଗ୍ରାହ୍ୟ ଦ୍ରବ୍ୟ

ଗାଈଘିଅ ଅଭାବରେ ମେଣ୍ଢାଘିଅ କିମ୍ବା ଛେଳି ଘିଅ । ଏହା ନ ମିଳିଲେ ରାଶିତେଲରେ ହୋମ କରିବ ।

## ଆପତ୍କାଳୀନ ହୋମ

ଶତପଥ ବ୍ରାହ୍ମଣ ୧୧।୧।୩।୪ରେ ଆପତ୍କାଳୀନ ହୋମ ସମ୍ବନ୍ଧେ ଯାଜ୍ଞବଲ୍କ୍ୟଙ୍କର ମତ ଏହି ଯେ - ଆପତ୍କାଳୀନ ହୋମରେ ଘିଅ ଦୁଧ ନମିଳିଲେ ଧାନ କିଂବା ଯବଧାନରେ ହୋମ କରିବ । ଏହା ନମିଳିଲେ ଉପରୋକ୍ତ ଔଷଧି ଦ୍ୱାରା; ଔଷଧିର ଅଭାବରେ ବଟ ଉସପ୍ତ କାଠ ଦ୍ୱାରା-

ଏହାର ଅଭାବରେ ଜଳ ଏବଂ ଜଳର ଅଭାବରେ ଅପଣାର ଶ୍ରଦ୍ଧା ଓ ବିଶ୍ୱାସ ଦ୍ୱାରା ହୋମ କରିବ । ଋଗ୍‌ବେଦରେ ଋଷି ଅଗ୍ନିଙ୍କୁ ପ୍ରାର୍ଥନା କରିଛନ୍ତି ଯେ--

"ନ ହି ମେ ଅସ୍ତ୍ୟଘ୍ନ୍ୟା ନ ସ୍ୱଧିତିର୍ବନନ୍ୱତି
ଅଥୈ ତାଦୃଗ୍ ଭରାମିତେ ।; (ଋଗ୍‌ବେଦ--୮।୧୦୨।୧୯।୨୦)

ଅର୍ଥାତ୍ ହେ ଅଗ୍ନିଦେବ ! ମୋର ପାଖରେ ଘିଅ ଉତ୍ପନ୍ନ କରିବାର ଉଚିତ ଗାଈ ନାହିଁ । ଗଛ କାଟି ସମିଧ ଆଣିବା ପାଇଁ କୁରାଢ଼ୀ ନାହିଁ । ଅତଏବ ମୁଁ ଯାହାକିଛି ଆଣିଛି, ଏହାକୁ ଗ୍ରହଣ କର ।

ପ୍ରଥମେ ଅଗ୍ନିଙ୍କୁ ଚନ୍ଦନ ପୁଷ୍ପାଦି ଦ୍ୱାରା ପୂଜା କରି ତଳ ଲିଖିତ ଅଗ୍ନି ଗାୟତ୍ରୀ ମନ୍ତ୍ର କିମ୍ବା ସୂର୍ଯ୍ୟ ଗାୟତ୍ରୀ ମନ୍ତ୍ରରେ ଶହେ ଆଠଥର ବିଭିନ୍ନ ରୋଗରେ ବିଭିନ୍ନ ପ୍ରକାର ଔଷଧି ଯୋଗରେ ହୋମ କରିବ ।

## ଅଗ୍ନି ଗାୟତ୍ରୀ ମନ୍ତ୍ର

ଓଁ ଭୂର୍ଭୁବଃସ୍ୱଃ ମହାଜ୍ୱାଲାୟ ବିଦ୍ମହେ । ଅଗ୍ନିଦେବାୟ ଧୀମହି, ତନ୍ନଃ ଅଗ୍ନିଃ ପ୍ରଚୋଦୟାତ୍ ।

ଏହି ମନ୍ତ୍ର ପଢ଼ି ବିଭିନ୍ନ ଦ୍ରବ୍ୟପଦାର୍ଥ ସହିତ ପଳାଶ କାଠରେ ହୋମ କଲେ ବ୍ରହ୍ମତେଜ ଲାଭହୁଏ । ପଳାଶ ଫୁଲରେ ହୋମ କଲେ ସକଳ ଅଭୀଷ୍ଟ ସିଦ୍ଧ ହୁଏ ।

## ସୂର୍ଯ୍ୟ ଗାୟତ୍ରୀ

ଓଁ ଭୂର୍ଭୁବଃସ୍ୱଃ ଭାସ୍କରାୟ ବିଦ୍ମହେ ଦିବାକରାୟ ଧୀମହି ତନ୍ନଃ ସୂର୍ଯ୍ୟଃ ପ୍ରଚୋଦୟାତ୍ । ଏହା ସମସ୍ତ ରୋଗରେ ପ୍ରୟୋଗ ଯୋଗ୍ୟ ମନ୍ତ୍ର ।

## ସମସ୍ତ ରୋଗେ ହବନ ସାମଗ୍ରୀ

ଅଗରୁ, ତଗରପାଦ, ଦେବଦାରୁ; ଚନ୍ଦନ; ରକ୍ତଚନ୍ଦନ; ଗୁଗ୍‌ଗୁଳ; ଜାଇଫଳ; ଲବଙ୍ଗ; ଗୁଜୁରାତି ଅଳେଇଚ; ଅଶ୍ୱଗନ୍ଧା; ଏହି ଦଶ ଦ୍ରବ୍ୟ ସମାନ ଭାଗରେ ଗ୍ରହଣ କରି ଏଥି ସହିତ ବିଶେଷ ରୋଗର ବିଶେଷ ଔଷଧି ସବୁ ଏବେ ମିଶାଇବାକୁ ହେବ । ମିଶ୍ରିତ ସମସ୍ତ ଔଷଧର ଦଶଭାଗ ଖଣ୍ଡ ଏବଂ ଚଉଭାଗ ଘିଅ ମିଶାଇବାକୁ ହେବ ।

## ବିଶେଷ ରୋଗରେ ବିଶେଷ ହବନ ସାମଗ୍ରୀ

୧ । **ଶୀତଜ୍ୱରରେ**-ପଟୋଳପତ୍ର; ମୁଥା, କଟୁକୀ, ନିମଛାଲି; ଗୁଳୁଚି, କେନ୍ଦୁଆଁ ଛାଲି, ଗିଲ ନିମ୍ବଫଳ ।

୨ । **ଦାହଜ୍ୱରରେ**-ଇନ୍ଦ୍ରଯବ, ପଟୋଳପତ୍ର; ନିମ୍ବମଞ୍ଜି; କୁନ୍ଦବେଲ; ଶାସ୍ତାମାଶା; କଳାଜୀରା; ଝୁଣୁଝୁଣିଆ; ଅଳାଇଚ ।

୩ । **କାସରୋଗେ**- ଯଠିମଧୁ; ପାନ; ହଳ[illegible]; ଜାଟାମାଂସୀ; ରେଣୁ; ବାହାଡ଼ା ।

୪ । **ଅତିସାର ରୋଗେ**--ଜୀରା, ଗୁଡ଼ୁଚିକ; ଅଜମୋଦା, ବେଲଶୁଣ୍ଠି; ଶତାପାରୁ; ଅତସି; ଶୁଣ୍ଠୀ; ଚୁଇଁକାଠ ।

୫ । **ଅଜୀର୍ଣ୍ଣେ** ତାଳୀଶପତ୍ର; ନେଉଜପତ୍ର; ପୋଦିନା; ସୁନାରିଛାଲି; ହରଡ଼ା; ନାଗେଶ୍ୱର; କଳାଜୀରା; ଜୀରା ।

୬ । **ବାନ୍ତିରୋଗେ**--ବିଡ଼ଙ୍ଗ, ପିପ୍ପଳୀ; ପିପ୍ପଳୀମୂଳ; ଗଲଗମଞ୍ଜୀ; ତିନ୍ତୁଡ଼ି; ଲେମ୍ବୁମୂଳ; ଆମ୍ବ କୋଇଲି; ପ୍ରିୟଙ୍ଗୁ ।

୭ । **ଅର୍ଶରୋଗେ**- ନାଗେଶ୍ୱର; ପୁରୁଷକଫଳ; ଦୁରାଲଭା, ଦାରୁହଳଦୀ, ନିମ୍ବମଞ୍ଜି; ମୂଳାମଞ୍ଜି, ଜାଇପତ୍ରୀ, ପଦ୍ମକେଶର, ଡିମ୍ବିରି ଫଳ ।

୮ । **ପିତ୍ତପ୍ରକୋପେ**--ଧନିଆଁ, ସୌଫ; ଗୋଲାପଫୁଲ, ଅଁଳା; ଉଶୀର ବେଣା; ଆମ୍ବମଞ୍ଜି ।

୯ । **ପ୍ଲୀହାରୋଗେ** ବଳ; ପିପ୍ପଳୀମୂଳ, ଶ୍ୱେତପୁନର୍ଣ୍ଣୀ, କଲରାମୂଳ; ଲୁଣୀଲୁଣିକା, ଶିମୂଳିଫୁଲ, ଜାମଛାଲି, ଅପାମାରଙ୍ଗ ।

୧୦ । **ବସନ୍ତରୋଗେ** -ମଞ୍ଜିଷ୍ଠାରେଚ; ନିମଛାଲି; ହଳଦୀ; କ୍ଷୀରକୋଳି; ଜାଇପତ୍ରୀ; ବାଉଁଶଚେର; ଖଇରଛାଲି; ଫାମ୍ପୁଣିଆ ।

୧୧ । **ସର୍ଦ୍ଦିରୋଗେ**—ଦୁବ, ଆମ୍ବମଞ୍ଜି, ସଉଫ; ବାହାଡ଼ାମଞ୍ଜି, ଧନିଆଁ ।

୧୨ । **ପ୍ରମେହେ**—ତାଳମଖାନା, ତାଳମୂଳୀ, ବଡ଼ ଗୋଖରୁ; ବାଇଡ଼ଙ୍କ ମଞ୍ଜି, ଗୁଆ, ବାବଲ ଫଳ, ଶତାବରୀ, ଗୁଳୁଚି ।

**୧୩ । ପ୍ରଦରେ**—ଚନ୍ଦୁମାଡ଼ି; ଡ଼ମ୍ବିର ଫୁଲ, ଅଶୋକ ଛାଲି, ଲୋଧ; ଚନ୍ଦ୍ରକେଶର; ନାଗଫଳ; ଅର୍ଜ୍ଜୁନଛାଲି; କୁରୁଟବଳି ।

**୧୪ । ବାତରୋଗେ**—ଘିକୁଆଁରୀ ମୂଳ; ରସୁନ; ସଜନାଛାଲି; ମେଥୀ, ପୁରୁଣୀ, ତେଜପତ୍ର ।

**୧୫ । ବୁଦ୍ଧିମାନ୍ଦ୍ୟେ**--ଶତାବରୀ; ବ୍ରାହ୍ମୀ; ବୃହଦ୍ଦନ୍ତୀ; ଭୂଇଁ-କଦମ୍ବ, ଶଙ୍ଖପୁଷ୍ପୀ, ମଣ୍ଡୂକପର୍ଣ୍ଣୀ ; ବଚ, ଟେଉଁଟେଉଁକା ।

**୧୬ । ବିଷନିବାରଣେ**--ବଣକୁଳଥୀ ମଞ୍ଜି; ଅପାମାର୍ଗ; ଗୋଠ-କାକୁଡ଼ି, ଶିଳମଞ୍ଜି; ଦାରୁହଳଦୀ, ସୁସୁନିଆ, କଟାମଞ୍ଜି; ରକ୍ତଚନ୍ଦନ ।

**୧୭ । ରକ୍ତବିକାରେ** -କୁନ୍ଦଟବେଳି; ସୁଗନ୍ଧି; (ତେରମାରୁ) କେରୁଆଁ ଛାଲି; ବାସଙ୍ଗ; ଭାଲିଆ; ମଞ୍ଜିଷ୍ଠା; କଟୁକୀ; ରାସ୍ନା ।

**୧୮ । ଚର୍ମରୋଗେ**--ଶିଉଳାମରିଚ; ଗୋରୋଚନ; ନିମ୍ବଫୁଲ, କୁଇପତ୍ର, ଦାରୁହଳଦୀ; କର୍ପୂର; ମେଥି; ଚନ୍ଦ୍ରକାଠ ।

**୧୯ ।ମସ୍ତିଷ୍କ ରୋଗେ**--ବରକୋଳିଚୋପ; ବଉଳ ଛାଲି;ଡମ୍ବରୁ ପତ୍ର; ବିଲୁଲି ରସ; କାକଜଂଘା (ଟୋଙ୍କାରୁ) ବହଡ଼ଫଳ; ଖୀରକୋଳି; ଗୁଳୁଚି ।

**୨୦ । ବାଳରୋଗେ** ଅଳ୍ପସି; କାକଡ଼ାଶୃଙ୍ଗୀ, ମୁଥା, ପିପ୍ପଳୀ, ଧନିଆଁ ; ଧାତୁକୀଫୁଲ; ଯଷ୍ଠିମଧୁ ।

**୨୧ । ଗର୍ଭପୋଷଣେ**--ସୌମ୍ପ; ଧନିଆ; ଗୋଲାପଫୁଲ; ଉଶୀରବେଣା; ଆମ୍ବମଞ୍ଜି; ଦ୍ରାକ୍ଷା; ଇନ୍ଦ୍ରଯବ ।

**୨୨ । କ୍ଷୟରୋଗେ**--ଲୁଣିଲୁଣିକା; ଜୀବନ୍ତୀ; ଜଟାମାଂସୀ; ଗୁଳୁଚି; ଜାଇପତ୍ରୀ; ଶାଳପର୍ଣ୍ଣୀ; କୃଷ୍ଣପର୍ଣ୍ଣୀ; ଅଁଳା ।

## ହୋମ ଶେଷରେ ଅଗ୍ନିଙ୍କ ନିକଟରେ ପ୍ରାର୍ଥନା

ଶ୍ରଦ୍ଧାଂ ମେଧାଂ ଯଶଃ ପ୍ରଜ୍ଞାଂ ବିଦ୍ୟାଂ ପୁଷ୍ଟିଂ ଶ୍ରିୟଂ ବଳମ୍
ତେଜଆୟୁଷ୍ୟମାରୋଗ୍ୟଂ ଦେହି ମେ ହବ୍ୟବାହନ ।

## କାଶ୍ୟପ ସଂହିତାର ଧୂପକଳ୍ପ

୧ କୌମାର ଧୂପ    ୨ ଦଶାଙ୍ଗ ଧୂପ    ୩ ଶ୍ରୀ ଧୂପ

୪ ଅପସ୍ମାର ଗ୍ରହାପହ ଧୂପ
୫ ମୋହ ଧୂପ
୬ ଗ୍ରହଘ୍ନ ଧୂପ
୭ ମାହେଶ୍ୱର ଧୂପ
୮ ବାରୁଣ ଧୂପ
୯ ପୁଣ୍ୟ ଧୂପ
୧୦ ଭଦ୍ରଙ୍କର ଧୂପ
୧୧ ଚତୁରଙ୍ଗିକ ଧୂପ
୧୨ ରକ୍ଷୋଘ୍ନ ଧୂପ
୧୩ ରକ୍ଷୋଘ୍ନ ଧୂପ
୧୪ ସାଧକ ଧୂପ
୧୫ ଶିଶୁଜ ଧୂପ
୧୬ ପ୍ରେତ ନିବାରଣ ଧୂପ
୧୭ କର୍ଣ୍ଣ ଧୂପ
୧୮ ବ୍ରାହ୍ମ ଧୂପ
୧୯ ପ୍ରେତ ଧୂପ
୨୦ ଆଗ୍ନେୟ ଧୂପ

## ଧୂପନ ସମୟରେ ପ୍ରଯୁକ୍ତମନ୍ତ୍ର ଯଥା:--

ଅଗ୍ନିସ୍ତ୍ୱା ଧୂପୟତୁ; ବ୍ରହ୍ମାତ୍ୱା ଧୂପୟତୁ, ଶିବସ୍ତ୍ୱା ଧୂପୟନ୍ତୁ,
ବସବସ୍ତ୍ୱା ଧୂପୟନ୍ତୁ, ରୁଦ୍ରାସ୍ତ୍ୱା ଧୂପୟନ୍ତୁ, ଆଦିତ୍ୟାସ୍ତ୍ୱା ଧୂପୟନ୍ତୁ,
ମରୁତସ୍ତ୍ୱା ଧୂପୟନ୍ତୁ, ସାଧ୍ୟାସ୍ତ୍ୱା ଧୂପୟନ୍ତୁ,ଦେବାନୁଭବାସ୍ତ୍ୱା ଧୂପୟନ୍ତୁ,
ବିଶ୍ୱେତ୍ୱାଦେବା ଧୂପୟନ୍ତୁ, ଛନ୍ଦାଂସିତ୍ୱା ଧୂପୟନ୍ତୁ ପୃଥିବୀତ୍ୱା
ଧୂପୟତୁ, ଦ୍ୟୌସ୍ତ୍ୱା ଧୂପୟତୁ;ଅନ୍ତରିକ୍ଷଂତ୍ୱା ଧୂପୟତୁ, ଦିଶସ୍ତ୍ୱା
ଧୂପୟନ୍ତୁ, ଦିଶାଂତ୍ୱାପତୟୋ ଧୂପୟନ୍ତୁ, ଦେବଗଣାସ୍ତ୍ୱା ଧୂପୟନ୍ତୁ, ଶିବସ୍ତ୍ୱା
ପବମାନୋ ଧୂପୟତୁ, ମିତ୍ରସ୍ତ୍ୱା ସବିତାସ୍ତେଜସା ଧୂପୟତୁ, ଚନ୍ଦ୍ରସ୍ତ୍ୱା
ସୋମ ଧୂପୟତୁ, ନକ୍ଷତ୍ରାଣି ତ୍ୱା ସ୍ୱପ୍ରଭାଭିସ୍ତୁ ଧୂପୟନ୍ତୁ, ନକ୍ଷତ୍ରାଣାଂତ୍ୱା
ଦେବତାଃ ସୁମନସେ ଧୂପୟନ୍ତୁ, ଅହୋରାତ୍ରାଣି ତ୍ୱା ଶାନ୍ତସେ ଧୂପୟନ୍ତୁ ।
ଋତବସ୍ତ୍ୱା ପୁଣ୍ୟାୟ କର୍ମଣି ଧୂପୟନ୍ତୁ, ସମ୍ବତ୍ସରସ୍ତ୍ୱାପୁଷ୍ଟେ ବ୍ରହ୍ମବର୍ଚ୍ଚସେ
ବାଳାୟ ଧୂପୟନ୍ତୁ, ପ୍ରଜାପତିସ୍ତ୍ୱା ସୁପ୍ରଜାତାୟ ଧୂପୟତୁ, ଅଶ୍ୱିନୌତ୍ୱା-
ରୋଗ୍ୟାୟ ଦୀର୍ଘାୟୁଷ୍ଟ୍ୱାୟ ସହସେ ତେଜସେ ଧୂପୟତାମ୍ । ମାତରସ୍ତ୍ୱାସ୍ୱ
ହା ଧୂପୟନ୍ତୁ; ପିତରସ୍ତ୍ୱା ତନୋରଚ୍ଛେଦାୟ ସ୍ୱଧୟେ ଧୂପୟନ୍ତୁ,କୁମାରସ୍ତ୍ୱା
କୌମାରାୟ ବସବେ ଧୂପୟନ୍ତୁ; ଶାଖସ୍ତ୍ୱା ଯୌବନାୟ ଧୂପୟତୁ,ବିଶାଖସ୍ତ୍ୱା
ମଧ୍ୟାୟ ବୟସେ ଧୂପୟତୁ, ନୈଗମେୟସ୍ତ୍ୱା ଜରସେ ଧୂପୟତୁ, ସର୍ବେ
ତ୍ୱା ଦେବା ଦିବ୍ୟାୟ ଧାମ୍ନେ ଧୂପୟନ୍ତୁ,ସର୍ବେ ତ୍ୱା ଋଷୟୋ ବ୍ରହ୍ମବର୍ଚ୍ଚସାୟ
ଧୂପୟନ୍ତୁ, ସର୍ବାସ୍ତ୍ୱା ନଦ୍ୟଃ ସୁପୀତାୟ :ଧୂପୟନ୍ତୁ, ସର୍ବେତ୍ୱା ପର୍ବତାଃ
ସ୍ଥୈର୍ଯ୍ୟାୟ ଧୂପୟନ୍ତୁ; ସର୍ବାସ୍ତ୍ୱା ଓଷଧୟୋ ଅନ୍ନାଦ୍ୟାୟ ଧୂପୟନ୍ତୁ; ସର୍ବେ
ତ୍ୱା ବନସ୍ପତୟଃ ସୁବୃତ୍ତାନାଂ ଶ୍ରେଷ୍ଠ୍ୟାୟ ଧୂପୟନ୍ତୁ; ସର୍ବେ ତ୍ୱା ପଶବଃ
ଶକ୍ତ୍ୟୈ ଶାନ୍ତ୍ୟୈ ଧୂପୟନ୍ତୁ । ସର୍ବେଣ ତ୍ୱା ଧୂପପ୍ରାମୃତେନ ତ୍ୱା ଧୂପୟା

ମୂଷିତ ସନ୍ଧ୍ୟାଭ୍ୟାଂ ତ୍ୱା ଧୂପୟାମି ନମୋ ଦେବେଭ୍ୟ ଇତି ଜପେତ୍ । ଇତି ହ ସ୍ମାହ ଭଗବାନ୍ କଶ୍ୟପଃ । ଇତି ଧୂପନ କଳ୍ପଃ (କାଶ୍ୟପ ସଂହିତା)

## ଦେବ ପୂଜାର୍ଥେ ଧୂପ

୧ ଷଡଙ୍ଗ ଧୂପ -ଶାଳ, ଘିଅ; ମହୁ; ଗୁଗ୍ଗୁଳ; ଅଗରୁ ଓ ଚନ୍ଦନ ।

୨ ଷୋଡ଼ଶାଙ୍ଗ ଧୂପ--କୁଡ଼; ନଳଦା, ..., ଜଟାମାଂସୀ, ଗୁଗ୍ଗୁଳ ସରଳକାଠ, ଦେବଦାରୁ, ନଡ଼ଜନନ, ଚନ୍ଦନ, କୁନ୍ଦୁରୁବେଳ, ଅଗରୁ, ସର୍ଜ୍ଜରସ, ମୁଥା, ନଖୀ, ଜଳ ଓ ଶୈଳଜ ।

୩ ଦଶାଙ୍ଗ ଧୂପ--ମୁଥା, ଚନ୍ଦନଗୁଣ୍ଡ, ଗୁଗ୍ଗୁଳ; ଅଗରୁ; ଶୈଳଜ; ଦେବଦାରୁ, ସର୍ଜ୍ଜରସ, ସୋରିଷ, ଘିଅ ଓ ମହୁ ।

## ଆୟୁର୍ବେଦୋକ୍ତ କେତେଗୋଟି ଧୂପ

**୨୩ । ଅପସ୍ମାର ନାଶକ ଧୂପ** ମନୁଷ୍ୟଦ୍ୟହାନ୍ତ, ବଚ, ହିଙ୍ଗୁ, ରସୁଣ, ସାପକାତି ଓ ଗନ୍ଧମ ଏସବୁ ଦ୍ରବ୍ୟ ଘିଅ ସହିତ ବାଟି ଧୂପ ଦେଲେ ଅପସ୍ମାର ନଷ୍ଟ ହୁଏ । (ର.ର.)

**୨୪ । ଉନ୍ମାଦ ଧୂପ**--ନିମପତ୍ର, ବଚ, ହିଙ୍ଗୁ, ସାପକାତି ଓ ସୋରିଷ ଏସବୁ ଦ୍ରବ୍ୟର ଧୂପ ଭୂତପ୍ରେତ ଡାକିନୀ ଉପଦ୍ରବ ଓ ଉନ୍ମାଦ ରୋଗ ହରଣ କରେ । (ର.ର.)

**୨୫ । ଅଷ୍ଟାଙ୍ଗ ଧୂପ**--ଗୁଗ୍ଗୁଳ, ନିମପତ୍ର, ବଚ, କୁଡ଼, ହରିତକୀ, ଶ୍ୱେତସୋରିଷ ଓ ଯବଧାନ ଏହି ଆଠଟି ଦ୍ରବ୍ୟର ଧୂପଗ୍ରହଣ-କଲେ ସକଳ ପ୍ରକାର ବିଷମଜ୍ୱର ପ୍ରଶମିତ ହୁଏ ।

**୨୬ । ଅପରାଜିତା ଧୂପ**--ଗୁଗ୍ଗୁଳ, ଧନ୍ୱନ୍ତରୀ ଚୂର୍ଣ୍ଣ, ବଚ, ସର୍ଜ୍ଜରସ, ନିମପତ୍ର, ଅଗରୁ ଓ ଦେବଦାରୁ, ଏସବୁ ଦ୍ରବ୍ୟର ଧୂପ ସକଳ ପ୍ରକାର ପୁରାତନ ଜ୍ୱର ନାଶକ ।

**୨୭ । ଅଜାଦ୍ୟଧୂପ**--ଛେଳିଗୁଳି, ଛେଳିଲୋମ, ବଚ, କୁଡ଼, ଗୁଗ୍ଗୁଳ, ନିମପତ୍ର ଓ ମହୁ ଏସବୁ ଦ୍ରବ୍ୟର ଧୂପ ବିଷମଜ୍ୱର ନାଶକ ।

**୨୮ । ଅଶ୍ୱଗନ୍ଧାଦ୍ୟ ଧୂପ**--ଅଶ୍ୱଗନ୍ଧମୂଳ, ବେଗୁନିଆଁ, ଢେଙ୍ଗା-ଢେଙ୍ଗା ଓ ପିପଳୀ ଏହିସବୁ ଦ୍ରବ୍ୟର ଧୂପ ଅର୍ଶର ବେଦନା ପ୍ରଶମନ କରେ ।

**୨୯ । ମାହେଶ୍ୱର ଧୂପ** ହିଙ୍ଗୁଳ, ଦେବଦାରୁ, ସରଳକାଠ, ଗାଈଘିଅ, ଗୋରୋଚନା, ଧନିଆଁ ଘାସ, ଛଡ଼ାବେଲ ପତ୍ର, କଟ୍କି, ଘୋଡ ସୋରିଷ, କମଳଜ, ମୟୂରପୁଚ୍ଛ, ଯାଉକାଣ୍ଡି, ବରାଢ଼ି ବସ୍ତ୍ର, ଗୋରୁ ଶିଙ୍ଘ, ପଟ୍ଟ ଆସନ, ଭେଳା, ଜେଣାଭେଳା, ବଚ, କପାମଞ୍ଜୀ, ତସୁ, ଛେଳିଲୋମ, ଖଳଆ ବସ୍ତ୍ର ଓ ହାଣ୍ଡିକାନ୍ତ ଏସବୁ ଦ୍ରବ୍ୟ ଏକାଠେ କୁଟି ଛେଳି ମୂତ୍ରରେ ବାଟି ଶୁଖାଇବ । ମାଟି ପାତ୍ରରେ ନିଆଁ ରଖି ତା' ଉପରେ ଉପରୋକ୍ତ ସବୁ ଦ୍ରବ୍ୟ ଆବଶ୍ୟକ ଅନୁସାରେ ପକାଇ ଧୂପ ଦେଲେ ଐକାହିକ, ଦ୍ୱାହିକ ପ୍ରଭୃତି ସକଳ ପ୍ରକାର ବିଷମଜ୍ୱର ନଷ୍ଟ ହୁଏ । ଯେଉଁ ଗୃହରେ ଏହି ଧୂପ ଦିଆଯାଏ, ସେ ଗୃହରେ ସାପ; ପିଶାଚ ରାକ୍ଷସାଦିଙ୍କ ଭୟ ରହେ ନାହିଁ । ଧୂପ ଦେବା ସମୟରେ ତଳ ଲିଖିତ ମନ୍ତ୍ର ବୈଦ୍ୟ ଉଚ୍ଚାରଣ କରିବେ ଯଥା--ଓଁ ନମୋ ଭଗବତେ ରୁଦ୍ରାୟ ଉମାପତୟେ ସମ୍ମନ୍ନାୟ ନନ୍ଦିକେଶ୍ୱର ଇତିମନ୍ତ୍ରେଣାଭିମନ୍ତ୍ରୟେତ୍ ।

**୩୦ । ଛାଗଲୋମାଦି ଧୂପ**--ଛେଳିଚର୍ମ; ଭାଲୁଚର୍ମ; ହିଙ୍ଗୁକାଠି ଉଲ୍ଲୁକ ପକ୍ଷୀ, ହିଙ୍ଗୁ ଓ ଛେଳିମୂତ୍ର ଏହି ସବୁ ଦ୍ରବ୍ୟର ଧୂଆଁ ପ୍ରୟୋଗ କଲେ ପ୍ରବଳ ଗ୍ରହ ବିକାର ଶାନ୍ତ ହୁଏ ।

**୩୧ । ଫିରଙ୍ଗହର ଧୂପ**--ପାରା ଦୁଇତୋଳା, ଗନ୍ଧକ ୨ ତୋଳା ଏକାଠେ ମିଶାଇ କଜ୍ଜଳୀ କରିବ, ଏହା ସହିତ ଦୁଇତୋଳା ବଙ୍ଗଚୂର୍ଣ୍ଣ ମିଶାଇ ସାତଗୋଟି ବଟିକା କରିବ । ପ୍ରତିଦିନ ଏଥିରୁ ଗୋଟିଏ ୨ ବଟିକା ନିଆଁରେ ପକାଇ ତାର ଧୂଆଁ ଦେହରେ ଲଗାଇଲେ ସାତଦିନରେ ଫିରଙ୍ଗ ରୋଗ ନଷ୍ଟ ହୁଏ । (ପ୍ରା· ମୃ. ଯୋ)

**୩୩ । ଚାତୁର୍ଥିକ ଜ୍ୱରହର ଧୂପ**--ଖଣ୍ଡିଏ ନୂଆଁ କନାକୁ ଭୃଙ୍ଗରାଜ ରସରେ ଆର୍ଦ୍ର କରି ଖରାରେ ଶୁଖାଇ ତହିଁରେ ଗୁଗ୍ଗୁଳ ୨୪ ତୋଳା ଏବଂ ଗୋଟିଏ ଉଲ୍ଲୁକ ପକ୍ଷୀର ପକ୍ଷନେଇ ଏକାଠେ ମିଶାଇ କୁଟି କନାରେ ବାନ୍ଧି ଶନିବାର ଦିନ ତାକୁ ଅଗ୍ନିରେ ପକାଇ ତାର ଧୂଆଁ ଦେଲେ ଦି ଦିନ ଛଡ଼ା ପାଳିଜ୍ୱର ଛାଡ଼ିଯାଏ ।

**୩୩ । ଆମ୍ବ ବଉଳ ଫୁଲର ଧୂପ**--ଘରେ ଆମ୍ବ ବଉଳର ଧୂଆଁ ଦେଲେ ମଶା ରହନ୍ତି ନାହିଁ ।

**୩୪ । ତମାଖୁ ପତ୍ରର ଧୂପ**—ତମାଖୁ ପତ୍ର ଅଥବା ନାଗଫେଣ ମଞ୍ଜିହାର ପତ୍ର) ଧୂଆଁ ମଶାମାରିବାରେ ପ୍ରଶସ୍ତ ଉପାୟ ।

**୩୫ । ଧୂତୁରାର ଧୂପ**—ଦୂଦୁରା ମଞ୍ଜିଙ୍କୁ ନିଆଁରେ ପକାଇ ତାର ଧୂଆଁ ପିଇଲେ ଶ୍ୱାସ ଶୀଘ୍ର ଶାନ୍ତ ହୁଏ ।

ଏହିପରି ବିଭିନ୍ନ ରୋଗର ଶାନ୍ତି ନିମନ୍ତେ ଭିନ୍ନ ଭିନ୍ନ ପ୍ରକାର ଧୂପ ପ୍ରୟୋଗ ଯୋଗ, ତନ୍ତ୍ର ଓ ଆୟୁର୍ବେଦରେ ଉପଦିଷ୍ଟ ହୋଇଅଛି ।

## ରୋଗ ପ୍ରଶମନାର୍ଥେ ଧୂପ ପ୍ରୟୋଗ ବିଜ୍ଞାନ ସମ୍ମତ

ଅଗ୍ନିରେ ଦ୍ରବ୍ୟ ନିକ୍ଷେପ କରି ତା'ର ଧୂଆଁ ପ୍ରୟୋଗ କଲେ ବିବିଧ ରୋଗ ନଷ୍ଟ ହୁଏ । ଫ୍ରାନ୍ସର ବିଜ୍ଞାନବେତ୍ତା ଅଧ୍ୟାପକ ଟିଲବର୍ଟ କହନ୍ତି ଯେ—ଜ୍ୱଳିତ ଶର୍କରା ବାୟୁକୁ ବିଶୁଦ୍ଧ କରେ । ଏଥିଦ୍ୱାରା କ୍ଷୟ, ବସନ୍ତ; ବିସୂଚୀ ଆଦିରୋଗ ତୁରନ୍ତ ନଷ୍ଟହୁଏ । ଡାକ୍ତର ଏମ୍. ଟ୍ରେଲ୍ଟ କହନ୍ତି ଯେ—ଦ୍ରାକ୍ଷା ଆଦି ଫଳର ଧୂଆଁ ଟାଇଫାଏଡ ରୋଗର କୀଟାଣୁକୁ ୩୦ ମିନିଟରେ ଅନ୍ୟ ରୋଗର କୀଟାଣୁକୁ ଘଣ୍ଟେ ୨ ଘଣ୍ଟା ମଧ୍ୟରେ ନଷ୍ଟ କରିଥାଏ । ମାନ୍ଦ୍ରାଜର ସେନେଟରୀ କମିଶନର ଡାକ୍ତର କର୍ଣ୍ଣେଲ କିଙ୍ଗ୍ ଆଇ. ଏମ୍. ଏସ୍. ତାଙ୍କର କଲେଜର ବିଦ୍ୟାର୍ଥୀମାନଙ୍କୁ ଉପଦେଶ ଦେଇଛନ୍ତି ଯେ—ଘିଅ, ଗୁଗୁଳ ଓ କୁଙ୍କୁମର ଧୂଆଁ ରୋଗ କୀଟାଣୁ ନାଶକରେ । ଫ୍ରାନ୍ସର ଡାକ୍ତର ହେଫ୍‌କିନ କହନ୍ତି ଯେ - ଅଗ୍ନିରେ ପ୍ରଜ୍ୱଳିତ ଘିଅ, ରୋଗ କୀଟାଣୁମାନଙ୍କୁ ମାରେ । (ବୈ. ସ.)

ଏବାଦେ ଆୟୁ, ଆରୋଗ୍ୟ ଓ ବଳଦାୟକ-ସୂର୍ଯ୍ୟରଶ୍ମି ରସାୟନ; ଜଳୀୟ ରସାୟନ, ପଞ୍ଚାମୃତ ରସାୟନ ଓ ପଞ୍ଚଗବ୍ୟ ରସାୟନର ଉପଯୋଗ ଏହି ମତ୍‌କୃତ ରସାୟନ ରହସ୍ୟ ଗ୍ରନ୍ଥରେ ଦ୍ରଷ୍ଟବ୍ୟ ।

## ଆୟୁ ଓ ଆରୋଗ୍ୟପ୍ରଦ ଆହାର

ଚରକ ଲେଖିଛନ୍ତି ଯେ -

"ହିତାଭିର୍ଜୁହୁୟାନ୍ନିତ୍ୟ ମନ୍ତରଗ୍ନିଂ ସମାହିତଃ
ଅନ୍ନପାନସମିଦ୍ଭିର୍ନା ମାତ୍ରା କାଲୌ ବିଚାରୟନ୍ ॥

ଅନ୍ତରାଗ୍ନିଃ ସଦା ପଥ୍ୟାନ୍ୟନ୍ତରଗ୍ନୌ ଜୁହୋତି ଯଃ
ଦିବସେ ଦିବସେ ବ୍ରହ୍ମ ଜପତ୍ୟଥ ଦଦାତି ଚ ॥
ନରଂ ନିଃଶ୍ରେୟସେ ଯୁକ୍ତଂ ସାତ୍ମ୍ୟଜ୍ଞଂ ପାନଭୋଜନେ
ଭଜନ୍ତେ ନାମୟାଃ କେଚିଦ୍ ଭାବିନୋଽପ୍ୟନ୍ତରାଦୃତେ
ଷଟ୍‌ତ୍ରିଂଶତଂ ସହସ୍ରାଣି ରାତ୍ରୀଣାଂ ହିତଭୋଜନଃ
ଜୀବତ୍ୟନାତୁରୋ ଜନ୍ତୁର୍ଜିତାତ୍ମା ସମ୍ମତଃ ସତାମ୍ (ଚ· ସୂ· ୨୭)
ନ ରାଗାନ୍ନାପ୍ୟବିଜ୍ଞାନାଦ୍ ଆହାରାନୁପଯୋଜୟେତ୍
ପରୀକ୍ଷ୍ୟ ହିତମଶ୍ନୀୟାଦ୍ ଦେହୋ ହ୍ୟାହାରସମ୍ଭବଃ ।(ଚ·ସୂ·୨୮)

ଅର୍ଥାତ୍ ଯେଉଁ ପୁରୁଷ ଅନ୍ୟମନସ୍କ ନ ହୋଇ ଏକାଗ୍ରଚିତ୍ତରେ ଉପଯୁକ୍ତ ମାତ୍ରାରେ ଉପଯୁକ୍ତ କାଳରେ ହିତକର ଅନ୍ନପାନରୂପ ସମିଧ ଦ୍ୱାରା ପ୍ରତିଦିନ ଅନ୍ତରାଗ୍ନି (କୋଷ୍ଠାଗ୍ନି)କୁ ଆହୁତି ଦିଏ, ପଥ୍ୟ ଦ୍ରବ୍ୟମାନଙ୍କୁ ଅନ୍ତର ଅଗ୍ନିରେ ହୋମକରେ, ପ୍ରତିଦିନ ନିଃଶ୍ୱାସ ପ୍ରଶ୍ୱାସ ରୂପରେ ହଂ-ସଃ, ସୋଽହଂ ଏହି ଅଜପା ବ୍ରହ୍ମମନ୍ତ୍ର ଜପକରେ, ଦାନକରେ, ହେଲେ ହିତକର ଅନ୍ନପାନ ସେବୀ କଲ୍ୟାଣାଭିନିବେଶୀ ଅନ୍ତରାଗ୍ନି ପୁରୁଷଙ୍କୁ ଅବକାଶର ଅଭାବରୁ କୌଣସି ରୋଗ ଆକ୍ରମଣ କରେ ନାହିଁ । ସେହି ନୀରୋଗ ଜିତେନ୍ଦ୍ରିୟ ପୁରୁଷ ଶତସମ୍ବତ୍ସର ପରମାୟୁ ଭୋଗକରେ ଏବଂ ସାଧୁମାନଙ୍କ ଦ୍ୱାରା ପୂଜିତ ହୁଏ । ଏହି ଦେହ ଆହାର ସମ୍ଭୂତ । ସେ ହେତୁ ଇନ୍ଦ୍ରିୟ ଲାଳସାର ବଶୀଭୂତ ନ ହୋଇ ଗୁଣ ଦୋଷ ନ ବୁଝି ଆହାର ଉପଯୋଗ କରିବ ନାହିଁ । ପରୀକ୍ଷାପୂର୍ବକ ହିତକର ଆହାର ହିଁ ଭୋଜନ କରିବ ।

ଆଚାର୍ଯ୍ୟ ସୁଶ୍ରୁତ ଲେଖିଛନ୍ତି ଯେ--

ସାୟଂ ପ୍ରାତର୍ମନୁଷ୍ୟାଣାମଶନଂ ଶ୍ରୁତିଚୋଦିତମ୍
ନାନ୍ତରା ଭୋଜନଂ କୁର୍ଯାଦଗ୍ନିହୋତ୍ରସମୋ ବିଧିଃ ।
(ସୁ·ଉ· ୬୪ ଅ)

ଯେପରି ପୂର୍ବାହ୍ନରେ ଓ ଅପରାହ୍ନରେ ବାହ୍ୟ ଅଗ୍ନିରେ ହୋମ କରିବ ବୋଲି ବୈଦିକ ବିଧାନ ଅଛି, ସେହିପରି ମନୁଷ୍ୟମାନଙ୍କର ଅନ୍ତରଗ୍ନିରେ ଅନ୍ନପାନରୂପ ଆହୁତି ପ୍ରଦାନ (ଭୋଜନ) ପୂର୍ବାହ୍ଣରେ ଓ ସାୟାହ୍ନରେ ଦୁଇ ଥର ହେବା ଉଚିତ । ଅଗ୍ନିହୋତ୍ର ସମାନେହିଁ

ଜଠରାଗ୍ନିକୁ ଆହୁତି ପ୍ରଦାନ କରିବାର ନିୟମ । ଏହା ଏକ ବୈଦିକ ନିୟମ ଲଙ୍ଘନ କରି ମଧ୍ୟରେ ଭୋଜନ କରିବାକୁ ହେବ ନାହିଁ । କାରଣ,- ଅନ୍ନ ଆହାରର ପରିଣାମ ସମ୍ବନ୍ଧରେ ଛାନ୍ଦୋଗ୍ୟ ଉପନିଷଦରେ ଏହିକଥା ଲେଖା ଅଛିଯେ--

"ଅନ୍ନମଶିତଂ ତ୍ରେଧା ବିଧୀୟତେ, ତସ୍ୟ ଯୋ ସ୍ଥବିଷ୍ଠୋ ଧାତୁସ୍ତତ୍ ପୁରୀଷଂ ଭବତି, ଯୋ ମଧ୍ୟମସ୍ତନ୍ମାଂସଂ, ଯୋଽଣିଷ୍ଠସ୍ତନ୍ମନଃ ।"

ଅର୍ଥାତ୍ ମନୁଷ୍ୟ ଯେଉଁ ଅନ୍ନ ଆହାର କରେ, ତାର ସ୍ଥୂଳ ଅଂଶ ମଳ, ମଧ୍ୟମ ଅଂଶ ମାଂସ ଏବଂ ସୂକ୍ଷ୍ମ ଅଂଶ ମନରୂପରେ ପରିଣତ ହୁଏ ।

ଏହିପରି ପାନ କରିଥିବା ଜଳର ପରିଣାମ ସମ୍ବନ୍ଧେ ସେଥିରେ ଲେଖାଅଛି ଯେ -

"ଆପଃ ପୀତାସ୍ତ୍ରେଧା ବିଧୀୟନ୍ତେ । ତାସାଂ ଯଃ ସ୍ଥବିଷ୍ଠୋ ଧାତୁସ୍ତନ୍ମୂତ୍ରଂ ଭବତି, ଯୋ ମଧ୍ୟମ ସ୍ତଲ୍ଲୋହିତଂ, ଯୋଽଣିଷ୍ଠଃ ସ ପ୍ରାଣଃ ।

ଅର୍ଥାତ୍ ଯେଉଁ ପାଣି ପିଆଯାଏ, ତାର ସ୍ଥୂଳ ଅଂଶ ମୂତ୍ର, ମଧ୍ୟମ ଅଂଶ ରକ୍ତ ଏବଂ ସୂକ୍ଷ୍ମ ଅଂଶ ପ୍ରାଣକୁ ପୋଷଣ କରିଥାଏ ।

ଏହିପରି ପାର୍ଥିବ ତେଜୋମୟ ଘୃତ ତୈଳାଦି ଆହାରର ପରିଣାମ ସମ୍ବନ୍ଧେ ତହିଁରେ ଲେଖାଅଛି—

"ତେଜୋଽଶିତଂ ତ୍ରେଧା ବିଧୀୟତେ । ତସ୍ୟ ଯୋ ସ୍ଥବିଷ୍ଠୋ ଧାତୁସ୍ତଦସ୍ଥି ଭବତି, ଯୋ ମଧ୍ୟମଃ ସ ମଜ୍ଜା, ଯୋଽଣିଷ୍ଠଃ ସା ବାକ୍ ।"

"ଅନ୍ନମୟଂ ହି ସୋମ୍ୟ ମନଃ, ଆପୋମୟଃ ପ୍ରାଣଃ ତେଜୋମୟୀ ବାଗିତି । ଛାନ୍ଦୋଗ୍ୟ ୬।୫।୪ (କଣ୍ଡିକା) । ଅର୍ଥାତ୍ ଘୃତତୈଳାଦି ଆଗ୍ନେୟ ଗୁଣଯୁକ୍ତ ଆହାରର ସ୍ଥୂଳ ଅଂଶ ଅସ୍ଥି ରୂପରେ, ମଧ୍ୟମ ଅଂଶ ମଜ୍ଜାରୂପରେ ଏବଂ ସୂକ୍ଷ୍ମ ଅଂଶ ବାଣୀରୂପରେ ପରିଣତ ହୋଇ ତାର ପୁଷ୍ଟି ସାଧନ କରେ । ଅତଏବ ଏହି ମନ୍ତ୍ରମାନଙ୍କ ସାର କଥା ଏହାଯେ-- ମନ- ଅନ୍ନମୟ, ଜଳ ପ୍ରାଣମୟ ଏବଂ ବାଣୀ-ତେଜୋମୟୀ ଅଟେ ।

ଶ୍ରୀମଦ୍ଭଗବଦ୍‌ଗୀତାରେ ସାତ୍ତ୍ୱିକାଦି ପ୍ରକୃତି ବା ଗୁଣଭେଦରେ ତିନି ପ୍ରକାର ଆହାର ବର୍ଣ୍ଣିତ ହୋଇ ଅଛି । ଯଥା--

"ଆୟୁଃସତ୍ତ୍ୱବଲାରୋଗ୍ୟ ସୁଖ ପ୍ରୀତିବିବର୍ଦ୍ଧନାଃ
ରସ୍ୟାଃ ସ୍ନିଗ୍ଧା ସ୍ଥିରା ହୃଦ୍ୟା ଆହାରାଃସାତ୍ତ୍ୱିକ ପ୍ରିୟାଃ ॥
କଟ୍ୱମ୍ଳଲବଣାତ୍ୟୁଷ୍ଣ ତୀକ୍ଷ୍ଣ ରୂକ୍ଷବିଦାହିନଃ
ଆହାରା ରାଜସସ୍ୟେଷ୍ଟା ଦୁଃଖ ଶୋକାମୟ ପ୍ରଦାଃ ॥
ଯାତାୟାମଂ ଗତରସଂ ପୂତି ପର୍ଯ୍ୟୁଷିତଞ୍ଚ ଯତ୍
ଉଚ୍ଛିଷ୍ଟ ମପିଚାମେଧ୍ୟଂ ଭୋଜନଂ ତାମସ ପ୍ରିୟମ୍ ॥ (ଗୀତା ୧୮

ଅର୍ଥାତ୍ ଯେଉଁ ଆହାର, ସ୍ୱାଦୁ, ସ୍ନିଗ୍ଧ, (ଘୃତଯୁକ୍ତ) ସ୍ଥିର ହୃଦ୍‌ପ୍ରଦ ଏବଂ ମନୋହର ଏବଂ ଯାହା ଖାଇଲେ ଆୟୁ; ସାତ୍ତ୍ୱିକବୃଦ୍ଧି, ଶାରୀରିକ ବଳ, ଇନ୍ଦ୍ରିୟବଳ, ଆରୋଗ୍ୟ, ଶାରୀରିକ ଓ ମାନସିକ ସୁଖ ଓ ପ୍ରସନ୍ନତା ବଢ଼େ, ଏହିଭଳି ଆହାର ସାତ୍ତ୍ୱିକ ପୁରୁଷର ପ୍ରିୟ ଅଟେ । ଯେଉଁ ଆହାର କଟୁ, ଅମ୍ଳ ଓ ଲବଣରସ ବହୁଳ, ଅତିଉଷ୍ଣ, ଅତି ତୀକ୍ଷ୍ଣ, ରୁକ୍ଷ ଓ ଦାହ ଜନକ, ତାହା ରାଜସ ପ୍ରକୃତିର ପ୍ରିୟ ଅଟେ । ରାଜସ ଆହାର-ଦୁଃଖ, ଶୋକ ଓ ରୋଗ ଜନ୍ମାଇଥାଏ । ଯେଉଁ ଆହାର ପାକହେବାପରେ ଏକପ୍ରହର ଅତୀତ ହୋଇଥାଏ, ଯାହା ରସହୀନ, ଦୁର୍ଗନ୍ଧ, ବାସୀ, ଉଚ୍ଛିଷ୍ଟ, ବୁଦ୍ଧିନାଶକ, ସେଇଭଳି ଆହାର ତାମସ ଲୋକର ପ୍ରିୟ ଅଟେ ।

ସାଧାରଣତଃ ପ୍ରକୃତିଭେଦରେ ଏହିସବୁ ଆହାର ପ୍ରିୟହେଲେ ମଧ୍ୟ ଆୟୁର୍ବେଦର ଉପଦେଶ ଅନୁସାରେ ଦେଶ କାଳଭେଦରେ ଏହାର ସଂଶୋଧନ ଓ ପରିବର୍ତ୍ତନ ଆବଶ୍ୟକ ଅଟେ । କାରଣକି--ଚରକ ଲେଖିଛନ୍ତି ଯେ -

"ମଧୁରରସାଭ୍ୟାସୋ ବଳକରାଣାଂ (ଶ୍ରେଷ୍ଠଃ) 'ଏକରସାଭ୍ୟାସୋ ଦୌବଲ୍ୟକରଣାଂ (ଶ୍ରେଷ୍ଠଃ) 'ଚ, ସୂ, ୨୫।୪୦)

ଅର୍ଥାତ୍ ବଳକାରକ ପଦାର୍ଥମାନଙ୍କ ମଧ୍ୟରେ ମଧୁରାଦି ଛ'ରସ ଯୁକ୍ତ ଭୋଜନ ଶ୍ରେଷ୍ଠ ଅଟେ । ଦୁର୍ବଳକର ପଦାର୍ଥ ମାନଙ୍କ ମଧ୍ୟରେ ଯେ କୌଣସି ଗୋଟିଏ ରସର ଅଭ୍ୟାସ ଶ୍ରେଷ୍ଠ ଅଟେ । ଏହାପରେ ଋତୁଭେଦ ଅନୁସାରେ ମଧ୍ୟ ସକଳପ୍ରକାର ଅନ୍ନ ପଥ୍ୟ ଓ ଅପଥ୍ୟ ହୋଇଥାଏ । ବସନ୍ତରେ କଫପ୍ରକୁପିତ ହୋଇଥାଏ, ସୁତରାଂ ସେଇ ସମୟରେ କଟୁ, ଉଷ୍ଣ ଓ ରୁକ୍ଷ ଭୋଜନ ଉଚିତ, ବର୍ଷାଋତୁରେ ବାୟୁର

ପ୍ରକୋପ ହୁଏ, ସୁତରାଂ ସେ ସମୟରେ ମଧୁର, ଅମ୍ଳ ଓ ଲବଣ ରସଯୁକ୍ତ ଭୋଜନ ଏବଂ ଗ୍ରୀଷ୍ମ ଓ ଶରତ୍ କାଳରେ ମଧୁର ଶୀତଳ ଭୋଜନ ହିତକର ଅଟେ । ଅଧିକନ୍ତୁ- ଭୋଜନାଦୌ ସଦାପଥ୍ୟଂ ଲବଣାଦ୍ରକ ଭକ୍ଷଣମ୍" ଅର୍ଥାତ୍ ଭୋଜନ ଆଦିରେ ଅଦା ଓ ଲୁଣ ଖାଇବା ସମସ୍ତଙ୍କ ପକ୍ଷରେ ପଥ୍ୟ ଅଟେ । ଘୃତପକ୍ୱ ଅନ୍ନ ପର୍ଯ୍ୟୁଷିତ ହେଲେ ମଧ ମାସ ୨ ମାସ ପର୍ଯ୍ୟନ୍ତ ତାହା ଅସ୍ୱାଦୁ ହୁଏନାହିଁ । ଏହାପରି ଆଳୁର ମୋରବା ଆଦ ବର୍ଷ ବର୍ଷ ପର୍ଯ୍ୟନ୍ତ ଅବିକୃତ ଅବସ୍ଥାରେ ରହେ । ଏହାପରି ଦେଶ ଭେଦରେ ମଧ ପଥ୍ୟ ଅପଥ୍ୟ ହୋଇ ଥାଏ ଓ ଅପଥ୍ୟ ମଧ ପଥ୍ୟ ହୋଇ ଥାଏ । ମାନ୍ଦ୍ରାଜ ପ୍ରଦେଶରେ କଟୁ, ଅମ୍ଳ ଓ ଲବଣ ପ୍ରଧାନ ଭୋଜନ ପଥ୍ୟ । ଏହା ମାନ୍ଦ୍ରାଜୀ ପକ୍ଷରେ ରଜୋଗୁଣ ବର୍ଦ୍ଧକ ନୁହେ । ଆଜକାଲି ମାଛ, ମାଂସ, ପିଆଜ, ରସୁଣ, ମଦ୍ୟାଦି ଉତ୍ତେଜକ ଦ୍ରବ୍ୟ ଓ ଗରମ ମସଲା ଯୁକ୍ତ ଭୋଜନ ସବିଶେଷ ଅଭ୍ୟସ୍ତ । ସୁତରାଂ ସାତ୍ତ୍ୱିକ ଅସାତ୍ତ୍ୱିକ ଭୋଜନର ମର୍ଯ୍ୟାଦା ସ୍ଥିର କରିବାପାଇଁ, ସ୍ୱଭାବ, ପ୍ରକୃତି, ଦେଶ, କାଳ, ଆର୍ଥିକ ପରିସ୍ଥିତି ଏବଂ ଆତ୍ମମାନଙ୍କୁ ମଧ ଲକ୍ଷ୍ୟ କରିବାକୁ ହେବ ।

## ଧର୍ମଶାସ୍ତ୍ର ଲିଖିତ ଆରୋଗ୍ୟ ବିଧାୟକ ଆହାର ।

୧ । ଯେଉଁ ଖାଦ୍ୟ ସାମଗ୍ରୀ ଚୋରି, ଠକାମି, ବିଶ୍ୱାସଘାତକତା, ପରସ୍ୱାପହରଣାଦି ଅନ୍ୟାୟ ପୂର୍ଣ୍ଣ କୁକର୍ମଦ୍ୱାରା ଉପାର୍ଜ୍ଜିତ, ତାହା ଅସାତ୍ତ୍ୱିକ । ସେଇଭଳି ଅନ୍ନ ଖାଇଲେ ବୁଦ୍ଧି ଓ ମନ କଳୁଷିତ ହୁଏ, ଭାବ ଦୂଷିତ ହୁଏ ଏବଂ ମନୁଷ୍ୟର ପତନ ହୁଏ ।

୨ । ମ୍ଳେଚ୍ଛ, ପତିତ, ଚଣ୍ଡାଳ, କୃପଣ, ବେଶ୍ୟା, ନାସ୍ତିକ; ଦୁରାଚାରୀ; ଜୁଆଡ଼ି, ଶିକାରୀ; ନପୁଂସକ; କୁଳଟା; ଭଣ୍ଡୁଆ, ମିଛସାକ୍ଷୀ, ଅନ୍ୟାୟ ପକ୍ଷନେବା ଓକିଲ; ଅତ୍ୟାଚାରୀ ରାଜା; ଲାଞ୍ଚୁଆ ରାଜକର୍ମଚାରୀ; ପ୍ରେତୋଚ୍ଛିଷ୍ଟ ଭୋଜୀ, ପ୍ରେତଉଦ୍ଦେଶ୍ୟରେ ପ୍ରଦତ୍ତ ଦାନଗ୍ରାହୀ; ନୀଚବ୍ରାହ୍ମଣ, ଅନ୍ୟାୟରେ ଅନ୍ୟର ସମ୍ପତ୍ତି ପ୍ରାପ୍ତ ବ୍ୟକ୍ତି ଏବଂ ସଂକ୍ରାମକ ରୋଗପୀଡ଼ିତ ବ୍ୟକ୍ତିର ଅନ୍ନ ଗ୍ରହଣ କରିବା ନିଷେଧ ।

୩ । ଅନ୍ୟାୟୋପାର୍ଜିତ ଧନରେ ସଂଗୃହୀତ, ଅପବିତ୍ର ସ୍ଥାନରେ ଅପବିତ୍ର ରାନ୍ଧୁଣିଆ ଦ୍ୱାରା ପ୍ରସ୍ତୁତ, ଅପବିତ୍ର ଭାବ ପ୍ରେରିତ, ଅପବିତ୍ର ପାତ୍ର

ସ୍ଥିର ଏବଂ କେଶ, କୃମି, (ମାଛି ପ୍ରଭୃତି) ଦୂଷିତ ଏବଂ ଉଚ୍ଛିଷ୍ଟ ଓ ବାସି ଅନ୍ନ ଭୋଜନ କରିବା ବର୍ଜ୍ୟ ।

୪ । ଭଗବାନଙ୍କୁ ସମର୍ପଣ ନକରି ଅନ୍ନଗ୍ରହଣ କରିବା ନିଷେଧ ।

୫ । ମୁଣ୍ଡରେ ପାଗବାନ୍ଧି; ଦୋଲୁଗା ପିନ୍ଧି ଏବଂ ଜୂତାମାଡ଼ି ଭୋଜନ କରିବା ନିଷେଧ ।

ଦକ୍ଷିଣଦିଗକୁ ମୁହଁକରି ଭୋଜନ କରିବ ନାହିଁ ଏବଂ ଚଣ୍ଡାଳ, ଦୁଷ୍ଟ; ରଜସ୍ୱଳା; ନପୁଂସକ; ଷ୍ମାଲୁର; କୁକ୍କୁର; କୁକୁଡ଼ା ଓ ଘୁଷୁରି ଆଦିର ଦୃଷ୍ଟି ପଡ଼ୁଥିବା ସ୍ଥାନରେ ବସି ଭୋଜନ କରିବ ନାହିଁ ।

୭ । ପ୍ରାତଃକାଳରେ, ସନ୍ଧ୍ୟାକାଳରେ; ଦିନ ଦୁଇପହରରେ ଏବଂ ଅର୍ଦ୍ଧରାତ୍ରି ସମୟରେ ଭୋଜନ କରିବ ନାହିଁ । ଚନ୍ଦ୍ର ସୂର୍ଯ୍ୟ ଗ୍ରହଣ କାଳରେ; ଆତ୍ମୀୟ ଲୋକର ମୃତ୍ୟୁ ସମ୍ବାଦ ପାଇବା ପରେ; ଏବଂ ସ୍ୱେଦ୍ଦ; ଦେଶସ୍ଥ ସମ୍ପତ୍ତି ଏବଂ ଧର୍ମ; ଗୋବ୍ରାହ୍ମଣ. ଧାର୍ମିକ ବ୍ୟକ୍ତି ଆଦିର ଉପରେ ସଙ୍କଟ ଉପସ୍ଥିତ ହେବାର ସମ୍ବାଦପାଇ ଭୋଜନ କରିବ ନାହିଁ ।

୮ । ଉତ୍କଟ ଆସନରେ ଗୋଡ଼ଲମ୍ବାଇ ପାଦଉପରେ ପାଦ ଲଦି ଶୋଇ ଶୋଇ ଠିଆ ଠିଆରେ ଖଟ୍ ଲ ୨ ଦୋଳାରେ ବସି, ପାଣିଭିତରେ ବସି ଭୋଜନ କରିବା ନିଷେଧ । କମ୍ବଳ ଆସନରେ ବସି ଭୋଜନ କରିବ ନାହିଁ ଏବଂ ବିନା ଆସନରେ ତଳେ ବସି ଭୋଜନ କରିବ ନାହିଁ ।

୯ । ଅନ୍ନକୁ ଛାପା କାଗଜରେ ଏଲ୍ୟୁମ୍ନିୟମ ପାତ୍ରରେ ବା ଲୋହ ପାତ୍ରରେ ବା ଭଙ୍ଗାପାତ୍ରରେ ବାଢ଼ି ଭୋଜନ କରିବ ନାହିଁ ।

୧୦ । ଭୋଜନ ସମୟରେ ଅନ୍ନକୁ ନିନ୍ଦା କରିବ ନାହିଁ । କ୍ରୋଧରେ ମୁଖ ବିକୃତକରି ଅନ୍ୟକୁ ଗାଳିଦେବ ନାହିଁ ଏବଂ ମନରେ ଯେପରି ଖରାପ ବିଚାର ନ ଆସେ, ସେଥିପ୍ରତି ସାବଧାନ ହେବ ।

୧୧ । ଭୋଜନ ଶେଷରେ କିଛି ଉଚ୍ଛିଷ୍ଟ ଅନ୍ନ କ୍ଷୁଦ୍ର ଜନ୍ତୁମାନଙ୍କ ପାଇଁ ଛାଡ଼ିଦେବ ।

୧୨ । ସ୍ତ୍ରୀ ସହିତ କିମ୍ବା ଅନ୍ୟ କାହାରି ସହିତ ଏକ ପାତ୍ରରେ ଭୋଜନ କରିବ ନାହିଁ । ଉଚ୍ଛିଷ୍ଟ ଅନ୍ନ କାହାକୁ ଦେବନାହିଁ ।

୧୩ । ଶକ୍ତିଶାଳୀ? ବିଦ୍ୟାର୍ଥୀ, ସଂଯମୀ ପୁରୁଷ, ପିଆଜ ରସୁଣ ଆଦି ଉତ୍ତେଜକ ଦ୍ରବ୍ୟ ଖାଇବ ନାହିଁ ।

୧୪ । ଦୁଧ; ଚେଉଡ଼ପାଣି; ମଦ୍ୟ; ଆଖୁରସ; ଦହି; ତକ୍ର ଏବଂ ଲେମ୍ବୁ ଆଦି ଅମ୍ଳରସ; ତମ୍ବା, କଂସା ଓ ପିତ୍ତଳ ପାତ୍ରରେ ରଖି ଖାଇବ ନାହିଁ ।

## ସ୍ୱଭାବତଃ ହିତକର ପଦାର୍ଥ

ରକ୍ତଧାନର ଚାଉଳ; ଷାଠିକାଧାନର ଚାଉଳ; ଯବଧାନ; ଗହମ; ମୁଗ; ମସୁର; ହରଡ଼ (କାନ୍ଦୁଲ); ମଧୁର ରସ ।

ସୈନ୍ଧବ, ଡାଳିମ୍ବ; ଅଁଳା; ଦ୍ରାକ୍ଷା ବା ଅଙ୍ଗୁର; ଖଜୁରୀ; ଫାଲସା; କ୍ଷୀରକୋଳି; ମାତୁଳୁଙ୍ଗ;

ବଥୁଆ ଶାଗ, ଜୀବନ୍ତୀ ଶାଗ; ପୋଇ ଶାଗ; ପଟୋଳ; ଓଲୁଅ, କଳା ବାନ୍ଦ୍ରିଟିଆ; ଶମ୍ବର ମାଂସ; ଜାଙ୍ଗଳ ମାଂସ ।

ତିତିର ପକ୍ଷୀ; ଲବା ପକ୍ଷୀ; ରୋହିମାଛ; ନିର୍ମଳ ଜଳ, ଗାଈଦୁଧ; ଗାଈ ଘିଅ; ରାସିତେଲ; ମିଶ୍ରି । ଏସବୁ ସ୍ୱଭାବତଃ ପଥ୍ୟ ।

## ସଂଯୋଗ ବିରୁଦ୍ଧ ପଦାର୍ଥ

ଦୁଧ ଓ ବେଲ; ଦୁଧ ଓ ଲେମ୍ବୁ; ଦୁଧ ଓ ଲୁଣ; ଦୁଧ ଓ କୋଳଥ; ଦୁଧ ଓ ଦହି; ଦୁଧ ଓ ତେଲ; ଦୁଧ ଓ କାମି; ଦୁଧ ଓ ଶୁଷ୍କ ଶାଗ ।

ଦୁଧ ଓ ମୂଳା, ଦୁଧ ଓ ମାଛ; ଦୁଧ ଓ ଛତୁଆ; ଦହି ଓ କଦଳୀ; ଦହି ଓ ଗରମଦ୍ରବ୍ୟ; ମହୁ ଓ ଗରମଜଳ; ମହୁ ଓ ମାଛ; ମହୁ ଓ ଗରମ ପଦାର୍ଥ; ମହୁ ଓ ବର୍ଷାପାଣି । ଏସବୁ ପରସ୍ପର ବିରୁଦ୍ଧ ଓ ଅପଥ୍ୟ ଏବଂ ମହୁ ଓ ମୂଳା; ମଦ ଓ କ୍ଷୀର; ମାଛ ଓ ଗୁଡ଼; ଦୁଧ ଓ ବାଗମାଂସ ।
ଆରୋଗ୍ୟପ୍ରଦ ଆହାର ସମ୍ବନ୍ଧେ ଚରକ ଲେଖିଛନ୍ତି ଯେ--

"ସାତ୍ମ୍ୟସେବୀ ଜିତକ୍ରୋଧଃ ନିତ୍ୟଂ ଗୁପ୍ତି ଜିତେନ୍ଦ୍ରିୟଃ
ଜୀର୍ଣ୍ଣଭୋଜୀ ମିତସ୍ୱପ୍ନଃ ସୁଖଂ ଜୀବତ୍ୟନାମୟଃ ।

ଅର୍ଥାତ୍ ଯେଉଁ ପୁରୁଷ ସାତ୍ମ୍ୟ ପଦାର୍ଥ ସେବନକରେ, କ୍ରୋଧକୁ ନିୟନ୍ତ୍ରଣ କରେ, ଇନ୍ଦ୍ରିୟମାନଙ୍କୁ ସର୍ବଦା ସଂଯତ କରିରଖେ, ଆହାର ଜୀର୍ଣ୍ଣ ହେବାପରେ ଭୋଜନକରେ, ଅଧିକ ନିଦ୍ରାଳୁ ହୁଏ ନାହିଁ, ସେ ନିରୋଗ ହୋଇ ସୁଖରେ ଜୀବନ ଯାପନ କରେ ।

ଏଠାରେ ସାତ୍ମ୍ୟପଦର ଅର୍ଥ ଚରକ ଏହିପରି ଲେଖିଅଛନ୍ତି -

ଯଥା---"ସାତ୍ମ୍ୟଂ ନାମ ତତ୍ ଯତ୍ ସାତତ୍ୟେନ ଉପସେବ୍ୟମାନ ମୁପଶେତେ ।"(ଚ· ବି· ଅ· ୮)

ଅର୍ଥାତ୍ ଯେଉଁ ଆହାର ବିହାର ନିରନ୍ତର ଉପଯୋଗ କଲେ ମନୁଷ୍ୟ ସୁଖରେ ଜୀବନ ଯାପନ କରେ; ତାହା ତା'ର ପକ୍ଷରେ ସାତ୍ମ୍ୟ ବା ହିତକର ଅଟେ ।

ସୁଶ୍ରୁତ ଲେଖିଅଛନ୍ତି ଯେ -

"ସାତ୍ମ୍ୟାନି ତୁ ଦେଶକାଲଜାତ୍ୟୃତୁ ରୋଗ ବ୍ୟାୟାମୋଦକଦିବାସ୍ୱପ୍ନ ରସପ୍ରଭୃତୀନି ପ୍ରକୃତିବିରୁଦ୍ଧାନ୍ୟପି ଯାନି ଅବାଧକରାଣି ଭବନ୍ତି ।"

(ସୁ. ସୂ· ୩୫ ଅ·)

ଅର୍ଥାତ୍ ଯାହା ନିଜ ପ୍ରକୃତି ବିରୁଦ୍ଧ ହେଲେ ମଧ୍ୟ ଯେଉଁ ସବୁ ଦେଶ, କାଳ, ଜାତି, ଋତୁ, ରୋଗ, ବ୍ୟାୟାମ, ଜଳ, ଦିବାନିଦ୍ରା, ମଧୁରାଦିରସ ଓ ଶୀତୋଷ୍ଣାଦି କାର୍ଯ୍ୟ ମନୁଷ୍ୟର ପୀଡ଼ା ଦାୟକ ହୁଏ ନାହିଁ, ସେହି ସବୁ ଯୋଗ, ପ୍ରକୃତିର ମନୁଷ୍ୟ ପକ୍ଷରେ ସାତ୍ମ୍ୟ ବା ହିତକର ଅଟେ । ଚରକ ମଧ୍ୟ ଏହାହିଁ ଲେଖିଅଛନ୍ତି ଯଥା--

ଔଚିତ୍ୟାତ୍ ଯସ୍ୟ ଯତ୍ ସାତ୍ମ୍ୟଂ ଦେଶସ୍ୟ ପୁରୁଷସ୍ୟ ଚ
ଅପଥ୍ୟମପି ନୈକାନ୍ତାତ୍ ତତ୍ ତ୍ୟଜନ୍ ଲଭତେ ସୁଖମ୍ ।

(ଚ. ଚି. ୩. ଅ)

ଅର୍ଥାତ୍ ଯେଉଁ ଦେଶ ପକ୍ଷରେ ଯେଉଁ ପୁରୁଷ ପକ୍ଷରେ ଯେଉଁ ସବୁ ଆହାର ବିହାର ଯୋଗ୍ୟ ବା ସାତ୍ମ୍ୟ, ତାହା ଅପଥ୍ୟ ହେଲେ ମଧ୍ୟ ଏକବାର ବର୍ଜନୀୟ ନୁହେଂ· କାରଣକି--ଅଭ୍ୟସ୍ତ ଆହାର ବିହାରକୁ ତ୍ୟାଗ କଲେ ସୁଖ ଲାଭ ହୁଏ ନାହିଁ ।

ଏହାର ଆଗରେ ଦେଶ ଓ ଜାତିସାତ୍ମ୍ୟ ସମ୍ବନ୍ଧରେ ସେ ଯାହା ଲେଖିଅଛନ୍ତି,ତାହା ନିମ୍ନରେ ଦିଆଗଲା ।*। (୨୪୮ ପୃଷ୍ଠାର ଟିପ୍ପଣୀ ଦେଖ)

---

। * । ବାହ୍ଲୀକାଃ ପହ୍ଲବାଶ୍ଚୀନାଃ ଶୂଳିକା ଯବନାଃ ଶକାଃ
ମାଂସ-ଗୋଧୂମ ମାଧ୍ୱୀକ ଶସ୍ତ୍ର ବୈଶ୍ୱାନରୋଚିତାଃ ॥
କ୍ଷୀର ସାତ୍ମ୍ୟାସ୍ତଥା ପ୍ରାଚ୍ୟାଃ ମତ୍ସ୍ୟସାତ୍ମ୍ୟାଶ୍ଚ ସୈନ୍ଧବାଃ
ଅଂଶ୍ମକା ବନ୍ତିକାନାନ୍ତୁ ତୈଳାମ୍ଳଂ ସାତ୍ମ୍ୟମୁଚ୍ୟତେ ॥

## ସାତ୍ମ୍ୟ ବା ହିତକର ଆହାର

ସକଳପ୍ରକାର ଧାନ୍ୟ ମଧ୍ୟରେ ଷାଠିକା ଧାନ ( ସେୟଟିଧାନ ) ସରୁଧାନ, ଗହମ ଏବଂ ରନ୍ଧୁଚୁଡ଼ୀ, ପାଣ୍ଡୁଶିଆଳି ପ୍ରଭୃତି ରକ୍ତଶାଳି ଧାନ୍ୟର (ଚାଉଳ) ମୁଗ, ହରଡ଼ (କାନ୍ଦୁଲ) ଓ ମସୁର ଶ୍ରେଷ୍ଠ ଅଟେ । (ଉଷୁନାଚାଉଳର ଅନ୍ନଠାରୁ ଅରୁଆଚାଉଳର ଅନ୍ନ ଏବଂ ମଣ୍ଡଗଳା ହେବା ଅନ୍ନଠାରୁ ମଣ୍ଡଯୁକ୍ତ (ଯୋଖା) ଅନ୍ନ ଅଧିକ ବଳକାରକ ଅଟେ । ଏକ ବର୍ଷର ପୁରୁଣା ଧାନର ଚାଉଳ ପ୍ରଶସ୍ତ ।

ଫଳ ମଧ୍ୟରେ ପାଚିଲା ଆମ୍ବ, ପାଚିଲା ପଣସ, ତାଳ, ନାରିକେଳ; ପାଚିଲା କଦଳୀ, ଦ୍ରାକ୍ଷା, ଅଁଳା, ଜାମି; ନଡ଼ିଆ, ଖଜୁରୀ, କ୍ଷୀରକୋଳି, କମଳା; ଅମୃତଭଣ୍ଡା ଓ ମାତୁଲଙ୍ଗ ଫଳ ଶ୍ରେଷ୍ଠ ଅଟେ ।

ପତ୍ରଶାକ ମଧ୍ୟରେ ପାଳଙ୍ଗ, ଲେଉଟିଆ; କୋଶଳା; ମୂଳା; ହଣୁଗୁଟିଆଁ; ମେଥି, ପୋଦିନା; ମଟରଛେଣାର ଶାଗ; ଗୋଲଚଣାର ଶାଗ; ଓ ଶଜନାର ଶାଗ ହିତକର । ଫଳଶାକ ମଧ୍ୟରେ ବାଇଗଣ, କଞ୍ଚା କଖାରୁ, କଙ୍କଡ଼ା; ଭେଣ୍ଡି; କାକୁଡ଼ି; ଶଜନାଛୁଇଁ, ଅମୃତଭଣ୍ଡା; ଓ କଞ୍ଚା କଦଳୀ ଏବଂ ମୂଳ ବା କନ୍ଦଶାକ ମଧ୍ୟରେ ଆଳୁ ଶାରୁ; କନ୍ଦମୂଳ; ଓଲୁଅ ଶ୍ରେଷ୍ଠ ଅଟେ । ଘୃତ ଓ କ୍ଷୀର ମଧ୍ୟରେ ଗାଈର କ୍ଷୀର ଓ ଘିଅ, ଲବଣ ମଧ୍ୟରେ ସୈନ୍ଧବ; ତିକ୍ତଶାକ ମଧ୍ୟରେ ପଟୋଳ ଓ ନେସା; ମଧୁର ଦ୍ରବ୍ୟ ମଧ୍ୟରେ ଶର୍କରା; କଷାୟ ଦ୍ରବ୍ୟମଧ୍ୟରେ ଗୁଆ ଶ୍ରେଷ୍ଠ ଅଟେ । ନୂଆଁ ଗମି ନୂଆଁ ଶୋଲଚଣା ଏବଂ ନୂଆଁ ଚାଉଳ ପଥ୍ୟ ଅଟେ ।

---

ଶାକ ମୂଲଫଲଂ ସାତ୍ମ୍ୟଂ ବଦ୍ୟାନ୍ନାନ୍ତ ବାସିନାମ୍
ସାତ୍ମ୍ୟଂ ଦକ୍ଷିଣତଃ ପେୟା ମଣ୍ଡ ସ୍ରୋତ୍ତର ଦେଶିକେ ॥
ମଧ୍ୟଦେଶେ ଭବେତ୍ ସାତ୍ମ୍ୟଂ ଯବ ଗୋଧୂମ ଗୋରସାଃ ।

ବାହ୍ଲୀକାଦି ଦେଶର ଆଧୁନିକ ନାମ--ବାହ୍ଲୀକ ( ବଲଖବୁଖାରା ) ପହ୍ଲବ (ପାର୍ସ,କାବୁଲ) ଯବନ (ୟୁନାନ) ଶକ ( ଧ୍ରୁବସାଗରଠାରୁ ତିବ୍ବତ, ତାତାର, କନ୍ଧାର,) ଚୀନ, ଶୂଳିକ (ପଶ୍ଚିମୋତ୍ତର ଦେଶ, ପ୍ରାଚ୍ୟ (ଅଙ୍ଗ, ବଙ୍ଗ, କଳିଙ୍ଗ, ଆସାମ ଓ ବର୍ମାଦି ଦେଶ)

ସାରକଥା ଏହି ଯେ--ଯେଉଁ ସମସ୍ତ ଆହାର ବିହାର ଶରୀରର ମୂଳତତ୍ତ୍ୱ ବାତ ପିତ୍ତ ଓ କଫର ଏବଂ ଜ୍ୱରାଦି ରୋଗମାନଙ୍କର ଗୁରୁ ଲଘୁ ଆଦି ଗୁଣ ସହିତ ବ୍ୟବହାର କଲେ ବିପରୀତ ଗୁଣବିଶିଷ୍ଟ ଦେଖାଯାଏ, ସେହି ସମସ୍ତ ଆହାର ବିହାରକୁ ସାତ୍ମ୍ୟବୋଲି ସାତ୍ମ୍ୟଜ୍ଞ ପଣ୍ଡିତମାନେ କହିଛନ୍ତି। ଏହି କଥା ଚରକ ସଂହିତାର ସୂତ୍ରସ୍ଥାନ ଷଷ୍ଠ ଅଧ୍ୟାୟରେ ଲେଖାଅଛି ଯେ-

"ଦୋଷାଣା ମାମୟାନାଞ୍ଚ ବିପରୀତ ଗୁଣଂ ଗୁଣୈଃ
ସାତ୍ମ୍ୟମିଚ୍ଛନ୍ତି ସାତ୍ମ୍ୟଜ୍ଞାଃ ଚେଷ୍ଟିତଂ ଚାଦ୍ୟମେବ ଚ।

(ଚରକ)

### ଆୟୁର୍ବେଦୋକ୍ତ ହିତକର ପଦାର୍ଥ ବିଭାଗ

୧-ଜୀବନୀୟ, ୨ ବୃଂହଣୀୟ, ୩ ସନ୍ଧାନୀୟ, ୪-ଦୀପନୀୟ, ୫-ବଲ୍ୟ, ୬ ବର୍ଣ୍ଣ୍ୟ, ୭ କଣ୍ଠ୍ୟ, ୮ ହୃଦ୍ୟ, ୯-ତୃପ୍ତିକର, ୧୦-ସ୍ତନ୍ୟଜନନ, ୧୧ ଶୁକ୍ରଜନନ, ୧୨-ବୀର୍ଯ୍ୟଶୋଧନ ୧୩-ସ୍ନେହୋପଯୋଗୀ, ୧୪-ଶ୍ରମହର, ୧୫ ଶୋଣିତାସ୍ଥାପନ, ୧୬ ସଂଜ୍ଞାସ୍ଥାପନ, ୧୭-ପ୍ରଜାସ୍ଥାପନ, ୧୮ ବୟଃସ୍ଥାପନ। (ଚ· ୪ ଅ)

ଏଥିମଧ୍ୟରେ ଜୀବନୀୟ ତତ୍ତ୍ୱ-ଦୁଧରେ, ଦୁଧସରରେ, ନବନୀରେ, ଲେମ୍ବୁରେ, କମଳାରେ ଗାଜରରେ ଏବଂ ପିଆଜରେ ଅଧିକ ପରିମାଣରେ ରହେ। ଏହା ଶରୀରର ପ୍ରସନ୍ନତା ଏବଂ ଓଜୋଧାତୁ ବୃଦ୍ଧି କରେ, ଜ୍ଞାନତନ୍ତୁମାନଙ୍କୁ ବଳଦିଏ, ଶରୀରକୁ ହୃଷ୍ଟ ପୁଷ୍ଟ କରେ. ଦୀର୍ଘଜୀବନ, ସ୍ମୃତି, କାନ୍ତି, ମେଧା, ବାକ୍‌ଶକ୍ତି ଓ ସ୍ଥିର ଯୌବନ ପ୍ରଦାନ କରେ। ପାଶ୍ଚାତ୍ତ୍ୟ ବୈଜ୍ଞାନିକମତରେ ଖାଦ୍ୟପ୍ରାଣ ଭିଟାମିନ୍ 'ଏ' ଏବଂ 'ବି'ର ଏହା ହିଁ ଗୁଣ।

ଏହିପରି ଯାହା ଶୋଣିତାସ୍ଥାପନ, ତାହା ରକ୍ତକୁ ବିଶୁଦ୍ଧ କରେ, ଯକୃତର ବଳବୃଦ୍ଧି କରେ ଏବଂ କାନ୍ତି ପ୍ରଦାନ କରେ। ପାଶ୍ଚାତ୍ତ୍ୟ ବୈଜ୍ଞାନିକ ମତରେ ଏହା ଖାଦ୍ୟପ୍ରାଣ ଭିଟାମିନ 'ସି'ର କାର୍ଯ୍ୟ କରେ।

ଏହିପରି ବୃଂହଣୀୟ ପଦାର୍ଥ ବର୍ଗ ଶରୀରକୁ ପୁଷ୍ଟ କରେ। ପାଶ୍ଚାତ୍ତ୍ୟ ବୈଜ୍ଞାନିକ ମତରେ ଏହି ସବୁରେ ଖାଦ୍ୟ ପ୍ରାଣ-ଭିଟାମିନ"ଡୀ"ର ଗୁଣ ରହେ।

### ଅସାତ୍ମ୍ୟ ବା ଅହିତକର ଆହାର

ଯତ୍କିଞ୍ଚିତ୍ ଦୋଷମାସ୍ରାବ୍ୟ ନ ନିର୍ହରତି କାୟତଃ
ଆହାରଜାତ ତତ୍‌ସର୍ବଂ ଅହିତାୟୋପପଦ୍ୟତେ ॥
ଯଚ୍ଚାପି ଦେଶକାଲାଗ୍ନି ମାତ୍ରାସାତ୍ମ୍ୟାନିଳାଦିଭିଃ
ସଂସ୍କାରତୋ ବୀର୍ଯ୍ୟତଶ୍ଚ କୋଷ୍ଠାବସ୍ଥାକ୍ରମୈରପି ॥
ପରିହାରୋପଚାରାଭ୍ୟାଂ ପାକାତ୍ ସଂଯୋଗତୋଽପି ଚ
ବିରୁଦ୍ଧଂ ତଚ୍ଚ ନ ହିତଂ ହୃତ୍‌ସମ୍ପଦ୍‌ବିଧିଭିଶ୍ଚଯତ୍ ॥ [ ସୁଶ୍ରୁତ ]

ଅର୍ଥାତ୍ ଯାହାକି ଆହାର ଶରୀରସ୍ଥ ବାତାଦିଦୋଷକୁ ପ୍ରାପ୍ତହୋଇ ଶରୀରରୁ ବହିର୍ଗତ ହୁଏ ନାହିଁ,ସେଇ ସମସ୍ତ ଆହାର ଅହିତକର ଅଟେ । ଏବଂ ଯେଉଁ ସମସ୍ତ ଆହାର ଆନୂପ ଜାଙ୍ଗଲାଦି ଦେଶ ବିରୁଦ୍ଧ, ଶୀତ ବର୍ଷାଦି କାଳର ବିରୁଦ୍ଧ,ସମ ବିଷମାଦି ଅଗ୍ନିର ବିରୁଦ୍ଧ ପରିମାଣ ବିରୁଦ୍ଧ, (ତୁଲ୍ୟପରିମାଣ ଘିଅ ଓ ମହୁ) ସାତ୍ମ୍ୟବିରୁଦ୍ଧ,ବାତାଦିଦୋଷ ବିରୁଦ୍ଧ,ସଂସ୍କାର ବିରୁଦ୍ଧ (ଦଶଦିନ ପର୍ଯ୍ୟନ୍ତ କଂସା ପାତ୍ରରେ ରଖିଥିବା ଘିଅ) ଶୀତୋଷ୍ଣ ବୀର୍ଯ୍ୟ ବିରୁଦ୍ଧ, ମୃଦୁକ୍ରୂରକୋଷ୍ଠବିରୁଦ୍ଧ, ଅବସ୍ଥାବିରୁଦ୍ଧ, କ୍ରମବିରୁଦ୍ଧ, ପରିହାର ବିରୁଦ୍ଧ, ଉପଚାର ବିରୁଦ୍ଧ, ପାକବିରୁଦ୍ଧ, ସଂଯୋଗବିରୁଦ୍ଧ ଓ ବିଧି ବିରୁଦ୍ଧ (ଅଜୀର୍ଣ୍ଣରେ ଭୋଜନ) ସେଇ ସମସ୍ତ ଆହାର ଅହିତ କର ଅଟେ ।

ବିରୁଦ୍ଧାହାରର ଅବଗୁଣ ସମ୍ବନ୍ଧ ଶାସ୍ତ୍ରରେ ଲେଖାଅଛି—

କ୍ଳୈବ୍ୟାନ୍ଧ୍ୟବୀସର୍ପ ଦକୋଦରାଣାମ୍
ବିସ୍ଫୋଟକୋନ୍ମାଦଭଗନ୍ଦରାଣାମ୍
ମୂର୍ଚ୍ଛାମଦାଧ୍ମାନ ଗଲଗ୍ରହାଣାମ୍
ପାଣ୍ଡ୍ୱାମୟସ୍ୟାମ ବିଷସ୍ୟ ଚୈବ ॥
କିଲାସ କୁଷ୍ଠଗ୍ରହଣୀ ଗଦାନାମ୍
ଶୋଥାସ୍ର ପିତ୍ତଜ୍ୱର ପୀନସାନାମ୍
ସନ୍ତାନଦୋଷସ୍ୟ ତଥୈବ ମୃତ୍ୟୋଃ
ବିରୁଦ୍ଧମନ୍ନଂ ପ୍ରବଦନ୍ତି ହେତୁମ୍ ॥ (ଚରକ)

ଅର୍ଥାତ ଅତ୍ୟଧିକ ଭୋଜନ କଲେ ନପୁଂସକତା, ଅନ୍ଧତ୍ୱ, ଚର୍ମ, ଜଳୋଦର, ବିସ୍ଫୋଟକ, ଉନ୍ମାଦ, ଭଗନ୍ଦର, ମୂର୍ଚ୍ଛା, ମଦ, ଆଧ୍ମାନ, ଗଳଗ୍ରହ, ପାଣ୍ଡୁରୋଗ ଆମବିଷ (ବିସୂଚିକା ଅଳସକ, ବିଳମ୍ବିକା) ବିକାର; କିଲାସ, କୁଷ୍ଠ, ଗ୍ରହଣୀ, ଶୋଥରୋଗ, ରକ୍ତପିତ୍ତ, ଜ୍ୱର, ପୀନସ ସନ୍ତାନହାନି ଓ ମୃତ୍ୟୁପର୍ଯ୍ୟନ୍ତ ସମସ୍ତ ରୋଗର ତାହା କାରଣ ହୋଇ ଥାଏ । କିନ୍ତୁ ସ୍ନେହ ପାନ ଓ ବ୍ୟାୟାମ ଦ୍ୱାରା ବଳିଷ୍ଠ ଦୀପ୍ତାଗ୍ନି; ଯୁବକ ମାନେର, ଖାଇବା ଅଭ୍ୟାସୀ ପକ୍ଷରେ ଏବଂ ଅଳ୍ପ ମାତ୍ରାରେ ଗୁରୁଖାଦ୍ୟର ମଧ୍ୟ ବ୍ୟର୍ଥ ହୋଇଯାଏ । ଅତଏବ ଲେଖାଅଛି--

ସାତ୍ମ୍ୟତୋଽଳ୍ପତୟା ବାପି ଦୀପ୍ତାଗ୍ନେସ୍ତରୁଣସ୍ୟ ଚ
ସ୍ନେହବ୍ୟାୟାମବଳିନେ । ବିରୁଦ୍ଧଂ ବିତଥଂ ଭବେତ୍ ।

## ପାନ ଭୋଜନ ବିଧି

୧ । ପ୍ରତିଦିନ ପ୍ରାତଃକାଳରେ ସୂର୍ଯ୍ୟୋଦୟ ପୂର୍ବେ ଏକ ଗ୍ଲାସ ଥଣ୍ଡାଜଳ ବା ଉଷ୍ଣଜଳ ପାନକଲେ କୋଷ୍ଠ ପରିଷ୍କାର ହୁଏ । ପୁରାତନ କୋଷ୍ଠବଦ୍ଧ ରୋଗୀମାନଙ୍କର ଏହି ଅଭ୍ୟାସ ଉତ୍ତମ ଫଳ ଦିଏ । ଏଥିଦ୍ୱାରା ଅର୍ଶ, ଶୋଥ; ଗ୍ରହଣୀ ; ଜ୍ୱର; କୁଷ୍ଠ ଓ ମୂତ୍ରାଘାତାଦିରୋଗ ନଷ୍ଟ ହୁଏ । ଶାସ୍ତ୍ରରେ ଲେଖା ଅଛି ଯେ--

ଭୋଜନାନ୍ତେ ପିବେତ୍ତକ୍ରଂ ଦିନାନ୍ତେ ଚ ପିବେତ୍ ପୟଃ ।
ନିଶାନ୍ତେ ଚ ପିବେଦ୍ ବାରି ବୈଦ୍ୟସ୍ୟ କିଂ ପ୍ରୟୋଜନମ୍ ।

ଅର୍ଥାତ୍ ଭୋଜନ ଶେଷରେ ଘୋଳ (ତକ୍ର) ଦିବସ ଶେଷରେ ଦୁଗ୍ଧ ଏବଂ ରାତ୍ରି ଶେଷରେ ଜଳପାନ କଲେ ବୈଦ୍ୟକୁ ଡାକିବାର ପ୍ରୟୋଜନ ହୁଏ ନାହିଁ ।

ଯେଉଁ ବ୍ୟକ୍ତିର ଚା ଖାଇବାର ଅଭ୍ୟାସ; ସେମାନେ ତା'ର ବଦଳରେ ଅଳ୍ପ ଉଷ୍ଣଜଳରେ ଲେମ୍ବୁରସ ମିଶାଇ ପାନକଲେ ଅଧିକ ଉପକାର ପାଇବେ । ବାତ ଓ ଅଜୀର୍ଣ୍ଣ ରୋଗରେ ଏହା ଅତ୍ୟନ୍ତ ସେବ୍ୟ ଔଷଧ ଅଟେ ।

୨ । ଭୋକ ଲାଗିବା ପରେ ଆହାର କାର୍ଯ୍ୟପୁଷ୍ଟି ଭୋଜନ କରିବା ଉଚିତ । ତା'ହା ନ କଲେ ବଳକ୍ଷୀଣ ହୋଇଯାଏ । ଭାବ ମିଶ୍ର କହନ୍ତି---

"ଯାମ ମଧ୍ୟେ ନ ଭୋକ୍ତବ୍ୟଂ ଯାମଯୁଗ୍ମଂ ନ ଲଂଘୟେତ୍"

ଅର୍ଥାତ୍ ପ୍ରଥମ ପ୍ରହର ପରେ; ଦ୍ୱିତୀୟ ପ୍ରହର ମଧ୍ୟରେ ଭୋଜନ କରିବା ଉଚିତ । ଆମମାନଙ୍କ ପକ୍ଷରେ ଦିବସ ନ' ଘଣ୍ଟା ଠାରୁ ଏଗାର ଘଣ୍ଟା ଭିତରେ ଭୋଜନର ପ୍ରଶସ୍ତ କାଳ । କିନ୍ତୁ ରୋଗୀ ଓ ଶିଶୁ ପକ୍ଷରେ ଏହି ନିୟମ ଅକ୍ଷରେ ଅକ୍ଷରେ ପାଳନୀୟ ନୁହେ । ରାତିରେ ମଧ୍ୟ ନ' ଘଣ୍ଟାଠାରୁ ଏଗାର ଘଣ୍ଟା ମଧ୍ୟରେ ଭୋଜନ କରିବା ଉଚିତ ।

୩ । ଭୋକ ନ ହେବା ସମୟରେ ଖାଇଲେ ମୂତ୍ରବ୍ୟଥା, ଅଜୀର୍ଣ୍ଣ ଓ ବିସୂଚିକାଦି ରୋଗ ଜାତ ହୁଏ ।

୪ । ଗୁରୁତର ଶାରୀରିକ ପରିଶ୍ରମ କିମ୍ବା ମାନସିକ ପରିଶ୍ରମ ଅଥବା ଉତ୍ତେଜନାର ପରେ ଅଶାନ୍ତ ମନରେ ଆହାର କଲେ ଭୁକ୍ତଦ୍ରବ୍ୟ ସହଜରେ ଜୀର୍ଣ୍ଣ ହୁଏ ନାହିଁ । * ।

୫ । ଭୋଜନର ଅବ୍ୟବହିତ ପୂର୍ବରୁ ପଞ୍ଚାର୍ଦ୍ର ହୋଇ ଅର୍ଥାତ୍ ଦୁଇ ହାତ, ଦୁଇପାଦ ଓ ମୁଖ ପ୍ରକ୍ଷାଳନ କରି ଭୋଜନ କରିବା ଉଚିତ ।

୬ । ଶ୍ରଦ୍ଧାର ସହିତ ଖାଦ୍ୟପଦାର୍ଥ ଗ୍ରହଣ କରିବା ଉଚିତ । ଭଗବାନଙ୍କୁ ନିବେଦନ ନ କରି ଖାଦ୍ୟଗ୍ରହଣ କରିବା ନିଷେଧ । ଯଦି ଭଗବାନଙ୍କ ପ୍ରସାଦରୂପେ ଖାଦ୍ୟଗ୍ରହଣ କରାଯାଏ; ତା'ହେଲେ ସ୍ୱତଃ-ମନରେ ଶ୍ରଦ୍ଧାର ଉଦ୍ରେକ ହୋଇଥାଏ ଏବଂ ଅନ୍ନ ପ୍ରୀତିପ୍ରଦ ହୋଇଥାଏ ।

୭ । ପରସ୍ପର ସଂଯୋଗ ବିରୁଦ୍ଧ ଦ୍ରବ୍ୟ ଏକତ୍ର ଆହାର କରିବା ନିଷେଧ । ଗୁଡ଼; ଦୁଧ ଓ କ୍ଷୀର ସହିତ ମାଛ; ଉଷ୍ଣ ଦ୍ରବ୍ୟ ସହିତ ଦହି, ବା ମହୁ- ଦହି, ଚହ୍ଲା ଓ ବେଲଫଳ ସହିତ କଦଳୀ; ସମାନଭାଗରେ ମିଶା ହୋଇଥିବା ଘିଅ ଓ ମହୁ; ମାଂସ ସହିତ ସୋରିଷ ତେଲ; ମୂଳା ବା ଗୁଡ଼ ସହିତ ଦୁଧ; ଖେଚଡ଼ୀ ସହିତ କ୍ଷୀର- ଏବଂ ଲୁଣ ମିଶା କ୍ଷୀର ଏସବୁ ସଂଯୋଗ ବିରୁଦ୍ଧ ଭୋଜନ ସ୍ୱାସ୍ଥ୍ୟବିଘାତକ । ଅଗ୍ନିପକ୍ୱ ଅନ୍ନ-

---

* ମାତ୍ରୟାପ୍ୟଭ୍ୟବହୃତଂ ପଥ୍ୟଂ ଚାନ୍ନଂ ନ ଜୀର୍ଯ୍ୟତି
ଚିନ୍ତାଶୋକ ଭୟକ୍ରୋଧ ଦୁଃଖ ସ୍ୱପ୍ନ ପ୍ରଜାଗରୈଃ । (ଚ. ବି.—୨।୯)
ଈର୍ଷ୍ୟାଭୟକ୍ରୋଧପରିକ୍ଷତେନ ଲୁବ୍ଧେନ ରୁଗ୍‌ଦୈନ୍ୟନିପୀଡ଼ିତେନ
ପ୍ରଦ୍ୱେଷ ଯୁକ୍ତେନ ଚ ସେବ୍ୟମାନମନ୍ନଂ ନ ସମ୍ୟକ୍ ପରିପାକମେତି ।
(ସୁ. ସୂ. ୪୬ ଅ)

ବ୍ୟଞ୍ଜନରୁ ପେଟରେ ଉଷ୍ମକର ଖାଇବା ଉଚିତ ନୁହେ । ପିତ୍ତପ୍ରଧାନ ବ୍ୟକ୍ତି ପକ୍ଷରେ ଖୁବ୍ ଉଷ୍ଣଦ୍ରବ୍ୟ ଖାଇବା ଏକବାର ଅନୁଚିତ ।

୯ । କିଛି କମ ମାତ୍ରାରେ ଖାଇବା ଉଚିତ ସିନା, ଅଧିକ ଖାଇବା ଠିକ୍ ନୁହେ । ଶାସ୍ତ୍ରରେ ଲେଖାଅଛି—

ଦ୍ୱିଭାଗଂ ପୂରୟେଦନ୍ନୈଃ ତୋୟୈର୍ଭାଗଂ ପ୍ରପୂରୟେତ୍
ପବନ ପ୍ରଚାରାର୍ଥାୟ ଶେଷଭାଗଂ ପରିତ୍ୟଜେତ୍ ।

ଅର୍ଥାତ୍ ପେଟକୁ ଚାରିଭାଗରେ କଳ୍ପନା କରି ତା'ର ଦୁଇଭାଗ ଅନ୍ନ ଦ୍ୱାରା ପୂରଣ କରିବ । ତୃତୀୟ ଭାଗ ଜଳରେ ଏବଂ ଚତୁର୍ଥଭାଗ ପବନର ଗତାଗତି ନିମନ୍ତେ ଖାଲି ରଖିବ । ଆମଦେଶର ବୁଢ଼ାମାନେ କହନ୍ତି— ଅଳପ ଅଳପ ଖାଇବ, କଳପ କଳପ ଜୀଇଁବ ।

୧୦ । ଆହାର ପୂର୍ବେ ବ୍ରାହ୍ମଣାଦି ଜାତି ମଧ୍ୟରେ ଯେଉଁ ଚଳୁ କରିବାର ପ୍ରଥା ଅଛି ତାହା ଅତିଉତ୍ତମ ବ୍ୟବସ୍ଥା । ଜଳ ଗଣ୍ଡୂଷ–ଅଗ୍ନିର ଉଦ୍ଦୀପକ, ଅପରନ୍ତୁ ଆହାର ପୂର୍ବେ ଯଦି କଣ୍ଠ ନାଳୀ ଶୁଷ୍କହୋଇଥାଏ, ତେବେ ଜଳଗଣ୍ଡୂଷ ଦ୍ୱାରା ତାକୁ ଆର୍ଦ୍ର କରି ନେବାକୁ ହୁଏ । ଏହା ଉତ୍ତମ ପ୍ରଥା । ପ୍ରଥମେ ହିଁ କଠିନ ଦ୍ରବ୍ୟ ଆହାର କରିବା କଦାପି ଉଚିତ ନୁହେ ।

୧୧ । ଭୁକ୍ତଦ୍ରବ୍ୟ ଲାଳାର ସହିତ ଭଲରୂପେ ନ ମିଶିଲେ ପରିପାକ ପ୍ରାପ୍ତ ହୁଏ ନାହିଁ । ଏହେତୁରୁ ଭଲରୂପେ ଚର୍ବଣ କରି ଆହାର କରିବା ଉଚିତ ।

୧୨ । ତୃଷା ସମୟରେ ଭୋଜନ ଏବଂ କ୍ଷୁଧା ସମୟରେ ଜଳପାନ କରିବା ଉଚିତ ନୁହେ । ତୃଷା ସମୟରେ ଜଳପାନ ନ କରି ଭୋଜନକଲେ ଗୁଳ୍ମରୋଗ ହୁଏ । ଏହିପରି କ୍ଷୁଧା ସମୟରେ ଭୋଜନ ନ କରି ଜଳପାନ କଲେ ଜଳୋଦର ରୋଗ ଜାତ ହୁଏ ।

୧୩ । ଭୋଜନ ମଧ୍ୟରେ ତୃଷା ହେଲେ ଅଳ୍ପ ଅଳ୍ପ ପାଣି ପିଇବ । ଅଧିକ ଜଳ ପିଇଲେ ଆହାର ଜୀର୍ଣ୍ଣ ହୁଏ ନାହିଁ ଏବଂ ଏକବାର ଜଳ ପାନ ନ କଲେ ମଧ୍ୟ ସେଇ ଦୋଷ ହିଁ ହୁଏ । ଅତଏବ ଅଗ୍ନିଦୀପ୍ତି ନିମନ୍ତେ ବାରମ୍ବାର ଅଳ୍ପ ଅଳ୍ପ ଜଳପାନ କରିବା ଉଚିତ ।

୧୪ । ଏକାନ୍ତ ସ୍ଥାନରେ ଏକାଗ୍ରଚିତ୍ତରେ ଭୋଜନ କରିବା ଉଚିତ । ଏବଂ ଆହାର ଜୀର୍ଣ୍ଣ ନ ହେବା ଯାଏ ଚିନ୍ତା, ଈର୍ଷା, ଦ୍ୱେଷ ଓ କଳହାଦିରୁ ନିବୃତ୍ତ ହେବା ଉଚିତ ।

୧୫ । ଆହାର କରିବାର ସ୍ଥାନ ନିର୍ମଳ ଓ ପରିଷ୍କାର ହେବା ଆବଶ୍ୟକ । ଭୋଜନ ସମୟରେ ଘୃଣା ଉପସ୍ଥିତ ହେଲେ ଭୋଜନ କରିବା କର୍ତ୍ତବ୍ୟ ନୁହେ ।

୧୬ । ଏକ ପ୍ରକାର ଖାଦ୍ୟ ପ୍ରତିଦିନ ଖାଇବା ଉଚିତ ନୁହେଁ । ବଦଳ ବଦଳ କରି ଭୋଜନ କରିବା ଉଚିତ । ସର୍ବଦା ମଧୁର ଅମ୍ଳାଦି ଷଡ଼ରସ ଯୁକ୍ତ ଭୋଜନ ପ୍ରଶସ୍ତ । ଏକରସ ଅଭ୍ୟାସ କଲେ ଶରୀର ଦୁର୍ବଳ ହୋଇ ଯାଏ ।

୧୭ । ଇଚ୍ଛା ନ ଥିଲେ ଜୋର ଜବରଦସ୍ତି କରି ନିଜେ କେବେ ଖାଇବ ନାହିଁ ଏବଂ କାହାକୁ ଜୋର କରି ଖାଇବାକୁ ଅନୁରୋଧ କରିବ ନାହିଁ ।

୧୯ । ଭୋଜନର ପ୍ରାରମ୍ଭରେ ମିଠାଇ କଦଳୀ କିମ୍ବା ଜାକୁର୍ଣ୍ଣା ଖାଇବା ନିଷେଧ । ଭୋଜନର ଆରମ୍ଭରେ ମଧୁର ରସ ମଧ୍ୟରେ ଅମ୍ଳ--ଲବଣ ଏବଂ ଶେଷରେ କଟୁ, ତିକ୍ତ କଷାୟ ରସ ଖାଇବା ଉଚିତ । ରୋଟି, ଶାକ, ଭାତ, ତରକାରୀ, ଦୁଧ ଆଦି ଖାଇବାକୁ ହେଲେ ପ୍ରଥମେ ରୋଟି ଡାଲି, ମଧ୍ୟରେ ଭାତ ତରକାରୀ, ପଛେ ଦୁଧ ଆଦି ତରଳପଦାର୍ଥ ଖାଇବା ଉଚିତ । ଭୋଜନ ଶେଷରେ ଦୁଗ୍ଧ ବା ଦହି ଖାଇବା ଯେଉଁମାନଙ୍କର ଅଭ୍ୟାସ, ସେମାନଙ୍କ ପକ୍ଷରେ ତାହା ଅବଶ୍ୟ ଉପାଦେୟ ଅଟେ ।

୨୦ । ଭୋଜନ କରିବାର ଏକଘଣ୍ଟା ଭିତରେ ସ୍ତ୍ରୀ ସହବାସ, ବୌଦ୍ଧିକ ଶ୍ରମ, ଘୋଡ଼ାସବାରି, ଧାଇଁବା, ଯୁଦ୍ଧକରିବା, ଅଧିକ କଥା କହିବା ପଢ଼ିବା, ବହୁତ ଭ୍ରମିବା ମାଲିଶିଇବା, ଏବଂ ଦିବସରେ ଅଧିକ ସମୟ ଶୋଇବା ନିଷେଧ ।

ଆୟୁର୍ବେଦୀୟ ସୂତ୍ରର ଲେଖିଛନ୍ତି

ଉକ୍ତି ହିତମିତଭୋଜୀ ଶତପଦଗାମୀ ଚ ବାମଶାୟୀ ଚ ;
ଅବିଜିତମୂତ୍ରପୁରୀଷୀ ଖଗେନ୍ଦ୍ର ସୋଽରୁକ୍ ସୋଽରୁକ୍ ସୋଽରୁକ୍

ଅଙ୍ଗାରକଂ ଅବସ୍ତିଂ ଚ ତାପକଂ ସୂର୍ଯ୍ୟମଣ୍ଡିନୀ
ନବନୈତାନ୍ ସସ୍ତୁରେଣ୍ଣ୍ୟଂ ଭକ୍ଷ୍ୟଂ ତସ୍ୟାନ୍ନ କର୍ହିଚିତ୍ ।
ଶର୍ଯ୍ୟାନ୍ତସ୍ଥ ସ୍ତନନ୍ୟା ଚ ବ୍ୟଞ୍ଜନଂ ଶତ ମଣ୍ଡିନୀ
ନଖଜନାଦିନ୍ତୁ ସ୍ୱନନ୍ତ୍ୟଂ ତସ୍ମୁସ୍ୟ ନ ନବାଂଶ ।

## ମନୁଷ୍ୟର ସ୍ୱାଭାବିକ ଆହାର ସମ୍ବନ୍ଧେ ବୈଜ୍ଞାନିକ ସିଦ୍ଧାନ୍ତ

ଏହି ପୃଥିବୀରେ ଥିବା ସମସ୍ତ ଜନ୍ତୁମାନଙ୍କୁ ଆହାର ଭେଦରେ ଚାରିଶ୍ରେଣୀରେ ବିଭକ୍ତ କରାଯାଇ ପାରେ । ଯଥା--୧ ତୃଣାହାରୀ ୨ ଫଳାହାରୀ ୩ ମାଂସାହାରୀ ଓ ୪ ସର୍ବାହାରୀ । ଏଥି ମଧ୍ୟରେ ଗୋରୁ, ମଇଁଷି, ଛାଗ, ଘୋଡ଼ା, ଓଟ ଗଧ ପ୍ରଭୃତି ଜନ୍ତୁମାନେ ଘାସ, ପତ୍ର, ତୃଣ, ପୁଆଳ, କଣ୍ଟା ଓ ଗୁଳ୍ମପତ୍ର ଆଦି ଖାଇ ଜୀବନ ଯାପନ କରନ୍ତି । ଏଣୁ ଏହି ସବୁ ଜନ୍ତୁ ତୃଣାହାରୀ ଅଟନ୍ତି । ଯେଉଁ ଜନ୍ତୁ ଆମ୍ବ, ଜାମି କଦଳୀ, ଦ୍ରାକ୍ଷା, ଚାଉଳ, ଗହମ, ଚଣା, ମୁଗ ଆଦି ଧାନ୍ୟ ଏବଂ ଆଳୁ, କନ୍ଦମୂଳ ଆଦି ଖାଦ୍ୟ ଖାଇ ବଞ୍ଚନ୍ତି, ତାକୁ ଫଳାହାରୀ ଜନ୍ତୁ ବୋଲନ୍ତି । ମାଙ୍କଡ଼ ବନମନୁଷ୍ୟ (ଗରିଲା) ଆଦି ଏହି ଶ୍ରେଣୀର ଅନ୍ତର୍ଗତ । ମାଂସାହାରୀ ଜନ୍ତୁମାନେ ଅନ୍ୟ ଜନ୍ତୁକୁ ମାରି ତା'ର ରକ୍ତମାଂସ ଖାଇ ଆପଣାର ଜୀବନ ଧାରଣ କରନ୍ତି । ଏହି ଶ୍ରେଣୀସ୍ଥ ଜନ୍ତୁ ମଧ୍ୟରେ ସିଂହ, ବାଘ, ବିଲୁଆ, କୁକୁର ଓ ବିଲେଇ ଆଦିକୁ ଗଣନା କରାଯାଏ । ଯେଉଁ ଜନ୍ତୁ ଘାସ, ପତ୍ର, ଫଳ, ରକ୍ତ, ମାଂସ ଆଦି ଯାହା ମିଳେ, ସବୁ ଚୋବାଇ ଖାଇ ଯାଏ, ତାକୁ ସର୍ବାହାରୀ ଜନ୍ତୁ ବୋଲନ୍ତି । ଭାଲୁ ସର୍ବାହାରୀ ଜନ୍ତୁ ଅଟେ । ଏଠାରେ ପ୍ରଶ୍ନ ଏହିକି--ଏହି ଚାରିପ୍ରକାର ଜନ୍ତୁ ମଧ୍ୟରେ ମନୁଷ୍ୟ ସ୍ୱଭାବତଃ କେଉଁ ଶ୍ରେଣୀର ଅନ୍ତର୍ଗତ ?

## ଦନ୍ତଭେଦ ଦ୍ୱାରା ଜନ୍ତୁର ଆହାର ଭେଦ ନିରୂପଣ

ଏହି ସବୁ ଜନ୍ତୁମାନେ ସ୍ୱଭାବ ଅନୁସାରେ ଯାହା ୨ ଆହାର କରନ୍ତି ତାହା ପ୍ରଥମେ ଦାନ୍ତରେ ଚୋବା ହୁଏ ଏବଂ ଦାନ୍ତ ମୂଳରୁ ବାହାରିବା ଏକ ପ୍ରକାର ରସ ସହିତ ମିଶି ତା' ପାକସ୍ଥଳୀରେ ପ୍ରବେଶ କରେ । ତା'ପରେ ଆହାରର ସାର ଅଂଶ ଦେହରେ ମିଶେ, ଅସାର ଅଂଶ ମଳରୂପରେ ବାହାରି ପଡ଼େ । ଅତଏବ ପ୍ରଥମେ ଏହି ସବୁ ଜନ୍ତୁମାନଙ୍କର ଦାନ୍ତ ସମ୍ବନ୍ଧେ କିଛି ବର୍ଣ୍ଣନା କରିବା ନିତାନ୍ତ ଆବଶ୍ୟକ ।

ସମସ୍ତେ ଏହା ଜାଣନ୍ତି ଯେ, ସବୁ ଜନ୍ତୁମାନଙ୍କର ଦାନ୍ତ ଏକ ପ୍ରକାର ହୁଏ ନାହିଁ ଏବଂ ଗଣତିରେ ସମାନ ରହେନାହିଁ । ଆହାର ଭେଦରେ ଜନ୍ତୁମାନଙ୍କର ଦାନ୍ତରେ ଏପ୍ରକାର ବିଲକ୍ଷଣ ତା ଦେଖାଯାଏ ଯେ-ବୁଦ୍ଧିମାନ ଲୋକ ଯେ କୌଣସି ମଲ୍ ଜନ୍ତୁର ମୁଣ୍ଡରେ ଥିବା ଦାନ୍ତସବୁ ଦେଖି ସେ ଜନ୍ତୁ କି ଧରଣର ଖାଦ୍ୟ ଖାଏ, ତାହା ନିଃସନ୍ଦେହରେ ସହଜରେ ନିର୍ଣ୍ଣୟ କରିପାରେ ।

ମନୁଷ୍ୟର ୩୨ ଦାନ୍ତ ସମ୍ବନ୍ଧେ ଆୟୁର୍ବେଦରେ ଲେଖାଅଛି ଯେ·

ଯଥା--ଦଶନା ରୁଚକାନାମ ସ୍ୟୁଶ୍ଚତୁର୍ଦ୍ଧା ତେ ଭବନ୍ତି ହି
ଛେଦନା ଶୋଧନା ଦ୍ୟଗ୍ରାଃ ପେଷଣାସ୍ତେ ତୁ ସଂଖ୍ୟୟା
ଅଷ୍ଟୌ ଚତ୍ୱାରଶ୍ଚାଷ୍ଟୌ ହି ତତସ୍ତୁ ଦ୍ୱାଦଶ ସ୍ମୃତାଃ
ଦନ୍ତାନାଂ ପତନଂ ଜନ୍ମ ପୁନଃ ପାତେ ଭ୍ରସମ୍ଭବଃ ।

(ସୁଶ୍ରୁତ)

ଅର୍ଥାତ୍ ଦାନ୍ତକୁ ରୁଚକାଗ୍ନି ବୋଲାଯାଏ । ସେ ସବୁ ଚାରିପ୍ରକାର । ୧ ଛେଦନ, ୨ ଶୋଧନ, ୩ ଦ୍ୟଗ୍ର ଏବଂ ୪ ପେଷଣ । ଉପରେ ଓ ତଳେ ଦୁଇପାଟିରେ ସାମନାରେ ଯେଉଁ ଚାରି ଚାରି ଦାନ୍ତ ରହେ, ତାହା ଛେଦନ ଦନ୍ତ । ଛେଦନ ଦନ୍ତର ଦକ୍ଷିଣ ଓ ବାମ ଉଭୟ ପାର୍ଶ୍ୱରେ ତଳେ ଉପରେ ଯେଉଁ ଏକ ଏକ ଦାନ୍ତରହେ, ତାହା ଶୋଧନ ଦନ୍ତ । ଶୋଧନ ଦାନ୍ତର ଦୁଇ ପାଖରେ ଥିବା ଦୁଇ ଦୁଇ ଦାନ୍ତର ନାମ ଦ୍ୟଗ୍ର ଏବଂ ତା'ର ପରେ ଥିବା ତିନ ତିନ ଦାନ୍ତ ପେଷଣ ଅଟେ । ତଳ ଉପରେ-ଛେଦନ ଦନ୍ତ ୮, ଶୋଧନ ଦନ୍ତ ୪, ଦ୍ୟଗ୍ର ଦନ୍ତ ୮, ପେଷଣ ଦନ୍ତ ୧୨ ଏହାପରି ୩୨ ଦାନ୍ତ । ଏକବାର ଦାନ୍ତ ପଡ଼ିଯିବା ପରେ ଫେରେ ଥରେମାତ୍ର ଉଠେ, କିନ୍ତୁ ଫେରେ ପଡ଼ିଗଲେ ଆଉ ଉଠେ ନାହିଁ । ଡାକ୍ତରୀ ଭାଷାରେ ଛେଦନ ଦନ୍ତକୁ ଇନ୍‌ସିଜର, ଶୋଧନ ଦନ୍ତକୁ କେନାଇନ, ଦ୍ୟଗ୍ର ଦନ୍ତକୁ ବାଇକସ୍ ଏବଂ ପେଷଣ ଦନ୍ତକୁ ପିଡ଼୍ସ ଓ ମୋଲାରସ କହନ୍ତି ।

ଛେଦନ ଦନ୍ତ ଦାଢ଼ୁଆ ରହେ । ଏହା ଗୋରୁ, ମେଣ୍ଢା ପ୍ରଭୃତି ଜନ୍ତୁମାନଙ୍କର ବଡ଼ ୨ ହୋଇ ଉଠେ । କିନ୍ତୁ ମାଂସାହାରୀ ଜନ୍ତୁମାନଙ୍କର ବହୁତ ଶ୍ରେଷ୍ଠ ହୋଇଥାଏ ।

ଶୋଧନଦନ୍ତ—ଏହା କୁକ୍କୁର, ବିଲେଇ, ବାଘ ଆଦି ମାଂସାହାରୀ ଜନ୍ତୁମାନଙ୍କର ରହେ। ତାହା ଅନ୍ୟଦାନ୍ତ ଅପେକ୍ଷା ଏତେ ବଡ଼ ହୋଇ ଉଠେ ଯେ ମୁହଁ ବୁଜିବା ପାଇଁ ସେଇ ଦାନ୍ତର ସାମନାରେ ଉପରେ ଧାଡ଼ିରେ ଅବକାଶ ରହିଥାଏ। ଏହି ଦାନ୍ତ ମୁନିଆଁ ଓ ଅଳ୍ପ ବାଙ୍କିରହେ, ଯାହା ଦ୍ୱାରା ମାଂସାହାରୀ ଜନ୍ତୁ ଆପଣାର ଶିକାରକୁ ଧରେ ଓ ଭିଡ଼ି ରଖେ ଏବଂ ଯେପରି ସେ ଇଚ୍ଛା କରେ ମାଂସ ଖଣ୍ଡକୁ ଛିଣ୍ଡି ଖାଏ। ତୃଣାହାରୀ ଜନ୍ତୁମାନଙ୍କର ଏହିଭଳି ଦାନ୍ତ ପ୍ରାୟ ହୁଏ ନାହିଁ। କିନ୍ତୁ କାହାର ୨ଟି ଦାନ୍ତ ବହୁତ ବଡ଼ ହୋଇ ମୁହଁର ଭିତର ଆଡ଼ୁ ବାହାରକୁ ଉଠିଥାଏ। ସେପରିକି ହାତୀ ଓ ବଣ ବରାହର ଦାନ୍ତ ଦେଖା ଯାଏ। ଏହି ବାହାରକୁ ଉଠିଥିବା ଶୋଧନ ଦାନ୍ତ ସେଇ ସବୁ ଜନ୍ତୁମାନଙ୍କର ଶତ୍ରୁଠାରୁ ଆତ୍ମରକ୍ଷା କରିବାରେ ପ୍ରୟୋଜନ ହୋଇଥାଏ। ଫଳାହାରୀ ଜନ୍ତୁମାନଙ୍କର ଛେଦନ ଦନ୍ତ ଅପେକ୍ଷା ଶୋଧନ ଦନ୍ତ ଟିକିଏ ବଡ଼ ହୋଇଥାଏ। ଏହା ସେମାନଙ୍କର ଆଗ ଚିରିବା ଏବଂ ଆପଣାର ଶତ୍ରୁକୁ ଡରାଇବା ଆଦି କାର୍ଯ୍ୟରେ ଉପଯୋଗୀ ହୋଇଥାଏ।

ଅଗ୍ରଦାନ୍ତ ଓ ପେଷଣ ଦାନ୍ତ ଚେପ୍ଟା ରହେ। ଅଗ୍ର ଦାନ୍ତର ଦୁଇ ଦୁଇ ଜାଗାରେ ଏବଂ ପେଷଣ ଦାନ୍ତର ଏକ ଏକ ଜାଗାରେ ଘୋରଣାର ପାଟ ଭଳି ଦାନା ଉଠି ରହିଥାଏ, ଯାହା କି ଆହାରକୁ ଟିକିଟିକି କରିବା ଏବଂ ଚୋବାଇବା କାମରେ ଲାଗେ।

ମାଂସାହାରୀ, ତୃଣାହାରୀ ଓ ଫଳାହାରୀ ଜନ୍ତୁମାନଙ୍କର ଦନ୍ତ ନିର୍ମାଣରେ ମଧ୍ୟ ବିଲକ୍ଷଣତା ଦେଖା ଯାଇଥାଏ। ତୃଣାହାରୀ ଫଳାହାରୀ ଜନ୍ତୁମାନଙ୍କର ପେଷଣ ଦନ୍ତ ଯେପରି ରହେ, ମାଂସାହାରୀ ଜନ୍ତୁମାନଙ୍କର ସେପରି ରହେନାହିଁ। ମାଂସାହାରୀ ଜନ୍ତୁମାନେ ପେଷଣ ଦନ୍ତ ଦ୍ୱାରା ଖାଦ୍ୟକୁ ପେଷି ଖାଇ ପାରନ୍ତି ନାହିଁ। ଦୁଇ ଚାରିଥର କଳରେ ଚୋବାଇ ସେମାନେ ତାକୁ ଗିଳି ଦିଅନ୍ତି।

ବାନର ଭଳି ଫଳାହାରୀ ଜନ୍ତୁମାନଙ୍କର ଦାନ୍ତ ପ୍ରାୟ ସମତଳ ରହେ। ଛେଦନାଦି ଚାରିପ୍ରକାର ଦାନ୍ତର ଉଚ୍ଚତାରେ ଏମାନଙ୍କର ବିଶେଷ ଭେଦ ରହେ ନାହିଁ।

ଫଳଭୂକ ସର୍ବାହାରୀ ଜନ୍ତୁମାନଙ୍କର ଦାନ୍ତର ଗଠନ ଅନ୍ୟପ୍ରକାର ଅଟେ । ସେମାନଙ୍କର କ୍ରେଦନ ଦନ୍ତ ତୀକ୍ଷ୍ଣ ରହେ । ଯାହା ଦ୍ୱାରା କି ଘାସ ପତ୍ର, କନ୍ଦ ମୂଳକୁ କାଟୁଥ ଯାଇପାରେ ଏବଂ ସେମାନଙ୍କର ଶୋଧନ ଦନ୍ତ ମଧ୍ୟ ବଡ଼ ବଡ଼ ଓ ବାଙ୍କ ହୋଇ ଥାଏ । ଯାହା ଦ୍ୱାରା କି ଆପଣାର ଶିକାରକୁ କାମୋଡ଼ି ରଖା ଯାଇପାରେ । ସେମାନଙ୍କର ପେଷଣ ଦନ୍ତ କେତେକ ଫଳାହାରୀ ଓ ତୃଣାହାରୀମାନଙ୍କ ଭଳି ଚେପ୍ଟା ଦାନାଯୁକ୍ତ ଏବଂ କେତେକ ମାଂସାହାରୀ ମାନଙ୍କ ଭଳି ଗୋଜିଆ ଓ ଦାନାଯୁକ୍ତ ଅଟେ । ସେମାନଙ୍କର ଗଠନ ଓ କର୍ମ ଏହିପରି ହୋଇ ଥାଏ ଯେ—ତଦ୍ୱାରା ସକଳପ୍ରକାର ଦ୍ରବ୍ୟକୁ ଭଲରୂପେ ଚୋବାଇ ଖିଆଯାଇ ପାରେ । ସୁତରାଂ ତୃଣାହାରୀ, ଫଳାହାରୀ, ମାଂସାହାରୀ ଓ ସର୍ବାହାରୀ ମାନଙ୍କର ଦନ୍ତର ଗଠନ ଅନୁସାରେ ମନୁଷ୍ୟକୁ କେଉଁ ଶ୍ରେଣୀରେ ଅନ୍ତର୍ଗତ କରାଯିବ ? ଏ ବିଷୟରେ ପ୍ରକୃତି କ'ଣ କହୁଛି ଦେଖାଯାଉ ।

ମନୁଷ୍ୟ ତୃଣାହାରୀ ନୁହେ । କାରଣ କି—ଏହାର ଦାନ୍ତ ଘାସ,ପାଳ ଆଦି ଚୋବାଇ ଠିକ୍ ୨ କରି ଖାଇବା ଯୋଗ୍ୟ ଗାଈ ଆଦିର ଦାନ୍ତ ପରି ନୁହେ । ମନୁଷ୍ୟ ମାଂସାହାରୀ ମଧ୍ୟ ନୁହେ । କାରଣକି-ତା'ର ଦାନ୍ତ ମାଂସାହାରୀ ବ୍ୟାଘ୍ର ଆଦିର ଦାନ୍ତ ପରି ନୁହେ । ମନୁଷ୍ୟ ସର୍ବାହାରୀ ମଧ୍ୟ ନୁହେ,କାରଣ କି ସର୍ବଭକ୍ଷୀ ଭାଲୁର ଦାନ୍ତ ପରି ମନୁଷ୍ୟର ଦାନ୍ତ ନାହିଁ । ସୁତରାଂ ମନୁଷ୍ୟ ଅବଶ୍ୟ ଫଳାହାରୀ । କାରଣକି-ମନୁଷ୍ୟର ଦାନ୍ତ ଧାନ୍ୟ ଓ ଫଳଭୋଜୀ ବାନର ଦାନ୍ତ ସହିତ ପ୍ରାୟ ସମାନ ଅଟେ । ବାନରର ଦାନ୍ତ ଓ ମନୁଷ୍ୟର ଦାନ୍ତର ଗଠନରେ ସାମ୍ୟ ଦେଖିଲେ ପ୍ରକୃତି କହେ ଯେ—ମନୁଷ୍ୟ ତୃଣାହାରୀ ନୁହେ କି, ମାଂସାହାରୀ ନୁହେ । ସେ କେବଳ ଫଳାହାରୀ । ୩ ।

## ପାକନାଳୀର ରଚନା ବୈଶିଷ୍ଟ୍ୟ ଦେଖି ଆହାର ନିର୍ଣ୍ଣୟ

ମୁହଁଠାରୁ ଆରମ୍ଭକରି ଗୁହ୍ୟଦ୍ୱାର ପର୍ଯ୍ୟନ୍ତ ଯେଉଁ ବାଟ ରହେ, ତାକୁ ପାକନାଳୀ କହନ୍ତି । ଏହାକୁ ଇଂରେଜୀ ଭାଷାରେ

---

। । ହସ୍ତ ବଂଶତ ସଙ୍ଖ୍ୟା କଳାପେଶୀ ବିନିର୍ମିତା
ଊର୍ଦ୍ଧ୍ୱାଂଶୋ ମୁଖନାମ ସ୍ୟାଦଧୋଂଶୋ ଗୁଦନାମକଃ
କଣ୍ଠାଦାମାଶୟଂ ଯାବତ୍ତୁ ଅନ୍ନନାଡୀତି କଥ୍ୟତେ । (ଆୟୁର୍ବେଦ ବିଜ୍ଞାନ)

"ତାଙ୍କୁ ବୈପ୍ଲବିକ ଜୈନକ ଅଥବା ଅଲ ମୈଥୁନ ଜୈନକ ବୋଲଯାଏ" ।

ଏହି ପାକନାଳୀ ସବୁ ଜନ୍ତୁମାନଙ୍କର ସମାନ ହୋଇ ନାହିଁ । **ମାଂସାହାରୀ** ଜନ୍ତୁମାନଙ୍କର ପାକନାଳୀ ମୁହଁଠାରୁ ମଳଦ୍ୱାର ବା ଗୁହ୍ୟଦ୍ୱାର ପର୍ଯ୍ୟନ୍ତ ମାପିଲେ ସେମାନଙ୍କର ଦେହ ଅପେକ୍ଷା ତିନିଗୁଣ ଠାରୁ ଚାରି ଗୁଣ ପର୍ଯ୍ୟନ୍ତ ଅଧିକ ଲମ୍ବ ହେବ ଏବଂ ଏହି ଶ୍ରେଣୀୟ ଜନ୍ତୁମାନଙ୍କର (ପାକସ୍ଥଳୀ) ସ୍ଥୂଳ ଏବଂ ଗୋଲାକାର ହେବ ।

**ତୃଣାହାରୀ** ଜନ୍ତୁମାନଙ୍କର ପାକନାଳୀର ଲମ୍ବ ସେମାନଙ୍କର ଶରୀର ଅପେକ୍ଷା ୨୦ ଗୁଣଠାରୁ ୨୨ ଗୁଣ ପର୍ଯ୍ୟନ୍ତ ହେବ ଏବଂ ସେମାନଙ୍କର ଆମାଶୟ ବହୁତ ପ୍ରକାର ଓ ବହୁଭାଗରେ ଗଠିତ ହୋଇ ଥାଏ ।

**ଫଳାହାରୀ**ମାନଙ୍କର ପାକନାଳୀର ଲମ୍ବ ସେମାନଙ୍କର ଶରୀର ଅପେକ୍ଷା ୧୦ ଗୁଣଠାରୁ ୧୨ ଗୁଣ ପର୍ଯ୍ୟନ୍ତ ହେବ ଏବଂ ଫଳାହାରୀମାନଙ୍କର ଆମାଶୟ ମାଂସାହାରୀ-ମାନଙ୍କ ଅପେକ୍ଷା ଅଧିକ ଏବଂ ତୃଣାହାରୀମାନଙ୍କ ଅପେକ୍ଷା ନ୍ୟୂନ ହେବ ।

ଇଂରେଜୀ ଡାକ୍ତର ମାନେ କହନ୍ତି ଯେ—ମନୁଷ୍ୟର ଅନ୍ତନାଡ଼ୀର ଲମ୍ବ ୩୦ ଫିଟ୍ । ଦେହ ପିଠରେ ଏକ ହାତ ମାପି ତାକୁ ହିସାବ କଲେ ମନୁଷ୍ୟର ପାକନାଳୀର ଲମ୍ବ ତା'ର ଶରୀର ଅପେକ୍ଷା ୧୦ ଗୁଣ ଅଧିକ ଅଟେ । ଆୟୁର୍ବେଦ ବିଜ୍ଞାନରେ ମଧ୍ୟ ତାହାହିଁ ଲେଖା ଅଛି ।

ସୁତରାଂ ପାକନାଳୀର ଗଠନକୁ ଦେଖିଲେ ମଧ୍ୟ ମନୁଷ୍ୟ ଫଳାହାରୀ ବୋଲି ପ୍ରକୃତି ସୂଚନା ଦିଏ । ଏହାର ସାରାଂଶ ଏହି ଯେ-ମନୁଷ୍ୟର ଦାନ୍ତ ଓ ଅନ୍ତ ଫଳାହାରୀ ଜନ୍ତୁର ଦାନ୍ତ ଓ ଅନ୍ତ ସହିତ ପ୍ରାୟ ସମାନ ଅଟେ ।

## ପ୍ରାଣୀର ଘ୍ରାଣ ଓ ରସନେନ୍ଦ୍ରିୟ ଦ୍ୱାରା ଆହାର ନିର୍ଣ୍ଣୟ

ମାଂସାହାରୀ ଜନ୍ତୁ ନିକଟକୁ ଯେତେବେଳେ ତା'ର କୌଣସି ଶିକାର ଆସି ପହଞ୍ଚେ, ସେତେବେଳେ ତା'ର ଶରୀରର ଚେଷ୍ଟା ଏକଦମ ବଦଳି ଯାଏ । ତା'ର ଆଖି ଚମକି ଉଠେ, ସେ ଶୃଙ୍ଗାରାତୁର ତନ୍ମୟ ହୋଇଯାଏ, ଆପଣାର

ଶରୀରକୁ ସଙ୍କୁଚିତ କରି ଯେ ଢଙ୍ଗି ରହିବାକୁ ଲାଗେ ଓ ଶିକାରକୁ ଝଟକାଇ ଝାମ୍ପି ନଖରେ ଓ ଦାନ୍ତରେ ଭିଡ଼ିଧରେ, ବଡ଼ ଆଗ୍ରହରେ ତା'ର ରକ୍ତ ଚୋଷିବାରେ ଲାଗେ, ପରେ ତା'ର ମାଂସ ଖାଇ ପେଟରେ ଭର୍ତ୍ତିକରେ। କିନ୍ତୁ ତା'ର ଭୋକ ହେଲେ ମଧ୍ୟ ଯଦି ତା'ର ପାଖରେ ସ୍ୱାଦୁସୁଗନ୍ଧ ଫଳ ଓ ତୃଣ ପଡ଼ିଥାଏ, ତଥାପି ସେ ସେଥି ପ୍ରତି ଦୃଷ୍ଟି ଦିଏ ନାହିଁ। ସେ ହେତୁରୁ କେହି କବି ଲେଖିଛନ୍ତି—

"ବନେଽପି ସିଂହା ମୃଗମାଂସଭକ୍ଷିଣଃ
ବୁଭୁକ୍ଷିତା ନୈବ ତୃଣଂ ଚରନ୍ତି।"

ଅର୍ଥାତ୍ ବଣରେ ମୃଗମାଂସ ଭକ୍ଷକ ସିଂହ କ୍ଷୁଧାର୍ତ୍ତ ହେଲେ ମଧ୍ୟ ତୃଣ ଖାଏ ନାହିଁ।

ଏହି ବଳ ତୃଣାହାରୀ ଜନ୍ତୁମାନଙ୍କର ରସନେନ୍ଦ୍ରିୟ ମଧ୍ୟ କଅଁଳିଆ, ଘାସ, ଚମ୍ପୁ, କୁଣ୍ଡା, ଗହମ ଓ ରୋଟି ଆଦିକୁ ଚାଖି ହୋଇପାଏ ସିନା, ଏହି ସବୁ ଜନ୍ତୁମାନେ ରକ୍ତମାଂସକୁ ଘୃଣା କରନ୍ତି। ଆଉର ମଧ୍ୟ ନିଜର ସ୍ୱାଭାବିକ ଆହାର କଞ୍ଚା ଘାସ ଆଦିରେ ଯଦି ରକ୍ତ ମିଶିଥାଏ, ତାକୁ ଘୃଣା କରି ସେମାନେ ଛାଡ଼ି ଯାଆନ୍ତି। ଏହିଭଳି ଜନ୍ତୁମାନେ ମାଂସ ଖାଇବା ପାଇଁ କୌଣସି ପ୍ରାଣୀ ସହିତ ଲଢ଼ନ୍ତି ନାହିଁ। ଅବଶ୍ୟ ଆତ୍ମରକ୍ଷା ନିମନ୍ତେ ଲଢ଼ିଥାନ୍ତି।

ଯଦି କୌଣସି ଘୋଡ଼ା ବାଘର ହାବୁଡ଼ରେ ପଡ଼େ, ତାହେଲେ ବାଘ ତା'ର ଗଳା ପାଖେ କାମୁଡ଼ିବାକୁ ଲାଗେ ଏବଂ ଘୋଡ଼ା ବାଘ ଆଡ଼କୁ ସର୍ବଦା ତା'ର ପୃଷ୍ଠଭାଗ ରଖେ। ବାଘ ପ୍ରତ୍ୟେକ ଥରରେ ଘୋଡ଼ା ପାଖକୁ ଆସେ ଏବଂ ଡେଇଁ ଉଚ୍ଚକି ଘୋଡ଼ା ଉପରେ ନିଜର ନଖ ଓ ଦାନ୍ତ ମାରିବାକୁ ଯତ୍ନ କରେ ଏବଂ ସେଇ ସମୟରେ ଘୋଡ଼ା ଯୋଡ଼ ଲାତ ମାରି ଥାଏ। ଯଦି ବାଘ ବିନା ଲାତ ମାଡ଼ରେ ଘୋଡ଼ା ଉପରକୁ ପହଞ୍ଚି ଯାଏ, ତେବେ ଘୋଡ଼ାର କାମ ଶେଷ ହୋଇଯାଏ। ତା'ର ପରେ ବାଘ ତା'ର ରକ୍ତ ପିଇ ଯଥେଷ୍ଟ ତୃପ୍ତି ଲାଭକରେ ଏବଂ ଯେବେ ଘୋଡ଼ାର ଲାତ ବାଘ ଉପରେ ବାଜେ, ତା'ହେଲେ ବାଘ ଚିତ୍‌ପଟାଙ୍ଗ ହୁଏ। ତା'ର ପରେ ଘୋଡ଼ା ସେଠାରେ ଠିଆହୋଇ ବିଚାର କରେ ନାହିଁ ଯେ— ମୋର ଶତ୍ରୁ ମଲା କି ନାହିଁ ? କିନ୍ତୁ ସେଠାରୁ ସେ ବହୁତ ଶୀଘ୍ର ଧାଇଁ

ଲାଗିଯାଏ । ଏହାପରେ ମେଁଷୀ ଓ ବାଘୁଣୀ ଆତ୍ମାଣ୍ଣା ନିମନ୍ତେ ନିଜ ନିଜର ସ୍ୱାଭାବିକ ଢଙ୍ଗରେ ଶତ୍ରୁ ସହିତ ଯୁଦ୍ଧ କରନ୍ତି ।

ପ୍ରାୟ ଦେଖାଯାଏ ଏବଂ ଶୁଣା ଯାଏ ଯେ–ଯେଉଁଠାରେ ମଲ୍ଲ ପଶୁର ସ୍ଥୂଲ ଉତ୍ସବ ହୁଏ କିମ୍ବା ବସାଯାଇ ଥାଏ, ସେଇ ବାଟଦେଇ ନାହାରି ଗୋରୁ ମେଁଷୀ ଯଦି ଯିବାକୁ ହୁଏ ତା'ହେଲେ ସେମାନେ ଏହି–ପରି ଭାବରେ ହୁରୁକି ଧାଇଁ ଯାନ୍ତି ଯେ––ତଦ୍ୱାରା ସ୍ପଷ୍ଟ ବୋଧ ହୁଏ ଯେ, ଗୋରୁ ଓ ମେଁଷୀ ରକ୍ତମାଂସର ଗନ୍ଧକୁ ମଧ୍ୟ ଘୃଣା କରନ୍ତି । କିନ୍ତୁ କୁକ୍କୁର ଯଦି ସେଠାରେ ପହଞ୍ଚେ,ତାହେଲେ ସେ ବଡ଼ ଆଗ୍ରହ ସହିତରେ ନାକ ଲଗେଇ ୨ ଶୁଙ୍ଘେ, ନିଜର ସ୍ୱାମୀ ଡାକିଲେ ମଧ୍ୟ ଜଲ୍‌ଦି ସେଠାରୁ ଯାଏ ନାହିଁ ।

ଏହିପରି ମଧ୍ୟ ଫଳାହାରୀର ମନ ଓ ଇନ୍ଦ୍ରିୟ ବଗିଚ୍‌,ତୋଟା କିଂବା ବିଲ ପଦର ଆଡ଼କୁ ହିଁ ଆକୃଷ୍ଟ ହୋଇଥାଏ ।

ଏବେ ଦେଖିବା ଉଚିତ–ମନୁଷ୍ୟର ଚକ୍ଷୁ ଓ ରସନେନ୍ଦ୍ରିୟାଦି ମାଂସ ଲୋଲୁପ କି ନା ? (୧ କେବେହେଲେ କଣ ମୋଟା ତାଜା ମାଂସଳ ଛେଳୀ ବା ମେଣ୍ଢାକୁ ଦେଖିଲେ ମନୁଷ୍ୟର ପାଟିରୁ ପାଣିଝରେ କି ? କିମ୍ବା ତା'ର ରକ୍ତ ବୁହାଇବାର ଇଚ୍ଛା ତାର ମନରେ ଜାଗ୍ରତ ହୁଏ କି ? କେବେହେଲେ କ'ଣ ତାଜା ତାଜା ରକ୍ତ ଏବଂ ମାଂସ ଦେଖିଲେ ମନୁଷ୍ୟର ମନରେ ଆନନ୍ଦ ଉତ୍ପନ୍ନ ହୁଏ କି ? କିମ୍ବା ହର୍ଷବେଗରେ ତା'ର ଚକ୍ଷୁର ପ୍ରସନ୍ନତା ଓ ରୋମାଞ୍ଚ ଜାତହୁଏ କି ? ତା'ର ଘ୍ରାଣେନ୍ଦ୍ରିୟ ଆମୋଦ ଅନୁଭବ କରେ କି ? ଅଥବା ରକ୍ତାକ୍ତ ତାଜା ମାଂସ ଚେକ୍‌ବା ଖଣ୍ଡେ ଏହାତରୁ ସେ ହାତକୁ ଅଦଳବଦଳ କରିବା ପାଇଁ ମନୁଷ୍ୟର ଚର୍ମେନ୍ଦ୍ରିୟ ପ୍ରସନ୍ନତା ଲାଭକରେ କି ? କଦାପି ଏହା ତାର ହୁଏ ନାହିଁ ।

ଗ୍ଲେଟ ୨ ଅବୋଧ ବାଳକମାନଙ୍କର ମଧ୍ୟ ଛେଳୀ ଓ ମେଣ୍ଢା ପିଲା ଦେଖିଲେ ସେମାନଙ୍କ ସହିତ ଖେଳିବାର ଇଚ୍ଛା ଅବଶ୍ୟ ହୋଇ ଥାଏ, କିନ୍ତୁ ତାକୁ ମାରିବା ପାଇଁ ଇଚ୍ଛା ନୁହେ । ଅନ୍ୟ ଜନ୍ତୁର ଦେହରୁ ରକ୍ତ ବହିବାର ଦେଖିଲେ ସେମାନଙ୍କର ମଧ୍ୟ ଘୃଣା ଉପୁଜି ଥାଏ ।

ଅନ୍ୟ ଦେହରୁ ରକ୍ତ ବାହାରିବାର ଦେଖିଲେ ଆନନ୍ଦ ତ ଦୂରର କଥା, ବହୁତ ଲୋକଙ୍କର ମୂର୍ଚ୍ଛା ପର୍ଯ୍ୟନ୍ତ ହୋଇଥାଏ ଏବଂ ସେମାନେ ନିଜେ ଆଖି ବୁଜି ଦଅନ୍ତି ।

ଯଦି କୌଣସି ମନୁଷ୍ୟର ଖାଦ୍ୟରେ ଗୋଟାଏ ରକ୍ତ ବା ମାଂସ ରଖି ଦିଆଯାଏ, ତା'ହେଲେ ଆନନ୍ଦ କଣ? ତା'ର ବାନ୍ତି ଉଚ୍ଛ୍ୱାକ, ଥୁ ଥୁ ହୋଇ ଫିଙ୍ଗିବାର ବିକାର ହିଁ ଜାତ ହୋଇ ଥାଏ । ମାଂସାହାରୀ ମନୁଷ୍ୟଙ୍କୁ ମଧ୍ୟ କଞ୍ଚାମାଂସ ଓ ରକ୍ତ ଲେଶ ମାତ୍ର ଭଲ ଲାଗେ ନାହିଁ ।

ଏହି ଭଳି କେହି ପ୍ରକୃତ ଛଡ଼ା ମନୁଷ୍ୟ ଥାଇ ପାରେ, ଯେ କି କଞ୍ଚାରକ୍ତ ଏବଂ ମାଂସକୁ ଆଦରର ସହିତ ଖାଇଯାଏ । କିନ୍ତୁ ତା'ର ସେଇ କର୍ମ ଦେଖିଲେ ଘୃଣା କରି ସମସ୍ତେ ସେଠାରୁ ହଟିଯା'ନ୍ତି ଏବଂ ତାକୁ ରାକ୍ଷସ ବା ପିଶାଚ ବୋଲି କହିଥାନ୍ତି ।

ଏଠାରେ ପ୍ରଶ୍ନ ଏହି ଯେ—କେଉଁ ଅବସ୍ଥାରେ ଏହିଭଳି ଘୃଣା ଉତ୍ପାଦକ ପଦାର୍ଥ ପକ୍ୱ ହେବା ପରେ ବହୁତ ଲୋକଙ୍କୁ କାହିଁକି ସ୍ୱାଦୁ ବୋଧ ହୁଏ ଏବଂ ସେଇ ଇନ୍ଦ୍ରିୟମାନଙ୍କର ପ୍ରଥମ ଥିବା ଅପ୍ରସନ୍ନତା କିପରି ଦୂର ହୁଏ? ଏହାର ଉତ୍ତର ଏହି ଯେ--ମାଂସକୁ ପାକ କରିବା ସମୟରେ ତହିଁରେ ମରିଚ, ଲବଙ୍ଗ, ଅଳାଇଚ, ଲସୁଣ, ଅଦା ପ୍ରଭୃତି ସ୍ୱାଭାବିକ ସୁଗନ୍ଧି ରୁଚିକର କେତେକ ପଦାର୍ଥ ମିଶାଇବାକୁ ହୁଏ, ତଦ୍ୱାରା ରସନେନ୍ଦ୍ରିୟ ଓ ଘ୍ରାଣେନ୍ଦ୍ରିୟକୁ ଲୋଭ ଦିଆଯାଏ, ସେତେବେଳେ ହିଁ ଆପଣାର ପ୍ରକୃତି ବିରୁଦ୍ଧ ରକ୍ତମାଂସକୁ ସେମାନେ ମୁହଁ ଭିତରକୁ ଯିବାକୁ ଛାଡ଼ି ଦିଅନ୍ତି, ଅନ୍ୟଥା ସେମାନେ ତାହା ଛାଡ଼ନ୍ତେ ନାହିଁ । ଯଦି ମାଂସ ଓ ରକ୍ତ ଇନ୍ଦ୍ରିୟମାନଙ୍କ ପକ୍ଷରେ ଆନନ୍ଦପ୍ରଦ ହୋଇଥାନ୍ତା, ତେବେ ଯୁକ୍ତରାଷ୍ଟ୍ର ଆଦି ଦେଶରେ ଏପରି ଅନେକ ନଗରମାନଙ୍କରେ ( ଯହିଁରେ କି ପ୍ରାୟ ସେଇ ମାଂସାହାରୀ ଅଛନ୍ତି) ସରକାର ମ୍ୟୁନିସିପାଲିଟିକୁ ଏବଂ କସାଇମାନଙ୍କୁ ଖୋଲା ଖୋଲି ଭାବରେ ମାଂସ ଆଦି ବିକିବା ପାଇଁ ନିଷେଧାଜ୍ଞା ଦେଇଛନ୍ତି କାହିଁକି? ଯଦି ପଶୁମାନଙ୍କର ହତ୍ୟା ଦେଖିଲେ ମନୁଷ୍ୟର ଆଖିକୁ ସୁଖ ଲାଗୁଥାନ୍ତା, ତେବେ ନଗରମାନଙ୍କରେ ପଶୁମାନଙ୍କର ବଧସ୍ଥାନ ବସ୍ତିଠାରୁ ଦୂରରେ ଅଲଗା ନିର୍ମାଣ କରାଯା'ନ୍ତା କାହିଁକି?

ଅତଏବ ଏଠାରେ ବସ୍ତୁର ଯୋଗ୍ୟ ତତ୍ତ୍ୱ ଏହା ଯେ--ଯେଉଁ ପଦାର୍ଥ ନାକର ଓ ଆଖିର ଏହି ଭଳି ଘୃଣା ଉତ୍ପାଦକ, ତାହା, ମନୁଷ୍ୟର ସ୍ୱାଭାବିକ ଆହାର ବୋଲି କିପରି କୁହାଯାଇ ପାରିବ ?

ଭାବନା କର ଯେ--ଆମ୍ବ, ଜାମି, କଦଳୀ, କମଳା, ଅଙ୍ଗୁର, ଦ୍ରାକ୍ଷା, ଖଜୁରୀ ଆଦି ବଗିଚାର ଫଳ ସବୁ ଦେଖିଲେ ଶୁଙ୍ଘିଲେ ଓ ଚାଖିଲେ ମନରେ କିପରି ପ୍ରସନ୍ନତା ଆସୁଛି ? ଏବଂ ଚାଉଳ, ମୁଗ, ହରଡ଼ ଚଣା, ଗହମ, ଆଦି କ୍ଷେତରେ ଥିବା ଶସ୍ୟ ବିନା ପାକରେ ମଧ୍ୟ କିପରି ସ୍ୱାଦୁ ଓ ସୁଗନ୍ଧ ? ଯଦ୍ୟପି ବଗିଚାର ଫଳ ସମାନେ ସ୍ୱାଦୁ ଓ ସୁଗନ୍ଧ ଧାନ୍ୟ ଆଦି କ୍ଷେତରେ ଥିବା ଶସ୍ୟ ମାନଙ୍କର ରହେ ନାହିଁ । ତଥାପି ସେ ସବୁ ଦୁର୍ଗନ୍ଧ ବା ଘୃଣା ଉତ୍ପାଦକ କଦାପି ହୁଏ ନାହିଁ । ଯେପରି ଜନ୍ତୁମାନଙ୍କୁ ମାରି ସେମାନଙ୍କର ମାଂସ ଆଣିଲେ ଘୃଣା ଉପୁଜେ, ସେହି ପରି ବଗିଚାର ଓ କ୍ଷେତର ଫଳ ଆଣି ଆପଣାର ଆହାର ପ୍ରସ୍ତୁତ କଲେ ଘୃଣା ଉତ୍ପନ୍ନ ହୁଏ ନାହିଁ ।

ଅତଏବ ମନୁଷ୍ୟର ଇନ୍ଦ୍ରିୟ ରଚନାର ଲକ୍ଷଣକୁ ଦେଖିଲେ ପ୍ରକୃତି ସାକ୍ଷ୍ୟ ଦିଏ ଯେ-- ମନୁଷ୍ୟ ମାଂସାହାରୀ ନୁହେ, ପରନ୍ତୁ ଫଳାହାରୀ ଅଟେ ।

ଆହୁରି ଦେଖ ଯେ (୧) ମାଂସାହାରୀ ଜନ୍ତୁମାନେ ଜିଭରେ ଚାଟି ଚାଟି ପାଣି ପିଅନ୍ତି । କିନ୍ତୁ ତୃଣାହାରୀ ଓ ଫଳାହାରୀ ମୁହଁ ଲଗାଇ ଶୋଷିକରି ପାଣି ଢୋକନ୍ତି । ଏଥିଦ୍ୱାରା ମଧ୍ୟ ପ୍ରକୃତି ସାକ୍ଷ୍ୟ ଦିଏ ଯେ--ମନୁଷ୍ୟ ଫଳାହାରୀ ସିନା, ମାଂସାହାରୀ ନୁହେ ।

(୨) ମାଂସାହାରୀ ଜନ୍ତୁ ଦିନରେ ଶୁଏ, ରାତିରେ ଅଧିକ ଚେତା ରହେ । ଏହି ପ୍ରାକୃତିକ ଚେଷ୍ଟାମଧ୍ୟ ସାକ୍ଷ୍ୟ ଦିଏ ଯେ--ମନୁଷ୍ୟ ମାଂସାହାରୀ ନୁହେ, କିନ୍ତୁ ଫଳାହାରୀ ।

(୩) ମାଂସାହାରୀ ଜନ୍ତୁମାନଙ୍କର ପିଲା ଜନ୍ମ ହେବା ପରେ ସେ କେତେ ଦିନ ପର୍ଯ୍ୟନ୍ତ ଆଖି ଖୋଲେ ନାହିଁ, ବନ୍ଦକରି ରହେ । କିନ୍ତୁ ତୃଣାହାରୀ ଓ ଫଳାହାରୀ ପ୍ରାଣିମାନଙ୍କର ଏହିପରି ହୁଏ ନାହିଁ । ଏଥି ଦ୍ୱାରା ମଧ୍ୟ ପ୍ରକୃତି କହେ ଯେ--ମନୁଷ୍ୟ ଫଳାହାରୀ ସିନା, ମାଂସାହାରୀ ନୁହେ ।

(୪) ଫଳ ସମ୍ବନ୍ଧ ପତର ଓ ତୃଣର ସମ୍ବନ୍ଧ ଅତୀବ ଘନିଷ୍ଠ । ସୁତରାଂ ଫଳାହାରୀ ଜନ୍ତୁ ପତ୍ର କମ୍ବା ତୃଣ ଅନୁସନ୍ଧାନରେ ଖାଇଲେ ତା'ର ସ୍ୱାସ୍ଥ୍ୟ ଉପରେ ବାଧା ପଡ଼େ ନାହିଁ । ଏହି ପରି ତୃଣାହାରୀ ଜନ୍ତୁ ମଧ୍ୟ ଅଳ୍ପ ପରିମାଣରେ ଫଳ କମ୍ବା ଧାନ୍ୟାଦି ଶସ୍ୟ ଆହାର କଲେ ତା'ର କୌଣସି ଅନିଷ୍ଟ ହୁଏ ନାହିଁ । ଏହିପରି ମାଂସ ସମ୍ବନ୍ଧ ଘନିଷ୍ଠ ସମ୍ବନ୍ଧ ସୁକ୍ତ-ରୋମ । ମାଂସାହାରୀ ଜନ୍ତୁ ପଶୁମାଂସ ସମ୍ବନ୍ଧ ଅଳ୍ପ ବନ୍ତୁରରେ ତା'ମଧ୍ୟ ଖାଇ ପାଏ, ତଥାପି ତା'ର କଷ୍ଟ ହାନି ହୁଏ ନାହିଁ । କିନ୍ତୁ ସେ ଯଦି ଅଳ୍ପ ଘାସ ଖାଏ, ତା'ହେଲେ ତାର ବାନ୍ତି ହୋଇଯାଏ । ଯେପରି କ ଘାସ ଖାଇ କୁକ୍କୁର ବଳେଇ ବାନ୍ତି କରିବାର ଦେଖାଯାଏ । ଏହିପରି ତୃଣାହାରୀ କମ୍ବା ଫଳାହାରୀ ଜନ୍ତୁ ଯଦି କୌଣସି ପ୍ରକାରେ ଗୋଟିଏ ଦୁଇଟି ବାଳ ଖାଇଯାଏ, ତେବେ ତା'ର ପେଟ ଫୁଲି ଉଠେ ଏବଂ ସେ ଦୁଃଖ ଭୋଗ କରେ । ମନୁଷ୍ୟର ମଧ୍ୟ ଗୋଟିଏ ଦୁଇଟି ବାଳ ଖାଇଦେଲେ ଏହି ଦଶା ହୋଇଥାଏ । ମାଂସାହାରୀ ଜନ୍ତୁର ପେଟରେ ବାଳ ହଜମ ହେଲାପରି ମନୁଷ୍ୟର ପେଟରେ ବନା କ୍ଲେଶରେ ବାଳ ହଜମ ହୁଏ ନାହିଁ । ଏଥି ଦ୍ୱାରା ପ୍ରକୃତି ସାକ୍ଷ୍ୟ ଦେଉଛି--ମନୁଷ୍ୟ ମାଂସାହାରୀ ପ୍ରାଣୀ ନୁହେ, ଫଳାହାରୀ ଅଟେ ।

(୫) ମାଂସାହାରୀ ଜନ୍ତୁ ତା'ର ବାର୍ଷିକ ଋତୁକାଳରେ ମୈଥୁ କରନ୍ତି, କିନ୍ତୁ ଫଳାହାରୀ ସେପରି କରେ ନାହିଁ ।

(୬) ମାଂସାହାରୀ ଜନ୍ତୁମାନଙ୍କର ନଖର ଆକୃତି ଠାରୁ ଫଳାହାରୀ ବାନରର ନଖର ଆକାର ଭିନ୍ନ ପ୍ରକାର । ମନୁଷ୍ୟର ନଖର ଗଠନ ବାନର ନଖ ସମାନ । ଏ ଦ୍ୱାରା ମଧ୍ୟ ପ୍ରକୃତି କହେ ଯେ-- ମନୁଷ୍ୟ-- ମାଂସାହାରୀ ନୁହେ ।

(୭) ମାଂସାହାରୀ ଜନ୍ତୁ ନିଜର ଶିକାରକୁ ମାରି ଖାଇ ଯାଏ । କିନ୍ତୁ ମନୁଷ୍ୟ ସେପରି ତାହା ଖାଏ ନାହିଁ ।

(୮) ମାଂସାହାରୀ ଜନ୍ତୁମାନଙ୍କର ଦେହନ୍ତ୍ରାଳ ବାହାରେ ନାହିଁ କିନ୍ତୁ ଫଳାହାରୀ ଓ ତୃଣାହାରୀ ଜନ୍ତୁ ଏହିପରି ନାହାନ୍ତି । [ ବୈ.ପ୍ରା.ଏ ]

ଅତଏବ ମ ... ସ୍ୱଭାବତଃ ମାଂସାହାରୀ ନୁହେ ବୋଲି ଉପରେ ଯେଉଁ ସବୁ ପ୍ରତ୍ୟକ୍ଷ ... ସିଦ୍ଧ ପ୍ରମାଣ ଦିଆଗଲା, ଏଥିରୁ ମନୁଷ୍ୟର

ସ୍ୱାଭାବିକ ଆହାର କ'ଣ ? ତାହା ବିଜ୍ଞ ପାଠକମାନେ ଭଲ ରୂପେ ହୃଦୟଙ୍ଗମ କରି ପାରିଥିବେ । ଏଥି ସମ୍ବନ୍ଧରେ ମନୁ ଲେଖିଛନ୍ତି ଯେ--

"ସମୁତ୍ପତ୍ତିଂ ଚ ମାଂସସ୍ୟ ବଧବନ୍ଧୌ ଚ ଦେହିନାମ୍
ପ୍ରସମୀକ୍ଷ୍ୟ ନିବର୍ତ୍ତେତ ସର୍ବମାଂସସ୍ୟ ଭକ୍ଷଣାତ୍ ।"

ଅର୍ଥାତ୍ ସମସ୍ତ ମାଂସ ଜୀବର ରଜ ବୀର୍ଯ୍ୟରୁ ଉତ୍ପନ୍ନ ହୁଏ ଏବଂ ଜୀବର ବଧ ସହିତ ସଂଲଗ୍ନ ହୋଇ ରହେ । ପ୍ରାଣୀକୁ ହତ୍ୟା ନ କଲେ ଓ ବନ୍ଧନରେ ନ ପକାଇଲେ ମାଂସ ମିଳେ ନାହିଁ । ସୁତରାଂ ଏସବୁ ଦୃଷ୍ଟିରୁ କର୍ମ ଦେଖି କୌଣସି ପ୍ରକାର ମାଂସ ଭକ୍ଷଣ କରିବା ବିବେକୀ ମନୁଷ୍ୟର ଉଚିତ ନୁହେଁ ।

ଏହି ଭଳି ପୃଥିବୀର ପ୍ରତ୍ୟେକ ଧର୍ମଗ୍ରନ୍ଥରେ ମଧ୍ୟ ମାଂସାହାର ବର୍ଜନ ସମ୍ବନ୍ଧେ ଉପଦେଶ ଦିଆଯାଇଛି ଏବଂ ଅନ୍ୟାନ୍ୟ ପାଶ୍ଚାତ୍ୟ ବୈଜ୍ଞାନିକ ଡାକ୍ତରମାନେ ମଧ୍ୟ ବହୁପ୍ରକାର ପରୀକ୍ଷା କରି ଏଥି ସମ୍ବନ୍ଧେ ନିଜମତ ପ୍ରକାଶ କରିଛନ୍ତି । ଚରକ କହନ୍ତି ଯେ—

ନ ରାଗାନ୍ନାପ୍ୟ ବିଜ୍ଞାନାତ୍ ଆହାରାନୁପଯୋଜୟେତ୍
ପରୀକ୍ଷ୍ୟ ହିତମଶ୍ନୀୟାଦ୍ଦେହୋ ହ୍ୟାହାରସମ୍ଭବଃ ।
[ଚ. ସୂ. ୨୮।୪୧]

ମହର୍ଷି ବେଦବ୍ୟାସ ମଧ୍ୟ ଲେଖିଛନ୍ତି--

ଶ୍ରୂୟତାଂ ଧର୍ମ ସର୍ବସ୍ୱଂ ଶ୍ରୁତ୍ୱା ଚୈବାବଧାର୍ଯ୍ୟତାମ୍
ଆତ୍ମନଃ ପ୍ରତିକୂଳାନି ପରେଷାଂ ନ ସମାଚରେତ୍ ।
[ମହାଭାରତ]

## ନିଦ୍ରା

ନିଦ୍ରାନ୍ତୁ ସେବିତା କାଲେ ଧାତୁ ସାମ୍ୟମତନ୍ଦ୍ରିତାମ୍
ପୁଷ୍ଟିଂ ବର୍ଣ୍ଣଂ ବଲୋତ୍ସାହଂ ବହ୍ନିଦୀପ୍ତିଂ କରୋତି ହି ।

ଅର୍ଥାତ୍ ରାତିରେ ଠିକ୍ ସମୟରେ ଶୋଇଲେ ଧାତୁମାନଙ୍କର ସମତା, ଆଳସ୍ୟନାଶ, ବଳ, ବର୍ଣ୍ଣ, ପୁଷ୍ଟି ଓ ଉତ୍ସାହ ବୃଦ୍ଧି ଏବଂ ଅଗ୍ନିଦୀପ୍ତି ହୁଏ ।

## ନିଦ୍ରା ସମ୍ବନ୍ଧୀ ନିୟମ

୧ । ଶୋଇବା ପାଇଁ ଉପଯୁକ୍ତ ସମୟ ରାତି । ରାତି ଦଶଘଣ୍ଟା ସମୟରେ ଶୋଇବା ଏବଂ ଅରୁଣୋଦୟ ପୂର୍ବରୁ ଶେଯ ଛାଡ଼ିବା ଏହା ସବୁଠାରୁ ଭଲ ନିୟମ ।

୨ । ଯେଉଁମାନଙ୍କର ଦିବସରେ ଶୋଇବା ଅଭ୍ୟାସ, ସେମାନେ ଶୋଇ ପାରନ୍ତି । କିନ୍ତୁ ଯେଉଁମାନଙ୍କର ଅଭ୍ୟାସ ନାହିଁ, ସେମାନେ ଗ୍ରୀଷ୍ମ ଋତୁ ଛଡ଼ା ଅନ୍ୟ ଋତୁରେ ଦିବସରେ ଶୋଇବା ଠିକ୍ ନୁହେଁ ।

୩ । ଗ୍ରୀଷ୍ମ ଋତୁ ଛଡ଼ା ଅନ୍ୟ ଋତୁରେ ମଧ୍ୟ-ଯେଉଁମାନେ ବ୍ୟାୟାମ, ପଥଶ୍ରମ ଓ ସ୍ତ୍ରୀ ସହବାସାଦିଦ୍ୱାରା କ୍ଳାନ୍ତ, ସେମାନଙ୍କ ପକ୍ଷରେ ଏବଂ ଅତିସାର ରୋଗୀ, ଶୂଳରୋଗୀ, ଶ୍ୱାସରୋଗୀ, ବାନ୍ତିରୋଗୀ, ତୃଷାରୋଗୀ ହିକ୍କାରୋଗୀ, ବାତରୋଗୀ, କଫକ୍ଷୀଣରୋଗୀ, ନିଶାଖୋର, ବୃଦ୍ଧ, ଅଜୀର୍ଣ୍ଣରୋଗୀ ଶିଶୁ ଓ ରାତି ଜାଗରିତ ବ୍ୟକ୍ତି ପକ୍ଷରେ, ବିନା ଆହାରରେ ଯଥେଷ୍ଟ ଦିବାନିଦ୍ରା ପ୍ରଶସ୍ତ ଅଟେ ।

୪ । ଶୋଇବା ସମୟରେ ଲୁଗାରେ ମୁହଁକୁ ଘୋଡ଼ାଇବା ଠିକ୍ ନୁହେ । ତଦ୍ୱାରା ସ୍ୱାସ୍ଥ୍ୟ ହାନି ହୁଏ ।

୫ । ଖଟରେ ଶୋଇବା ଠିକ୍, ତା'ର ଅଭାବରେ ଶୁଖିଲା ଭୂମିରେ ଶୋଇଲେ ମଧ୍ୟ ସେତେ ହାନି ହୁଏ ନାହିଁ ।

୬ । ଶୋଇବା ଓ ଜାଗିବାରେ ସମଭାବ ରଖିବା ଉଚିତ । ଅର୍ଥାତ୍ ବହୁତ ସମୟ ଶୋଇବା ଓ ବହୁତ ସମୟ ଚେତା ରହିବା ଠିକ୍ ନୁହେ ।

୭ । ପ୍ରଭାତ ନିଦ୍ରା ସ୍ୱାସ୍ଥ୍ୟ ବିଘାତକ । ଅତ ଏବ ଲେଖାଅଛି –

ଶୁଷ୍କମାଂସ ସ୍ତ୍ରିୟୋ ବୃଦ୍ଧାଃ ବାଳାର୍କସ୍ତରୁଣଂ ଦଧି
ପ୍ରଭାତେ ମୈଥୁନଂ ନିଦ୍ରା ସଦ୍ୟଃପ୍ରାଣ ହରାଣି ଷଟ୍ ।

ଅର୍ଥାତ୍ ବାସୀମାଂସ, ବୁଢ଼ୀ ସ୍ତ୍ରୀ, ଆଶ୍ୱିନମାସର ଖରା, ତତ୍କାଳରେ ଜମାହୋଇ ଆସୁଥିବା ଦହି, ପ୍ରଭାତ ସମୟରେ ମୈଥୁନ ଓ ପ୍ରାତଃକାଳର ନିଦ୍ରା ଏହି ଛ'ଟି ତତ୍କାଳରେ ବଳ ନାଶ କରେ ।

ପ୍ରଭାତ ଓ ସନ୍ଧ୍ୟାନିଦ୍ରା–ପାପ ବା ଅଲକ୍ଷ୍ମୀକୁ ବୃଦ୍ଧି କରେ- ଅତଏବ ବୋଲାଯାଇଛି--

କୁଚେଳିନଂ ଦନ୍ତମଳୋପଧାରିଣଂ ବହ୍ୱାଶିନଂ ନିଷ୍ଠୁରଭାଷିଣଂ ଚ
ସୂର୍ଯ୍ୟୋଦୟେ ଚାସ୍ତମିତେ ଶୟାନଂ ବିମୁଞ୍ଚତି ଶ୍ରୀର୍ଯଦି ଚକ୍ରପାଣିଃ ।

# ଆୟୁ ଓ ଆରୋଗ୍ୟପ୍ରଦ ବୈଦ୍ୟୁତିକ ପ୍ରାଣାୟାମ

ଏହି ପ୍ରାଣାୟାମକୁ ଯୋଗୀମାନେ ଭସ୍ତ୍ରିକା ପ୍ରାଣାୟାମ ବୋଲନ୍ତି । ଏହା ଏକ ପ୍ରକାର ଶ୍ୱାସ ବ୍ୟାୟାମ । ଏଥିଦ୍ୱାରା ଶରୀର ମଧ୍ୟରେ ବିଦ୍ୟୁତ୍ ଶକ୍ତି ଏବଂ ମାନସିକ ବଳର ଆବିର୍ଭାବ ହୋଇଥାଏ । ଯଥାବିଧି ଏହି ପ୍ରାଣାୟାମ ଅଭ୍ୟାସ କଲେ ମନୁଷ୍ୟର ଶରୀର ନୀରୋଗ ଏବଂ ଅପୂର୍ବ ସ୍ୱାସ୍ଥ୍ୟ ଓ ଶକ୍ତି ସମ୍ପନ୍ନ ହୁଏ ।

ମନୁଷ୍ୟର ଜୀବନ ବା ପ୍ରାଣ ହିଁ ହେଉଛି--ବିଦ୍ୟୁତ୍‌ଶକ୍ତି । ଏହି ଅଦୃଶ୍ୟ ଶକ୍ତି ବାୟୁରେ ରହେ । ଯୋଗ ଶାସ୍ତ୍ର ଲିଖିତ ଭସ୍ତ୍ରିକା-ପ୍ରାଣାୟାମର ଅଭ୍ୟାସ ଦ୍ୱାରା ମାନବ ଶରୀର ମଧ୍ୟରେ ପ୍ରଚୁର ପରିମାଣରେ ଏହି ଶକ୍ତି ପ୍ରବେଶ କରିଥାଏ । ଏହିଭଳି ଅଦ୍ଭୁତ ଶକ୍ତି ଶତ୨ ମୂଲ୍ୟବାନ ଔଷଧ ସେବନ କଲେ ମଧ୍ୟ ଉତ୍ପନ୍ନ ହୋଇ ପାରେ ନାହିଁ । ଏହି ପ୍ରାଣାୟାମ ଦ୍ୱାରା ନିମ୍ନଲିଖିତ ଉପକାର ଲବ୍ଧ ହୋଇଥାଏ । ଯଥା—

୧ । ଜ୍ଞାନତନ୍ତୁ ବା ସ୍ନାୟୁମଣ୍ଡଳୀ [ନାର୍ଭସ୍‌ସିଷ୍ଟେମ] ବିକୃତ ହୋଇ ଯେତେପ୍ରକାର ରୋଗ ଜନ୍ମେ, ସେଇ ସମସ୍ତ ରୋଗକୁ ଏହି ପ୍ରାଣାୟାମ ଦୂରକରେ ।

୨ । ପ୍ରତ୍ୟେକ ପ୍ରକାର ପୀଡ଼ା ବେଦନା ଓ ଦୁଃଖ ଏହି ପ୍ରାଣାୟାମ ଦ୍ୱାରା ଅତି ଅଳ୍ପ ସମୟରେ ଦୂର ହୋଇଯାଏ ।

୩ । ମୁଣ୍ଡବ୍ୟଥା ଏବଂ ହୃଦଯନ୍ତ୍ରର ଅସ୍ୱାଭାବିକସ୍ପନ୍ଦନ ନିବୃତ୍ତି ନିମନ୍ତେ ଏହା ରାମବାଣ ତୁଲ୍ୟ ଏକ ଅବ୍ୟର୍ଥ ଉପାୟ ।

---

।ମାଂ ପ୍ରାଣୋଦ୍ଧ୍ୟାଭ୍ୟନ୍ତରେ ନୃଣାଂ ବାହ୍ୟ ପ୍ରାଣସ୍ୟ ନିରୋଧଃ
ଧାରୟନ୍ତୀବରୋଧେନ ଶାରୀରଂ ପାଞ୍ଚଭୌତିକମ୍ ।

[ସୁଶ୍ରୁତ]

୪ । ହୃଦୟ, ଫୁସ୍‌ଫୁସ୍, ଜଠର ଓ ଯକୃତ୍ ଇତ୍ୟାଦି ଶରୀରର ପ୍ରଧାନ ଯନ୍ତ୍ରମାନଙ୍କୁ ଏହି ପ୍ରାଣାୟାମ କ୍ରିୟା ବଳବାନ୍ କରେ ଏବଂ ସ୍ୱାଭାବିକ ଅବସ୍ଥାରେ ସ୍ଥିର କରି ରଖେ ।

୫ । ପ୍ରତ୍ୟେକ ପ୍ରକାର ରୋଗରେ ଏହା ଆଶ୍ଚର୍ଯ୍ୟ ଜନକଫଳ ଦେଖାଇ ଥାଏ ।

୬ । ଏହି କ୍ରିୟାଦ୍ୱାରା ଶାରୀରିକ ବ୍ୟାପାର ଉପରେ କେତେଦୂର ନିୟନ୍ତ୍ରଣ ଅଧିକାର ମିଳେ, ଏଠାରେ ସେଥିପାଇଁ ଗୋଟିଏ ଉଦାହରଣ ଦେଲେ ଯଥେଷ୍ଟ ହେବ ଯେ ଯଦି ହୃଦୟର ଗତି ପ୍ରତିମିନଟରେ ୧୫୦ ବାର ସ୍ପନ୍ଦନ ଆଙ୍କକୁ ପହଞ୍ଚିଥାଏ, ଯଦି ମନୁଷ୍ୟ ଏକବାରେ ଉତ୍ତେଜିତ ମଡ଼ ବାର ଅବସ୍ଥାକୁ ଯାଇଥାଏ, ତା'ହେଲେ ସେ ସମୟରେ ଯଦି କେବଳ ଦଶମିନଟ ପର୍ଯ୍ୟନ୍ତ ଏହି ପ୍ରାଣାୟାମ କ୍ରିୟା କରାଯାଏ, ତେବେ ନାଡୀଚଳ ନିୟମିତ ହୋଇ ପ୍ରତିମିନଟରେ ୭୨।୭୫ ସ୍ପନ୍ଦନ ଗତି ଆଙ୍କକୁ ଆସିଯାଏ ।

୭ । ଏହି କ୍ରିୟା ଦ୍ୱାରା ସ୍ନାୟୁମଣ୍ଡଳୀ ଓ ମସ୍ତିଷ୍କର ଶକ୍ତି ପ୍ରଚୁର ପରିମାଣେ ବଢ଼େ । ଏହି ପ୍ରାଣାୟାମ କ୍ରିୟା ଶାରୀରିକ ଯନ୍ତ୍ର ମାନଙ୍କୁ ସଂଗଠିତ କରି ସୁଦୃଢ଼ ନବ କଳେବର ନିର୍ମାଣ କରେ । ଏହା ରକ୍ତଶୁଦ୍ଧି ନିମନ୍ତେ ଅଦ୍ୱିତୀୟ ଏବଂ ପୁଷ୍ଟି ନିମନ୍ତେ ଏକ ଦିବ୍ୟରସାୟନ ଅଟେ ।

୮ । ଏହି କ୍ରିୟାଦ୍ୱାରା ବିନଷ୍ଟ ସ୍ୱାସ୍ଥ୍ୟ ଫେରି ଆସେ ଏବଂ ମାନସିକ ପ୍ରସନ୍ନତାର ସହିତ ରକ୍ତର ସ୍ୱାଭାବିକ ଗତି ଉତ୍ପନ୍ନ ହୋଇ ଫୁସ୍‌ଫୁସ୍ ଏବଂ ହୃଦୟ ବଳବାନ୍ ହୋଇ ଥାଏ । ଏଥି ଦ୍ୱାରା ଚିତ୍ତ ମଧ୍ୟ ଶାନ୍ତ ହୋଇ ଉଠେ । ଏହି ପ୍ରାଣାୟାମ କ୍ରିୟା ଜଠର ଆଦି ସମସ୍ତ ଆଭ୍ୟନ୍ତର ଯନ୍ତ୍ର ମାନଙ୍କରେ ସ୍ଫୂର୍ତ୍ତି ଉତ୍ପନ୍ନ କରି ଶରୀରରେ ସ୍ଥାୟୀ ଶକ୍ତି ପ୍ରବେଶ କରାଇ ଥାଏ ।

ଏହି କ୍ରିୟାକୁ ଯଥାବିଧି ଅଭ୍ୟାସ କଲେ ସ୍ୱର ମଧୁର, ଗମ୍ଭୀର ସରଳ ଓ କର୍ଣ୍ଣପ୍ରିୟ ହୋଇଥାଏ । ଏହି ପ୍ରାଣାୟାମ କ୍ରିୟା ଦ୍ୱାରା ଅନ୍ୟ-ପ୍ରାଣିମାନଙ୍କୁ ବଶୀଭୂତ କରିବାର ସୌନ୍ଦର୍ଯ୍ୟ ଓ ସୌକୁମାର୍ଯ୍ୟ ଉତ୍ପନ୍ନ ହୋଇଥାଏ ।

୧୦ । ବହୁତ ସମୟ ବସି ବସି କାର୍ଯ୍ୟକରିବା ଲୋକପକ୍ଷରେ ଏହି ପ୍ରାଣାୟାମ କ୍ରିୟା ନିତାନ୍ତ ଆବଶ୍ୟକ । ବଳ ଓ ମନୋଯୋଗ ପୂର୍ବକ

ଅନେକ ଘଣ୍ଟା ପର୍ଯ୍ୟନ୍ତ କସରତ କଲେ ଯେଉଁ ଫଳ ଲାଭ ହୁଏ ନାହିଁ, କେବଳ ପନ୍ଦର ମିନିଟ ଏହି କ୍ରିୟା ଅଭ୍ୟାସ କଲେ ସେହି ଫଳ ଲାଭ ହୋଇପାରେ ।

୧୧ । ଏହି କ୍ରିୟା ଅତ୍ୟନ୍ତ ସରଳ । ଅତଏବ ବୃଦ୍ଧ, ଯୁବକ, ରୋଗୀ ଏବଂ ନୀରୋଗ ପକ୍ଷରେ ଏହା ଅତି ସହଜ । ଶରୀର ଶାସ୍ତ୍ର ନିୟମ ଉପରେ ଏହି କ୍ରିୟାଭ୍ୟାସ ପ୍ରତିଷ୍ଠିତ । ସୁତରାଂ ଏଥିଦ୍ୱାରା ଉପରୋକ୍ତ ସମସ୍ତ ଫଳଲାଭ ସୁନିଶ୍ଚିତ ଅଟେ ।

୧୨ । କେତେଦିନ ପର୍ଯ୍ୟନ୍ତ ଧୈର୍ଯ୍ୟ ସହିତ—ଅଭ୍ୟାସ କଲାପରେ ଏହି କ୍ରିୟାଦ୍ୱାରା ଶରୀରର ଅଣୁପରମାଣୁରେ ନୂତନ ବଳର ସଞ୍ଚାର ହୋଇ ଥାଏ । ଏହି କ୍ରିୟାଭ୍ୟାସର ପରିଣାମରେ ଶରୀର ହୃଷ୍ଟ ପୁଷ୍ଟ ଓ ପୁଲକିତ ହୋଇ ଉଠେ ।

୧୩ । ଏଥି ଦ୍ୱାରା ଉଦ୍‌ବେଗର ନିବୃତ୍ତି, ପ୍ରସନ୍ନତାର ବୃଦ୍ଧି ଏବଂ ସାହସର ଆବିର୍ଭାବ ହୋଇଥାଏ । କୌଣସି କାରଣରୁ ମନୁଷ୍ୟର ମନ ଯଦି ଖିନ୍ନ ହୋଇଥାଏ, ତା'ହେଲେ ଏହି ପ୍ରାଣାୟାମ କ୍ରିୟାଦ୍ୱାରା ସେହି ଖିନ୍ନତା ଅତିଶୀଘ୍ର ଦୂର ହୋଇଯାଏ ।

୧୪ । ଏହି କ୍ରିୟା--ବିଦ୍ୟାର୍ଥୀ, ଶିକ୍ଷକ, ଓକିଲ, ଲେଖକ ଇତ୍ୟାଦି ମାନସିକ ପରିଶ୍ରମ କରିବା ବ୍ୟକ୍ତିମାନଙ୍କ ପକ୍ଷରେ ଅମୃତତୁଲ୍ୟ ଫଳପ୍ରଦ । ଏହିଭଳି ବ୍ୟକ୍ତି ପକ୍ଷରେ ଏହି କ୍ରିୟାଭ୍ୟାସ ଅହୋରାତ୍ର ମଧ୍ୟରେ ଦୁଇ ତିନିବାର ଅବଶ୍ୟ କରିବା ଉଚିତ ।

୧୫ । ଏହା ଶରୀରର ବାହ୍ୟ ଓ ଅଭ୍ୟନ୍ତର ସ୍ନାୟୁମଣ୍ଡଳୀର ସର୍ବୋପଯୋଗୀ ଶ୍ରେଷ୍ଠ ବ୍ୟାୟାମ ।

## ଭସ୍ତ୍ରିକାପ୍ରାଣାୟାମ ବିଧି

ଭସ୍ତ୍ରିକା ପ୍ରାଣାୟାମ ନିର୍ମଳ ଶୁଦ୍ଧ ବାୟୁପ୍ରବାହିତ ସ୍ଥାନରେ କରିବା ଉଚିତ । ଖୋଲା ମୈଦାନ ବା ପଡ଼ିଆରେ, ନଦୀ କୂଳରେ, ଫୁଲବଗିଚାରେ, ପବିତ୍ର ମଠ ମନ୍ଦିରରେ ଓ ଖୋଲା ଗୃହରେ ଯହିଁରେ ଶୁଦ୍ଧ ବାୟୁର ସଞ୍ଚାର ହୁଏ, ସେହିପରି ସ୍ଥଳରେ ଏହା ଅଭ୍ୟାସ କରିବା ଉଚିତ ।

## ଅଭ୍ୟାସ କ୍ରମ

୧ । ଭୂମି ଉପରେ ସିଧାସଳଖରେ ଚିତ୍ ହୋଇ ଶୁଅ । ବସ୍ତ୍ରଗୁଡ଼ିକ ଖୋଲି ଶରୀରରେ ଶୋଇବା ବିଶେଷ ହିତକର । ଶୀତଦିନରେ ବସ୍ତ୍ରର ଆବଶ୍ୟକତା ହେଲେ ଢିଲା ବସ୍ତ୍ରରେ ଅଙ୍ଗକୁ ଆଚ୍ଛାଦନ କରି ଶୋଇବା ଉଚିତ । ଶୋଇବା ପରେ ସମୁଦାୟ ଶରୀରର ସ୍ନାୟୁମାନଙ୍କୁ ବିଲକୁଲ ଶିଥିଳ କରି ନେବା ଉଚିତ ।

୨ । ତା'ର ପରେ ଧୀରେ ଧୀରେ କ୍ରମେ କ୍ରମେ ଫୁସ୍‌ଫୁସ୍‌ରେ ବାୟୁ ଭର୍ତ୍ତି କରିବାକୁ ଆରମ୍ଭ କର । (ଏହାର ନାମ-ପୂରକ) ପ୍ରଥମେ ଉଦର ଭାଗରେ ଏବଂ ପରେ ଧୀରେ ଧୀରେ ଗ୍ରୀବା ପର୍ଯ୍ୟନ୍ତ ବାୟୁକୁ ପୂରଣ କରି ପରେ ଧୀରେ ଧୀରେ ବାହାର କରିଦିଅ । ପ୍ରଥମାବସ୍ଥାରେ ବାୟୁକୁ ଧୀରେ ଧୀରେ ଭର୍ତ୍ତି କରିବା ଉଚିତ । କିନ୍ତୁ ଅଭ୍ୟାସ ହେବା ପରେ କ୍ରମରେ କ୍ରମେ ୨ ବେଗ ସହିତ ଭର୍ତ୍ତି କରାଯାଇପାରେ ।

୩ । ନାସିକାର ଦୁଇଟି ଛିଦ୍ରରେ ସମାନଭାବରେ ବାୟୁକୁ ଭର୍ତ୍ତି କରିବା ଉଚିତ ଏବଂ ପରେ ମୁଖମାର୍ଗରେ ଶିଁଶି ମାରିଲାପରି ଗାଲକୁ ଫୁଲାଇ ଧୀରେ ଧୀରେ ବାୟୁକୁ ବାହାର କରିଦେବା ଉଚିତ । ମୁଖମାର୍ଗରେ ବାୟୁକୁ ବାହାର ନ କରି ଯଦି ନାସିକା ଦ୍ୱାରା ଧୀରେ୨ ବାୟୁ ରେଚନ କରାଯାଏ, ତେବେ ମଧ୍ୟ କୌଣସି କ୍ଷତି ହୁଏନାହିଁ ।

୪ । ଫୁସ୍‌ଫୁସ୍‌ରେ ପୂର୍ଣ୍ଣ ମାତ୍ରାରେ ବାୟୁ ଭର୍ତ୍ତିହେବାପରେ ଶୀଘ୍ର ହିଁ ତାକୁ ବାହାର କରିଦେବା ପାଇଁ ପ୍ରଯତ୍ନ କରିବା ଉଚିତ । ବାୟୁକୁ ପୂର୍ଣ୍ଣ ମାତ୍ରାରେ ବାହାର କରିଦେବା ସମୟରେ ତାକୁ ମଝିରେ ରୋକିବା ଠିକ୍ ନୁହେଁ ଏବଂ ବାୟୁକୁ ଭିତରେ ରଖି କୁମ୍ଭକ କରିବା ମଧ୍ୟ ଠିକ୍ ନୁହେ । ଏତଦ୍ଭିନ୍ନ, ଏହି ପ୍ରାଣାୟାମ କରିବା ସମୟରେ ବାୟୁକୁ ଭିତରେ ବା ବାହାରେ ରୋକି କୁମ୍ଭକ କରିବାକୁ ହେବ ନାହିଁ । ପ୍ରାକୃତିକ ନିୟମରେହିଁ ନିଶ୍ୱାସ ପ୍ରଶ୍ୱାସ ବା ରେଚକ ପୂରକ କରିବାକୁ ହେବ । ଯାହା କି ପ୍ରତ୍ୟେକ ମନୁଷ୍ୟର ସ୍ୱାଭାବିକ ନିୟମ । ଏହିପରି ବାୟୁର ପୂରଣ ଓ ରେଚନ କ୍ରିୟା ପ୍ରାରମ୍ଭିକ ଅବସ୍ଥାରେ ଟିକିଏ କଠିନ ବୋଧ ହୁଏ, କିନ୍ତୁ କିଛି ସମୟ ଅଭ୍ୟାସରେ ଏହା ଅତ୍ୟନ୍ତ ସରଳ ହୋଇଯାଏ ।

୮। ଆରମ୍ଭରେ ଖାଲି ଆମାଶୟରେ ଯେତିକି ବାୟୁ ପୂରଣ କରି ପାରିବାରେ ଏବଂ ଫୁସ୍‌ର ସହିତ ଫୁସ୍‌ଫୁସ ଯେତିକି ଭର୍ତ୍ତି କରିପାରେ ସେତିକି ବାୟୁ ଭର୍ତ୍ତି କରିବା ଉଚିତ। ଫୁସଫୁସ୍‌ର ପୃଷ୍ଠଦେଶରେ କମ୍ପାଇ ତାର ସହିତ ବାୟୁକୁ ଭର୍ତ୍ତି କରିବା ପାଇଁ ଶାରୀରିକ ବଳପ୍ରୟୋଗ କରିବା ଉଚିତ ନୁହେଁ ଏବଂ କୌଣସି ପ୍ରକାରରେ ଜୋର ଦେବା ଠିକ୍ ନୁହେଁ। କିନ୍ତୁ ସ୍ୱାଭାବିକ ସରଳ ଭାବରେ ଯଥା ସମ୍ଭବ ବେଗର ସହିତ ଫୁସ୍ଫୁସ୍‌କୁ ବାୟୁରେ ପୂର୍ଣ୍ଣ କରିବା ଉଚିତ। ପ୍ରଥମେ ବାୟୁକୁ ଉଦରରେ ଏବଂ ତା'ପରେ ଫୁସ୍ଫୁସ୍‌ରେ ଭର୍ତ୍ତି କରିବା ପାଇଁ ସାବଧାନ ହେବା ଆବଶ୍ୟକ। ଉଦରରେ ଏବଂ ଫୁସ୍ଫୁସରେ ଅବିଚ୍ଛିନ୍ନ ବେଗରେ ବାୟୁ ଭର୍ତ୍ତି କରିବା ଉଚିତ। ଭର୍ତ୍ତି କରିବା ସମୟରେ ମଝି ମଝିରେ ରୋକିବା ଠିକ୍ ନୁହେଁ। ଅର୍ଥାତ୍ ଉଦରରେ ଏବଂ ଫୁସ୍ଫୁସ୍‌ରେ ସମସ୍ତ ବାୟୁ ଭର୍ତ୍ତି କରିବା ସମୟରେ ମଝିରେ ତାକୁ ରୋକି ବାୟୁର ପ୍ରବାହ ଖଣ୍ଡିତ କରିବା ଠିକ୍ ନୁହେଁ।

କ୍ରିୟାର ପ୍ରାରମ୍ଭରେ କେତେ ମିନଟ ପର୍ଯ୍ୟନ୍ତ ମୁଣ୍ଡ ଦୁର୍ବଳପରି ବୋଧହୁଏ, କିନ୍ତୁ ଏହାପରି ହେବ ରେ କାରଣ ଏହାଯେ-ସେଇ ସମୟରେ ଶୁଦ୍ଧବାୟୁ ସହିତ ଶରୀରସ୍ଥ ଅଶୁଦ୍ଧ ରକ୍ତର ସଂଯୋଗ ହୋଇଥାଏ, ଯାହା ଦ୍ୱାରା କାର୍ବୋନିକ ଏସିଡ୍ ଗ୍ୟାସ ଉତ୍ପନ୍ନ ହୁଏ ଏବଂ ସେଇ ଗ୍ୟାସରୁ ହୃଦୟରେ ଅସ୍ଥିରତା ଏବଂ ମସ୍ତିଷ୍କରେ ଦୁର୍ବଳ ବୋଧ ହୋଇଥାଏ।

ଦଶମିନଟ ବା ଏଥିରୁ କିଛି ଅଧିକ ସମୟ ପର୍ଯ୍ୟନ୍ତ ଏହି ପ୍ରାଣାୟାମ କଲେ ହାତ ପାଦ ଏବଂ ଶରୀରର ଅନ୍ୟଭାଗରେ ଏକ ପ୍ରକାର ଝିମିଝିମି ବୋଧ ହୁଏ। ଏହିପରି ଝିମି ଝିମି ହେବା ସମୟରେ ବୁଝିବାକୁ ହେବ ଯେ— ପ୍ରାଣାୟାମ କ୍ରିୟାର ପ୍ରଭାବରେ ଶରୀରସ୍ଥ ରକ୍ତରେ ପରିବର୍ତ୍ତନ ଚାଲୁଛି। ଏହିପରି ଝିମି ଝିମି ବୋଧ ହେବାପରେ ମଧ୍ୟ ପାଞ୍ଚ ସାତ ମିନଟ ପର୍ଯ୍ୟନ୍ତ ଏହି ପ୍ରାଣାୟାମ କ୍ରିୟା ଆଉର କରିବା ଉଚିତ। ତା'ପରେ କିଛି ସମୟ ପର୍ଯ୍ୟନ୍ତ ଚାଦରର ସହିତ ଶିଥିଳ-ଭାବରେ ପଡ଼ି ରହିବା ଆବଶ୍ୟକ। ଏହି ପ୍ରକ୍ରିୟା ଦ୍ୱାରା ମନୁଷ୍ୟର ଶରୀରରେ ବିଦ୍ୟୁନ୍ମୟ ଶକ୍ତି ଭର୍ତ୍ତି ହୋଇ ଯାଏ, ଜ୍ଞାନତନ୍ତୁ ବୃଦ୍ଧି ବ୍ୟବସ୍ଥିତ ହୋଇ ସାରା ଶରୀର ବିଦ୍ୟୁନ୍ମୟ ହୋଇଯାଏ।

# ବ୍ରହ୍ମଚର୍ଯ୍ୟଦ୍ୱାରା ଆୟୁ ଓ ଆରୋଗ୍ୟ ଲାଭ

ବ୍ରହ୍ମ ଶବ୍ଦର ଅର୍ଥ ହେଉଅଛି (୧) ବେଦ ୨ ପରମେଶ୍ୱର ଓ ୩) ବୀର୍ଯ୍ୟ । ଚର୍ଯ୍ୟ ଶବ୍ଦର ଅର୍ଥ-(୧ ଅଧ୍ୟୟନ (୨) ଚିନ୍ତନ .(୩) ରକ୍ଷଣ । ଅର୍ଥାତ୍ ଏକାସାଙ୍ଗେ ବେଦାଭ୍ୟାସ, ଈଶ୍ୱରୋପାସନା ଓ ବୀର୍ଯ୍ୟରକ୍ଷଣ କରିବାର ନାମ ବ୍ରହ୍ମଚର୍ଯ୍ୟ ।

ବ୍ରହ୍ମଚର୍ଯ୍ୟର ମହିମା ସମ୍ବନ୍ଧେ ଭଗବାନ୍ ଧନ୍ୱନ୍ତରି ଲେଖିଛନ୍ତି ଯେ—

ମୃତ୍ୟୁ ବ୍ୟାଧି ଜରାନାଶି ପୀୟୂଷଂ ପରମୌଷଧମ୍
ବ୍ରହ୍ମଚର୍ଯ୍ୟଂ ମହଦ୍ରତ୍ନଂ ସତ୍ୟମେବ ବଦାମ୍ୟହମ୍ ।
ଶାନ୍ତିଂ କାନ୍ତିଂ ସ୍ମୃତିଂ ମେଧାଂ ଆରୋଗ୍ୟଂ ଚାପି ସନ୍ତତିମ୍
ଯ ଇଚ୍ଛତି ମହଦ୍ଧର୍ମଂ ବ୍ରହ୍ମଚର୍ଯ୍ୟଂ ଚରେଦିହ ।
ବ୍ରହ୍ମଚର୍ଯ୍ୟଂ ପରଂ ଜ୍ଞାନଂ ବ୍ରହ୍ମଚର୍ଯ୍ୟଂ ପରଂ ବଳମ୍
ବ୍ରହ୍ମଚର୍ଯ୍ୟମୟୋ ହ୍ୟାତ୍ମା ବ୍ରହ୍ମଚର୍ଯ୍ୟେବ ତିଷ୍ଠତି
ଚାରୁପୁଷ୍ଟଃ ସୁସଂସ୍ଥାନା ଦୃଢ଼ ସଂହନନା ନରାଃ
ତେଜସ୍ୱିନୋ ମହାବୀର୍ଯ୍ୟା ଭବନ୍ତି ବ୍ରହ୍ମଚର୍ଯ୍ୟତଃ ।

ଅର୍ଥାତ୍ ବ୍ରହ୍ମଚର୍ଯ୍ୟ ଜରା, ବ୍ୟାଧି, ମୃତ୍ୟୁନାଶକ, ଅମୃତତୁଲ୍ୟ ଦିବ୍ୟ ଔଷଧ । ଏହା ଶାନ୍ତି, କାନ୍ତି, ସ୍ମୃତି, ଜ୍ଞାନ, ଧର୍ମ, ଆରୋଗ୍ୟ ଓ ସୁସନ୍ତାନ ପ୍ରଦାନ କରେ । ବ୍ରହ୍ମଚର୍ଯ୍ୟ ହିଁ ପରମ ଜ୍ଞାନ ବ୍ରହ୍ମଚର୍ଯ୍ୟ ହିଁ ପ୍ରଧାନ ବଳ, ଅଧିକ କ ବ୍ରହ୍ମଚର୍ଯ୍ୟ ହିଁ ଆତ୍ମାର ସ୍ୱରୂପ ଅଟେ । ବ୍ରହ୍ମଚର୍ଯ୍ୟର ପ୍ରଭାବରେ ପୁରୁଷ ତେଜସ୍ୱୀ ହୁଏ ଏବଂ ସୁଦୃଢ ଓ ସୁଗଠିତ ଶରୀର ବ୍ରହ୍ମଚର୍ଯ୍ୟ ଦ୍ୱାରା ଲାଭ ହୋଇ ଥାଏ ।

ମନୁ ମଧ୍ୟ ଲେଖିଛନ୍ତି ଯେ-

ଅନଭ୍ୟାସାଚ୍ଚ ବେଦାନାମାଚାରସ୍ୟ ଚ ବର୍ଜନାତ୍
ଆଲସ୍ୟାଦନ୍ନଦୋଷାଚ୍ଚ ମୃତ୍ୟୁର୍ବିପ୍ରାନ୍ ଜିଘାଂସତି ।

ଅର୍ଥାତ୍ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ ପୂର୍ବକ ବେଦ ଅଭ୍ୟାସର ଅଭାବ, ସଦାଚାରର ବର୍ଜନ, ଆଳସ୍ୟ ଓ ଅନ୍ନଦୋଷ ଏହି ସବୁ କାରଣରୁ ବ୍ରାହ୍ମଣାଦି ବର୍ଣ୍ଣଙ୍କୁ ମୃତ୍ୟୁ ଗ୍ରାସ କରିବାକୁ ଇଚ୍ଛା କରୁଛି ।

## ବୀର୍ଯ୍ୟକ୍ଷୟରୁ କାଳ ରୋଗ

ମରଣଂ ବିନ୍ଦୁ ପାତେନ ଜୀବନଂ ବିନ୍ଦୁ ଧାରଣମ୍ ।

ଆମମାନଙ୍କର ଜୀବନ ବୀର୍ଯ୍ୟର ଅଧୀନ ଅଟେ । ବୀର୍ଯ୍ୟକ୍ଷୟରୁ ଦେହରେ ସ୍ନାୟୁ ଦୌର୍ବଲ୍ୟ, ରକ୍ତହୀନତାର ଶିରରୋଗ, ଦୃଷ୍ଟିହୀନତା, ସ୍ନାୟୁ ଦୁର୍ବଳତା, ଅଜୀର୍ଣ୍ଣ, କୋଷ୍ଠବଦ୍ଧତା, ବାତ, ପକ୍ଷାଘାତ, ଅଗ୍ନିମାନ୍ଦ୍ୟ ହୃଦ୍‌ରୋଗ, ଆଳସ୍ୟ, ଅନିଦ୍ରା, ଉନ୍ମାଦ, ଶ୍ୱାସ, ଉତ୍ସାହହୀନତା ଓ ଖିନ୍ନତା ଇତ୍ୟାଦି ଅନେକ ଶାରୀରିକ ଓ ମାନସିକ ରୋଗ ଜାତ ହୋଇଥାଏ, ଏମନ୍ତ କି ଏକ ବିନ୍ଦୁ ବୀର୍ଯ୍ୟ କ୍ଷୟ ଦ୍ୱାରା ଅସଂଖ୍ୟ ଜୀବହତ୍ୟା ହୋଇଥାଏ । ଚରକ କହିଛନ୍ତି ଯେ--

ଆହାରସ୍ୟ ପରଂ ଧାମ ଶୁକ୍ରଂ ତଦ୍ରକ୍ଷ୍ୟ ମାତ୍ମନଃ

କ୍ଷୟୋ ହ୍ୟସ୍ୟ ବହୂନ୍ ରୋଗାନ୍ ମରଣଂ ବା ନିୟଚ୍ଛତି ।

(ଚ: ନି. ୬।୮)

### କାମବେଗ ଶାନ୍ତିର ଉପାୟ ଯଥା--

୧ । ମନସ୍ଥିର ହେବା ଯାଏ ଶୀତଳ ଜଳରେ ବାରମ୍ବାର ମସ୍ତକକୁ ଧୋଇବ ।

୨ । ଯଥେଷ୍ଟ ଥଣ୍ଡାଜଳ ପିଇବ ।

୩ । ଇଚ୍ଛା ନଥିଲେ ମଧ୍ୟ ଯେ କୌଣସି ଆମ୍ଳ ଫଳ ଖାଇବ ।

୪ । ଥଣ୍ଡାପାଣିରେ ଦେହକୁ ଭଲରୂପେ ଘଷି ମାଜି ଖୁବ୍ ସ୍ନାନ କରିବ ।

୫ । ଦୁଇ ଗୋଡ଼ ପଲଙ୍କ ଧାରିବ କିମ୍ବା କାନ ଦୁଇଟାକୁ ଖୁବ୍ ରଗଡ଼ ମନ୍ଥିବ ।

୬ । ୧୫ । ୨୦ ମିନିଟ ପର୍ଯ୍ୟନ୍ତ ଖୁବ ଚଞ୍ଚଳରେ ଶ୍ୱାସ ପ୍ରଶ୍ୱାସ ନେବ ।

୭ । ଶ୍ମଶାନ ଭୂମିରେ ଏକାକୀ ବସି ପ୍ରାଣୀମାନଙ୍କର ଗତି ଓ ମାନବ-ଜୀବନର କ୍ଷଣଭଙ୍ଗୁରତାକୁ ଚିନ୍ତା କରିବ ।

୮ । ବୈରାଗ୍ୟ ଉଦ୍ଦୀପକ, ସାତ୍ତ୍ୱିକ ଭାବ ବର୍ଦ୍ଧକ ସଦ୍‌ଗ୍ରନ୍ଥ କିମ୍ବା ମହାପୁରୁଷମାନଙ୍କର ଜୀବନ ଚରିତ ପଢ଼ିବ ।

୯ । ସଂସାରର ଅସାରତା, ଜୀବନ ଓ ଯୌବନର ଅନିତ୍ୟତା ବିଷୟ ନେଇ ଭାବନା କରିବ ।

୧୦ । ମନୋନିବେଶ ପୂର୍ବକ ନିୟମିତ ସମୟରେ ଭସ୍ତ୍ରିକା ପ୍ରାଣାୟାମ ଓ ଈଶ୍ୱର ଉପାସନା କରିବ ।

ଏଥି ମଧ୍ୟରୁ ଯେ କୌଣସି ଉପାୟ ଅବଲମ୍ବନ କଲେ କାମବେଗ ନିଶ୍ଚୟ ଶାନ୍ତ ହୋଇଯାଏ ।

## ସତ୍‌ସଙ୍ଗ

ଜୀବନ ଗଠନ ପକ୍ଷରେ ସତ୍ସଙ୍ଗ ହିଁ ସର୍ବପ୍ରଧାନ ଉପାୟ । ସତ୍ସଙ୍ଗରେ ହୃଦୟର ସଦ୍‌ବୃତ୍ତି ସକଳ ପ୍ରସ୍ଫୁଟିତ ଓ ପରିପୁଷ୍ଟ ହୁଏ । ପଣ୍ଡିତ ବିଷ୍ଣୁଶର୍ମା ଲେଖିଛନ୍ତି ଯେ—

ହୀୟତେ ହି ମତିସ୍ତାତ ହୀନୈଃ ସହ ସମାଗମାତ୍
ସମୈଶ୍ଚ ସମତାମେତି ବିଶିଷ୍ଟୈଶ୍ଚ ବିଶିଷ୍ଟତାମ୍ ।

ଅର୍ଥାତ୍ ହୀନସଙ୍ଗରେ ବୁଦ୍ଧି ହୀନ ହୁଏ, ସମାନ ସଙ୍ଗରେ ସମାନ ରହେ ଏବଂ ସତ୍ ସଙ୍ଗରେ ସଦ୍‌ବୁଦ୍ଧି ଲାଭ ହୋଇଥାଏ । ( ଆଜି କାଲି ନାନା କାରଣରୁ ବିଶେଷତଃ କୁସଙ୍ଗ ହେତୁରୁ ହସ୍ତମୈଥୁନାଦି ଦୁର୍ବ୍ୟସନ ଅତ୍ୟନ୍ତ ବର୍ତ୍ତମାନ ବାଳକ ବାଳିକାମାନଙ୍କ ମଧ୍ୟରେ ଖୁବ୍ ବଢିଛି । ଏହି ଆତ୍ମହତ୍ୟା ପ୍ରବୃତ୍ତିରୁ ସେମାନଙ୍କୁ ରକ୍ଷାକରିବା ପାଇଁ ବ୍ରହ୍ମଚର୍ଯ୍ୟର ମହତ୍ତ୍ୱ ସେମାନଙ୍କୁ ଉପଦେଶ ଦେବା ଶିକ୍ଷକ ଓ ଅଭିଭାବକମାନଙ୍କର ଅବଶ୍ୟ କର୍ତ୍ତବ୍ୟ ।)

## ଆତ୍ମ ରକ୍ଷା

"ଉଦ୍ଧରେଦାତ୍ମନାତ୍ମାନଂ ନାତ୍ମାନମବସାଦୟେତ୍ ।"(ଗୀତା)

ଆତ୍ମୋନ୍ନତିକାମୀ ପୁରୁଷ ପ୍ରତିଦିନ ନିଦ୍ରା ଯିବା ପୂର୍ବରୁ ଆତ୍ମପରୀକ୍ଷା କରିବାକୁ ହେବ । ମୁଁ ଦିନ ଅପେକ୍ଷା ଆଜି ଭଲଭାବରେ ଚଳିଲି କି ନା ? ମନର ପ୍ରବୃତ୍ତି ସଂଯମ ଓ ସଦ୍‌ବୃତ୍ତିର ବିକାଶ କେତେ ଘଟିଛି ? ଏହାକୁ ପୁଙ୍ଖାନୁପୁଙ୍ଖ ରୂପେ ବିଚାର କରି ତାହା ନିଜର ଦୈନିକ ଡାଏରୀ (ଦିନଲିପି) ରେ ଲେଖି ରଖିବାକୁ ହେବ । ହିସାବ ନ ରଖିଲେ କୌଣସି ବିଷୟରେ ଉନ୍ନତି ହୁଏ ନାହିଁ । ଆଧ୍ୟାତ୍ମିକ ବିଷୟରେ ଖୁବ୍ କଡ଼ା ହିସାବ ରଖିବା ଦରକାର ।

ଡାଏରୀ ରଖିବାର ନମୁନା ନିମ୍ନରେ ପ୍ରଦର୍ଶିତ ହେଲା ।

ମାସ--ବାର ଓ ତାରିଖ

| | |
|---|---|
| । | ପ୍ରଭାତରେ ଉଠିଛକି ନାହିଁ ? କେତେ ଘଣ୍ଟାରେ ଉଠିଛ ?, |
| । | କେତେଥର ଈଶ୍ୱର ଉପାସନା କରିଛ ? |
| । | କେତେଥର ଚରିତ୍ର ଶୁଦ୍ଧି ନିମନ୍ତେ ପ୍ରାର୍ଥନା କରିଛ ? |
| । | କେତେ ସଂଖ୍ୟାରେ ଜପ କରିଛ ? |
| । | ଇଚ୍ଛାପୂର୍ବକ ବୀର୍ଯ୍ୟ କ୍ଷୟ କରିଛ କି ? |
| । | ଅଜାଣତରେ ବୀର୍ଯ୍ୟ କ୍ଷୟ ହୋଇଅଛି କି ? |
| । | କୁତ୍ସିତ ଚିନ୍ତା କରିଛ କି ? |
| । | କୁତ୍ସିତ କଥା କହିଛ କି ? |
| । | କୁତ୍ସିତ କଥା ଶୁଣିଛ କି ? |
| । | ଅଶ୍ଳୀଳ ଛବି ଆଦି ଦେଖିଛ କି ? |
| । | କୁତ୍ସିତ ଉପନ୍ୟାସ ଆଦି ପଢ଼ିଛ କି ? |
| । | ନିଷ୍ପ୍ରୟୋଜନ କଥା କହିଛ କି ? |
| । | କୁତ୍ସିତ ଲୋକ ସହିତ ମିଶିଛ କି ? |
| । | ଆହାରରେ ସଂଯମ ରଖିଛ କି ନା ? |
| । | ନିଦ୍ରାରେ ସଂଯମ ରଖିଛ କି ? |
| | ନିୟମିତ ସମୟରେ ବ୍ୟାୟାମ କିମ୍ବା ପ୍ରାଣାୟାମ କରିଛ କି ନା? |
| | କୌପୀନ ପରିଧାନ କରିଛ କି ନା ? |
| | ନିୟମିତ ସମୟରେ ମଳମୂତ୍ରାଦି ପରିତ୍ୟାଗ କରିଛ କି ନା ?? |

ଉକ୍ତ ଡାଏରୀର ତାଲିକାପରି ଗୋଟିଏ ଖାତା କରି ତହିଁରେ ଉକ୍ତ ରୂପରେ ଘର କାଟି ତା'ମଧ୍ୟରେ ଦୈନିକ ଯାହା ୨ କରିଛ ବା ନ କରିଛ, ତଦନୁଯାୟୀ 'ହଁ' ବା 'ନା' ଲେଖି ରଖିବ ।

# ସର୍ବରୋଗ ନିବୃତ୍ତିର ଉପାୟ ଚରଚୋଲ୍ଲ ଯୋଗାଭ୍ୟାସ

ସୁଖକୁ ଆରୋଗ୍ୟ ଏବଂ ଦୁଃଖକୁ ରୋଗ ବୋଲଯାଏ † । ଆୟୁର୍ବେଦ ଶାସ୍ତ୍ରରେ ସମୁଦାୟ ରୋଗକୁ ସଂକ୍ଷେପତଃ ଚାରିଭାଗରେ ବିଭକ୍ତ କରାଯାଇଅଛି । ଯଥା - ୧ଶାରୀରିକ ରୋଗ, ୨ମାନସିକ, ୩ଆଗନ୍ତୁକ ଓ ୪ସ୍ୱାଭାବିକ । * । ସେଥିମଧ୍ୟରେ ଜ୍ୱର, ଅତିସାର, ଗ୍ରହଣୀ, ଅର୍ଶ ଓ ଅଜୀର୍ଣ୍ଣଆଦି ଶରୀରକୁ ଆଶ୍ରୟ କରି ଜାତ ହେବା ରୋଗମାନଙ୍କୁ ଶାରୀରିକ ଏବଂ କାମ,କ୍ରୋଧ,ଲୋଭ,ମୋହ,ଭୟ,ଉଦ୍‌ବେଗ,ଚିନ୍ତା, ଶୋକ, ଉନ୍ମାଦ,ଅପସ୍ମାର ପ୍ରଭୃତି ମନକୁ ଆଶ୍ରୟ କରି ଉତ୍ପନ୍ନ ହେବା ରୋଗମାନଙ୍କୁ ମାନସିକ ଏବଂ ଅଭିଘାତ, ଅଭିଚାର, ଭୂତାଭିଷଙ୍ଗ, ଜୀବାଣୁ ସଂକ୍ରମଣ ଓ ବିଷ-ସର୍ପାଦି କାରଣରୁ ଜାତହେବା ରୋଗମାନଙ୍କୁ ଆଗନ୍ତୁକ ଏବଂ ଶରୀରର ସହଜାତ କ୍ଷୁଧା, ତୃଷା ନିଦ୍ରା, ତନ୍ଦ୍ରା,ଗର୍ଭବାସ, ଜନ୍ମ ଜରା ଓ ମରଣକୁ ସ୍ୱାଭାବିକ ରୋଗ ବୋଲଯାଏ ।

୧--ବ୍ରହ୍ମପୁରାଣରେ ଲେଖାଅଛି ଯେ -ଦୁଃଖ ବା ରୋଗ ତିନି ପ୍ରକାର । ଯଥା -ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ । ସେଥି ମଧ୍ୟରେ ଆଧ୍ୟାତ୍ମିକ ଦୁଃଖ ଶାରୀର ଓ ମାନସ ଭେଦରେ ଦୁଇ ପ୍ରକାର । ତନ୍ମଧ୍ୟରେ ଜ୍ୱର, ଅତିସାର, କୁଷ୍ଠ ଭଗନ୍ଦରାଦି ଭେଦରେ ଶାରୀର ରୋଗ ବହୁଧା ବିଭିନ୍ନ ହୋଇ ଥାଏ । ସେହିପରି ମଧ୍ୟ ମାନସରୋଗ କାମ,କ୍ରୋଧ, ଭୟ, ଦ୍ୱେଷ, ଲୋଭ, ମୋହ, ବିଷାଦ, ଶୋକ, ଅସୂୟା, ଅପମାନ, ଈର୍ଷ୍ୟା, ମାତ୍ସର୍ଯ୍ୟ ଓ ପରାଭବ ପ୍ରଭୃତି ଭେଦରେ ଅନେକ ପ୍ରକାରରେ ବିଭକ୍ତ ହୋଇଥାଏ । ବ୍ୟାଘ୍ରାଦି ଜନ୍ତୁ ପଶୁ ,ପକ୍ଷୀ,ଦୁଷ୍ଟ ମନୁଷ୍ୟ, ପିଶାଚ, ଭୂତ, ରାକ୍ଷସ ଓ ସର୍ପାଦି ଦ୍ୱାରା ମନୁଷ୍ୟମାନଙ୍କର ଯେଉଁ ଦୁଃଖ ଜନ୍ମେ, ତାକୁ ଆଧିଭୌତିକ ରୋଗ ବୋଲନ୍ତି । ଏହି ପରି ଅତିବୃଷ୍ଟି, ଅନାବୃଷ୍ଟି, ବଜ୍ରପାତ, ଭୂମିକମ୍ପ ଓ ତୋଫାନ ଆଦି ଦ୍ୱାରା ଯେଉଁ ଦୁଃଖ ଉପସ୍ଥିତ

---

† ସୁଖସଂଜ୍ଞକମାରୋଗ୍ୟଂ ବିକାରୋ ଦୁଃଖମେବଚ । (ଚ. ସୂ. ୯ଅ)
ସର୍ବଂ ପରବଶଂ ଦୁଃଖଂ ସର୍ବମାତ୍ମବଶଂ ସୁଖମ୍ । ମନୁସ୍ମୃତି)

* ତେ ଚତୁର୍ବିଧାଃ- ଆଗନ୍ତବଃ ଶାରୀରାଃ ମାନସାଃ ସ୍ୱାଭାବିକାଶ୍ଚ ।
(ସୁ. ସୂ. ୧ଅ)

ହୁଏ, ତାକୁ ଆଧିଦୈବିକ ଦୁଃଖ ବୋଲି ଯାଏ । ଏତଦ୍ଭିନ୍ନ ଗର୍ଭବାସ ଦୁଃଖ, ଜନ୍ମଦୁଃଖ, ଜରାଦୁଃଖ, ଅଜ୍ଞାନ ଦୁଃଖ, ମୃତ୍ୟୁଦୁଃଖ ଓ ନରକଭୋଗାଦି ବହୁ ଦୁଃଖ ଅଛି, ଯାହାକ ସନ୍ଧସ୍ତ୍ର ଭେଦରେ ବର୍ଣ୍ଣିତ ହୋଇଥାଏ ।

**ଗର୍ଭବାସ ଦୁଃଖର ବିବରଣ** – ଯେତେବେଳେ ସୁକୁମାରକୃତ ଜୀବ ବହୁମଳ ପୂର୍ଣ୍ଣ ଗର୍ଭମଧ୍ୟରେ ବାସ କରି ଜଳୁ ବା ଗର୍ଭବେଷ୍ଟକ ଚର୍ମ ଦ୍ୱାରା ବେଷ୍ଟିତ ହୋଇଥାଏ, ସେତେବେଳେ ତାର ପୃଷ୍ଠ, ଗ୍ରୀବା ଏବଂ ଅସ୍ଥି ପ୍ରଭୃତି ଭଗ୍ନ ଅବସ୍ଥାରେ ରହେ । ସେତେବେଳେ ଜୀବ ଅତି ଯାତନା ଭୋଗ କରେ । ଗର୍ଭଧାରିଣୀ ଯାହା କିଛି ଉତ୍କଟ କଟୁ, ଅମ୍ଳ, ଲବଣ, ଉଷ୍ଣ, ତୀକ୍ଷ୍ଣ, ଦ୍ରବ୍ୟ ଭୋଜନ କରେ, ସେ ସବୁ ତୀବ୍ର ରସ ଜଠର ମଧ୍ୟରେ ପ୍ରବିଷ୍ଟ ହୋଇ ଗର୍ଭସ୍ଥ ଜୀବର ଅତ୍ୟଧିକ ଦାହ ଉତ୍ପାଦନ କରେ, ଜୀବ ତଦ୍ୱାରା ଅତ୍ୟନ୍ତ କ୍ଲେଶ ଭୋଗ କରେ । ସେ ଏହି ଅବସ୍ଥାରେ ତା'ର ନିଜର ଅଙ୍ଗ ପ୍ରତ୍ୟଙ୍ଗର ପ୍ରସାରଣ ବା ଆକୁଞ୍ଚନାଦି କିଛି କରି ପାରେ ନାହିଁ । ବିଷ୍ଠା,ମୂତ୍ରର ମହାପଙ୍କରେ ସେ ପଡ଼ିରହେ । ଫଳରେ ସେ ସକଳ ଅବୟବରେହିଁ ଦୁଃଖ ଅନୁଭବ କରିଥାଏ । ସେତେବେଳେ ସେ ଚେତନା ସମ୍ପନ୍ନ ହୋଇ ତା'ର ଅତୀତ ଶତ ଶତ ଜନ୍ମର ଘଟନାପରମ୍ପରା ସ୍ମରଣ କରି ଥାଏ । ସୁତରାଂ କର୍ମ ନିବନ୍ଧନ ଜୀବ ଅତି ଦୁଃଖରେହିଁ ଗର୍ଭରେ ବାସ କରେ । ପରେ ସେତେବେଳେ ତା'ର ମୁଖ ମଣ୍ଡଳ ବିଷ୍ଠା, ମୂତ୍ର, ରକ୍ତ ଓ ରେତ ଦ୍ୱାରା ପ୍ଲାବିତ ହୋଇ ଥାଏ । ପ୍ରବଳ ପ୍ରସୂତି ଗର୍ଭସ୍ଥ ପବନ ତାର ସମସ୍ତ ଅସ୍ଥିବନ୍ଧନକୁ ପୀଡ଼ାଦେଇ ତାକୁ ଅଧୋମୁଖକରି ତାଡ଼ନା କରେ । ସେତେବେଳେ ସେ ଅତି କଷ୍ଟରେ ମାତୃଗର୍ଭରୁ ନିର୍ଗତ ହୁଏ । ଗର୍ଭଦୁଃଖ, ଯଥା--ଜୀବ ଭୂମିଷ୍ଠ ହେବା ମାତ୍ରେ ମୂର୍ଚ୍ଛିତ ହୋଇ ପଡ଼େ । ସେତେବେଳେ ବହିର୍ଜଗତର ବାୟୁର ସ୍ପର୍ଶରେ ତା'ର ଜ୍ଞାନଲୁପ୍ତ ହୋଇଯାଏ । ଦୁର୍ଗନ୍ଧ ବ୍ରଣରୁ ବାହାରିଥିବା କୃମିଭଳି ସେ ଭୂପୃଷ୍ଠରେ ଲୁଣ୍ଠିତ ହୋଇଥାଏ । ସେତେବେଳେ ତା'ର ଅଙ୍ଗ ପ୍ରତ୍ୟଙ୍ଗ କଣ୍ଟକ ବିଦ୍ଧ ହେଲାପରି କରତରେ କାଟି ହେଲାପରି ବୋଧ ହୋଇଥାଏ । ଏହି ଅବସ୍ଥାରେ ଜୀବ ଦେହର କଣ୍ଡୁ ନିବାରଣ କରିବା ପାଇଁ ମଧ୍ୟ ସମର୍ଥ ହୁଏ ନାହିଁ ଏବଂ ପାର୍ଶ୍ୱ ପରିବର୍ତ୍ତନ କରିପାରେ ନାହିଁ । ସେତେବେଳେ ସ୍ତନ୍ୟହିଁ ତା'ର ଆହାର । କିନ୍ତୁ ସେଇ ଆହାର ମଧ୍ୟ

ଗର୍ଭର ଉତ୍ତାପରେ ସେ ସମ୍ପାଦିତ ହୋଇ ଥାଏ । ସେ ଅନ୍ଧାର ଗର୍ଭସ୍ଥାନରେ ଶୟନ କରେ, ପିପୀଲିକାଦି କୀଟ ଏବଂ ମକ୍ଷିକା ମଶାମାଛି ତାକୁ ଦଂଶନ କଲେ ମଧ୍ୟ ସେ ସେତେବେଳେ ତାକୁ ନିବାରଣ କରିବାକୁ ସମର୍ଥ ହୁଏ ନାହିଁ । ସେହି ସମୟରେ ସେ ଅଜ୍ଞାନ ଅନ୍ଧକାରରେ ଆଚ୍ଛନ୍ନ ହୋଇ ଥାଏ, ତା'ର ଅନ୍ତଃକରଣ ମୋହାଚ୍ଛନ୍ନ ହୋଇଥାଏ । ସେତେବେଳେ ଅତୀତ ଓ ଅନାଗତ ଜନ୍ମମାନଙ୍କର ବାଲ୍ୟାବସ୍ଥାର ଯେଉଁ ସବୁ ଦୁଃଖଭୋଗ ହୁଏ, ତାହା ସେ କିଛି ଜାଣିପାରେ ନାହିଁ । କେବଳ ବର୍ତ୍ତମାନ କେବଳ ଦୁଃଖ ଅନୁଭବ କରେ । ସେତେବେଳେ ସେ ଜାଣେ ନାହିଁ ଯେ--ମୁଁ କିଏ ? କେଉଁଠାରୁ ଆସିଲି, କୁଆଡ଼େ ଯିବି, କି ବନ୍ଧନରେ ମୁଁ ବନ୍ଧା ହୋଇଅଛି, ମୋର ବନ୍ଧନର ମୁକ୍ତିକାରଣ କ'ଣ ? ମୋର କାର୍ଯ୍ୟ ଓ ଅକାର୍ଯ୍ୟ, ବାଚ୍ୟ ଓ ଅବାଚ୍ୟ କ'ଣ ? ଧର୍ମ କ'ଣ ? ଅଧର୍ମ ବା କ'ଣ? ମୁଁ କେଉଁଠାରେ କାହାର ଅଧୀନ ରହିବି ? ମୋର କର୍ତ୍ତବ୍ୟ ବା କ'ଣ ଏବଂ ତା'ର ନାଶ ହେତୁ ବା କ'ଣ ? । ଏହି ପରି ସମସ୍ତ ପଶୁପକ୍ଷୀ କୀଟପତଙ୍ଗ ଉଦ୍ଭିଦ ବୃକ୍ଷମାନେ ମଧ୍ୟ ଅଜ୍ଞାନପ୍ରଯୁକ୍ତ ମହାଦୁଃଖ ଭୋଗ କରନ୍ତି ।

**ଜରାଦୁଃଖ**—ମନୁଷ୍ୟ ଯେତେବେଳେ ବାର୍ଦ୍ଧକ୍ୟରେ ଉପନୀତ ହୁଏ, ସେତେବେଳେ ତା'ର ଅଙ୍ଗ ପ୍ରତ୍ୟଙ୍ଗ ଜରାଜୀର୍ଣ୍ଣ ହୋଇଯାଏ, ଦନ୍ତପଂକ୍ତି ବିଶୀର୍ଣ୍ଣ ହୋଇପଡ଼େ ତା'ର ଦେହର ନାନାସ୍ଥାନ ସ୍ନାୟୁ ଓ ଶିରା ଜାଲରେ ପରିବ୍ୟାପ୍ତ ହୋଇ ଉଠେ, ଦୃଷ୍ଟିଶକ୍ତି କମିଯାଏ, ନାସାରନ୍ଧ୍ରରୁ ଶ୍ଲେଷ୍ମ ଲାଳ ବହିର୍ଗତ ହୁଏ, ଦେହ ସର୍ବଦା କମ୍ପମାନ ହୁଏ, ଦେହର ଅସ୍ଥିଗ୍ରନ୍ଥି ଫୁଲି ଉଠେ, ମେରୁଦଣ୍ଡ ନତ ହୋଇପଡ଼େ, ଜଠରାଗ୍ନିର ଦୁର୍ବଳତା ହେତୁରୁ ଆହାର ମଧ୍ୟ କମିଯାଏ, ଶାରୀରିକ ଚେଷ୍ଟା କ୍ଷୀଣ ହୋଇଯାଏ, ବସିବା, ଉଠିବା ଶୋଇବା, ବୁଲିବା ପ୍ରଭୃତି କର୍ମ ଅତୀବ କଷ୍ଟ ସାଧ୍ୟ ହୋଇପଡ଼େ, ଶ୍ରବଣଶକ୍ତି କମିଯାଏ, ଗଳାର ଲାଳ ଦ୍ରବାଧରର ମୁଖ ଝରି ପଡ଼ିବା ଜନ୍ମ ହୋଇ ରହେ । ସେତେବେଳେ ଇନ୍ଦ୍ରିୟ ଗୁଡ଼ିକ ସ୍ୱାଧୀନ ହୋଇ ରହେ ନାହିଁ, କେବଳ ମରଣୋନ୍ମୁଖ ହୁଏ । ତା'ର ସ୍ମରଣ ଶକ୍ତି ନଷ୍ଟ ହୋଇଥାଏ, ସେଇଥିରେ ଅନୁଭବ କରିଥିବା ବସ୍ତୁ ପରକ୍ଷଣରେ ପାସୋରିଯାଏ, ପରେ କଥା କହିବା ପାଇଁ ମଧ୍ୟ ସେତେ ବେଳେ ମହାଶ୍ରମ ବୋଧ ହୁଏ; କାସ ଶ୍ୱାସାଦି ରୋଗର ଆକ୍ରମଣରୁ ପ୍ରାୟ

'ପରିଣାମତାପସଂସ୍କାର ଦୁଃଖୈର୍ଗୁଣବୃତ୍ତି ବିରୋଧାଚ୍ଚ ଦୁଃଖମେବ ସର୍ବଂ ବିବେକିନଃ' । ୩ ।

ଏଠାରେ ପ୍ରଶ୍ନ ଏହିଯେ- ଏହି ସବୁ ଦୁଃଖ ବା ରୋଗର ମୂଳ କାରଣ କ'ଣ ? ଏହାର ଉତ୍ତରରେ ଚରକ କହିଛନ୍ତି । ଯଥା--

ଆତ୍ମଜଃ ପୁରୁଷୋ ବେଦୋଷ୍ଟାତ୍ମଜାଃ କାରଣଂ ହି ଯଃ
ସ ଇନ୍ଦ୍ରିୟୋତ୍ପନ୍ନବୁଦ୍ଧି ଚ କର୍ମ କର୍ମଫଳାଦିକମ୍
ନ ହ୍ୟେତେ ଚେତନା ଧାତୋଃ ପ୍ରବୃତ୍ତିଃ ସୁଖଦୁଃଖୟୋଃ ।
(ଚ: ସୂ. ୨୫ ଅ)

ଅର୍ଥାତ୍ ଏହି ସ୍ଥୂଳ ଶରୀର ଧାରୀ ପୁରୁଷ ଅବ୍ୟକ୍ତ ବ୍ରହ୍ମଠାରୁ ଜାତ ଷଡ଼ ସ୍ୱରୂପ । ଏହାର ନାମ- କର୍ମପୁରୁଷ, ଭୂତାତ୍ମା ଓ ଚେତନା । ଏହି ଭୂତାତ୍ମା କାୟମନୋବାକ୍ୟରେ ଇନ୍ଦ୍ରିୟ ବିଷୟମାନଙ୍କ ସହିତ ସମ୍ବନ୍ଧ ରଖି ସେ ଗୁଡ଼ିକର ଅଯୋଗ, ଅତି ଯୋଗ, ମିଥ୍ୟାଯୋଗ ଦ୍ୱାରା କିମ୍ବା ସମ ଯୋଗ ଦ୍ୱାରା ଅଧର୍ମ ଧର୍ମ ରୂପ ସୁଖ ଦୁଃଖର ବୀଜ ବୁଦ୍ଧିର ସାହାଯ୍ୟରେ ସଞ୍ଚୟ କରି ଥାଏ ଏବଂ ତା'ର ଫଳ ସ୍ୱରୂପ ସୁଖ ଦୁଃଖ ବା ଆରୋଗ୍ୟ ଓ ରୋଗ ଉପଭୋଗ କରେ । ଆତ୍ମାର ଅଧିଷ୍ଠାନ ବ୍ୟତିରେକେ

---

୩ ତୃଷାଶୁଷ୍ୟତ୍ୟାସ୍ୟେ ପିବତି ସଲିଳଂ ଶୀତ ମଧୁରମ୍
କ୍ଷୁଧାର୍ତ୍ତଃ ଶାଲ୍ୟନ୍ନଂ କବଳୟତି ମାଂସାଦି କଳିତମ୍ ।
ପ୍ରଦୀପ୍ତେ କାମାଗ୍ନୌ ଦୃଢ଼ତର ମାଲିଙ୍ଗତି ବଧୂମ୍
ପ୍ରତୀକାରଂ ବ୍ୟାଧେଃ ସୁଖମିତି ବିପର୍ଯ୍ୟସ୍ୟତି ଜନଃ ॥ (ଭର୍ତ୍ତୃହରି)
ଇନ୍ଦ୍ରସ୍ୟାଶୁଚି ଶୂକରସ୍ୟ ଚ ସୁଖେ ଦୁଃଖେ ଚ ନାସ୍ତ୍ୟନ୍ତରମ୍
ସ୍ୱେଚ୍ଛା କଳ୍ପନୟା ତୟୋଃ ଖଳୁ ସୁଧା ବିଷ୍ଠା ଚ କାମ୍ୟାଶନମ୍
ରମ୍ଭା ଚାଶୁଚିଶୂକରୀ ଚ ପରମପ୍ରେମାସ୍ପଦଂ ମୃତ୍ୟୁତଃ
ସନ୍ତ୍ରାସୋଽପି ସମଃ ସ୍ୱକର୍ମ ଗତିଭିଷ୍ଟାନ୍ୟୋନ୍ୟଭାବଃ ସମଃ ।
(ରାଜଶେଖର)

ସୁଖ ଦୁଃଖର ଉତ୍ପତ୍ତି ହୁଏ ନାହିଁ । ସୁତରାଂ ରୋଗ, ଶୋକ, ସୁଖ, ଦୁଃଖାଦିର, ସମସ୍ତ ସଂସାରର ମୂଳ ହିଁ ଆତ୍ମା ।

## ଆତ୍ମାର ପରିଚୟ

ଶରୀର ମିନ୍ଦ୍ରିୟ ଗ୍ରାମଂ ମନୋ ବୁଦ୍ଧିଂ ମହତ୍ତ ବା
ଆତ୍ମାନମତ୍ତମନ୍ୟନ୍ତେ ଭୂତଂ ପ୍ରାଣଂ ଚ ଚେତନାମ୍ (ଗୀ: ର: ଭା.)
ଆତ୍ମା ଜ୍ଞଃ କରଣୈର୍ଯୋଗାତ୍ ଜ୍ଞାନଂ ତସ୍ୟ ପ୍ରବର୍ତ୍ତତେ
ଚେତନାବାନ୍ ଯତଶ୍ଚାତ୍ମା ତତଃ କର୍ତ୍ତା ନିରୁଚ୍ୟତେ । (ଚରକ)
କ୍ଷରଂ ମହଦନ୍ତ ଖ୍ୟାତଂ ପ୍ରଧାନଂ ପ୍ରକୃତି ର୍ମହାନ୍
ଯୋନିରାତ୍ମା ଶଦାତ୍ମସଂସ୍କୃତନା ଧାତୁଶତ୍ୟନ୍ତି
କ୍ଷରଂ ତଦ୍ୱି ଶ୍ୟଂ ବଦ୍ଧ୍ୟାତ୍ ବ୍ୟକ୍ତାବ୍ୟକ୍ତପ୍ରଭେଦତଃ
ଉକ୍ତୁ କ୍ଷେତ୍ର ସର୍ବ୍ୟକ୍ତଂ ତଦବ୍ୟକ୍ତଂ ବତ୍ତ୍ୱଭେଦବତ୍ ।(ଗୀ:ର:ଭା:)
ଯଦ୍ଭମାତ୍ମା ଶରୀରଂ ଚ ସଯୁନମତନ୍ତି ଦଣ୍ଡବତ୍
ଲୋକସ୍ତିଷ୍ଠନ୍ତି ସଂଯୋଗାତ୍ ତତ୍ର ସର୍ବଂ ପ୍ରତିଷ୍ଠିତମ୍
ସ ପୁମାନ୍ ଚେତନଂ ତତ୍ତ ତଚ୍ଚାଧିକରଣଂ ସ୍ମୃତମ୍
ବେଦସ୍ୟାସ୍ୟ ତଦର୍ଥଂ ହି ବେଦୋଽୟଂ ସଂପ୍ରକାଶିତଃ । (ଚ:ସୂ.୧ଅ)
ଶରୀରେନ୍ଦ୍ରିୟାତ୍ମସତ୍ତ୍ୱସଂଯୋଗଂ ପୁରୁଷ ମାଚକ୍ଷତେ, ଆତ୍ମାନମେକେ ।
( କା: ସଂ: )

ଏହିମତ ଆତ୍ମତଃ ପ୍ରାଣ ଆତ୍ମତ ଆଶା, ଆତ୍ମତଃସ୍ମର, ଆତ୍ମତ ଆକାଶ, ଆତ୍ମତସ୍ତେଜଃ, ଆତ୍ମତ ଆପ ଆତ୍ମତ ଆବିର୍ଭାବତିରୋଭାବୌ, ଆତ୍ମତୋଽନ୍ନମ୍, ଆତ୍ମତୋ ବଳଂ, ଆତ୍ମତୋ ବିଜ୍ଞାନମ୍, ଆତ୍ମତୋ ଧ୍ୟାନମ୍, ଆତ୍ମତଃ ଚିତ୍ତମ୍, ଆତ୍ମତଃ ସଂକଳ୍ପ, ଆତ୍ମତୋ ମନଃ, ଆତ୍ମତୋ ବାକ୍, ଆତ୍ମତୋ ନାମ, ଆତ୍ମତଃ ମନ୍ତ୍ରା, ଆତ୍ମତଃ କର୍ମାଣି, ଆତ୍ମତ ଏବ ଇଦଂ ସର୍ବମ୍ । (ଛାନ୍ଦୋଗ୍ୟ ଉ: ୭ । ୨୬ । ୧

## ଶରୀର ଓ ଆତ୍ମା ଅନାଦି

ଆତ୍ମନାସ୍ତ୍ୟାତ୍ମନଃ ନୈଷପାରମ୍ପର୍ଯ୍ୟମନାଦିକମ୍
ଅତସ୍ତୟୋରନାଦିତ୍ୱାତ୍ କିଂ ପୂର୍ବ ମିତି ନୋଚ୍ୟତେ । (ଚ:ଶା:)

ଅର୍ଥାତ୍, ଆତ୍ମା ଅନାଦି ଏବଂ ତା'ର କ୍ଷେତ୍ର ଶରୀର ମଧ୍ୟ ଅନାଦି ଅଟେ । ଅତଏବ ଶରୀର ଆଗେ କି ? ଆତ୍ମା ଆଗେ ତାହା ବୋଲି ଯାଇ ନପାରେ ।

## ଚରକୋକ୍ତ କ୍ଷେତ୍ର ଓ କ୍ଷେତ୍ରଜ୍ଞ-ଯଥା--

"ଖାଦୀନି ବୁଦ୍ଧିରବ୍ୟକ୍ତମହଙ୍କାରସ୍ତଥାଷ୍ଟମଃ
ଭୂତପ୍ରକୃତିରୁଦ୍ଦିଷ୍ଟା ବିକାରାଶ୍ଚୈବ ଷୋଡଶ
ବୁଦ୍ଧୀନ୍ଦ୍ରିୟାଣି ପଞ୍ଚୈବ ପଞ୍ଚ କର୍ମେନ୍ଦ୍ରିୟାଣି ଚ
ସମନସ୍କାଶ୍ଚ ପଞ୍ଚାର୍ଥା ବିକାରା ଇତି ସଂଜ୍ଞିତାଃ
ଇତି କ୍ଷେତ୍ରଂ ସମୁଦ୍ଦିଷ୍ଟଂ ସର୍ବମବ୍ୟକ୍ତବର୍ଜିତମ୍
ଅବ୍ୟକ୍ତମସ୍ୟ କ୍ଷେତ୍ରସ୍ୟ କ୍ଷେତ୍ରଜ୍ଞମୃଷୟୋ ବିଦୁଃ
ଜାୟତେ ବୁଦ୍ଧିରବ୍ୟକ୍ତାଦ୍ ବୁଦ୍ଧ୍ୟାହମିତି ମନ୍ୟତେ
ପରଂ ଖାଦ୍ୟହଙ୍କାରଂ ଉପାଦତ୍ତେ ଯଥାକ୍ରମମ୍
ତତଃ ସମ୍ପୂର୍ଣ୍ଣସର୍ବାଙ୍ଗୋ ଜାତୋଽଭ୍ୟୁଦିତ ଉଚ୍ୟତେ
ପୁରୁଷଃ ପ୍ରଳୟେ ଚେଷ୍ଟୈଃ ପୁନର୍ଭାବୈର୍ବିୟୁଜ୍ୟତେ
ଅବ୍ୟକ୍ତାଦ୍ ବ୍ୟକ୍ତତାଂ ଯାତି ବ୍ୟକ୍ତାଦବ୍ୟକ୍ତତାଂ ପୁନଃ
ରଜସ୍ତମୋଭ୍ୟାମାବିଷ୍ଟଶ୍ଚକ୍ରବତ୍ ପରିବର୍ତ୍ତତେ
ଯେଷାଂ ଦ୍ୱନ୍ଦ୍ୱେ ପରାସକ୍ତିରହଙ୍କାରପରାଶ୍ଚ ଯେ
ଉଦୟପ୍ରଳୟୌ ତେଷାଂ ନ ତେଷାଂ ଯେ ତ୍ୱତୋଽନ୍ୟଥା (ଚ.ଶା:ଅ)

ଅର୍ଥାତ୍ ୫ ମହାଭୂତ, ୫ ଜ୍ଞାନେନ୍ଦ୍ରିୟ, ୫ କର୍ମେନ୍ଦ୍ରିୟ, ୫ ଶବ୍ଦାଦି ବିଷୟ, ମନ, ଅହଂକାର, ବୁଦ୍ଧି ଏ ସମୁଦାୟର ନାମ କ୍ଷେତ୍ର । ଏହି କ୍ଷେତ୍ରର ଯେ କ୍ଷେତ୍ରଜ୍ଞ, ସେ ଅବ୍ୟକ୍ତ ଅଟେ । ଅବ୍ୟକ୍ତ ଅକ୍ଷର ପୁରୁଷକୁ ବୋଲନ୍ତି ।

ଯୋଽସ୍ୟାତ୍ମନଃ କାରୟିତା ତଂ କ୍ଷେତ୍ରଜ୍ଞଂ ପ୍ରଚକ୍ଷତେ
ଯଃ କରୋତି ତୁ କର୍ମାଣି ସ ଭୂତାତ୍ମୋଚ୍ୟତେ ବୁଧୈଃ
ଜୀବସଂଜ୍ଞୋଽନ୍ତରାତ୍ମାନ୍ୟଃ ସହଜଃ ସର୍ବଦେହିନାମ୍
ଯେନ ବେଦୟତେ ସର୍ବଂ ସୁଖଂ ଦୁଃଖଂ ଚ ଜନ୍ମସୁ
ତାବୁଭୌ ଭୂତସଂପୃକ୍ତୌ ମହାନ୍ କ୍ଷେତ୍ରଜ୍ଞ ଏବ ଚ ।
ଉଚ୍ଚାବଚେଷୁ ଭୂତେଷୁ ସ୍ଥିତଂ ତଂ ବ୍ୟାପ୍ୟ ତିଷ୍ଠତଃ

ତୌ ଧର୍ମଂ ଚଶାନ୍ତସ୍ୟ ଚାମଂ ଧ୍ରୁବଦ୍ୟତୌ ସନ୍ତ
ଯାଭ୍ୟାଂ ପ୍ରାଚ୍ୟାନ୍ତ ସଂଭୂତଃ ସେନାନ୍ଧ ଚ ଶ୍ରୁତଶ୍ରୁତମ୍ (ମନୁ)

ଚରକ ଲେଖିଛନ୍ତି- "ପ୍ରଭବୋବ୍ୟୟଃ କାରଣଂ ନିମିତ୍ତମକ୍ଷରଂ କର୍ତ୍ତା, ମନ୍ତା, ବେଦୟିତା, ବୋଦ୍ଧା, ଦ୍ରଷ୍ଟା, ଧାତା, ବ୍ରହ୍ମା, ବିଶ୍ୱକର୍ମା ବିଶ୍ୱରୂପଃ ପୁରୁଷଃ, ପ୍ରଭବଃ ଅବ୍ୟୟଃ ନିତ୍ୟଃ ଗୁଣୀ, ଗ୍ରହଣଂ ପ୍ରଧାନଂ, ଅବ୍ୟକ୍ତଂ ଜୀବୋ ଜ୍ଞଃ ପ୍ରକୁଳ ଚେତନାବାନ୍ ବିଭୁଃ ଭୂତାତ୍ମା ଚେନ୍ଦ୍ରିୟାତ୍ମା ଚାନ୍ତରାତ୍ମା ଚେତି ।
[ ଚ: ଶା: ୪ ଅ ]

ଅନ୍ୟତ୍ର ଚ- ନିର୍ବିକାରଃ ପରସ୍ତ୍ୱାତ୍ମା ସତ୍ତ୍ୱଭୂତଗୁଣେନ୍ଦ୍ରିୟୈଃ । [ ଚ: ସୂ: ୧ ଅ ]

ଏଥିରୁ ସମ୍ଭୂତାସ୍ତୁତ ମନ୍ତବ୍ୟ ଏହି ଯେ —ଶ୍ରୀମଦ୍ଭଗବଦ୍ଗୀତାରେ ଯେଉଁ କ୍ଷର, ଅକ୍ଷର, ଅବ୍ୟୟ ତିନି ପ୍ରକାର ପୁରୁଷଙ୍କୁ ଆତ୍ମା ବୋଲାଯାଇଛି ତାହାହିଁ ଚରକଙ୍କର ତ୍ରିବିଧ ଆତ୍ମା ।

ସେଥି ମଧ୍ୟରେ ଯାହା ବିକାରୀ, ବ୍ୟକ୍ତାବ୍ୟକ୍ତ ଓ କ୍ଷର ପୁରୁଷ, ତାଙ୍କୁ ଶରୀରାତ୍ମା, ଜୀବାତ୍ମା ବା ଭୂତାତ୍ମା ବୋଲାଯାଏ । ଏହି ଭୂତାତ୍ମାର ଯେ ପ୍ରେରକ, ସାକ୍ଷୀ-ସ୍ୱରୂପ ଅବ୍ୟକ୍ତ, ନିର୍ବିକାର ସ୍ୱରୂପ ଅକ୍ଷର ପୁରୁଷ । ତାଙ୍କୁ ବିଶ୍ୱାତ୍ମା, ବିଶ୍ୱରୂପ, ବିଶ୍ୱକର୍ମା ବା ଈଶ୍ୱର ବୋଲନ୍ତି । ଏହି କ୍ଷରାକ୍ଷର ବା ବ୍ୟକ୍ତ ଅବ୍ୟକ୍ତ ଦୁହିଙ୍କଠାରୁ ଯେ ଅତୀତ ଅଟନ୍ତି ତାଙ୍କର ନାମ-ଅବ୍ୟୟ ପରମେଶ୍ୱର ପୁରୁଷୋତ୍ତମ ବା ପରମାତ୍ମା ଅଟେ । ଗୀତାରେ ଲେଖାଅଛି ଯେ—

ଏକ ଏବ ହି ଭୂତାତ୍ମା ଭୂତେ ଭୂତେ ବ୍ୟବସ୍ଥିତଃ
ଏକଧା ବହୁଧା ଚୈବ ଦୃଶ୍ୟତେ ଜଳଚନ୍ଦ୍ରବତ୍ । [ଗୀତା]
ଦ୍ୱାବିମୌ ପୁରୁଷୌ ଲୋକେ କ୍ଷରଶ୍ଚାକ୍ଷର ଏବ ଚ
କ୍ଷରଃ ସର୍ବାଣି ଭୂତାନି କୂଟସ୍ଥୋଽକ୍ଷର ଉଚ୍ୟତେ
ଉତ୍ତମଃ ପୁରୁଷସ୍ତ୍ୱନ୍ୟଃ ପରମାତ୍ମେତ୍ୟୁଦାହୃତଃ
ଯୋ ଲୋକତ୍ରୟମାବିଶ୍ୟ ବିଭର୍ତ୍ତ୍ୟବ୍ୟୟ ଈଶ୍ୱରଃ
ଯସ୍ମାତ୍ କ୍ଷରମତୀତୋଽହମକ୍ଷରାଦପି ଚୋତ୍ତମଃ
ଅତୋଽସ୍ମି ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମଃ [ଗୀତା]

ମୋଟ କଥା- କ୍ଷର ପୁରୁଷ ଲିପ୍ତ, ଅକ୍ଷର ପୁରୁଷ ନିର୍ଲିପ୍ତ ଏବଂ ଅବ୍ୟୟ ପୁରୁଷ ଅସଙ୍ଗ ଅଟନ୍ତି । ଏଥି ମଧ୍ୟରେ ପ୍ରଥମୋକ୍ତ ବିକାରୀ ଶରୀରାତ୍ମାର ଅବସ୍ଥା ସାତ ପ୍ରକାର ଅଟେ ।

ଅପସ୍ୟାତ୍ମନଃ ସପ୍ତ ଦେହ୍ୟବସ୍ଥାଃ ଜାଗ୍ରତ୍‌ସ୍ୱପ୍ନସୁଷୁପ୍ତୟୋ ବା
ସମ୍ମୋହ ମୂର୍ଚ୍ଛାମୃତିମୁକ୍ତୟୋ ବା ତାବଲ୍ୟା ନ ଶୃଣ୍ୱନ୍ତି କଦାଚିଦାତ୍ମା
(ଅଦୋଷବ ବାଦ)

ଅର୍ଥାତ୍ ଶରୀରୀ ବା ଜୀବାତ୍ମାର ଅବସ୍ଥା ସାତ ପ୍ରକାର ଅଟେ । ଯଥା--୧ ଜାଗରଣ, ୨ ସ୍ୱପ୍ନ, ୩ ନିଦ୍ରା, ୪ ସମ୍ମୋହ, ୫ ମୂର୍ଚ୍ଛା, ୬ ମରଣ ୭ ମୁକ୍ତି ବା ପରମାତ୍ମାରେ ଯୋଗ । ଏଥି ମଧ୍ୟରେ ପ୍ରଥମୋକ୍ତ ଛ'ପ୍ରକାର ଅବସ୍ଥା କ୍ଷେତ୍ରାଶ୍ରିତ ଆତ୍ମାର ବିକାରାବସ୍ଥା ଏବଂ ଶେଷୋକ୍ତ ଅବସ୍ଥାଟି ନିର୍ବିକାର ଅଟେ । ଚରକ ଲେଖିଅଛନ୍ତି ଯେ

ବିକାରୋ ଧାତୁବୈଷମ୍ୟଂ ସାମ୍ୟଂ ପ୍ରକୃତିରୁଚ୍ୟତେ । *

ଅର୍ଥାତ୍ ସ୍ଥୂଳ, ସୂକ୍ଷ୍ମ ଓ କାରଣ ଶରୀରସ୍ଥ ଧାତୁମାନଙ୍କର ବୈଷମ୍ୟକୁ ବିକାର ଏବଂ ଧାତୁର ସମତାକୁ ସ୍ୱାସ୍ଥ୍ୟ ବା ପ୍ରକୃତି ବୋଲନ୍ତି । ଶାସ୍ତ୍ରରେ ଲେଖାଅଛି ଯେ--

ଯଥାଗ୍ନେଃ ସ୍ଥୂଳଦେହେଽସ୍ମିନ୍ ବୈଷମ୍ୟଂ ରୋଗକାରଣମ୍
ବାତପିତ୍ତକଫାନାଂ ଚ ସାମ୍ୟଂ ସ୍ୱାସ୍ଥ୍ୟକରଂ ତଥା ।
ଯଥା ହି ଲିଙ୍ଗ ସୂକ୍ଷ୍ମଦେହେ ବୈଷମ୍ୟଂ ରୋଗକାରଣମ୍
କାମକ୍ରୋଧାଦି ଧାତୂନାଂ ସାମ୍ୟଂ ସ୍ୱାସ୍ଥ୍ୟକରଂ ତଥା ॥
ବୁଦ୍ଧିକର୍ମମୟସ୍ତଦ୍ୱତ୍ ଦ୍ୱି ଧାତୁରୟମବ୍ୟୟଃ
ତେନାତ୍ମନଃ ସ୍ୱାସ୍ଥ୍ୟହେତୁଃ ସମତ୍ୱଂ ଦୀର୍ଯ୍ୟତେଽବ୍ୟୟାଃ ।
[ ଗୀ: ଶ: ଭା ]

ଅର୍ଥାତ୍ ଯେପରି ସ୍ଥୂଳ ଦେହରେ ଅଗ୍ନିର ବୈଷମ୍ୟ ରୋଗର କାରଣ ଏବଂ ବାତପିତ୍ତ କଫର ସାମ୍ୟ ସ୍ୱାସ୍ଥ୍ୟକର ଅଟେ, ଯେପରି ସୂକ୍ଷ୍ମ ଦେହରେ କାମ କ୍ରୋଧାଦିର ବୈଷମ୍ୟ ରୋଗର କାରଣ ଏବଂ ସେମାନଙ୍କର ସମତା ସ୍ୱାସ୍ଥ୍ୟର ହେତୁ ଅଟେ, ସେହିପରି ଜ୍ଞାନ ଓ କର୍ମର ବିଷମତା ଓ ସମତା ଅନାଦି ଭୂତାତ୍ମାର ବିକାର ଓ ସ୍ୱାସ୍ଥ୍ୟର କାରଣ ଅଟେ । ଅତଏବ ଗୀତାରେ ନିର୍ବିକାର, ପୁରୁଷର ପରିଚୟ ଦେଇ ବୋଲାଯାଇଛି—

* । ଜାୟନ୍ତେ ହେତୁ ବୈଷମ୍ୟାତ୍ ବିଷମା ଦେହଧାତବଃ
ହେତୁସାମ୍ୟାତ୍ ସମାସ୍ତେଷାଂ ସ୍ୱଭାବୋ ପରମଃ ସଦା (ଚ: ସୂ ୧୬।୨୨)

ବ୍ରହ୍ମଭୂତଃ ପ୍ରସନ୍ନାତ୍ମା ନ ଶୋଚତି ନ କାଙ୍କ୍ଷତି, ସମଦୁଃଖ ସୁଖଃ ସ୍ୱସ୍ଥଃ। ଗୀତା ବିଜ୍ଞାନ ଭାଷ୍ୟରେ ଅବାସ୍ତୁ ପୁରୁଷର ଧାତୁସମ୍ବନ୍ଧରେ ଲେଖାଅଛି ଯେ—

ଜ୍ଞାନଂ କର୍ମ ଚ ଧାତୂନ୍ ଦେହୀ ଆତ୍ମନଃ ସନ୍ତନ୍ତ୍ରେତୀ
ଜିଜ୍ଞାସା ବା ନିର୍ଦ୍ଧା ବା ଯସ୍ୟ ନାସ୍ତି ସ ବସ୍ତୁଲଃ (ଗୀ.ବି.ଭା)

ସାର କଥା ଏହି ଯେ-- ସ୍ଥୂଳ, ସୂକ୍ଷ୍ମ ଓ କାରଣ ଶରୀରସ୍ଥ ଧାତୁ ମାନଙ୍କର ପରସ୍ପର ମଧ୍ୟରେ ସମତ୍ୱସ୍ଥାପନ ହିଁ ପ୍ରକୃତ ସ୍ୱାସ୍ଥ୍ୟ । ଅତଏବ ଆଚାର୍ଯ୍ୟ ସୁଶ୍ରୁତ ସ୍ୱସ୍ଥ ପୁରୁଷର ଲକ୍ଷଣ ଏହିପରି ଲେଖିଛନ୍ତି-ଯଥା-

ସମଦୋଷଃ ସମାଗ୍ନିଶ୍ଚ ସମଧାତୁ ମଳକ୍ରିୟଃ
* ପ୍ରସନ୍ନାତ୍ମେନ୍ଦ୍ରିୟମନାଃ ସ୍ୱସ୍ଥ ଇତ୍ୟଭିଧୀୟତେ ।

ଅର୍ଥାତ୍ ଯାହାର ଶରୀରରେ ବାତ, ପିତ୍ତ ଓ କଫ ଏହି ତିନି ଶାରୀର ଦୋଷ ଏବଂ ରଜ ଓ ତମ ଏହି ଦୁଇ ମାନସ ଦୋଷ ନ୍ୟୂନାଧିକ ନହୋଇ ସମାନ ଅବସ୍ଥାରେ ଥାଏ, ଯାହାର ଜଠରାଗ୍ନି, ରସାଦି ସପ୍ତ ଧାତୁଗତ ଅଗ୍ନି ଓ ପଞ୍ଚମହାଭୂତ ସମ୍ବନ୍ଧୀ ଅଗ୍ନି (ମନ୍ଦ, ତୀକ୍ଷ୍ଣ ବା ବିଷମ ନ ହୋଇ) ସମାନ ଅବସ୍ଥାରେ ଥାଏ, ଯାହାର ଇଚ୍ଛା, ଜ୍ଞାନ ଓ କ୍ରିୟାରୂପ ତିନି ଆନ୍ତର ଧାତୁ ଏବଂ ରସ, ରକ୍ତ, ମାଂସ, ମେଦ, ଅସ୍ଥି, ମଜ୍ଜା ଓ ବୀର୍ଯ୍ୟରୂପ ସାତ ସ୍ଥୂଳ ଦୈହିକ ଧାତୁ ପୁଣି ସ୍ତନ୍ୟ ଓ ଆର୍ତ୍ତବାଦି ଉପଧାତୁ ଏବଂ ମୂତ୍ର, ପୁରୀଷ, ସ୍ୱେଦାଦି ମଳ ତଥା ସେମାନଙ୍କର ଶାସ୍ତ୍ରୋକ୍ତ କ୍ରିୟାକଳାପ ସମାନ ଅବସ୍ଥାରେ ରହିଥାଏ, ଏବଂ ଯାହାର ଶରୀରାତ୍ମା, ଇନ୍ଦ୍ରିୟ ସମୂହ ଓ ମନ ପ୍ରସନ୍ନ ଥାଏ, ତାକୁ ସ୍ୱସ୍ଥ ବୋଲଯାଏ । ତାତ୍ପର୍ଯ୍ୟ ଏହିଯେ

ସ୍ୱସ୍ମିନ୍ ନିର୍ବିକାରରୂପେଣ ତିଷ୍ଠତି ଇତି ସ୍ୱସ୍ଥଃ ।

ଅର୍ଥାତ୍ ବ୍ୟକ୍ତ ଭୂମି ଓ ଅବ୍ୟକ୍ତ ଭୂମି ଅତିକ୍ରମ କରି ସମଭୂମି ଲାଭ କରିଥିବା ସ୍ଥିତପ୍ରଜ୍ଞ ପୁରୁଷ ହିଁ ପ୍ରକୃତ ସ୍ୱସ୍ଥ ପୁରୁଷ ।

ଅତଏବ ଗୀତାରେ ଲେଖାଅଛି--ସମଦୁଃଖ ସୁଖଃ ସ୍ୱସ୍ଥଃ ।

ଅର୍ଥାତ୍ ସୁଖଃ ଦୁଃଖାଦି ଦ୍ୱୈତ ପ୍ରପଞ୍ଚ ମଧ୍ୟରେ ସମ ବା ନିର୍ବିକାର ଭାବରେ ଅବସ୍ଥାନ କରିବା ପୁରୁଷର ନାମ ସ୍ୱସ୍ଥ ପୁରୁଷ ଅଟେ ।

---

* । ତଦା ଦ୍ରଷ୍ଟୁଃ ସ୍ୱରୂପେଽବସ୍ଥାନମ୍ (ଯୋଗଦର୍ଶନ)

ସୁସ୍ଥ ପ୍ରକୃତ ଶରୀରସ୍ଥ ହେବାଲାଗି ଶାରୀରିକ ଓ ମାନସିକ କର୍ମ-କଳାପରେ ଯେ କାର୍ଯ୍ୟ କରନ୍ତି, ତାହାକୁ ସେ ବର୍ଜିବାର ଅଛି ।

## ବିକାର ବା ରୋଗମାନଙ୍କର ଆଶ୍ରୟ ଦେହ ଓ ମନ

ଦେହ ଓ ମନକୁ ଆଶ୍ରୟ କରି ରୋଗ ଉତ୍ପନ୍ନ ହୁଏ । ସେହି ରୋଗମାନଙ୍କର କାରଣ ତିନି * ପ୍ରକାର ଅଟେ । ଯଥା--୧ କାଳର ଅଯୋଗ, ଅତି-ଯୋଗ କିମ୍ବା ମିଥ୍ୟାଯୋଗ, ୨ ବୁଦ୍ଧି ବା ମନର ଅଯୋଗ, ଅତିଯୋଗ କିମ୍ବା ମିଥ୍ୟାଯୋଗ ଏବଂ ୩ ଚକ୍ଷୁ କର୍ଣ୍ଣାଦି ଇନ୍ଦ୍ରିୟମାନଙ୍କର ରୂପ, ରସ ଶବ୍ଦାଦି ନିଜ ନିଜ ବିଷୟମାନଙ୍କ ସହିତ ଅଯୋଗ, ଅତିଯୋଗ କିମ୍ବା ମିଥ୍ୟାଯୋଗ । ସଂକ୍ଷେପତଃ ଏହି ତିନି ପ୍ରକାର କାରଣରୁ ସମସ୍ତ ରୋଗ ଜାତ ହୋଇଥାଏ । ଏହାର ବିଶଦ ବିବରଣ ଏହି ଯେ- ଚକ୍ଷୁ ଇନ୍ଦ୍ରିୟ ଦ୍ୱାରା ଯଦି ବିଜୁଳିଆଦି ଅତି ଉଜ୍ଜ୍ୱଳ ରୂପ ମନୁଷ୍ୟର ଅଧିକ ଦର୍ଶନ ହୁଏ, ତାହେଲେ ତାହା ତା'ର ଅତିଯୋଗ, ଦର୍ଶନୀୟ ବସ୍ତୁ ଏକାବେଳେ ନ ଦେଖିବାର ନାମ-ଅଯୋଗ, ଏବଂ ଅତି ସୂକ୍ଷ୍ମ, ଅତି ନିକଟ, ଅତି ଦୂରସ୍ଥ ଅଥବା ଉଗ୍ର, ଭୟଙ୍କର ଅଦ୍ଭୁତ, ବିଦ୍ୱିଷ୍ଟ, ବୀଭତ୍ସ, ବିକୃତାଦି ରୂପ ଦର୍ଶନ କରିବାର ନାମ-- ମିଥ୍ୟାଯୋଗ ଅଟେ । ଏହିପରି ଶ୍ରବଣେନ୍ଦ୍ରିୟର ଅତିଯୋଗାଦି-ଯଥା-ଅତି ମାତ୍ରାରେ ମୁହୁର୍ମୁହୁଃ ବଜ୍ରଶବ୍ଦ,ତମ୍ବୋଳାର ଶବ୍ଦ ଓ ଉଚ୍ଚ ଚିତ୍କାରାଦି ଶୁଣିବାର ନାମ-ଶ୍ରବଣେନ୍ଦ୍ରିୟର ଶବ୍ଦାତି-ଯୋଗ,ଶ୍ରବଣୀୟ ମଧୁରାଦି ଶବ୍ଦ ଏକାବେଳେ ନଶୁଣିବାର ନାମ-ଶବ୍ଦର ଅଯୋଗ ଏବଂ କର୍କଶ ବାକ୍ୟ,ଇଷ୍ଟବନ୍ଧୁର ମରଣ ସମ୍ବାଦ,ଲୋମହର୍ଷଣ, ଅବମାନନା ଓ ଭୟ ଶୋକଜନକ ଭୟବିରୋଧୀ ଶବ୍ଦ ଶୁଣିବାର ନାମ-ଶ୍ରବଣେନ୍ଦ୍ରିୟର ମିଥ୍ୟାଯୋଗ ଅଟେ ।

ଏହିପରି ଘ୍ରାଣେନ୍ଦ୍ରିୟର ଅତି ଯୋଗାଦି-ଯଥା--

ଅତି ତୀବ୍ର, ଅପ୍ରିୟ ଓ ଉଗ୍ରଧର୍ମୀ ଗନ୍ଧ ବାରମ୍ବାର ଆଘ୍ରାଣ କରିବାର ନାମ ଗନ୍ଧାତିଯୋଗ, ସୁଗନ୍ଧ ଦ୍ରବ୍ୟ ଏକବାରେ ଆଘ୍ରାଣ

---

* ତ୍ରିବିଧଂ ସଂକ୍ଷେପଣ ଚ ବ୍ୟାଧୀନାମାଶ୍ରୟୋ ମତଃ । (ଚରକ)
କାଳବୁଦ୍ଧୀନ୍ଦ୍ରିୟାର୍ଥାନାଂ ଯୋଗୋ ମିଥ୍ୟା ନ ଚାତି ଚ
ଦ୍ୱୟାଶ୍ରୟାଣାଂ ବ୍ୟାଧୀନାଂ ତ୍ରିବିଧୋ ହେତୁସଂଗ୍ରହଃ । (ଚ.ସୂ. ୧.ଅ)

ନ କରିବାର ନାମ- ଅଯୋଗ ଏବଂ ଅତ୍ୟୁ ସଡ଼ା ପୂତିଗନ୍ଧ, ଅପବିତ୍ର, ଘୃଣାଜନକ କିମ୍ବା ବିଷବାୟୁ ଓ ଶବଅନ୍ତ୍ରାଦିର ଗନ୍ଧ ଆଘ୍ରାଣ କରିବାର ନାମ- ମିଥ୍ୟା ଯୋଗ ଅଟେ । ଏହିପରି ରସନେନ୍ଦ୍ରିୟ ଓ ସ୍ପର୍ଶନେନ୍ଦ୍ରିୟର ଏବଂ ବାକ୍, ପାଣି, ପାଦ, ପାୟୁ, ଉପସ୍ଥ ଓ ଜ୍ଞାନେନ୍ଦ୍ରିୟର ନିଜ ନିଜ, ବିଷୟ ମାନଙ୍କ ସହିତ ଅତିଯୋଗ ଅଯୋଗ ଓ ମିଥ୍ୟାଯୋଗ ହୋଇଥାଏ । ଏହିସବୁ ଇନ୍ଦ୍ରିୟ ସହିତ ବିଷୟମାନଙ୍କର ବିଷମ ଯୋଗହିଁ ରୋଗର କାରଣ ହୋଇଥାଏ । ଏହିପରି ମନର ଅତିଯୋଗ, ଅଯୋଗ, ମିଥ୍ୟା ଯୋଗ ଏବଂ ଗ୍ରୀଷ୍ମ, ବର୍ଷା ଓ ଶୀତାଦି ରୂପ କାଳର ଅତିଯୋଗ ଅଯୋଗ ଓ ମିଥ୍ୟାଯୋଗ ଦୈବିଯୁକ୍ତ ଓ ଜାନପଦିକ ରୋଗ ମାନଙ୍କର କାରଣ ହୋଇ ଥାଏ । ଚରକ କହିଛନ୍ତି ଯେ--

ମିଥ୍ୟାତିହୀନଯୋଗେଭ୍ୟୋ ଯୋ ବ୍ୟାଧିରୁପଜାୟତେ
ଶବ୍ଦାଦୀନାଂ ସ ବିଜ୍ଞେୟୋ ବ୍ୟାଧିରୈନ୍ଦ୍ରିୟକୋ ବୁଧୈଃ
ବେଦନାନାମଶାନ୍ତାନାମ୍ ଇତ୍ୟେତେ ହେତବଃ ସ୍ମୃତାଃ
ସୁଖହେତୁ ମତସ୍ତ୍ୱେକଃ ସମଯୋଗଃ ସୁଦୁର୍ଲଭଃ ।

ଅର୍ଥାତ୍ ଶବ୍ଦାଦି ବିଷୟମାନଙ୍କର ଅଯୋଗ ଅତିଯୋଗ ଓ ମିଥ୍ୟାଯୋଗରୁ ଯେଉଁ ବ୍ୟାଧିସବୁ ଉତ୍ପନ୍ନ ହୁଏ, ସେ ସବୁ ଦେହ ଓ ଇନ୍ଦ୍ରିୟାର୍ଥର ବିଷମ ସଂଯୋଗ ଜାତ ଦୁଃଖ । ଏହା ସବୁ ସଞ୍ଜବ ଶାରୀରିକ ରୋଗ ଅଟେ । ଏହି ଶବ୍ଦାଦି ବିଷୟ ମାନଙ୍କର ଯାହା ସମଯୋଗ ତାହାହିଁ ସୁଖ ବା ସ୍ୱାସ୍ଥ୍ୟ । ପରନ୍ତୁ ତାହା ଅତି ଦୁର୍ଲଭ । ଚରକ କହନ୍ତି ଯେ--ସୁଖଃ ଦୁଃଖଃ ବା ସ୍ୱାସ୍ଥ୍ୟ ଓ ଅସ୍ୱାସ୍ଥ୍ୟର ମୂଳକାରଣ ବିଷୟାସକ୍ତି ବା ତୃଷ୍ଣା । ଯେ ଲେଖିଛନ୍ତି—

ସ୍ପର୍ଶନେନ୍ଦ୍ରିୟସଂସ୍ପର୍ଶଃ ସ୍ପର୍ଶୋ ମାନସ ଏବ ଚ
ଦ୍ୱିବିଧଃ ସୁଖଦୁଃଖାନାଂ ବେଦନାନାଂ ପ୍ରବର୍ତ୍ତକଃ
ଇଚ୍ଛାଦ୍ୱେଷାତ୍ମିକା ତୃଷ୍ଣା ସୁଖଦୁଃଖାତ୍ ପ୍ରବର୍ତ୍ତତେ
ତୃଷ୍ଣା ଚ ସୁଖଦୁଃଖାନାଂ କାରଣଂ ପୁନରୁଚ୍ୟତେ ।
ଉପାଦତ୍ତେ ହି ସା ଭାବାନ୍ ବେଦନାଶ୍ରୟ ସଂଜ୍ଞକାନ୍
ସ୍ପୃଶ୍ୟତେ ନାନୁପାଦାନେ ନାସ୍ପୃଷ୍ଟୋ ବେତ୍ତି ବେଦନାଃ
ବେଦନାନାମଧିଷ୍ଠାନଂ ମନୋ ଦେହଶ୍ଚ ସେନ୍ଦ୍ରିୟଃ ।(ଚ.ଶା.)

ଅର୍ଥାତ୍ ଇନ୍ଦ୍ରିୟମାନଙ୍କ ମଧ୍ୟରେ ସ୍ପର୍ଶ ଇନ୍ଦ୍ରିୟ [ତ୍ୱଗିନ୍ଦ୍ରିୟ] ହୋଇଥିଲା- ଚକ୍ଷୁ କର୍ଣ୍ଣାଦି ସମସ୍ତ ଇନ୍ଦ୍ରିୟମାନଙ୍କର ବ୍ୟାପକ । ସୁତରାଂ ସମସ୍ତ ଇନ୍ଦ୍ରିୟମାନଙ୍କର ବିଷୟ ସହିତ ସଂଯୋଗ ସ୍ପର୍ଶଦ୍ୱାରା ହିଁ ହୋଇ ଥାଏ । ଆଲୋକ ସହିତ ଚକ୍ଷୁର ସଂଯୋଗ ନ ହେଲେ ବିଷୟର ଦର୍ଶନ କ୍ରିୟା ସମ୍ପନ୍ନ ହୁଏ ନାହିଁ । ଆଉରି ମଧ୍ୟ ସ୍ପର୍ଶେନ୍ଦ୍ରିୟ ବ୍ୟାପ୍ତି ସମ୍ବନ୍ଧ ତତ୍ତ୍ୱସମ୍ବନ୍ଧ ମନ ହିଁ ସବେନ୍ଦ୍ରିୟଙ୍କୋ ବ୍ୟାପକ ଅଟେ । ଅତଏବ ସ୍ପର୍ଶନେନ୍ଦ୍ରିୟ ସ୍ପର୍ଶବୋଲି କାୟା ମାନସ ସ୍ପର୍ଶ ବୋଲି ଏହି ଦୁଇ ପ୍ରକାର ସ୍ପର୍ଶହିଁ ସୁଖଦୁଃଖ ବେଦନାର ଜନକ ବା ପ୍ରବର୍ତ୍ତକ ଅଟେ । * ରାଗଦ୍ୱେଷାତ୍ମିକା ତୃଷ୍ଣା ଯଥାକ୍ରମେ ସୁଖ ଓ ଦୁଃଖକୁ ପ୍ରବର୍ତ୍ତିଥାଏ । ପୁଣି ସେଇ ସୁଖଦୁଃଖ-ତୃଷ୍ଣାର କାରଣ ହୋଇଥାଏ । ପୁଣି ସେଇ ତୃଷ୍ଣା ସୁଖ ଦୁଃଖ ବେଦନାର ଆଶ୍ରୟ ଶରୀର ଓ ମନକୁ ଗ୍ରହଣ କରେ । ଶରୀରସ୍ଥ ସ୍ପର୍ଶନେନ୍ଦ୍ରିୟ ବା ମନଦ୍ୱାରା ବୁଦ୍ଧିର ନ ହୋଇ କୌଣସି ପଦାର୍ଥ ସ୍ପର୍ଶ କରାଯାଏ ନାହିଁ, ଯାହା କି ତୃଷ୍ଣାର ଉପାଦାନ ନୁହେଁ । ବିନା ବିଷୟ ସ୍ପର୍ଶରେ ସୁଖ ଦୁଃଖ ବେଦନା ପୁରୁଷ ଜାଣେ ନାହିଁ । ଇନ୍ଦ୍ରିୟମାନଙ୍କ ସହିତ ଦେହ ଓ ମନ ହିଁ ସୁଖଦୁଃଖ ବେଦନାର ଅଧିଷ୍ଠାନ ହୋଇଥାଏ ।

## ସମସ୍ତ ବେଦନାର ନିବର୍ତ୍ତକ ଯୋଗାଭ୍ୟାସ

ଚରକ କହିଛନ୍ତି ଯେ—

ଯୋଗେ ମୋକ୍ଷେ ଚ ସର୍ବାସାଂ ବେଦନାନା ମବର୍ତ୍ତନମ୍
ମୋକ୍ଷେ ନିବୃତ୍ତିର୍ନିଃଶେଷା ଯୋଗୋ ମୋକ୍ଷପ୍ରବର୍ତ୍ତକଃ ।

---

* ତତ୍ର ଏକଂ ସ୍ପର୍ଶନେନ୍ଦ୍ରିୟାଣାମ୍ ଇନ୍ଦ୍ରିୟାଣାଂ ବ୍ୟାପକଂ,
" ଚେତଃ ସମବାୟି ସ୍ପର୍ଶନବ୍ୟାପ୍ତେ ବ୍ୟାପକମପି ଚେତଃ ।

(ଚ.ସୂ. ୧)

ଯୁଞ୍ଜନ୍ନେବଂ ସଦାତ୍ମାନଂ ଯୋଗୀ ବିଗତକଲ୍ମଷଃ "
"ସୁଖେନ ବ୍ରହ୍ମସଂସ୍ପର୍ଶମତ୍ୟନ୍ତଂ ସୁଖମଶ୍ନୁତେ"
ମାତ୍ରାସ୍ପର୍ଶାସ୍ତୁ କୌନ୍ତେୟ ଶୀତୋଷ୍ଣ ସୁଖଦୁଃଖଦାଃ
'ଯେ ହି ସଂସ୍ପର୍ଶଜା ଭୋଗା ଦୁଃଖ ଯୋନୟ ଏବ ତେ" ।
ବାହ୍ୟସ୍ପର୍ଶେଷ୍ୱସକ୍ତାତ୍ମା ବିନ୍ଦତ୍ୟାତ୍ମନି ଯତ୍ ସୁଖମ୍
ସ ବ୍ରହ୍ମଯୋଗ ଯୁକ୍ତାତ୍ମା ସୁଖମକ୍ଷୟମଶ୍ନୁତେ । (ଗୀତା)

ଅର୍ଥାତ୍ ଯୋଗ ଓ ମୋକ୍ଷରେ ସମସ୍ତ ବେଦନାର ନିବୃତ୍ତି ହୁଏ । ବେଦନାମାନଙ୍କର ଯାହା ନିଃଶେଷ ନିବୃତ୍ତି, ତା'ର ନାମ—ମୋକ୍ଷ । ସେହି ମୋକ୍ଷର ପ୍ରବର୍ତ୍ତକ ଅଟେ ଯୋଗ ।

## ଚରକୋକ୍ତ ଯୋଗର ସ୍ୱରୂପ

ଆତ୍ମେନ୍ଦ୍ରିୟ ମନୋର୍ଥାନାଂ ସନ୍ନିକର୍ଷାତ୍ ପ୍ରବର୍ତ୍ତତେ
ସୁଖଂ ଦୁଃଖମନାରମ୍ଭାଦାତ୍ମସ୍ଥେ ମନସି ସ୍ଥିରେ
ନିବର୍ତ୍ତତେ ତଦୁଭୟଂ ବଶିତ୍ୱଂ ଚୋପଜାୟତେ
ସଶରୀରସ୍ୟ ଯୋଗଜ୍ଞାଃ ତଂ ଯୋଗମ୍ ଋଷୟୋ ବିଦୁଃ
(ଚ. ଶା. ୧ ଅ)

ଅର୍ଥାତ୍ ଶରୀରସ୍ଥ ଆତ୍ମାର ଚକ୍ଷୁ କର୍ଣ୍ଣାଦି ଇନ୍ଦ୍ରିୟମାନଙ୍କ ଦ୍ୱାରା କିମ୍ବା ମନଦ୍ୱାରା ଶବ୍ଦାଦି ବିଷୟମାନଙ୍କ ସହିତ ସମ୍ବନ୍ଧ ହେଲେ ତହିଁରୁ ସୁଖଦୁଃଖ ବେଦନା ପ୍ରବର୍ତ୍ତି ଥାଏ । ଯଦି କାୟିକ, ବାଚିକ ଓ ମାନସିକ କର୍ମକଳାପରେ ଆସକ୍ତ ନ ରହି ରାଗଦ୍ୱେଷ ବିମୁକ୍ତ ହୋଇ ବିଷୟ ଲମ୍ପଟ ମନକୁ ବିଷୟ, ଇନ୍ଦ୍ରିୟ, ମନ ଓ ଭୂତାତ୍ମାର ମୂଳରେ ଥିବା ଅକ୍ଷର ଅସଙ୍ଗ, ଅବ୍ୟୟ ପରମାତ୍ମା ସହିତ ଯୋଗ କରାଯାଏ, ତା' ହେଲେ ବିଷୟ ନିବୃତ୍ତ ଅନ୍ତର୍ମୁଖୀ ମନ ସ୍ଥିରତା ପ୍ରାପ୍ତ ହୁଏ, ସୁଖଦୁଃଖାତୀତ ବ୍ରହ୍ମସଂସ୍ପର୍ଶରୁ ତା'ର ସଚ୍ଚିଦାନନ୍ଦ ସ୍ୱରୂପ ଅସଙ୍ଗ ବ୍ରହ୍ମଙ୍କୁ ପ୍ରାପ୍ତି ହୁଏ, ସୁଖଦୁଃଖ ବେଦନାର ଆଉ ଅନୁଭୂତ ହୁଏ ନାହିଁ ଏବଂ ଇନ୍ଦ୍ରିୟମାନେ ତା'ର ବଶୀଭୂତ ହୁଅନ୍ତି । ଏହା ହିଁ ଶରୀରାତ୍ମାର ପରମାତ୍ମା ସହିତ ଯୋଗ ବୋଲି ଯୋଗଜ୍ଞ ଋଷିମାନେ କହିଛନ୍ତି । ଏହି ଯୋଗଦ୍ୱାରା ରୋଗର ନିବୃତ୍ତି ସମ୍ବନ୍ଧେ ଚରକ କହନ୍ତି ଯେ

ମତିର୍ବଚଃ କର୍ମ ସୁଖାନୁବନ୍ଧ ସତ୍ତ୍ୱଂ ବିଧେୟଂ ବିଶଦା ଚ ବୁଦ୍ଧିଃ
ଜ୍ଞାନଂ ତପସ୍ତତ୍ପରତା ଚ ଯୋଗେ ଯସ୍ୟାସ୍ତି ତଂ ନାନୁପତନ୍ତି ରୋଗାଃ
(ଚ. ଶା. ୨ଅ

ଅର୍ଥାତ୍ ଯା'ର ମନ, ବଚନ ଓ କର୍ମ ଆତ୍ମାନନ୍ଦ ଲବ୍ଧର ଅନୁକୂଳ, ଯା'ର ମନ ବଶୀଭୂତ ଓ ବୁଦ୍ଧି ବିଶୁଦ୍ଧ ଏବଂ ଯା'ର ସମସ୍ତ କର୍ମଜ୍ଞାନରେ ପରିସମାପ୍ତ, ପୁଣି ଯେ ତପସ୍ୱୀ, ଏବଂ ସର୍ବଦା ବୁଦ୍ଧିଯୋଗରେ ଯା'ର ତତ୍ପରତ

ଆଏ, ତାକୁ କୌଣସି ରୋଗ ଆକ୍ରମଣ କରେ ନାହିଁ । ଆଜିର ମଧ୍ୟ ଯେ ଲେଖିଛନ୍ତି—

ଯସ୍ତ୍ୱଗ୍ନିକଲ୍ପାନ୍ ବିଷୟାନ୍ ଜ୍ଞାତ୍ୱା ତେଭ୍ୟୋ ନିବର୍ତ୍ତତେ
ଅନାରମ୍ଭାଦସଂଯୋଗାତ୍ତଂ ଦୁଃଖଂ ନୋପତିଷ୍ଠତେ ।
(ଚ. ସୂ.)

ଅର୍ଥାତ୍ ଯେଉଁ ପୁରୁଷ ଶବ୍ଦାଦି ବିଷୟମାନଙ୍କୁ ଅଗ୍ନିତୁଲ୍ୟ ମନେକରି ସେଥିରୁ ନିବୃତ୍ତ ହୁଏ ଏବଂ କାୟିକ, ବାଚିକ ଓ ମାନସିକ କର୍ମ ଆରମ୍ଭ କରେ ନାହିଁ (ଅର୍ଥାତ୍ କର୍ତ୍ତୃତ୍ୱ ଅଭିମାନ ତ୍ୟାଗକରି ସମସ୍ତ କର୍ମ ପ୍ରବାହ ଅନାଦି ଈଶ୍ୱର କୃତବୋଲି ମନେ କରେ) ଏବଂ ଅନାସକ୍ତ ଭାବରେ କର୍ମାନୁଷ୍ଠାନ କରେ,ସେଇ ଆତ୍ମସ୍ଥ ପୁରୁଷର ବିଷୟ ସଂସ୍ପର୍ଶର ଅଭାବରୁ ଦୁଃଖ ବା ବିକାର ଉତ୍ପନ୍ନ ହୁଏ ନାହିଁ ।

## ସର୍ବରୋଗ ନିବର୍ତ୍ତକ ଯୋଗ:ହିଁ ପୂର୍ଣ୍ଣ ସ୍ୱାସ୍ଥ୍ୟ

ଯୋଗ ଶବ୍ଦର ଅର୍ଥ ହେଉଛି—ମିଳନ, ଅର୍ଥାତ୍ ଦୁଇ ବା ତତୋଽଧିକ ପଦାର୍ଥର ମିଳନକୁ ଯୋଗ ବୋଲି ଯାଏ । ଏହି ଦୃଶ୍ୟମାନ ଜଗତର ସ୍ୱରୂପ ହେଉଛି- ଯୋଗ ଓ ବିଯୋଗାତ୍ମକ । ଯାହା ସହିତ ଯା'ର ଯୋଗଥାଏ, ତାହା ସହିତ ତା'ର ବିଯୋଗ ସୁନିଶ୍ଚିତ । ଜଡ ବସ୍ତୁ ସହିତ ଜଡ଼ ବସ୍ତୁର ଯୋଗ ବୋଲ କିମ୍ବା ଜଡ ସହିତ ଚେତନର ଯୋଗବୋଲ ତାହା କଦାପି ଏକାନ୍ତ ବା ଅତ୍ୟନ୍ତ ଯୋଗ ହୋଇ ନ ପାରେ । ଆମ୍ଭମାନଙ୍କର ଆତ୍ମାର ରୂପ ରସାଦି ଭୋଗ୍ୟ ବିଷୟ ମାନଙ୍କ ସହିତ, ପ୍ରିୟତମ ପୁତ୍ରକଳତ୍ରାଦି ସହିତ ଏବଂ ଅତିପ୍ରିୟ ଦେହ, ଇନ୍ଦ୍ରିୟ ଓ ମନର ସହିତ ଯେଉଁ ଯୋଗ, ତାହା ସବୁ ବିଯୋଗାନ୍ତ ଯୋଗ । ଅର୍ଥାତ୍ ଏହି ସବୁ ଯୋଗର ପରିଣାମ ଅତି ଦୁଃଖମୟ ବିଯୋଗ ଅଟେ । ସୁତରାଂ ଯାହା ନିତ୍ୟସିଦ୍ଧ ଯୋଗ, ତାହାହିଁ ପ୍ରକୃତ ସ୍ୱାସ୍ଥ୍ୟ । ଏହି ଯେ ଆମମାନଙ୍କର ଆରୋଗ୍ୟ ଓ ରୋଗ ବା ସୁଖ ଦୁଃଖାନୁଭୂତି, ଏହାର ମୂଳ କାରଣ-- ଯୋଗ ବିଯୋଗର ବୈଷମ୍ୟ । ଚରକ ଲେଖିଛନ୍ତି ଯେ--

"ତତୋଽତିଯୋଗମିଥ୍ୟାଯୋଗାତ୍ ସମନସ୍କମ୍ ଇନ୍ଦ୍ରିୟଂ ବିକୃତି-
ମାପଦ୍ୟମାନଂ ଯଥାସ୍ୱଂ ବୁଦ୍ଧ୍ୟୁପଘାତାୟ ସମ୍ପଦ୍ୟତେ,
ସମଯୋଗାତ୍ ପୁନଃ ପ୍ରକୃତିମାପଦ୍ୟମାନଂ ଯଥାସ୍ୱଂ ବୁଦ୍ଧିମ୍
ଆପ୍ୟାୟୟନ୍ତି।"

ଅର୍ଥାତ୍ ଶବ୍ଦାଦି ବିଷୟମାନଙ୍କର ଅଯୋଗ, ଅତିଯୋଗ କିମ୍ବା ମିଥ୍ୟାଯୋଗରୁ ମନ ସହିତ ଇନ୍ଦ୍ରିୟ ବିକୃତ ପ୍ରାପ୍ତହୋଇ ତଦ୍‌ବିଷୟିଣୀ ବୁଦ୍ଧିକୁ ବ୍ୟାଘାତ କରେ। ଯଦି ବିଷୟମାନଙ୍କର ସମଯୋଗ ହୁଏ, ତା' ହେଲେ ମନ ଓ ଇନ୍ଦ୍ରିୟ ପ୍ରକୃତିସ୍ଥ ହୋଇ ଯଥାବିଷୟରେ ବୁଦ୍ଧିକୁ ଆପ୍ୟାୟିତ କରେ। ସେଣୁ ବୁଦ୍ଧିର ଭେଦ ସଂକ୍ଷେପତଃ ଦୁଇ ପ୍ରକାର।

## ବିଦ୍ୟାବୁଦ୍ଧି ଓ ଅବିଦ୍ୟାବୁଦ୍ଧି

ଚରକ ଲେଖିଛନ୍ତି ଯେ--

ଜାୟତେ ବିଷୟେ ତତ୍ର ଯା ବୁଦ୍ଧିର୍ନିଶ୍ଚୟାତ୍ମିକା
ବ୍ୟବସ୍ୟତେ ତୟା ବକ୍ତୁଂ କର୍ତ୍ତୁଂ ବା ବୁଦ୍ଧିପୂର୍ବକମ୍
ଯା ଯଦିନ୍ଦ୍ରିୟମାଶ୍ରିତ୍ୟ ଜନ୍ତୋର୍ବୁଦ୍ଧିଃ ପ୍ରବର୍ତ୍ତତେ
ଯାତି ସା ତେନ ନିର୍ଦ୍ଦେଶଂ ମନସା ଚ ମନୋଭବା
ଭେଦାତ୍ କାର୍ଯ୍ୟେନ୍ଦ୍ରିୟାର୍ଥାନାଂ ବହ୍ୱ୍ୟୋ ବୈ ବୁଦ୍ଧୟଃ ସ୍ମୃତାଃ
ଆତ୍ମେନ୍ଦ୍ରିୟମନୋଽର୍ଥାନାମ୍ ଏକୈକା ସନ୍ନିକର୍ଷଜା।

(ଚ.ଶା. ୧ଅ)

ଏହାର ସାରାର୍ଥ ଏହିଯେ--ବ୍ୟବସାୟାତ୍ମିକା ଓ ଅବ୍ୟବସାୟାତ୍ମିକା ଭେଦରେ ସଂକ୍ଷେପତଃ ବୁଦ୍ଧି ଦୁଇ ପ୍ରକାର ହୁଏ। ଏଥି ମଧ୍ୟରେ ପ୍ରଥମଟି ନିଶ୍ଚୟାତ୍ମିକା ଏବଂ ଦ୍ୱିତୀୟଟି ଅନିଶ୍ଚୟାତ୍ମିକା * ଅଟେ। ପ୍ରଥମଟି ବିଦ୍ୟା ବୁଦ୍ଧି ଏବଂ ଦ୍ୱିତୀୟଟି ଅବିଦ୍ୟା ବୁଦ୍ଧି ନାମରେ ଅଭିହିତ ହୁଏ। ଯେଉଁ ବୁଦ୍ଧି ନିଷ୍କଳ ଆତ୍ମା ସହିତ ନିତ୍ୟ ସମ୍ବନ୍ଧ ରଖେ, ତାର ନାମ–ବିଦ୍ୟାବୁଦ୍ଧି ଏବଂ ରୂପରସାଦି ଅସ୍ଥିର ବିଷୟମାନଙ୍କ ସହିତ ସମ୍ବନ୍ଧ ରଖିବା ବୁଦ୍ଧିକୁ ଅବିଦ୍ୟା ବୁଦ୍ଧି ବୋଲନ୍ତି। ବିଦ୍ୟାବୁଦ୍ଧିର ନାମ--ଭଗ ଏବଂ ଅବିଦ୍ୟା

* ବ୍ୟବସାୟାତ୍ମିକା ବୁଦ୍ଧିରେକେହ କୁରୁନନ୍ଦନ
ବହୁଶାଖା ହ୍ୟନନ୍ତାଶ୍ଚ ବୁଦ୍ଧୟୋଽବ୍ୟବସାୟିନାମ୍। (ଗୀତା)

ବୃତ୍ତିର ନାମ କ୍ଲେଶ ବା ଯୋଗମାୟା । ଯାହା ବିଦ୍ୟାବୃତ୍ତି ତାହା ଈଶ୍ୱରଙ୍କର ଏବଂ ଯାହା ଅବିଦ୍ୟା ବୃତ୍ତି ତାହା ଜୀବାତ୍ମା ବା ଭୂତାତ୍ମାର ଅଟେ । ବିଦ୍ୟାବୃତ୍ତିର ଭେଦ ଚତୁର ପ୍ରକାର । ଯଥା--୧ ଧର୍ମ, ୨ ଜ୍ଞାନ, ୩ ବୈରାଗ୍ୟ ଓ ୪ ଐଶ୍ୱର୍ଯ୍ୟ । * । ଅବିଦ୍ୟା ବୃତ୍ତି ମଧ୍ୟ ଚତୁର ପ୍ରକାର । ୧ ଅଧର୍ମ ୨ ଅଜ୍ଞାନ ୩ ଅବୈରାଗ୍ୟ ଓ ୪ ଅନୈଶ୍ୱର୍ଯ୍ୟ । ଆଲୋକ ଓ ଅନ୍ଧକାର ତୁଲ୍ୟ ଏହି ବିଦ୍ୟା ବୃତ୍ତି ଓ ଅବିଦ୍ୟା ବୃତ୍ତି ପରସ୍ପର ବିରୋଧୀ । ଅବିଦ୍ୟାବୃତ୍ତି ପ୍ରବଳ ହେଲେ ସେ ବିଦ୍ୟାବୃତ୍ତିକୁ ତିରୋହିତ କରେ ଏବଂ ତଦ୍ୱାରା ଆତ୍ମାର ସ୍ୱୟଂପ୍ରକାଶ ସଚ୍ଚିଦାନନ୍ଦ ସ୍ୱରୂପ ଜ୍ୟୋତି ଆବୃତ ହୋଇ ରହେ । କିନ୍ତୁ ବିଦ୍ୟାବୃତ୍ତିର ପ୍ରକାଶ ହେଲେ ସୂର୍ଯ୍ୟପ୍ରକାଶରେ ଅନ୍ଧକାର ତୁଲ୍ୟ ଅବିଦ୍ୟାର ଅନ୍ଧକାର ନଷ୍ଟ ହୋଇଯାଏ । ସେତେବେଳେ-

---

* । ଐଶ୍ୱର୍ଯ୍ୟସ୍ୟ ସମଗ୍ରସ୍ୟ ଧର୍ମସ୍ୟ ଯଶସଃ ଶ୍ରିୟଃ
ଜ୍ଞାନବୈରାଗ୍ୟୟୋଶ୍ଚୈବ ଷଣ୍ଣାଂ ଭଗ ଇତୀରଣା
ଉତ୍ପତ୍ତିଂ ପ୍ରଳୟଂ ଚୈବ ଭୂତାନାମାଗତିଂ ଗତିମ୍
ବେତ୍ତି ବିଦ୍ୟାମବିଦ୍ୟାଂ ଚ ସ ବାଚ୍ୟୋ ଭଗବାନିତି ।
(ଈଶ୍ୱର) ସଙ୍ଗ ଧର୍ମାମଚନ୍ତ୍ୟସ୍ତୁ ସତ୍ୟସଂକଳ୍ପ କାମବାନ୍
ବଶ୍ୟକର୍ମା ପୂର୍ଣ୍ଣଶକ୍ତିଃ ସର୍ବଜ୍ଞଃ ସୋଽପ୍ୟୁର୍ମୀଶ୍ୱରଃ
ଶୋକମୋହୌ ଜରାମୃତ୍ୟୁ କ୍ଷୁତ୍ପିପାସେ ନ ଚେଶ୍ୱରେ
ସତ୍ତ୍ୱୌ ତତ୍କାମସଂକଳ୍ପୌ ସୋଽସ୍ଥୂଲୋଽନଣୁଃ
ଜାଗ୍ରତ୍ସ୍ୱପ୍ନସୁଷୁପ୍ତ୍ୟାଦି ଷଡ଼ବସ୍ଥାବିବର୍ଜିତଃ
କାଳବ୍ୟାପୀ ସ କୂଟସ୍ଥ ଇତି ସାଂଖ୍ୟବିଦାଂ ମତମ୍
କୂଟସ୍ଥୋଽକ୍ଷର ଇତ୍ୟୁକ୍ତଃ କ୍ଷରକୂଟେ ସ ହି ସ୍ଥିତଃ
(ଜୀବ) ଅପୂର୍ଣ୍ଣ କ୍ଲେଶତନ୍ତ୍ରଜ୍ଞୋଽପୂର୍ଣ୍ଣକାମଃ ସ୍ୱଧର୍ମତଃ
ଅନିତ୍ୟୋଽପ୍ୟସ୍ୟୋଽଲ୍ପବୀର୍ଯ୍ୟୋଽଲ୍ପମାତ୍ରୋ ଜୀବ ଇଷ୍ୟତେ ।
(ଅବିଦ୍ୟା) ନ ଜୀବ ସ୍ତ୍ରୀ ନ ପୁଂସ ଷଣ୍ଢଂ ନାଦ୍ୟନ୍ତଂ ବ୍ୟକ୍ତିହେତୁତଃ
ନ ଭିନ୍ନଂ ନାପିଚ ନାସ୍ତି ନାସ୍ତ୍ୟଦଂ ନୈଷ୍ଟ୍ୟମେତାଽଙ୍କ୍ଷ୍ୟସ୍ଥଃ
ସଂଯୋଗଂ ନୈଷ୍ଠ କାଳେଷୁ ସତ୍ତାସୁ ଚ ଶକ୍ତିଷୁ
ବନ୍ଦନେଷୁ ଚ ସର୍ବେଷୁ ଚାନ୍ୟତ୍ର ତଦୁଦାହରଣମ ।

ଜ୍ୟୋତିମାନଙ୍କର *ଂ ଜ୍ୟୋତିଃସ୍ୱରୂପ ଆତ୍ମାର ସ୍ୱୟଂ ପ୍ରକାଶତ୍ୱର ଉପଲବ୍ଧି ହୁଏ । ସେତେବେଳେ ରାଜ୍ୟ, ବୈଭବ, ବସ୍ତ୍ରାଳଙ୍କାରାଦି ଲୌକିକ ଉନ୍ନତି ସାମଗ୍ରୀରେ ତା'ର ତୁଚ୍ଛ ବୁଦ୍ଧି ବା ବୈରାଗ୍ୟ ଜନ୍ମେ । ସେ ଅତୀତ,ଅନାଗତ, ପରୋକ୍ଷ, ଅତୀନ୍ଦ୍ରିୟ ପଦାର୍ଥମାନଙ୍କର ଜ୍ଞାନ ଲାଭ କରେ, ଜାତିସ୍ମର ହୁଏ ଏବଂ ଅଣିମା, ମହିମା, ଲଘିମା, ଗରିମା, ପ୍ରାପ୍ତି ପ୍ରାକାମ୍ୟ ଈଶିତ୍ୱ,ବଶିତ୍ୱରୂପ ଆଠ ପ୍ରକାର ଯୋଗ ସିଦ୍ଧି ରୂପ ଐଶ୍ୱର୍ଯ୍ୟ ସେ ଲାଭକରେ ଏବଂ ତା'ର ସଚ୍ଚିଦାନନ୍ଦ ସ୍ୱଭାବ ବା ସ୍ୱଧର୍ମ ପ୍ରକାଶ ହୁଏ, ଦୈବ ଓ ଆସୁର ଧର୍ମରୁ ସେ ବିମୁକ୍ତ ହୁଏ ଏବଂ ଜୀବର ଧର୍ମ-ଜନ୍ମ,ଜରା. ମରଣ ରୂପ ଦୁଃଖ ତାକୁ ସ୍ପର୍ଶ କରେ ନାହିଁ । ଏହାହିଁ ଆତ୍ମାର ଆତ୍ମପ୍ରତ୍ୟକ୍ଷ ସାର କୈବଲ୍ୟାବସ୍ଥା । ଏହାହିଁ ନିତ୍ୟ, ସନାତନ,ଅବ୍ୟୟ, ଆତ୍ମାସହିତ ଅନାଦି ପ୍ରବାହନିତ୍ୟ ଜୀବାତ୍ମାର ନିତ୍ୟସିଦ୍ଧ ଶାଶ୍ୱତ ଯୋଗ ଏବଂ ଏହା ହିଁ ଜୀବାତ୍ମାର ପରମାତ୍ମା ରୂପରେ ଅବସ୍ଥାନ ରୂପ-ପୂର୍ଣ୍ଣ ଓ ପ୍ରକୃତ ସ୍ୱାସ୍ଥ୍ୟ । ଏହି ସ୍ୱାସ୍ଥ୍ୟକୁହିଁ ଲକ୍ଷ୍ୟକରି ଋଷି କହିଛନ୍ତି—

ନ ତସ୍ୟରୋଗାଃ ନ ଜରା ନ ମୃତ୍ୟୁଃ ପ୍ରାପ୍ତସ୍ୟ ଯୋଗାଗ୍ନିମୟଂ ଶରୀରମ୍ ।

(ଶ୍ୱେତାଶ୍ୱତରୋପନିଷତ୍)

ଓଁ ତତ୍ ସତ୍

ଓଁ ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ ।
ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।

---

* ନ ତତ୍ର ସୂର୍ଯ୍ୟୋ ଭାତି ନ ଚନ୍ଦ୍ରତାରକଂ ନେମାବିଦ୍ୟୁତୋଭାନ୍ତି
କୁତୋଽୟମଗ୍ନିଃ ।
ତମେବଭାନ୍ତ ମନୁଭାତି ସର୍ବଂ ତସ୍ୟ ଭାସା ସର୍ବମିଦଂବିଭାତି
(ମୁଣ୍ଡକୋ· ୨।୨।୧୦)

ଆତ୍ମାର ଐଶ୍ୱର୍ଯ୍ୟ ରୂପ ଯୋଗବଳ ସମ୍ବନ୍ଧେ ଚରକ ଲେଖିଛନ୍ତିଯେ-
ଆବେଶଶ୍ଚେତସୋ ଜ୍ଞାନମର୍ଥାନାଂଛନ୍ଦତଃ କ୍ରିୟା
ଦୃଷ୍ଟିଃ ଶ୍ରୋତ୍ରଂ ସ୍ମୃତିଃ କାନ୍ତିରିଷ୍ଟତଶ୍ଚାପ୍ୟଦର୍ଶନମ୍
ଇତ୍ୟଷ୍ଟବିଧମାଖ୍ୟାତଂ ଯୋଗିନାଂ ବଳମୈଶ୍ୱରମ୍
ଶୁଦ୍ଧସତ୍ତ୍ୱସମାଧାନାତ୍ ତତ୍ସର୍ବମୁପଜାୟତେ । (ଚ. ଶା. ୧ଅ)

# ଗ୍ରନ୍ଥର ଭ୍ରମ ସଂଶୋଧନ

| ଅଶୁଦ୍ଧି | ଶୁଦ୍ଧି | ପୃଷ୍ଠା | ଧାଡ଼ି |
|---|---|---|---|
| ପଦାର୍ଥ ନାମ | ପଦାର୍ଥର ନାମ | ୩ | ୯ |
| ମତ ସେ | ମତ । ସେ | ୩ | ୨୦ |
| ଖଣ୍ଡଧାତ୍ରୁ କୋଽୟଂ | ଷଣ୍ଢଧାତ୍ରୁକୋଽୟଂ | ୩ | ୨୧ |
| ଟକଶ୍ରାଭ ଅଧିକାଶ | ଚକଶ୍ରାଭ ଅଧିକରଣ | ୪ | ୧୦।୧୪ |
| ସମୁକ୍ତ | ସମ୍ପୃକ୍ତ | ୪ | ୨୫ |
| ସମ୍ବନ୍ଧମ୍ବ | ସମ୍ବନ୍ଧୀମ୍ବ | ୧୧ | ୨୧ |
| ପ୍ରଥମଂ ଯଙ୍କେ | ପ୍ରଥମଂଜଙ୍କେ | ୧୨ | ୧୩ |
| ବାୟୁର୍କେକେ ଦାନ୍ତ | ବାୟୁର୍ଜ୍ୟୋନ୍ତ | ୧୫ | ୨୯ |
| ଇତସ୍ତନ୍ୟାଂ (ଟିପ୍ପଣୀ) | ଇତସ୍ତନ୍ୟାଂ | ୧୭ | ୭ |
| ସ୍ତଦ୍ଧି ପ୍ରକାରଂ | ସ୍ତଦ୍ଧି ପ୍ରକାରମ୍ | ୧୮ | ୭ |
| ନଦାଷଣ୍ଟା | ଦୋଷଣ୍ଟା | ୨୧ | ୪ |
| କାସୃଟକଣ୍ଡା | କାସୃଟକଣ୍ଡା | ୨୧ | ୮ |
| ଜ୍ଞନାଧାନ | ଜ୍ଞାନଧାନ | " | ୨୧ |
| ବନ୍ଧପରମାଣୁ | ବର୍ଣ୍ଣପରମାଣୁ | ୨୨ | ୨ |
| ସ୍ଥଳଦେହରେ | ସ୍ଥୂଳଦେହରେ | ୨୩ | ୨୮ |
| ଯସ୍ତବେଦ | ଯସ୍ତଦ୍ ବେଦୋ | ୨୪ | ୧୪ |
| ମରମଂ ସୃତମ୍ | ପରମଂମୃତମ୍ | ୨୭ | ୨୧-୨୨ |
| ଗୃହସ୍ଥଚଃ | ଗୃହସ୍ଥି ଚଃ | ୩୨ | ୧୮ |
| ପ୍ରାଗ ବ୍ୟାଧଣ୍ଡଃ | ପ୍ରାଗ୍ ବ୍ୟାଧିଭଃ | ୩୩ | ୮ |
| ଏବଂ ପ୍ରିକ୍ | ଏବଂ ପ୍ରିକ୍ | ୩୩ | ୧୪ |
| ନନ୍ଦିଷ୍ଟ | ନନ୍ଦୀଷ୍ଟ | ୩୫ | ୧୭ |
| ଜ୍ୟୋତିର୍ବ୍ଜାନ | ଜ୍ୟୋତିର୍ଜ୍ଞାନ | " | ୨୪ |
| ଶାସ୍ତ୍ରାଭ୍ୟସର | ଶାସ୍ତ୍ରାଭ୍ୟାସର | ୩୮ | ୨ |
| ଦ୍ୱାଦଶସ୍କନ | ଦ୍ୱାଦଶସ୍କନ୍ଧ | ୩୮ | ୨ |
| ସ୍ନାମସସ୍ତୃତଃ | ସ୍ନାମସସୃତଃ | ୩୮ | ୧୮ |
| ଖଇବାକୁ | ଖାଇବାକୁ | ୩୯ | ୨୧ |
| ବବଧେଭୂତସନ୍ଧେ | ଷବଧେ ଭୂତସନ୍ଧେ (ଟିପ୍ପଣୀ) | ୩୧ | ୭ |
| ଅଭ୍ଲଶାସ୍ତ୍ରାଃ | ଅଭ୍ରଶାସ୍ତ୍ରାଃ | ୫୧ | ୧୧ |

| ଅଶୁଦ୍ଧି | ଶୁଦ୍ଧି | ପୃଷ୍ଠା | ଧାଡ଼ି |
|---|---|---|---|
| ଶାସ୍ତଯାନ୍ର | ଶାସ୍ତ୍ରସାର | ୫୩ | ୦୮ |
| ବାଗ ସବଦା କର୍ଣ୍ଣଯାଏ | ବାଗ୍ର କର୍ଣ୍ଣଯାଏ | ୫୪ | ୪-୫ |
| ପ୍ରତିକୂଳ | ପ୍ରତିକୂଳ | ୫୭ | ୨୩ |
| ତାନମାଗୁଣ | ତମୋଗୁଣ | ୫୮ | ୧୫ |
| ଧୃତିକସ୍ତ | ଧୃତିଭ୍ରଷ୍ଟ | ୫୯ | ୧ |
| ନସ୍ୟାମୃକା | ନସ୍ୟମାମୃକା | " | ୩ |
| ବନଣ୍ଟିତ | ବନଶ୍ୟନ୍ତ | ୬୪ | ୪ |
| ସେଦେଶର ୧୨୧୩ | ସେ ଦେଶର ୧୨।୧୩ | " | ୨୫ |
| ବୈଶ୍ୱର୍ଯ | ଐଶ୍ୱର୍ଯ୍ୟ | ୬୫ | ୯ |
| ପରସଖ୍ୟସ୍ତୁ (ଟିପ୍ପଣୀ) | ପରସଖ୍ୟସ୍ତୁ | ୭୩ | |
| ତାବଗ (ଟିପ୍ପଣୀ) | ତାବଙ୍ଗଂ | " | |
| ବଣ୍ଡ, ସୂକ୍ଷ୍ମ-ଦେହା | ବଣ୍ଡ । ସୂକ୍ଷ୍ମଦେହା-(ଟିପ୍ପଣୀ) | ୭୪ | ୨ |
| ଆପବର୍ଧାତ୍ତ୍ୱ | ଆପବର୍ଦ୍ଧିତ୍ୱ | ୭୫ | ୨ |
| ବକ୍ରତା | ବକ୍ତୃତା | ୮୨ | ୧୮ |
| କଗଜମନଙ୍କରେ ପ୍ରକାଶ | କାଗଜମାନଙ୍କରେ ପ୍ରକାଶ | ୮୦ | ୧୩ |
| ଉପୃତ୍ତି କ୍ଷେବ | ଉପୃତ୍ତି କ୍ଷେବ | ୮୧ | ୧୧ |
| ବର୍ଣ୍ଣଭଜ | ବର୍ଣ୍ଣଭଜଃ | ୮୨ | ୧୬ |
| ସସାନ ଅଟେ | ସମାନ ଅଟେ | ୮୩ | ୪ |
| ବେଦଙ୍କ ବ୍ରାହ୍ମଣର | ବେଦଙ୍କ ବ୍ରାହ୍ମଣର | ୮୪ | ୨୩ |
| ପ୍ରଜାନାନ୍ତ | ପ୍ରଜାନାଂ ଭୁ | ୮୭ | ୧୩ |
| ଚତର | ଚତୁରେ | " | ୧୭ |
| ପ୍ୟନ୍ତ୍ୟକୋବାପି | ପ୍ୟନ୍ତ୍ୟକୋବାପି | ୮୮ | ୨୪ |
| ତହା ବମଳେ | ତହ ବମଳେ | " | ୨୬ |
| ଶଦ୍ରାଃ | ଶୂଦ୍ରାଃ | ୮୯ | ୭ |
| ଭ୍ରକ୍ଷେପ | ଭ୍ରୂକ୍ଷେପ | " | ୧୦ |
| ଦେବଧୋଦ୍ଧବ୍ୟାଃ ଟିପ୍ପଣୀ) | ଦେବଧଃ ଋଦ୍ଧ୍ୟାଃ | ୯୦ | ୨ |
| ଧ୍ୱଂସା ବୈଶ୍ୟା (ଟିପ୍ପଣୀ) | ଧ୍ୱଂସା ବୈଶ୍ୟା | " | ୭ |

| ଅଶୁଦ୍ଧ | ଶୁଦ୍ଧ | ପୃଷ୍ଠା | ଧାଡ଼ି |
|---|---|---|---|
| ଟଗୀ. ବୈଶ୍ୟଃ (ଟିପ୍ପଣୀ) | ଗୌରବିଂଶ୍ୟଃ | " | ୧୦ |
| ଶାସ୍ତାଣି (ଟିପ୍ପଣୀ) | ଶାସ୍ତାଣି | " | ୧ |
| ସ୍ଥାଉଦ୍‌ବା, ପେଟ | ସ୍ଥାଉଦ୍‌ବାଟର | ୯୨ | ୧ |
| ଉଦ୍ଭୂତ | ଉଦ୍ଭୂତ | ୯୭ | ୪ |
| ନୃଶାମସ୍ୟଂ | ନୃଶାମସ୍ୟଂ | ୯୮ | ୩ |
| ୭୧ ପୃଷ୍ଠାଠାରୁ ୧୦୦ ପୃଷ୍ଠା ପର୍ଯ୍ୟନ୍ତ 'ପ୍ରକୃତ ବନ୍ଧୁର ପରିଚୟ' ଏହି ଶିରୋନାମ ସବୁ ପୃଷ୍ଠାରେ ରହିବ । | | | |
| ମୁଥନଂ | ମୁଥାନଂ | ୯୯ | ୧୧ |
| ବଳବନ୍ତୀ | ବଳ ବୃତ୍ତି | ୧୦୨ | ୩ |
| ବାଙ୍ମାମାନ୍ତରେ | ବାଙ୍ମାନ୍ତରେ | ୧୦୨ | ୪ |
| ବ୍ରହ୍ମାଙ୍ଗୀତା | ବ୍ରହ୍ମାଙ୍କୁରତା (ଟିପ୍ପଣୀ) | ୧୦୩ | ୨୩ |
| ମନୁସ୍ୟାଣାଂ (ଟିପ୍ପଣୀ) | ମନୁସ୍ୟାଣାଂ | ୧୦୪ | ୭ |
| ଦବଦ୍ଵେଷିଣଃ (ଟିପ୍ପଣୀ) | ଦବବଦ୍ଵେଷିଣଃ | ୧୦୬ | ୧୩ |
| ଭ୍ରମିଷ୍ଟଂ | ଭ୍ରମିଷ୍ଟଂ | ୧୦୭ | ୯ |
| ଗବୋଞ୍ଜିତା (ଟିପ୍ପଣୀ) | ଗବୋଜ୍ଝିତା | ୧୦୭ | ୧ |
| ବଦକ | ବନ୍ଧକ | ୧୦୮ | ୧୦ |
| ବୋଲ ୧୯୭୭ | ବୋଲ ଏବଂ ୧୯୭୭ | ୧୦୮ | ୧୭ |
| ବାଙ୍ମା | ବାଙ୍ମା | ୧୦୯ | ୧୩ |
| ଦଦ୍ୟ | ମଦ୍ୟ | ୧୨୩ | ୨୮ |
| ଅଧ୍ୟାସ୍ତ (ଟିପ୍ପଣୀ) | ଅଧ୍ୟାସ୍ତ | ୧୩୯ | ୨୮ |
| ଜଗତ୍କୃତ୍ନ | ଜଗତ୍କୃତ୍ନ | ୧୭୭ | ୯ |
| ରଶ୍ମିଭିଃ | ରଶ୍ମିଭିଃ | ୧୭୭ | ୨୪ |
| ଚାଞାଣି | ଚାଷଣି | ୧୮୦ | ୩ |
| ଷଣ୍ମୁଷ୍ଟ | ଷଣ୍ମୁଷ୍ଟ | ୧୮୦ | ୭ |
| ଉକାର ସ୍ଥାପି (ଟିପ୍ପଣୀ) | ଉକାରସ୍ଥାପି | ୧୮୮ | ୨୭ |
| ଉଦ୍ଦଂସ୍ତରଂ | ଉଦଂସ୍ତରଂ | ୧୯୦ | ୨୫ |
| କପ୍ୟନ୍ତ (ଟିପ୍ପଣୀ) | କୃପ୍ୟନ୍ତ | ୨୦୮ | ୨୫ |
| ସମାଲୋ (ଟିପ୍ପଣୀ) | ସମାଲୋଚନ | ୨୦୮ | ୨୭ |
| ଚକ୍ରସଂଶମନ (ଟିପ୍ପଣୀ) | ଚକ୍ରସଂଶମନମ୍ | ୨୦୮ | ୨୮ |

ଅଣ୍ଟାଳୁଗଡ଼ ପଲ୍ଲୀବାସୀ ପ୍ରେସରେ, ମୁଦ୍ରିତ । ୧୯୫୯